# ଆର୍ଯ୍ୟ ସୂର୍ଯ୍ୟ ଗୀତାବଳୀ

ସଂପାଦନା

[illegible]

ପ୍ରକାଶକ
ଜଗନ୍ନାଥ ରଥ
କଟକ

ସଂପାଦନା—
କବିଚନ୍ଦ୍ର
**ଶ୍ରୀ କାଳୀଚରଣ ପଟ୍ଟନାୟକ**
ନାଟ୍ୟାଗ୍ରଣୀ

ପ୍ରକାଶକ—
**ଜଗନ୍ନାଥ ରଥ**
ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ
୧୯୬୮

ମୂଲ୍ୟ—
**ଦଶଟଙ୍କା ମାତ୍ର**

ମୁଦ୍ରାକର—
ଶ୍ରୀ ଅଜୟକୁମାର ଘୋଷ
**ଶ୍ରୀହରନାଥ ପ୍ରେସ**
କଟକ-୨

କଳାରସିକ ଓଡ଼ିଆ ଜାତିର ସଂଗୀତମନ୍ଦିରର ପ୍ରାଙ୍ଗଣରେ ଚୈତ୍ର-ବସନ୍ତର ପହିଲି ପରଶ ବୋଳି ଦେବାପାଇଁ, 'ବୀଣା ପୁସ୍ତକ-ରଞ୍ଜିତ-ହସ୍ତା' ମାଆ ଭଗବତୀ ସରସ୍ୱତୀ ୧୭୧୧ ଶକାବ୍ଦ ଅର୍ଥାତ୍ ୧୭୮୯ ଖ୍ରୀଷ୍ଟାବ୍ଦର ମଧୁମାସୀ ମଧୁପଞ୍ଚମୀଦିନ ବଡ଼ଖେମୁଣ୍ଡିଗଡ଼ ରହଣୀ କବିରାଜ ବ୍ରହ୍ମା ପଣ୍ଡିତ ଉତ୍କଳ ରଥଙ୍କ କୋଳ ଉଜ୍ଜ୍ୱଳାଇ ନବଜାତ ଶିଶୁ ବଳଦେବଙ୍କୁ ଶୁଭାଶୀର୍ବାଦ ଦେଲେ । ମାଆ ସୁଲକ୍ଷଣା ଦେବୀ, ଅଜା ଅଠଗଡ଼ର ସିଦ୍ଧତାନ୍ତ୍ରିକ ତ୍ରିପୁରାରି ଓଝା,—ସମସ୍ତଙ୍କ ମନରେ ଆନନ୍ଦର ଢେଉ ଖେଳିଗଲା । ଶୁକ୍ଳପକ୍ଷ ଚନ୍ଦ୍ରମାପରି ଶିଶୁ ବଳଦେବ ରୂପରେ, ଗୁଣରେ ଉତ୍କଳ ରଥଙ୍କ କୁଳ ଉଜ୍ଜ୍ୱଳ କରି ଦିନକୁଦିନ ବଢ଼ୁଥାଆନ୍ତି । କିନ୍ତୁ ଅକାଳରେ ଅଘଟଣା ସାଧିଲା ଦଇବ । ବଳଦେବ ମାଆ—କୋଳଛଡ଼ା ହୋଇପଡ଼ିଲେ ମାତ୍ର ୧୦।୧୨ବର୍ଷ ବୟସରେ । ଅଜା ଓଝାଏ ମାଆଛେଉଣ୍ଡ ନାତିଟିକୁ ନେଇ ଆପଣା ପାଖରେ ରଖି ପାଠଶାଠ ପଢ଼ାଇ ଯୋଗ୍ୟ କରାଇଲେ ।

ଅଜ କେହି କଥାଟାକୁ ସତମଣୁ ଅବା ମିଛମଣୁ ବାଳକ ବଳଦେବ ସିଦ୍ଧତନ୍ତ୍ରଯୋଗୀ ଅଜାଙ୍କ ଘରେ ଥାଇ, ସୌଭାଗ୍ୟକ୍ରମେ ଦିନେ ତାଙ୍କ ଆରାଧିତା ଇଷ୍ଟଦେବୀଙ୍କର ସ୍ତନ୍ୟ ପାନକଲେ; ହେଲେ ଯୋଗକଲା କବି—'କବିସୂର୍ଯ୍ୟ' । ଲୋକେ ଏଇକଥା କହନ୍ତି ।

ପଣ୍ଡିତ ଶ୍ରୀ କୁଳମଣି କାବ୍ୟତୀର୍ଥେ କବିସୂର୍ଯ୍ୟ ଗ୍ରନ୍ଥାବଳୀରେ ଏ ସମ୍ବନ୍ଧେ ବିଶେଷ ଆଲୋଚନା କରିଛନ୍ତି । ତେଣୁ ସେ ସବୁକୁ ଅତ୍ରଅରେ ଦୋହରାଇବା ଅଲୋଡ଼ା ବିଚାରୁଛୁ । ଖାଲି ଟିକେଟିକେ ତାଙ୍କ ଜୀବନୀ-ପୋଥିରୁ ପୁଡ଼ାଏ ଅଧେ ବଖାଣି ଏ ଅଧ୍ୟାୟର ମୁଦ ଦେବୁ ।

ତଥାରେ ତ ଅଛି—"ଦାଇବ ଦାଉଡ଼ି ମଣିଷ ଘାଇ,
ଯେଣିକି ଟାଣିବ ତେଣିକି ଯାଇ ।"

—ସୁତରାଂ ବଳଦେବ ବିବାହର ବର୍ଷଟିଏ ନପୂରୁଣୁ ହେଲେ ପିତୃହରା । ଅବସ୍ଥା ପୁଣି ଏଭଳି ହେଲା ଯେ ତାଙ୍କ ବଡ଼ଭାଇ ହରିହର, ବିଧବା ଭଉଣୀ ଓ ନବବିବାହିତା ପତ୍ନୀଙ୍କ ସହିତ ଆପଣାର ପିତୃକୁଳ ଭିଟାମାଟି ଛାଡ଼ି ଜଳନ୍ତର ରାଜ୍ୟରେ ଯାଇ ଘର ତୋଳିବାକୁ ପଡ଼ିଲା ତାଙ୍କୁ । ସେତେବେଳକୁ ଜଳନ୍ତରରେ ଜଣେ ଗୁଣଗ୍ରାହୀ ପଣ୍ଡିତ ରାଜା ଥିଲେ । ତାଙ୍କ ନାମ ରାମଚନ୍ଦ୍ର ଛୋଟରାୟ ।

'ତୁଳସୀ ଦୁଇପତ୍ରରୁ ବାସେ' । ଦେବୀଙ୍କର ଆଶୀର୍ବାଦ ପାଇ ବଳଦେବ ମାତ୍ର ଅଠରବର୍ଷ ବୟସରେ ସଙ୍ଗୀତ ଲେଖି ଜଳନ୍ତର ରାଜା ରାମଚନ୍ଦ୍ର ଛୋଟରାୟଙ୍କର ଶ୍ରଦ୍ଧାସମ୍ମାନ-ପାତ୍ର ହେଲେ ।

ଭନକଲ୍ପତା ଆଲବାଲରେ ତା'ର ପାଇଲା ଶୀତଳ ଜଳଧାର । ଅଙ୍କୁର ଉଠିଲା ନବଦଳ ପଲ୍ଲବ—ମଞ୍ଜୁରିଲା ଲଳିତ ମଞ୍ଜରୀ, ପାଖୁଡ଼ା ଖେଳାଇ ହସି ଉଠିଲା ସରସ ସୁଗନ୍ଧ ସୁମନପୁଞ୍ଜ, ସୌରଭରେ ତା'ର ଭରିଗଲା ଦିଗ-ଦିଗାଙ୍ଗନା ।

ଏଥର ସେ ଆଉ କେବଳ କବି ବଳଦେବ ନୁହନ୍ତି, ବରଂ ସୁମନ-ସୌରଭ-ମୁଗ୍ଧ ସରାଗୀ ରସିକ ଚୂଡ଼ାମଣି ଜଳନ୍ତର ନରପତିଙ୍କ ସଭାମଣ୍ଡନ-କାରୀ ବଳଦେବ ରାଜୋପାଧି ଭୂଷିତ ହୋଇ ପରିଚିତ ହେଲେ 'କବିସୂର୍ଯ୍ୟ' ରୂପେ । ଏ ଉପାଧିର ଯଥାସମ୍ମାନ ରକ୍ଷାଲାଗି ସେହି ସମୟରୁ କବିସୂର୍ଯ୍ୟ ନିରନ୍ତର ସଙ୍ଗୀତ ସାହିତ୍ୟ ସାଧନାରେ ବ୍ରତୀ ହେଲେ । ଏତେତ ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ତାଙ୍କର, ତହିଁରେ ଅସାଧାରଣ ସଙ୍ଗୀତ ରଚନା ଭରି ସେ ଅଚିରେ ସର୍ବଜନ ସମାଦୃତ ହୋଇପଡ଼ିଲେ ।

ଏହାପରେ ଜଳନ୍ତର ରାଜ୍ୟର ସେ ହେଲେ ଦେଓ୍ୱାନ । ସଂଧାରେ ରାଜାଙ୍କ ପଣ୍ଡିତ ସଭାରେ ବିବିଧ ଶାସ୍ତ୍ରାଲୋଚନା ବ୍ୟବସ୍ଥା ସଙ୍ଗେ ସଙ୍ଗେ ଓଡ଼ିଶୀ ସଂସ୍କୃତର ପରମ୍ପରା ସୁରକ୍ଷା ନିମିତ୍ତ ସେ ଗଢ଼ିଲେ 'ଉତ୍କଳାଗ୍ନୁର' ସମିତି । ଶାସନଗତ ଶୃଙ୍ଖଳା-ପ୍ରତିଷ୍ଠା ଥିଲା ତାଙ୍କର କର୍ମମୟ ଜୀବନର ଜଟିଳ ଅଧ୍ୟାୟ । କଳା ପ୍ରସାର ଦିଗରେ ସେ ଯେପରି ଦକ୍ଷ, ଶାସନ କ୍ଷେତ୍ରରେ ମଧ୍ୟ ସେ ସେହିପରି କୁଶଳୀ ପରିଚାଳକତ୍ୱର ପରିଚୟ ଦେଲେ ।

ମଳୟକୁ ତ କୁସୁମର ଠାବ ବତାଇ ଦେବାକୁ ପଡ଼େ ନାହିଁ । କୁସୁମର ସୁବାସ ମଳୟ ଲାଗି ସିନା ।

ସେତେବେଳେ ଅଠଗଡ଼ (ଗଞ୍ଜାମ)ରେ ଜଣେ ଗୁଣଗ୍ରାହକ ରାଜା ଥିଲେ । ତାଙ୍କ ନାମ ବାଲୁକେଶ୍ୱର ହରଚନ୍ଦନ । ସେ କବିସୂର୍ଯ୍ୟଙ୍କ ଗୁଣ ଗୌରବର ସନ୍ଧାନ ପାଇ ତାଙ୍କୁ ନିମନ୍ତ୍ରଣ କଲେ ।

କବିସୂର୍ଯ୍ୟ ଅଠଗଡ଼ ରାଜାଙ୍କ ରାଜସଭାରେ ବହୁମାନ ଲଭ କଲେ । ଜଳନ୍ତର, ଅଠଗଡ଼ ଇତ୍ୟାଦି ରାଜ୍ୟର ଆଦର ସଂବର୍ଦ୍ଧନା ପାଇଲେ ହେଲେ, କବିସୂର୍ଯ୍ୟଙ୍କ ମନ ମାନୁ ନଥାଏ ସେତିକିରେ । ବ୍ରିଟିଶ ରାଜୁତି କାଳ । ଆଜି ପୂର୍ବର ସେ ଗଜପତି ଗୌଡ଼େଶ୍ୱର ଇତ୍ୟାଦି ଗୌରବୋଜ୍ଜ୍ୱଳ ପଦବୀର ମୂଲ୍ୟ ନଥିଲେ ହେଁ ପୁରୀ ଗଜପତିଙ୍କର ସେ ଲକ୍ଷେ ରାଜାର ମଣ୍ଡଳମଣି, ସେ ଜଗନ୍ନାଥଙ୍କର ଚଳନ୍ତିପ୍ରତିମା ବୋଲିକରି ପାରମ୍ପରିକ ସମ୍ମାନ ଅଛିଟି । ଏହି ଦୃଷ୍ଟିରୁ ଗଜପତିଙ୍କର ପଣ୍ଡିତ ସଭାରେ ସମ୍ମାନ ପ୍ରାପ୍ତିର ଆକାଙ୍‌କ୍ଷା କବିସୂର୍ଯ୍ୟଙ୍କ ପକ୍ଷରେ ଥିବା ସ୍ୱାଭାବିକ । ତେଣୁ ନିଜ କନ୍ୟା ଲାଗି ବରପାତ୍ର ଅନ୍ୱେଷଣ ଛଳରେ ସେ ପୁରୀ ଯିବାପାଇଁ ଅଠଗଡ଼ ରାଜାଙ୍କୁ ଜଣାଇଲେ । ରାଜା ଅଠଗଡ଼ଠାରୁ ପୁରୀ ପର୍ଯ୍ୟନ୍ତ ତାଙ୍କଲାଗି ଶିବିକା, ବାହକ ଓ ପାଥେୟର ବ୍ୟବସ୍ଥା କରିଦେଲେ ।

କବିସୂର୍ଯ୍ୟ ପୁରୀରେ ପହୁଞ୍ଚି ତାଙ୍କର ପୂର୍ବତନ ବନ୍ଧୁ ଜଗନ୍ନାଥ ମହାସୁଆରଙ୍କ ଘରେ ରହି, ତାଙ୍କର ସହାୟତାରେ ଶ୍ରୀମନ୍ଦିରରେ ରାଜଦର୍ଶନ କଲେ । ଗଜପତି ମୁକୁନ୍ଦଦେବ ଜଗବନ୍ଧୁଙ୍କର ଜଣେ ପରମ ଭକ୍ତ ଏବଂ ସଂଗୀତ ସାହିତ୍ୟ ରସିକ ଥିଲେ । ସେତେବେଳେ ଗଜପତିଙ୍କ ପଣ୍ଡିତ ସଭାରେ ସମାସୀନ ନୋହିଲେ କେହି ବଶିଷ୍ଠ ପଣ୍ଡିତ ବା କବି-ରୂପେ ସମ୍ମାନିତ ହେଉନଥିଲେ ।

ଉକ୍ତ ସଭାର ପଣ୍ଡିତମାନେ କିନ୍ତୁ ତାଙ୍କ ନିଜର କ୍ଷୁଦ୍ର ଗୋଷ୍ଠୀ ସମ୍ବନ୍ଧେ ଅତ୍ୟନ୍ତ ରକ୍ଷଣଶୀଳ ଥିଲେ । ଅଗାଧ ପାଣ୍ଡିତ୍ୟ ସଙ୍ଗେ କବିତ୍ୱ ଥିଲେ ମଧ୍ୟ କେହି ନବାଗତଙ୍କ ଲାଗି ଏ ପଣ୍ଡିତ ସଭାର ଦ୍ୱାର ସହଜ-ଉନ୍ମୁକ୍ତ ନଥିଲା । ସଭାରେ ଏହି ସସ୍ତରୀ ପଣ୍ଡିତମାନେ ଛଳେ, ବଳେ, କୌଶଳେ ଯେପରି ହେଉ, ପ୍ରାକୃତ ଓଡ଼ିଆ ଭାଷାର ସଂଗୀତ ଲେଖକ ଜଣେ 'ଦକ୍ଷିଣିଆ'ଙ୍କୁ ପରାସ୍ତ ବା ଅପଦସ୍ତ କରିବାଲାଗି ଦୃଢ଼ ସଂକଳ୍ପ କରି ବସିଥିଲେ । ତଥାପି ସେହି ଗୋଷ୍ଠୀ ମଧ୍ୟରେ ଜଣେ ଅତି ଗୁଣଗ୍ରାହୀ ଯେ

ନଥିଲେ, ଏପରି ନୁହେ । ପୁଣି ସ୍ୱୟଂ ଗଜପତି ମୁକୁନ୍ଦଦେବ ମଧ୍ୟ ଗୁଣର ଜଣେ ଗଭୀର ଗ୍ରାହକ । ନାନା ବାଧାବିଘ୍ନର ସମ୍ମୁଖୀନ ହେବା ସତ୍ତ୍ୱେ ପରିଶେଷରେ କବିସୂର୍ଯ୍ୟଙ୍କ କବି ପ୍ରତିଭା ଓ ପାଣ୍ଡିତ୍ୟର ସ୍ୱୀକୃତି ମିଳିଲା ।

ପୂର୍ବରୁ ତ କବିସୂର୍ଯ୍ୟଙ୍କ ସଂସ୍କୃତ ଶ୍ଲୋକ ଏବଂ ଓଡ଼ିଆ ସଂଗୀତ, ବିଶେଷତଃ ଅଷ୍ଟ ରଚନା ଶକ୍ତିର ପରିଚୟ ପାଇ ନିଜେ ଗଜପତି ତାଙ୍କର ଗୁଣମୁଗ୍ଧ ହୋଇ ପଡ଼ିଥିଲେ । ଏଥର ପଣ୍ଡିତ ସଭାର ସମର୍ଥନ ଦେଖି ଅନନ୍ତରେ ସେ କବିସୂର୍ଯ୍ୟଙ୍କୁ କହିଲେ—"ଆପଣ ପିତା ଜଣେ ସାମନ୍ତ ରାଜାଙ୍କଠାରୁ ଉପାଧି ଉପାୟନ ପାଇଛନ୍ତି । ବର୍ତ୍ତମାନ ଗଜପତି ଦରବାରରୁ ଗୋଟିଏ ନୂତନ ଉପାଧି ଗ୍ରହଣ କରନ୍ତୁ । ଆପଣଙ୍କ ଯଶ ଓ ସମ୍ମାନ ଏତଦ୍ୱାରା ଅଭିବୃଦ୍ଧି ହେବ ।

ବିନୀତ ଭାବରେ କବିସୂର୍ଯ୍ୟ କହିଲେ, "ପ୍ରଭୁ, ଯେବେ ଏତେ ଅନୁଗ୍ରହ ହେଲା, ତେବେ ସେହି କବିସୂର୍ଯ୍ୟ ଉପାଧିକୁ ଗଜପତି ମହାରାଜଙ୍କ ପ୍ରଦତ୍ତ ଉପାଧି ବୋଲି ଅନୁଗ୍ରହ ସ୍ୱୀକୃତି ମିଳୁ ।"

ତାହା ହିଁ ହେଲା । ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ କୋଠ ଭଣ୍ଡାରରୁ ପାଟପଟନି ଅଣାଇ ନିଜେ ଗଜପତି କବିସୂର୍ଯ୍ୟଙ୍କୁ ଶିରୋପା ଲଗାଇଲେ । ପରେପରେ ଗଜପତି ଗୋଟିଏ ବିଶେଷ ପଣ୍ଡିତ ସଭାରେ ନିଜର ସନ୍ତକ ଓ ମୁଦ୍ରାସହ ସନନ୍ଦ-ଲେଖା ଅର୍ପଣକଲେ କବିସୂର୍ଯ୍ୟଙ୍କୁ ।

କବିସୂର୍ଯ୍ୟଙ୍କ ଚିରପୋଷିତ ଆକାଙ୍କ୍ଷା ପୂରଣ କଲେ ଶ୍ରୀମନ୍ ନୀଳାଦ୍ରିନାଥ,—ଯାହାଙ୍କୁ ଶ୍ରୀମନ୍ଦିରରେ ଦର୍ଶନ କାଳରେ ଭକ୍ତକବି ନିତିନିତି "ଗୀତ" ଦେଉଥିଲେ ନିଜର ମନୋରଥ ଜଣାଇବ । ସେହି ସରସ, ସୁନ୍ଦର, ସୁମଧୁର, ସଂଗୀତ-ସାହିତ୍ୟ ଶୁଣି ସେତେବେଳେ ଶତଶତ ଶ୍ରୋତା ସାଶ୍ରୁନୟନରେ ସସ୍ନେହରେ ଶୁଭକାମନା କରୁ ଥିଲେ ସୁଗାୟକ କବିଙ୍କର । ଏବେ ମଧ୍ୟ ଗୀତଟି ଶତଶତ କଣ୍ଠରୁ ଶୁଣାଯାଏ—

"ବାହୁଲ୍ୟ ଜାଣି କ୍ଷମା- କର ନୋହିଲେ ରମା-
ରମଣ ଦଣ୍ଡେ ଦଅ ଟାଳ ।
ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ
ଭରତ କବି ଦେବ ଗାଳ ।"......

ମାନ ପାଞ୍ଚଟି ମାସ ଗଜପତି ମୁକୁନ୍ଦଦେବଙ୍କ ରାଜସଭାକୁ ଛତାବନ୍ଧନ ଜନମନଲୁଣ୍ଠି ନୃତ୍ୟ ନୂତନ ଲଳିତ ସଂଗୀତ ମୂର୍ଚ୍ଛନାରେ ପରିମ୍ଳାଶିତ କରି କବୀନ୍ଦ୍ର ସୌମ୍ୟ ପୁଣି ତା'ହୁଡ଼ ଆସିଲେ ସେହି ଅଠଗଡ଼ ରାଜ୍ୟକୁ ।

ସ୍ମରଣ ହୁଏ, ମୋର ପୂଜ୍ୟପାଦ ପିତାମହ ସ୍ବର୍ଗତ ପଣ୍ଡିତ ନିମାଇଁ ଚରଣ ପଟ୍ଟନାୟକ ସ୍ଥଳବିଶେଷରେ ଗୋଟିଏ ଶ୍ଳୋକାବୃତ୍ତି କରୁଥିଲେ—

"ଅସ୍ତି ଯଦ୍ୟପି ସର୍ବତ୍ର ନୀରଂ ନୀରଜ ମଣ୍ଡିତଂ
ରମତେ ନ ମରାଳସ୍ୟ ମାନସଃ ମାନସଂ ବିନା ।"

—ସବୁଠାରେ ଜଳ ଅଛି, ପଦ୍ମବନ ଅଛି । କିନ୍ତୁ ମରାଳର ମନ ମାନସ ସରୋବର ଲାଗି ବ୍ୟାକୁଳ । କଥାଟି ଅତି ସତ୍ୟ । ଅଠଗଡ଼ର ନାଗେଶ୍ୱର, ବନ-କୁସୁମ ରସିକ କବିସୂର୍ଯ୍ୟ ଅନ୍ୟତ୍ର ଯେତେ ସମ୍ମାନ ମର୍ଯ୍ୟାଦା ପାଇଲେ ମଧ୍ୟ ଅଠଗଡ଼ ରାଜାଙ୍କର ସାଦର ସମ୍ବର୍ଦ୍ଧନା ପାସୋରି ପାରିଲେ ନାହିଁ ।

ଆଜି ମଧ୍ୟ ସେହି ବନର ନାଗେଶ୍ୱର ଏବଂ ଅନ୍ୟ ସ୍ଥାନର ନାଗେଶ୍ୱର କୁସୁମର ସୁବାସ ତୁଳନା କଲେ ସୁଗନ୍ଧ-ରସିକ ଅବଶ୍ୟ ତାରତମ୍ୟ ଅନୁମାନ କରିପାରିବେ । ସେହିପରି ବହୁ ସଙ୍ଗୀତକାର କବିଙ୍କ ରଚନା ଥିଲେ ମଧ୍ୟ କବିସୂର୍ଯ୍ୟଙ୍କ ସଙ୍ଗୀତ ଅଧିକ ଲୋକ-ରୁଚିକର । ତେଣୁ ଶତାବ୍ଦୀ ଅତୀତ ହେଲେହେଁ ସେଗୁଡ଼ିକ ଅମ୍ଳାଶୋଗ୍ୟ ହୋଇ ରହିଛି ।

କଳ୍ପନା ଆଖି ଆଗରେ ଝଲଝଲ ହୋଇ ଦିଶିଯାଉଛି ସେହି ସଙ୍ଗୀତର ସ୍ୱର-ଲହରୀ ଅନ୍ତରାଳରେ ଅଦେଖା କବିସୂର୍ଯ୍ୟଙ୍କର ଭାବରସଭରା ସହାସ୍ୟ ମୂର୍ତ୍ତି ।

# ଚମ୍ପୂ

"ଗଦ୍ୟପଦ୍ୟମୟଂ କାବ୍ୟଂ ଚମ୍ପୂରିତ୍ୟଭିଧୀୟତେ,"

( ସାହିତ୍ୟ ଦର୍ପଣ )

"ଗଦ୍ୟ ପଦ୍ୟମୟୀ କାଚିଚ୍ଚମ୍ପୂରିତ୍ୟଭିଧୀୟତେ ।"

( କାବ୍ୟ ଦର୍ଶନ )

"ଗଦ୍ୟ ପଦ୍ୟମୟୀ ସାଙ୍କାସୋଚ୍ଛ୍ୱାସା ଚମ୍ପୂଃ ।"

( କାବ୍ୟାନୁଶାସନ )

'ଚମ୍ପୂ' ବୋଲି ବର୍ତ୍ତମାନ ସୁଦ୍ଧା ତିନିଖଣ୍ଡି ସଙ୍ଗୀତ ରଚନା ମିଳୁଛି । ଏଥିରୁ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଓ ରତ୍ନାକର ଚମ୍ପୂ କବିସୂର୍ଯ୍ୟ ଗ୍ରନ୍ଥାବଳୀରେ ପ୍ରକାଶ ପାଇସାରିଛି । ମୁଁ ଯେଉଁ ଖଣ୍ଡିକ ପାଇଲି ତାହାର ନାମ 'ପ୍ରେମୋଦୟ ଚମ୍ପୂ' । କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ତ ସାରା ଓଡ଼ିଶାରେ,—କି ସହର କି ଗାଉଁଲି—ସବୁରି ତୁଣ୍ଡେତୁଣ୍ଡେ ଗାଇହେଉଛି । ଶିଶୁର ଲମ୍ବା ନାମ ଭଳି ସାଧାରଣରେ ଏହାକୁ ଲୋକେ କହନ୍ତି— 'କିଶୋରୀ ଚମ୍ପୂ' ।

ତିନିଖଣ୍ଡି ଚମ୍ପୂ ମଧ୍ୟରୁ ଏହି କିଶୋରୀ ଚମ୍ପୂର ରଚନା ଭଙ୍ଗୀ ନିଆରା । ଏଥିରେ ସଂସ୍କୃତ ଛନ୍ଦର ଶ୍ଳୋକ ଅଛି, ତା'ଛଡ଼ା ଓଡ଼ିଆ ଭାଷାର ସଙ୍ଗୀତ ରହିଛି । ରତ୍ନାକର ଚମ୍ପୂ ଓ ପ୍ରେମୋଦୟ ଚମ୍ପୂରେ ସଂସ୍କୃତ ରଚନା ବା ଗଦ୍ୟପଦ୍ୟର ସମାବେଶ ନାହିଁ ।

'ରତ୍ନାକର ଚମ୍ପୂ'କୁ ଚୌପଦୀ ରତ୍ନାକର ଏବଂ 'ପ୍ରେମୋଦୟ ଚମ୍ପୂ'କୁ 'ଚୌପଦୀ ଚନ୍ଦ୍ରୋଦୟ' ନାମରେ ମଧ୍ୟ ନାମିତ କରାଯାଇଥିବାର ଦୃଷ୍ଟହୁଏ । କବିସୂର୍ଯ୍ୟ ଏ ଦୁଇଖଣ୍ଡିକୁ ଯେ ଚମ୍ପୂ ଆଖ୍ୟା ଦେଇଥିବେ, ସେଥିରେ ମନରେ ସନ୍ଦେହ ଆସେ । କାରଣ ଯେଉଁ କବିସୂର୍ଯ୍ୟ ସଂସ୍କୃତ ଗଦ୍ୟ ପଦ୍ୟ ସହିତ ଓଡ଼ିଆ ଭାଷାର ଗୀତ ଗୁନ୍ଥି, ତାହାକୁ 'କିଶୋର-

ଚନ୍ଦ୍ରାନନ୍ଦ ଚମ୍ପୂ' ଆଖ୍ୟା ଦେଲେ, ସେ ପୁଣି କେବଳ ଓଡ଼ିଆ ଗୀତ ଚଉତିଶଟି ଲେଖାଏଁ ଲେଖି ତାକୁ 'ଚମ୍ପୂ' ବୋଲି ଲେଖିଥିବେ କପରି ? ତେଣୁ ମନେହୁଏ ଏ ବୁଇଟି ରଚନାକୁ ଲୋକେ କବିସୂର୍ଯ୍ୟଙ୍କ ପରେ ମନମାଫିକେ 'ଚମ୍ପୂ' ନାମରେ ନାମିତ କରିଛନ୍ତି । ନୋହିଲେ କିଶୋର ଚନ୍ଦ୍ରାନନ ଚମ୍ପୂର ଯେପରି ବିକଳ୍ପ ନାମ ନାହିଁ, ଏ ବୁଇଟିର ମଧ୍ୟ ସେହିପରି ନାମାନ୍ତର ନଥାନ୍ତା ।

ଆଗରୁ କିଶୋରୀ ଚମ୍ପୂ ଓ ରତ୍ନାକର ଚମ୍ପୂ ବା 'ଚୌପଦୀ ରତ୍ନାକର' ପ୍ରକାଶିତ ହୋଇଅଛି ବୋଲି ଏହି ଗୀତାବଳୀରେ ସେ ବୁଇଟିକୁ ଅଲଗାରେ ପ୍ରକାଶ କରାଯାଇ ନାହିଁ ।

ଗୋଟିଏ କଥା ମନକୁ ଆସେ । ଏହି 'ଚଉପଦୀ' ଶବ୍ଦଟି ଆମର ସଙ୍ଗୀତ ରାଜ୍ୟରେ ବହୁ ପୁରାତନ ଜଣାପଡୁଣା ନାହିଁ । ଓଡ଼ିଆ ଗୀତକୁ ଅନେକ ଚଉପଦୀ ବୋଲି କହିଥାଆନ୍ତି, ଚଉପଦୀର ଅର୍ଥ ଚାରିପଦିଆ ଗୀତ ବୋଲି ମନେ ହେବା ସ୍ୱାଭାବିକ । କିନ୍ତୁ ଆମେ ଯେଉଁ ଗୀତଗୁଡ଼ିକୁ ସାଧାରଣରେ ଚଉପଦୀ ବୋଲି କହୁଁ, ସେ ସମସ୍ତ ତ ଚଉପଦିଆ ନୁହେ । କିଏ ପାଞ୍ଚ, କିଏ ଛଅ, କିଏ ବା ସାତ ପଦିଆ ମଧ୍ୟ ।

ଚମ୍ପୂର ପ୍ରତି ଗୀତ କ, ଖ, ଗ, ଘ, ଇତ୍ୟାଦି ବର୍ଣ୍ଣାଦ୍ୟଯୁକ୍ତ ଶବ୍ଦ ଯୋଗେ ଆରମ୍ଭ ହୋଇଛି ଏବଂ ଚରଣ ବା ପଦ ଗୁଡ଼ିକର ଆରମ୍ଭରେ ମଧ୍ୟ ସେହିପରି ବର୍ଣ୍ଣାଦ୍ୟ ନିୟମ ପ୍ରତିପାଳିତ ହୋଇଛି । ଏହି ରୀତିରେ ଚମ୍ପୂ ନାମଧେୟ ଗ୍ରନ୍ଥରେ ଚଉତିଶଟି ଲେଖାଏଁ ସଙ୍ଗୀତ ଅଛି । ଚଉପଦୀ ଚନ୍ଦ୍ରୋଦୟ ଓ ଚଉପଦୀ ରତ୍ନାକରକୁ ବରଂ ଚଉତିଶା କୁହାଗଲେ ସୁନ୍ଦର ହୁଅନ୍ତା ।

ସଙ୍ଗୀତ ଶାସ୍ତ୍ରରେ 'ଚମ୍ପୂ' ନାମଧେୟ କୌଣସି ନିର୍ଦ୍ଦିଷ୍ଟ ବିଭାଗୀୟ ସଙ୍ଗୀତର ନାମୋଲ୍ଲେଖ ନାହିଁ । ଗଦ୍ୟ ଓ ପଦ୍ୟାତ୍ମକ କାବ୍ୟ ବୋଲିଏ ଚମ୍ପୂ—ଏହି ହେଲା ଅଳଙ୍କାର ଶାସ୍ତ୍ରର ନିର୍ଦ୍ଦେଶ ।

କବିସୂର୍ଯ୍ୟଙ୍କ ଦ୍ୱାରା କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ରଚିତ ହେବା ଆଗରୁ ବା ପରେ ଚମ୍ପୂ ନାମରେ କୌଣସି ସଙ୍ଗୀତ ଗ୍ରନ୍ଥ ଓଡ଼ିଶାରେ 'ନ ଭୂତୋ-ନ ଭବିଷ୍ୟତି' କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ଗ୍ରନ୍ଥ ସୃଷ୍ଟିକଲେ କବିସୂର୍ଯ୍ୟ ଊନବିଂଶ ଶତାବ୍ଦୀରେ ।

ସଂସ୍କୃତ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା, ଏହା ଅନସ୍ୱୀକାର୍ଯ୍ୟ । ତେଣୁ ସେ ସଂସ୍କୃତରେ ଗଦ୍ୟ ଓ ପଦ୍ୟ ରଚନା କରିଗଲେ । ତା ସହିତ ସାଧାରଣଙ୍କ ସମାଦର ଲାଭ ଲାଗି ସରସ, ଲଳିତ-ମଧୁର ଶବ୍ଦମାନ ଖଞ୍ଜି ଓଡ଼ିଆ ଗୀତ ରଚି ଥୋଇଦେଇ ଗଲେ, ବର୍ଣ୍ଣାଦ୍ୟ ନିୟମ ରକ୍ଷାକରି ଅର୍ଥାତ୍ ଚଉତିଶଟି ଅକ୍ଷରକୁ ଚଉତିଶଟି ଗୀତର ପ୍ରାରମ୍ଭିକ ଶବ୍ଦର ମୂଳ ଅକ୍ଷର କରି ।

ତାଙ୍କ ରଚନା ମଧ୍ୟରେ ବିଭିନ୍ନ ଗୀତର ନାୟକ ନାୟିକା ଓ ଭାବ ଭେଦ ଇତ୍ୟାଦିର ବର୍ଣ୍ଣନା ଅଛି । ଟିକିଏ ଗମ୍ଭୀର ଦୃଷ୍ଟି ଦେଲେ ଏହାକୁ ସର୍ଗବନ୍ଧ ମଧ୍ୟ କରାଯାଇପାରିବ । କିଶୋରୀ ଚମ୍ପୂ (ଗୀତାଂଶକୁ ନାଟ୍ୟରୂପ ଦେବାରେ ଦୃଶ୍ୟ ଓ ଅଙ୍କ ବିଭକ୍ତ ହେଲେ ଅସୁବିଧା ବା ଅସଂଗତ କିଛି ନାହିଁ । ଏହା ମୁଁ ଅନୁଭବରୁ କହୁଛି, କିଶୋର ଚନ୍ଦ୍ରାନନ୍ଦଚମ୍ପୂ ନାଟକ ରଚନା ଓ ପରିବେଷଣ କଲେ । ଏ ଦୃଷ୍ଟିରୁ କିଶୋରୀ ଚମ୍ପୂକୁ ଗୀତନାଟ୍ୟ ବୋଲି ମଧ୍ୟ କହାହେବ ।

ପୁଣି କିଶୋରୀ ଚମ୍ପୂକୁ କାବ୍ୟ ଏବଂ ସଙ୍ଗୀତର ସମନ୍ୱୟ ବୋଲି କୁହାଯିବ । ତେଣୁ ଯାହାରେ କାବ୍ୟ ଧର୍ମ ଥାଇ ଯେଉଁ ଗୀତ ବା ଚଉତିଶା ରଚିତ, ତାକୁ ଚମ୍ପୂ କୁହାଯାଉଛି । କେବଳ ଗୀତାଂଶ 'ଚମ୍ପୂ' ନୁହେ । ସେଗୁଡ଼ିକ ହୁଏ ତ ଚଉପଦୀ ନ ହେଲେ ଧ୍ରୁବା ପାଞ୍ଚାଳୀ,—ଘୋଷା ଥାଇ ବହୁ ପଦ ବିଶିଷ୍ଟ କ୍ଷୁଦ୍ର ଗୀତ । ଏଗୁଡ଼ିକୁ ସଙ୍ଗୀତ ଶାସ୍ତ୍ରୋକ୍ତ ପ୍ରବନ୍ଧ ଅଧ୍ୟାୟର ଦୁଇଟି ଅଙ୍ଗ ବିଶିଷ୍ଟ 'ତାଳବଳୀ' କୁହାଯିବା ବରଂ ସଙ୍ଗତ ହୁଅନ୍ତା ମାତ୍ର ତାଳବଳୀ-ସମ୍ମତ ଦୁଇ ଅଙ୍ଗ ଏଥିରେ ଥିଲେ ମଧ୍ୟ, ଏଗୁଡ଼ିକ ଦୁଇ ପଦଅ ନୁହେ । ତେଣୁ ଏହାକୁ କ୍ଷୁଦ୍ର ଗୀତ ବିଭାଗର ଧ୍ରୁବା ପାଞ୍ଚାଳୀ କହିବାରେ କିଛି ଅସଂଗତ ନାହିଁ । ତାଳବଳୀକୁ ମଧ୍ୟ ଚମ୍ପୂ କୁହାଯାଇ ଅଛି ।

'ରଂଜକ ସ୍ୱରସନ୍ଦର୍ଭ ଗୀତ'-ଏ ସଂଜ୍ଞା ବହୁ ଶତାବ୍ଦୀ ପୂର୍ବେ ପ୍ରଚଳିତ ଥିଲା; ମାତ୍ର ୧୨ଶ । ୧୩ଶ ଶତାବ୍ଦୀ ବେଳକୁ ଗୀତର ଚଳଣି ହୋଇଗଲା —'ଧାତୁମାତୁ-ସମାଯୁକ୍ତଂ'—ଅର୍ଥାତ୍ ସ୍ୱର ଆଉ ଅକ୍ଷର ସଂଚୟ ବା ଶବ୍ଦ ଅଥବା ପଦ ସଂଯୋଗକୁ ଗୀତ କୁହାଗଲା ।

ମହାକବି ଜୟଦେବଙ୍କ ସଙ୍ଗୀତ ଏହି 'ଧାତୁ ମାତୁ ସମାଯୁକ୍ତଂ ଗୀତମିତି' ସୂତ୍ରର ରଚନା । ଏହି ଅବକାଶରେ ଆଉ ଗୋଟିଏ କଥା ମନକୁ ଆସେ । ଆମର ଓଡ଼ିଶାରେ ବହୁ 'ଚଉତିଶା' ରଚିତ ହୋଇଅଛି ।

'କ' ଠାରୁ 'କ୍ଷ' ବର୍ଣ୍ଣ ପର୍ଯ୍ୟନ୍ତ ୩୪ ଗୋଟି ଅକ୍ଷର ଶବ୍ଦର ମୂଳ ଅକ୍ଷରରୂପେ ଥାଇ ୩୪ ପଦ ଗୀତକୁ କହନ୍ତି ଚଉତିଶା । ଏହି ଚଉତିଶାଗୁଡ଼ିକ ସମାନ ଗୋଟିଏ ରାଗ, ବୃତ୍ତ ବା ବାଣୀରେ ରଚିତ । କିଶୋର ଚମ୍ପୂର ଗୀତଗୁଡ଼ିକ ଏପରି ବର୍ଣ୍ଣାଦ୍ୟ ଅକ୍ଷର ନିୟମ ରକ୍ଷା କରି ରଚିତ ହୋଇଥିଲେହେଁ ତାହା ଗୋଟିଏ ମାତ୍ର ରାଗରେ ନିବଦ୍ଧ ନୁହେଁ । ବିଭିନ୍ନ ରାଗ ରାଗିଣୀ ଓ ତାଳ ସଂଯୋଗରେ ଲେଖାଯାଇଛି ଚଉତିଶଟି ସଙ୍ଗୀତ । ତେଣୁ ସାଧାରଣ 'ଚଉତିଶା'ର ଧାରା 'ଚମ୍ପୂ'ରେ ଆଦୌ ପରିପାଳିତ ହୋଇନାହିଁ । କିଶୋର ଚମ୍ପୂରେ କବିସୂର୍ଯ୍ୟଙ୍କର ସଂସ୍କୃତ ପାଣ୍ଡିତ୍ୟ ତଥା ସଙ୍ଗୀତ ଶାସ୍ତ୍ର-ଜ୍ଞାନବତ୍ତା ସୁପ୍ରମାଣିତ । ଜଣାପଡ଼େ ଯେ ସେ ନିଜେ ନିଶ୍ଚିତ-ଭାବେ ଥିଲେ ସୁଗାୟକ । ଗାୟକ-କବି ନୋହିଲେ ଗୀତ ରଚନାରେ ବହୁ ବିଭ୍ରାଟ ଘଟେ । କାରଣ ଗାୟନର ମଧୁରତା ଏବଂ ସୌଷ୍ଠବ ରକ୍ଷାକରିବା ନିମିତ୍ତ ସ୍ୱର, ତାଳ ଓ ମାତ୍ରା ସଂଯୋଗରେ ସମ୍ୟକ ଜ୍ଞାନ ଅତ୍ୟାବଶ୍ୟକ । ପଦ୍ୟ ବା କବିତା ଲେଖକଙ୍କ ପକ୍ଷେ ଗୀତ-କବି ହେବାର ପ୍ରୟାସ ଏହିଠାରେ ବିଡ଼ମ୍ବିତ ହୋଇଥାଏ । କବିସୂର୍ଯ୍ୟଙ୍କ ରଚିତ ଗୀତରେ ସ୍ୱରଶିଳ୍ପୀ ଲବେ ମାତ୍ର ଅସୁବିଧା ଅନୁଭବ କରିବାର ଅବକାଶ ନାହିଁ । କିଶୋର ଚମ୍ପୂର ସଂସ୍କୃତାଂଶ ରଚନା ତାଙ୍କର ସଂସ୍କୃତ ପାଣ୍ଡିତ୍ୟ ଏବଂ ଓଡ଼ିଆ ସଙ୍ଗୀତ ରଚନା ତାଙ୍କର ଦେଶଭାଷା ପ୍ରୀତିର ସମୁଜ୍ଜ୍ୱଳ ନିଦର୍ଶନ । ରତ୍ନାକର ଚମ୍ପୂ ଏବଂ ପ୍ରେମୋଦୟ ଚମ୍ପୂ ଦୁଇଟିର 'ଚମ୍ପୂ' ଆଖ୍ୟା ସ୍ୱୀକାର କରିବା ଲାଗି କୁଣ୍ଠାବୋଧହୁଏ । ଏଗୁଡ଼ିକୁ ବରଂ ଚଉତିଶାର ପ୍ରକାର ଭେଦ କୁହାଗଲେ ଚଳିବ । ଏଥିରେ ବିଭିନ୍ନ ରାଗ ତାଳର ଚଉତିଶଟି ଗୀତ ଅଛି ।

ସଙ୍ଗୀତ ଶାସ୍ତ୍ର-ରୀତି ସମ୍ମତ ତଥା ରସୋତ୍ତୀର୍ଣ୍ଣ କିଶୋର ଚମ୍ପୂ ଭଳି ସଂଗ୍ରନ୍ଥନର ଦୃଷ୍ଟାନ୍ତ ଏକାନ୍ତ ବିରଳ ।

ଏ ଗୌରବର ଅଧିକାରୀ ଏକା କବିସୂର୍ଯ୍ୟ ।

---

# ଗୀତାବଳୀ

ସଙ୍ଗୀତପ୍ରାଣ ସୁରସିକ କବିସୂର୍ଯ୍ୟ ଚମ୍ପୂ, ଛାନ୍ଦ, ଚଉପଦୀ, ଚଉତିଶା, ମନାଃସ, ମାଳଶ୍ରୀ, ଚିଠାଉ, ପାଞ୍ଚାଳୀ ଓ ଚମ୍ପୂଗୀତ ଇତ୍ୟାଦି ସଙ୍ଗୀତର ବିଭିନ୍ନ ବିଭାଗୀୟ ବହୁ ଗୀତ ରଚନା କରିଯାଇଅଛନ୍ତି । ଏଥିମଧ୍ୟରୁ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ,’ ‘ରତ୍ନାକର ଚମ୍ପୂ,’ ‘ସଙ୍ଗୀତ କଳ୍ପଲତା’ (୧୫୧ଟି ସଙ୍ଗୀତ), ‘କବିତା କଲ୍ଲୋଳିନୀ’ ଏବଂ ‘ଚନ୍ଦ୍ରକଳା’ କାବ୍ୟ (ଅପୂର୍ଣ୍ଣ) ଗ୍ରନ୍ଥେସୁ ପଣ୍ଡିତ କୁଳମଣି ଦାଶ ମହାଶୟ ତାଙ୍କ ଦ୍ୱାରା ସଂପାଦିତ କବିସୂର୍ଯ୍ୟ ଗ୍ରନ୍ଥାବଳୀରେ ପ୍ରକାଶ କରିଅଛନ୍ତି । ପଣ୍ଡିତ ମହାଶୟଙ୍କର ଏ ଶୁଭ ପ୍ରଚେଷ୍ଟା ହିଁ ମୋର ଏ ଗୀତାବଳୀ ସଂପାଦନାର ପ୍ରେରଣା ଯୋଗାଇଅଛି । ମୁଁ ତାଙ୍କ ନିକଟରେ ଅନ୍ତରର କୃତଜ୍ଞତା ଜ୍ଞାପନ କରୁଅଛି ।

ଗୀତାବଳୀରେ ପୂର୍ବ ପ୍ରକାଶିତ ଦୁଇଟି ଚମ୍ପୂ, କବିତା କଲ୍ଲୋଳିନୀ ଏବଂ ଚନ୍ଦ୍ରକଳାକାବ୍ୟର ପୁନଃ ପ୍ରକାଶ କରିନାହିଁ । ସଙ୍ଗୀତ କଳ୍ପଲତାର ୧୫୧ ଗୋଟି ଗୀତ ଏଥି ଗୀତାବଳୀରେ ସଂଯୋଗ କରିଯାଇଅଛି, ଆମର ସଙ୍ଗୀତ ରସିକ, ଗାୟକ ଓ ପାଠକମାନେ ଅବଧିପ୍ରାପ୍ତ ଗୀତଗୁଡ଼ିକୁ ଅପ୍ରକାଶିତ ଗୀତ ଗୁଡ଼ିକ ସହିତ ସହଜରେ ଏକ ସ୍ଥାନରେ ପାଇପାରିବେ ବୋଲି ବିଶ୍ୱାସ । ଗୀତାବଳୀରେ ସର୍ବମୋଟ ୩୯୫ ଗୋଟି ସଙ୍ଗୀତ ଗୀତ ସ୍ଥାନ ପାଇଅଛି, ଛାନ୍ଦ ଚଉତିଶା ଇତ୍ୟାଦି ଭିନ୍ନ ।

କବିସୂର୍ଯ୍ୟଙ୍କ ରଚିତ ସଙ୍ଗୀତର ସଂଖ୍ୟା ଯେ ମାତ୍ର ଏତିକି, ଏହା ଆଦୌ ବିଶ୍ୱାସ କରିହୁଏ ନାହିଁ । ବହୁ କଷ୍ଟରେ ଏହିତକ ମାତ୍ର ମୁଁ ସଂଗ୍ରହ କରିପାରିଛି । କବିସୂର୍ଯ୍ୟଙ୍କର ରଚନା ମହାମନ୍ଦିରର ଏହା ‘ପ୍ରନାଢ’ ପତନ ମାତ୍ର । ସଂଗୃହୀତ ଛିନ୍ନଖଣ୍ଡ ପୋଥି ମଧ୍ୟରୁ ଯେଉଁଟିରେ ସଂଖ୍ୟାଧିକ ଗୀତ ଲେଖା ହୋଇଥିଲା, ତାହାର କେତୋଟି ପୃଷ୍ଠା କୀଟ ମୁଖରେ ଏପରି ବିକଳାଙ୍ଗ ହୋଇ ଯାଇଛି ଯେ ସେ ରତ୍ନର ପୁନରୁଦ୍ଧାର

ମୋ ପକ୍ଷେ ସମ୍ଭବ ହେଲା ନାହିଁ । ତେଣୁ ଛାପା ହୋଇ ନ ପାରି ସେ ଗୁଡ଼ିକ ଛପି ରହିଲା । ଭବିଷ୍ୟତରେ କେବେ ଯେ ତାହାଦ୍ୱାରା କବିସୂର୍ଯ୍ୟଙ୍କର ସଙ୍ଗୀତ ମହାମନ୍ଦିର ତୋଳା ହେବ, ତାହା ଏକା ଜଗନ୍ନାଥେ ଜାଣନ୍ତି ।

କବିତା କଲ୍ଲୋଳିନୀ—ଗ୍ରନ୍ଥାବଳୀରେ ପ୍ରକାଶିତ 'କବିତା-କଲ୍ଲୋଳିନୀ' ନାମ କରଣ ବୋଧହୁଏ ସଂପାଦକ ପଣ୍ଡିତ ମହାଶୟଙ୍କର କଳ୍ପନା । ଏଥି ମଧ୍ୟରୁ ପ୍ରଥମ ଦୁଇଗୋଟି ଅଧ୍ରୁବା ପାଞ୍ଚାଲି ଶ୍ରେଣୀୟ ଛାନ୍ଦ, ୩ୟ ଛାନ୍ଦଟି ଧ୍ରୁବା ପାଞ୍ଚାଲି, ୪ର୍ଥ ଓ ୫ମ ଛାନ୍ଦ-ଅଧ୍ରୁବା ପାଞ୍ଚାଲି, ୬ଷ୍ଠ ଓ ୭ମ ଚଉପଦୀ । (ଗ୍ରାମ୍ୟଗୀତ) ୮ମ-ଚଉତିଶା.—ଏହା ମଧ୍ୟ ପାଞ୍ଚାଲି ଶ୍ରେଣୀୟ ୯ମ ୧୦ମ ଓ ଏକାଦଶ—ଜଣାଣ । ଏହି ସମସ୍ତ ରଚନା ଗାଇବା ଲାଗି ଅଭିପ୍ରେତ—ଆବୃତ୍ତି ଲାଗି ନୁହେ । ତେଣୁ ଏହାକୁ 'କବିତା' ଆଖ୍ୟା ଦେବା ସମୀଚୀନ ମନେ ହେଉନାହିଁ । କାରଣ କବିତା ଏବଂ ଗୀତ ବା ସଙ୍ଗୀତ—ସମଧର୍ମୀ ନୁହନ୍ତି ।

କବିତା ପାଠ ବା ଆବୃତ୍ତି ଧର୍ମୀ । ଛନ୍ଦ ଓ ଯତି ଯେନି କବିତାର ଅବୟବ ଗଠିତ । ରଚନା ବିଶେଷରେ କୌଣସି କୌଣସି କବିତାକୁ, ଅତିବେଶି ହେଲେ, ଗୀତ-ମୁଖୀ କୁହାଯାଇପାରେ; କିନ୍ତୁ ଗୀତଧର୍ମୀ କୁହାଯାଇ ପାରିବ ନାହିଁ । ସ୍ଥୂଳତଃ, କବିତାର ପ୍ରଧାନ ସମ୍ପଦ ଶବ୍ଦ ଓ ସଙ୍ଗୀତର ମୁଖ୍ୟ ବୈଭବ ଧ୍ୱନି । ଗୀତରେ କବିତା ଅଛି । କବିତାରେ କିନ୍ତୁ ଗୀତ ନାହିଁ । କବିତା, ସ୍ୱର ଓ ତାଳ ଇତ୍ୟାଦି ସଙ୍ଗୀତର ଧର୍ମକୁ ଅପେକ୍ଷାକରେ ନାହିଁ । ତେଣୁ କବିତା କେବଳ ଆବୃତ୍ତି ବା ପାଠ ଲାଗି ଉଦ୍ଦିଷ୍ଟ । କବିତା ଅପେକ୍ଷା ଗୀତର ରସଭାବ ପ୍ରକାଶ କ୍ଷମତା ଅଧିକ । କାରଣ ତାହା ସଙ୍ଗୀତ,—ସ୍ୱରଲୀଳା ଯେନି ରସସୃଷ୍ଟି ଏହାର ଏକାନ୍ତ ଲକ୍ଷ୍ୟ, ଯାହା କେବଳ ଜୀବଜଗତର ମନଃପ୍ରାଣ ଆକର୍ଷଣ କରେ ନାହିଁ, ଜଗନ୍ନିୟନ୍ତାଙ୍କୁ ମଧ୍ୟ ଆନନ୍ଦ ଦାନ ସମର୍ଥ । ତେଣୁ କୁହାଯାଇଅଛି 'ମଦ୍‌ଭକ୍ତାଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦଃ' । ଅନ୍ୟତ୍ର—'ଗୀତୈର୍ବାଦ୍ୟୈଶ୍ଚ ନୃତ୍ୟୈଶ୍ଚ ଗୋବିନ୍ଦଂ ପରିତୋଷୟେତ୍' । ସହଜରେ ଶ୍ରୋତାର ହୃଦୟସ୍ପର୍ଶ କରିପାରେ ଏକା ଗୀତ ବା ସଙ୍ଗୀତ । ଛନ୍ଦାନୁସାରୀ କବିତା ପାଠକଲେ ଶ୍ରୋତାର ହୃଦୟ ରସସିକ୍ତ ନ ହୋଇପାରେ, କିନ୍ତୁ ସ୍ୱର ତାଳ ଯୁକ୍ତ ଗୀତର ଗାୟନ ସହଜରେ ଶ୍ରୋତା ଚିତ୍ତ ରସାନୁରଞ୍ଜିତ କରେ ।

ତେଣୁ ସଙ୍ଗୀତକୁ ଅକ୍ଷର ପରିମାଣ ଏବଂ ଯତି ନିୟମାଧୀନ ବୋଲି କହିବା ସଂପୂର୍ଣ୍ଣ ହାସ୍ୟାସ୍ପଦ ବିଚାର ।

ସାପୁଅକେଳା ଫୁଙ୍କେ ନାଗେଶ୍ୱରୀ ବାଦ୍ୟ ଯନ୍ତ୍ର । ବିଷଧର ଅହି ବିଲରୁ ତାହାର ପଛରେ ତାହାର ନିକଟରେ—ଅକ୍ଳେଶରେ ଧରା ଦିଏ ସେ । ବିଚାରିବାର ଅବକାଶ ନଥାଏ ତା'ର ଯେ ସେ ମରଣ ମୁହଁକୁ ଆଗେଇ ଯାଉଛି । ଟାଣିନିଏ ତାକୁ ନାଗେଶ୍ୱରୀର ସ୍ୱର—ସଂଗୀତ । ଏ ସଂଗୀତ ଯତିର ଅପେକ୍ଷା କରେ ନାହିଁ । ଏ ସଂଗୀତ ସ୍ୱର ଲୟ, ଲୟର ଅନୁଗାମୀ,-ମାତ୍ରା ଅନୁଶାସିତ । ଯେଣୁ ଏହା କବିତା ନୁହେଁ,—ଗୀତ—ସଂଗୀତ ।

'ଓଡ଼ିଆ ଗୀତ କାବ୍ୟ'ର ଲେଖକ ଗ୍ରନ୍ଥର ୧୨ ପୃଷ୍ଠାରେ ଲେଖିଛନ୍ତି —"ଗୀତରେ ଭାବ ଗୌଣ ଓ ଭାବର ବହୁ ଅଂଶ ସ୍ୱର ସାହାଯ୍ୟରେ ପ୍ରକାଶିତ ହୋଇପାରେ ।" ଏ କଥା ସ୍ୱୀକାର୍ଯ୍ୟ ଯେ ସ୍ୱର ଭାବ ପ୍ରକାଶର ସାହାଯ୍ୟକାରୀ, ମାତ୍ର ଗୀତରେ ଭାବ ଗୌଣ ଏ କଥାଟା ଆଦୌ ତଥ୍ୟ-ବିଚାର-ସାର୍ଥକ ବୋଲି ମନେହୁଏ ନାହିଁ ।

ସଂଗୀତରେ ଧାତୁ ହେଲା ନାଦାତ୍ମକ ସ୍ୱର ଏବଂ ମାତୁ ହେଉଛି ସାହିତ୍ୟ, । ଗୀତକାର ବା ଗୀତ କବିଙ୍କର ମନୋଭାବ ପ୍ରକାଶକରେ ଶବ୍ଦ ବା ପଦ ଏବଂ ତାହା ଶବ୍ଦରେ ଲୀଳାୟିତ କରେ ସ୍ୱର । ତେଣୁ ଭାବର ଅସ୍ତିତ୍ୱହୀନତା ବା ଗୌଣତ୍ୱରେ ତାହାର ପ୍ରକାଶ କିପରି ସମ୍ଭବ ହେବ ? ବୀଜ ଥିଲେ ସିନା ଅଙ୍କୁରୋଦ୍‌ଗମ ସମ୍ଭବ । ଶିରୋନାସ୍ତି କୁତୋ ବ୍ୟଥା ?

ଏ ବିଚାରରେ ଗୀତ ମଧ୍ୟରେ କବିତା (ମାତ୍ରୁ)ର ସ୍ଥାନ ରହୁଛି, କିନ୍ତୁ କବିତା ମଧ୍ୟରେ ଗୀତ (ଧାତୁ)ର ସ୍ଥାନ ନାହିଁ । ପୁଣି ସେହି ଗ୍ରନ୍ଥକାର କହୁଛନ୍ତି 'ଗୀତ-କବିତା' ଗାଇବା ଲାଗି ରଚିତ ନ ହେଉଥିଲେ ହେଁ ଏଥିରେ ଅନାୟାସରେ ସ୍ୱର-ଯୋଜନା କରାଯାଇ ପାରେ । ଏ ଉକ୍ତି ମଧ୍ୟ ଯଥାର୍ଥ ବୋଲି ମନେ ହୁଏ ନାହିଁ । ଗୀତକାର ଉତ୍କୃଷ୍ଟ ଶ୍ରେଣୀୟ ଗାୟକ ନ ହେଉନ୍ତୁ ପଛେ ସାଧାରଣ ଭାବେ—ଅତି ସାଧାରଣ ଭାବେ,—ଅନ୍ତତଃ ମନେମନେ ଗାଇଆସୁଥିବେ କିମ୍ବା ସଂଗୀତ ପ୍ରାଣ ହୋଇଥିବେ ତା ନୋହିଲେ ତାଙ୍କର ରଚିତ କବିତାରେ (ଲେଖକଙ୍କ ଭାଷାରେ ଗୀତ-କବିତାରେ) ଅନାୟାସ ତ ଦୂରର କଥା, ବହୁ ଆୟାସରେ ମଧ୍ୟ ସୁରଶିଳ୍ପୀ ସ୍ୱର-ଯୋଜନା

କବିତା ସମ୍ଭବପର ନୁହେଁ । ପୁଣି ଏ କଥା ଯଥାର୍ଥ "ପାଠ ପଢ଼ିଥିଲେ ଗୀତ ଗାଉଥାଏ ଶରୀର ଚାକଣୀ ପୁଷ୍ଟ" ସ୍ଥଳରେ ସେ ଗୀତରସ୍ବର କଦାଚିତ୍ ଶ୍ରୋତାର ମନ ଗହନ ଛୁଇଁ ପାରେ । ଅନୁଭବୀ ମାନେ ଏ କଥାରେ ସହମତ ହେବେ । ସ୍ବରର ମୂଳ ଅଭିପ୍ରାୟ କେବଳ ରସ-ସଞ୍ଚାର । ଧାତୁର ଅର୍ଥକୁ ପନାଇଁ ମାତୁ ବର୍ଣ୍ଣଯୋଗ ଅତି ସାଧାରଣ କାର୍ଯ୍ୟ ନୁହେ । ପୁଣି ମାତୁ ବା ସ୍ବରଯୋଜନା ଲାଗି ସଂଗୀତ ଉପଯୋଗୀ ଧାତୁ ବା ଶବ୍ଦ ହେବ ସରସ, ଲଳିତ । ଧ୍ବନି ହେବ ମଧୁର । ତା' ନୋହିଲେ ସହୃଦୟ ଶ୍ରୋତାଙ୍କର ମନୋରଞ୍ଜନ କରିପାରିବ ନାହିଁ ସେ ଗୀତ । ଏଣେ ଗୁଡ଼ିଏ ଦିଗରୁ ଶବ୍ଦ-ସାପେକ୍ଷ ହୋଇଥିବା ସ୍ଥଳେ 'ଗୀତ କବିତା'ରେ ସ୍ବର ଯୋଜନା କାପରି ଭଳି ଅନାୟାସ ସାଧ୍ୟ ବୋଲି କୁହାଯାଇପାରେ ?

କବିସୂର୍ଯ୍ୟଙ୍କ ରଚନାରେ ଉତ୍କଳ୍ ଭାବାନୁସାରୀ ସ୍ବର-ଯୋଜନା ସ୍ବର ଶିଳ୍ପୀପକ୍ଷେ ଅନାୟାସ ସାଧ୍ୟ ବୋଲି କୁହାଯାଇ ପାରିବ, କାରଣ କବିସୂର୍ଯ୍ୟଙ୍କ ରଚନା ଗୀତ-କବିତା ନୁହେଁ —ଗୀତ, —ଭାବମୟ ସଂଗୀତ ।

ଗୀତିକାରଙ୍କ ହୃଦୟରେ କୌଣସି ରସର ଉଦ୍ରେକ ହେଲେ ଏବଂ ମନରେ ତାହାର ପ୍ରକାଶ ବାସନା ଜାଗିଲେ, ସର୍ବ ପ୍ରଥମେ ଅନାହୂତ କଣ୍ଠ ରୂପ ସ୍ବର ସ୍ବତଃ ଅସି ଅଧିକାର କରେ ତାଙ୍କର କଣ୍ଠସ୍ଥଳୀ । ସେ ଆନ୍ଦୋଳିତ କରେ ହୃଦୟ । ତହୁଁ ଲେଖନୀ ପାଏ ଏହି ଆନ୍ଦୋଳନର ଅଲକ୍ଷ୍ୟ ଆଶୀର୍ବାଦ । ତହୁଁ ରସଭାବ ପ୍ରକାଶ-ସମର୍ଥକ ଛନ୍ଦ ବା ଭାଷା ଅଯାଚିତ ଭାବେ ଲେଖନୀ ମୂନରେ ଆସି ମୁକ୍ତି ଅପେକ୍ଷା କରେ । ଏତେବେଳେ ଯାଇ ସାର୍ଥକ ଲଭେ ଗୀତିକାରଙ୍କର ଗୀତ ରଚନା । ଏ ସ୍ଥଳରେ ଗୀତକବି ଉତ୍ତମ ଗାୟକ ହୋଇ ପାରନ୍ତି ଅଥବା ଗୁଣୁ ଗୁଞ୍ଜନରେ ତାଙ୍କର ହୃଦୟ ଭାବଭରା ହୋଇ ପାରେ—ଉଭୟ ବୃତ୍ତି ହିଁ ସମ୍ଭବ ।

କବିତାର କବି ସ୍ବରର ଅପେକ୍ଷା କରନ୍ତି ନାହିଁ । ଅକ୍ଷର ଗଣନା, ଛନ୍ଦ ଯୋଜନା ଓ ଯତିରକ୍ଷା ତାଙ୍କର ମୁଖ୍ୟ ଧର୍ମ । କେଉଁ ଧାଡ଼ିରେ କାପର ଛନ୍ଦ କି ଭାବରେ ଓ କେତେ ଅକ୍ଷରର ଛନ୍ଦ ଖଞ୍ଜା ହେଲେ ତାହା ନିରୂପିତ ସଂଗୀତାଳକ୍ଷା ସହ ଗାୟନର ଉପଯୋଗୀ ହେବ ସେ ବିଷୟର ଧ୍ୟାନ ତାଙ୍କର ଶିରୋ-ବ୍ୟଥା ହୁଏ ନାହିଁ । ସେ ଲେଖନ୍ତି କବିତା,—ପାଠ ଲାଗି । ସ୍ବର ତାଳର ଦାୟିତ୍ବ ତାଙ୍କର ନୁହେଁ । ଏହି ହେତୁ କବିତାକୁ ଗୀତ—ଧର୍ମରେ ଦୀକ୍ଷିତ

କରାଇବା ସହଜ ସମ୍ଭବ ହୁଏ ନାହିଁ । କଦାଚିତ କବିତା ଭାବାନୁସାରୀ ସ୍ୱର ତାଳ ସଂଯୋଗସହ ଗୀତ ରୂପେ ଗାୟନର ଯୋଗ୍ୟତା ଲାଭ କରିପାରେ । ତାହା କିନ୍ତୁ ଅନେକ ସମୟରେ 'ଭାବ ତାଳୀୟ ନ୍ୟାସେନ'—ସ୍ୱରରେ ବୋଲା ଯାଇପାରେ ଓଡ଼ିଆ ଗୀତିକାବ୍ୟ ଲେଖକଙ୍କ ବିଚାର ଅନୁସାରେ । ତେଣୁ—ଏଥିରେ "ଅନାୟସରେ ସ୍ୱର-ଯୋଜନା କରାଯାଇ ପାରେ" ଏ ବାକ୍ୟଟିର 'ଅନାୟାସ' ଶବ୍ଦ ଥାପନା ଦେଖି ବାସ୍ତବ ସ୍ୱର-ଶିଳ୍ପୀ କହିବେ ଯେ ଲେଖକ 'ଅଙ୍ଗେଲଭ୍ୟ' କଥା କହୁନାହାନ୍ତି ।

କବିସୂର୍ଯ୍ୟ ଗ୍ରନ୍ଥାବଳୀ ପ୍ରକାଶିତ କବିତା କଲ୍ଲୋଳିନୀ ମଧ୍ୟରେ ଛାନ୍ଦ, ଚଉତିଶା ଇତ୍ୟାଦି ସ୍ଥାନ ପାଇଅଛି । ଚଉତିଶାକୁ ଖଣ୍ଡକାବ୍ୟ ଆଖ୍ୟା ଦିଆଯାଇପାରେ । ଏ ସମ୍ବନ୍ଧେ ପଣ୍ଡିତ ଗୋପୀନାଥ କବିଭୂଷଣ ସ୍ୱରଚିତ କବ ଚିନ୍ତାମଣୀରେ କହିଛନ୍ତି—

"ଗୀତନାମପି କାବ୍ୟତ୍ୱଂ ପଦଯୁକ୍ତ ବିଶେଷଣାତ୍
କକାରାଦି କ୍ଷକାରାନ୍ତୈଶ୍ଚତୁସ୍ତ୍ରିଂଶତିରକ୍ଷରୈଃ
ଯଦ୍ୟେକ ରଚିତଂ ଗୀତଂ ଖଣ୍ଡକାବ୍ୟମିତିସ୍ମୃତମ୍ ।

ଅପର ଅଧିକାଂଶ ଚଉତିଶା କୌଣସି ଏକ ଚରଣକୁ ମୂଳକରି ବର୍ଣ୍ଣାଦ୍ୟ ନିୟମରେ, ଚଉତିଶ ପଦରେ ରଚିତ । ଛାନ୍ଦ ମଧ୍ୟ ଏହିପରି ବହୁ ପାଦ ବିଶିଷ୍ଟ, ଏ ଉଭୟରେ ଘୋଷା ଥାଇପାରେ ଅବା ନ ଥାଇପାରେ ମଧ୍ୟ । ଏଗୁଡ଼ିକ କ୍ଷୁଦ୍ର ଗୀତର 'ପାଞ୍ଚାଳୀ' ଶ୍ରେଣୀୟ ରଚନା ।

'ପାଞ୍ଚାଳୀ ବହୁଭିଃ ପାଦୈଃ ଦ୍ୱିବିଧା ସା ଧ୍ରୁବାଽଧ୍ରୁବା
"ଧ୍ରୁବସହିତା ଧ୍ରୁବରହିତା ଚ (ସଂଗୀତ ନାରାୟଣ)

"ଧ୍ରୁବାଃ ଘୋଷାଃ" ଇତି ଉତ୍କଳ ଦେଶେ ପ୍ରସିଦ୍ଧାଃ (ସଂଗୀତସରଣୀ)

ଅର୍ଥାତ୍ ଘୋଷା ଥାଇ ଏବଂ ଘୋଷା ନ ଥାଇ ବହୁପାଦ ବିଶିଷ୍ଟ ଗୀତକୁ ପାଞ୍ଚାଳୀ କହନ୍ତି । 'ଘୋଷା', କବିତା ରାଜ୍ୟର କଥା ନୁହେଁ ।

ତେଣୁ ଛାନ୍ଦ ଚଉତିଶା କାହାରିକୁ କବିତା କହିବା ଆଦୌ ସମୀଚୀନ ହେବ ନାହିଁ । ଅହୁବ କେତେକ 'ଛାନ୍ଦ' ସାହିତ୍ୟ ଅଲୋଚକ ଛାନ୍ଦ ସବୁ ଅକ୍ଷର ଗଣନା ନିୟମରେ ଅବଦ୍ଧ ବୋଲି ପ୍ରଚାର କରିଅଛନ୍ତି । ଏହା ଅପର ଛାନ୍ଦ ଓ ଚଉତିଶା ଇତ୍ୟାଦିକୁ ସଙ୍ଗୀତ ରାଜ୍ୟରୁ ଦେଶାନ୍ତରୀ

କରାଇବାର ବ୍ୟବସ୍ଥା ପରି ବୋଧହୁଏ। ବହୁ ସ୍ଥଳରେ ଏହି ଗ୍ରନ୍ଥର ପ୍ରକାଶିତ ପୁସ୍ତକ ଅମର କବି ଓ ସଂଗୀତଶିଳ୍ପୀମାନଙ୍କୁ ଏକାନ୍ତ ପଥଭ୍ରାନ୍ତ କରାଇଥିବାର ଦେଖାଯାଇଅଛି ।

ସଚରାଚର ଛାନ୍ଦ ଗୁଡ଼ିକରେ ରାଗ ନିର୍ଦ୍ଦେଶନା କରାଯାଇଅଛି । ଅତି ଅଳ୍ପ ସ୍ଥଳରେ ତାଳ ନିର୍ଦ୍ଦେଶ ମଧ୍ୟ ଦେଖାଯାଏ ।

ଛାନ୍ଦ ଏବଂ ଚମ୍ପୂ ଓଡ଼ିଶାର ନୈଜାତ୍ମକ ବିଶେଷତ୍ୱ । ସାରା ଭାରତରେ କାହିଁ ହେଲେ ଏ ଭଳି ବା ଏ ଶ୍ରେଣୀର ସଂଗୀତ ରଚନା ଦୁର୍ଲ୍ଲଭ । ଛାନ୍ଦ ବା ଚମ୍ପୂ କଥା ବିଚାରିଲେ, ସ୍ପଷ୍ଟ ଜଣାପଡ଼େ ଯେ ଏହାର ଅଧିକ ରଚୟିତାମାନେ ଥିଲେ ସଂଗୀତଜ୍ଞ, ଛନ୍ଦଜ୍ଞ, ରସଜ୍ଞ ଏବଂ ସଂସ୍କୃତଜ୍ଞ । ସେମାନଙ୍କର ଚାତୁରତା ଓ ବିଜ୍ଞତା କଳିହେବ ନାହିଁ ।

ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ହେତୁରୁ ଶ୍ଲୋକର ଛନ୍ଦ ସେମାନଙ୍କ ପ୍ରାଣର ଛନ୍ଦେ ଛନ୍ଦେ ଜଡ଼ି ରହିଥିଲା । ଭାଷାରେ ଅପ୍ରତିହତ ଅଧିକାର ଥିବାରୁ ଯମକ ଅନୁପ୍ରାସ ପ୍ରଭୃତି ଅଳଙ୍କାର ମଣ୍ଡନଲାଗି ଉପଯୁକ୍ତ ଶବ୍ଦ ସଙ୍ଗ୍ରହ ପାଇଁ ଖୋଜିବା ଆୟାସସାଧ୍ୟ ନ ଥିଲା । ସଂଗୀତକଳା ପ୍ରବୀଣତା ହେତୁରୁ ସ୍ୱରର ରସବୋଧ ସହଜ ଥିଲା । କବିତ୍ୱ ଥିବାରୁ ଭାବ, ରସ, ପାତ୍ର ଓ ଅବସ୍ଥାକୁ ଗ୍ରହି ଭାଷା ଯୋଜନାରେ ବିଚକ୍ଷଣତା ଥିଲା । କବିତ୍ୱ ଏବଂ ସଂଗୀତ ଜ୍ଞାନ,—ଉଭୟରେ ସମାନ ଅଧିକାର ଥିବାରୁ 'ଧାତୁ—ମାତୁ'ର ଅପୂର୍ବ ସମନ୍ୱୟରେ ସେମାନେ ରଚନା କରିଥିଲେ ଛାନ୍ଦ, ଚମ୍ପୂ, ଓ ଚମ୍ପକଦା ଇତ୍ୟାଦି ଇତ୍ୟାଦି ।

ଛାନ୍ଦର ଗଠନ ରୀତି ଆଲୋଚନା କଲେ ଜଣାଯିବ ଯେ ବହୁ ଛାନ୍ଦ ସଂସ୍କୃତ ଛନ୍ଦରୀତିର ଅନୁସରଣରେ ରଚିତ । କିନ୍ତୁ ଏଥିରେ ମିଶିଥିଲା ଓଡ଼ିଆ ଗୀତ କବିମାନଙ୍କର ଅଭୂତପୂର୍ବ ସଂଗୀତ କଳ୍ପନାର ରଙ୍ଗ । ଶ୍ଲୋକ ଗୁଡ଼ିକ ଗଣ ନିୟମାଧୀନ । ଶ୍ଳୋକାବୃତ୍ତି ଯତି ଅନୁଶାସିତ । ଶ୍ଲୋକରେ ବ୍ୟବହୃତ ଶବ୍ଦାକ୍ଷରର ଗୁରୁଲଘୁ ଉଚ୍ଚାରଣ ବିବେଚନା ଅଛି । ଏ ସମସ୍ତର ସମଭିବ୍ୟାହାରରେ ଶ୍ଳୋକ, ପାଠ ବା ଆବୃତ୍ତି ଲାଗି ଉଦ୍ଦିଷ୍ଟ । ସାଙ୍ଗୀତିକ ସ୍ୱର ଲୟ ବା ତାଳର ଅପେକ୍ଷା ରଖେ ନାହିଁ ଶ୍ଲୋକ ।

ଅମର ଛାନ୍ଦ ରଚୟିତା ପୂର୍ବାଗୁରୁମାନେ ଥିଲେ ସଂସ୍କୃତ ଭାଷାପ୍ରବୀଣ । ଶ୍ଲୋକର ମାଧୁର୍ଯ୍ୟ, ଶ୍ଲୋକର ମୋହ ଏଡ଼ି ଦେଇପାରି ନଥିଲେ ସେମାନେ ।

ପୁଣି ଓଡ଼ିଆ ଭାଷା ସଂସ୍କୃତର ନିକଟରେ ଋଣୀ । ଛନ୍ଦ ଏବଂ ଭାଷା ଭଙ୍ଗୀଯୁକ୍ତ ସଙ୍ଗୀତ ରଚନାରେ ଶୃଙ୍ଖଳିତ ହେବାର ଅଭୂତପୂର୍ବ କଳ୍ପନା କରି ଉପର ସେହି କାଳସ୍ୱର କୃତ ସନ୍ତାନଙ୍କ ଦ୍ୱାରା ପ୍ରସ୍ତୁତ କରିଯାଇଛନ୍ତି ।

ଯେଉଁ ଯାଉଛି ସଂସ୍କୃତ ଛନ୍ଦର ଅକ୍ଷର ସଂଖ୍ୟା, ତନ୍ମଧ୍ୟରେ ଯଣ ଯାଉଛି ରସାନୁସାରୀ ସଙ୍ଗୀତର ସ୍ୱର । ତାହାକୁ ଶୃଙ୍ଖଳିତ କରୁଛି ଲୟ, ତାଳ-ମାତ୍ରା । ଏହାପରି ରୀତିରେ ଗଢ଼ା ହୋଇଛି ନିବଦ୍ଧ ସଂଗୀତ ଛାନ୍ଦ । ଛାନ୍ଦ ନିବଦ୍ଧ ସଂଗୀତ ହେଲେ ମଧ୍ୟ ତାହା କ୍ଷୁଦ୍ର-ଗୀତ । ଏଥିରେ ଅଛି ସ୍ୱର, ତାଳ, ପଦ ଏବଂ ବନ୍ଧୁଦ—ଚାରୋଟି ଅଂଗ । ପ୍ରତ୍ୟେକ ଛାନ୍ଦର ସ୍ୱର ଅଛି, ତାଳ ଅଛି, ଅର୍ଥ ଥିବା ପଦ ଅଛି ଆଉ ଅଛି ବନ୍ଧୁଦ ଅର୍ଥାତ୍ କବିଙ୍କ ନାମ । ବନ୍ଧୁଦ ଅଂଶରେ ନାୟକ ବା ତାଙ୍କ ପୃଷ୍ଠପୋଷକଙ୍କ ନାମ ଗୁଣ ବର୍ଣ୍ଣିତ ହୋଇପାରେ । ଛାନ୍ଦରେ ବର୍ଣ୍ଣନାତ୍ମକ କାବ୍ୟଧର୍ମ ରହିଛି । ରଚନା ପଦ ବହୁଳ ନୋହିଲେ ସମସ୍ତ ବିଷୟର ଚିତ୍ତାକର୍ଷି ବର୍ଣ୍ଣନା ସମ୍ଭବ ହୋଇ-ପାରିବନାହିଁ । ଏପରି ରସ ରଚନାରେ ଶାସ୍ତ୍ରୀୟ ରାଗର ବିଧିବିଧାନକୁ ସବୁ କ୍ଷେତ୍ରରେ ନିଷ୍ଠାପର ଭାବରେ ଅପେକ୍ଷା କରାଯାଇପାରିବନାହିଁ । ତେଣୁ ରସିକ-ପ୍ରଦତ୍ତ ଭିନ୍ନ ନାମରେ ମଧ୍ୟ ଅନେକ ଛାନ୍ଦ ନାମିତ । ଯେପରି 'ରୈଣୀ' । ଏହା ଶାସ୍ତ୍ରୀୟ କୌଣସି ରାଗରାଗିଣୀର ନାମ ନୁହେ । ଏଠାରେ ଛେଦାର୍ଥ ଦେଖିବାକୁ ହେବ । 'ରୈଣ' ଶବ୍ଦ ଦେଶଜ । ଏହାର ଅର୍ଥ ଶ୍ରେଷ୍ଠ—ଉତ୍ତମ ।-ରୈଣ ହେଉଛି ରୈଣା, ରୈଣୀ ଇତ୍ୟାଦି କୁହାଯାଇଥାଏ ।

ଉଦାହରଣ ସ୍ୱରୂପ ସଂସ୍କୃତରେ 'ପଞ୍ଚଚାମର' ନାମକ ଗୋଟିଏ ଛନ୍ଦ ବା ବୃତ୍ତ ଅଛି । ଏହାର ପାଦ ବା ଚରଣ ଚାରିଗୋଟି । ଏହି ଚାରି ଚରଣକୁ ମୂଳକରି ରୈଣୀ ରାଗ ବା ରୈଣୀ ବୃତ୍ତ ରଚିତ ହୋଇଥିବା ସମ୍ଭବ । ନିମ୍ନରେ ଏହି ବୃତ୍ତ ସମ୍ବନ୍ଧେ ଟିକିଏ ଆଲୋଚନା କରାଯାଉଅଛି ।

ପଞ୍ଚଚାମର ଛନ୍ଦ ହେଲା 'ଷୋଡ଼ଶାକ୍ଷରବୃତ୍ତି' । ଯଥା—

"ସୁରଦ୍ରୁମୂଳ ମଣ୍ଡପେ ବିଶାଳ ରତ୍ନ ନିର୍ମିତେ
ଲସଦ୍ବିତାନ ଭୂଷିତେ ସଲୀଳ ବିଭ୍ରମାଳସମ୍ ।
ସ୍ମରାଙ୍ଗନାଭିବଲ୍ଲବୀଭିର ପଞ୍ଚଚାମର—
ସ୍ଫୁରତ୍ ସମୀରବୀଜିତଂ ସଦାଽଚ୍ୟୁତଂ ଭଜାମହଂ ।"

ପ୍ରତି ଚରଣର ଆଠଅକ୍ଷର ପରେ ବିଭାଗ ବା ବିରାମସ୍ଥଳ । ଏହିପରି ଚାରିପାଦରେ ଛନ୍ଦଟି ସଂପୂର୍ଣ୍ଣ ହୋଇଅଛି ।

'ପ୍ରମାଣିକାପଦଦ୍ୱୟଂ ବଦନ୍ତି ପଞ୍ଚଚାମରମ୍'
— ପ୍ରାମାଣିକ ନାମକ ଛନ୍ଦର ଦୁଇପାଦ ମିଶି ଏହି ବୃତ୍ତଟି ପ୍ରସ୍ତୁତ ।

ପୁଣି—

'ଲଘୁର୍ଗୁରୁର୍ବଦନ୍ତି ପଞ୍ଚଚାମରମ୍ ।'

ଅର୍ଥାତ୍ ପ୍ରଥମେ ଲଘୁ ବର୍ଣ୍ଣ ପରେ ଗୁରୁବର୍ଣ୍ଣ—ଏହି କ୍ରମରେ ଛନ୍ଦଟି ରଚିତ । ସେହି ରୀତିରେ ମଧ୍ୟ ପାଠ୍ୟ । ସଂସ୍କୃତ ଛନ୍ଦ ରଚନାରେ ଗଣନିୟମ ବା ଗୁରୁଲଘୁ ବର୍ଣ୍ଣଯୋଜନା କ୍ରମ ରକ୍ଷା କରିବାକୁ ପଡ଼େ । ଏହା ଆବୃତ୍ତି ବା ପାଠ କରାଯାଏ; କିନ୍ତୁ ଅପର ଛନ୍ଦକାରମାନେ ସେହି ବୃତ୍ତକୁ ସଂଗୀତର ରଙ୍ଗ ଦେଇ ଗାଇବାର ଉପଯୋଗୀ କରିଅଛନ୍ତି । ତେଣୁ ଗଣନିୟମକୁ ଘେନ ପ୍ରାକୃତ ବା ଓଡ଼ିଆ ଭାଷାଗୀତରେ ଶବ୍ଦଯୋଜନାର କୌଣସି ଆବଶ୍ୟକତା ନାହିଁ ଅର୍ଥାତ୍ ଗୀତରେ ଏହି ଗଣବାଧ୍ୟତା ନିଷ୍ଠାପର ଦୃଷ୍ଟି ଦିଆଯାଏ ନାହିଁ । କୁହାଯାଇଅଛି—

ଗୀତେ ଦୀର୍ଘୋ ଭବେଦ୍‌ହ୍ରସ୍ୱୋ
ହ୍ରସ୍ୱୋ ଦୀର୍ଘଃ କ୍ୱଚିତ୍ କ୍ୱଚିତ୍ । (ହରିନାୟକ)

ଏହି ରୀତିରେ ରଚିତ ରାଗ ଗୌରୀ । ଏହାର ପଦର ପ୍ରଥମ ଅକ୍ଷରଟି ଲଘୁ ଏବଂ ୨ୟ ଅକ୍ଷରଟି ଗୁରୁବର୍ଣ୍ଣରୂପେ ଉଚ୍ଚାରିତ ହୋଇ ପରମ୍ପରାକ୍ରମେ ଗୀତ ହୋଇଆସୁଛି । ପଞ୍ଚଚାମର ବୃତ୍ତନିର୍ଦ୍ଦେଶିତ ଗଣନିୟମ—ଜ,ର, ଜ, ଗ କ୍ରମେ ପ୍ରତିପଦ-ବିଭାଗ ଲଘୁଗୁରୁ ରୀତି ଉଚ୍ଚାରଣରେ ଧରାଗଲେ ଅକ୍ଷର ସଂଖ୍ୟା ହେବ ୧୨ଗୋଟି ଅର୍ଥାତ୍ ପଦଯୋଜନାର ଅକ୍ଷରବସ୍ତି ସଂଖ୍ୟା-ଗଣନାରେ ଆଠଗୋଟି ହେଲେ ମଧ୍ୟ ପୂର୍ବୋକ୍ତମତେ ସ୍ୱରୋଚ୍ଚାରଣ-ବେଳେ ତାହା ମାତ୍ରାନୁସାରେ ଗଣିତରେ ହେବ ବାରଗୋଟି ।

ତେଣୁ 'ଗୌରୀ' ରାଗର ପ୍ରତିପଦ ବିଭାଗର ଅକ୍ଷରସଂଖ୍ୟା ଆଠ-ଗୋଟି ହେଲେ ମଧ୍ୟ ଗାୟନ ଉପଯୁକ୍ତ କରିବାବେଳକୁ ତାହା ୧୨ଟି ମାତ୍ରାରେ ପୂର୍ଣ୍ଣ କରିବାକୁ ହୁଏ । ପ୍ରତି ତିନିଗୋଟି ମାତ୍ରା—ବିଭାଗରେ ଗୋଟିଏ ତାଳ ହୁଏ । ତାଳଟିକୁ ସଂସ୍କୃତରେ 'କ୍ରୀଡ଼ାଚନ୍ଦ୍ରନାଃଧାରୁ'

କହନ୍ତି । ସାଧାରଣତଃ ଏହା ନିଃସାରୁ ତାଳ ନାମରେ କଥିତ । ଓଡ଼ିଶୀ ସଂଗୀତଧାରାରେ ଏହାର ନାମ 'ଝୁଲ୍' ତାଳ ।

ରଚନାର ପ୍ରତିପଦ ଅଠ ଅଠ ଅକ୍ଷର କରି ପ୍ରଥମ ତିନିଗୋଟି ପାଦ-ବିଭାଗପରେ ୪ର୍ଥ ବିଭାଗର ଅକ୍ଷରସଂଖ୍ୟା ୫ ଗୋଟି ହେଲେ ହେଁ ଗାୟନକାଳୀନ ତାଳର ସମତ୍ୱ ରକ୍ଷାଲାଗି ୫ମ ଅକ୍ଷର ସହିତ ଦୁଇ ମାତ୍ରା ଏବଂ ତହିଁପରେ ଅଳ୍ପ ତିନି ମାତ୍ରା କାଳ ସ୍ୱରବୃଦ୍ଧି କରି ଗୀତଟିକୁ ସ୍ୱର-ତାଳରେ ସର୍ବାଙ୍ଗସୁନ୍ଦର କରିବାକୁ ହୁଏ । ଯେପରି—

| ‖ | | ‖ | | ‖ | | ‖
୧—ବ୍ର ତ | ଳ କୁ | ଅ ଲି | ଙ୍ଗ ନ

| ‖ | | ‖ | | ‖ | | ‖
୨—ଭ ଋ | ଜା ହ୍ନ | ବୀ ଶୋ | ଭ ନ

| ‖ | | ‖ | | ‖ | | ‖
୩—ହ ରେ | ସୁ ର | ବ ର | ତା ପ

| ‖ | | ‖ | | ‖ | | ‖
୪—ଗୃ ହୁ | ଧା ସ୍ତ | ସେ ୦ | ୦ ୦୦

ସେହିପରି—

ବ ହେ—ମ ଢ— ର ହେ—ତ ନ—
ଜ ଲୁ—ନ୍ଦ ର— ଡ ସ—ମା ନ—
ପୂ ଋ—ତ ହୋ—ଇ ଛୁ—ତ ଧୈଁ—
ଅ ଣେ—ଷ ର—ସେ — — — —

| ‖ | ‖ | ‖
ବ ଦ୍ୟ ହେ ମ ବ ର୍ଣ୍ଣ

| ‖ | ‖ | ‖
ପ ଦ ରେ ୦୦ ୦ ୦୦

| ‖ | ‖ | ‖ | ‖
ବ ଷ ଭ ଣୁ ତୋ ଷ ଦା ଣୀ

| ‖ | ‖ | ‖ | ‖
ବେ ନି ମ ତ ରେ ୦ ୦ ୦୦

(। = ଲଘୁ, ‖ = ଗୁରୁ ଉଚ୍ଚାରିତ ବର୍ଣ୍ଣ)

ଜୈମାନଙ୍କ ଛାନ୍ଦରେ ଓଡ଼ିଶୀ ଝୁଲ୍ଲ ଢାଳରେ ଚୈତୀରାଗର ଏ ଗୀତଟି ରଚିତ ।

ଏହିପରି ଶ୍ରଦ୍ଧାନାମ ଭକ୍ତ ଛାନ୍ଦକାରମାନେ ମଧ୍ୟ ବହୁ ଶାସ୍ତ୍ରୀୟ ରାଗର ଉପଯୋଗ କରି ରାଗର ନାମ ନିର୍ଦ୍ଦେଶ କରିଅଛନ୍ତି । ସଂଗୀତରେ ସ୍ୱର ହିଁ ମୁଖ୍ୟ । ଗୀତର ପଦ ସ୍ୱର-ଢାଳ ଅନୁସରଣରେ ସଂଯୋଜିତ ।

ତେଣୁ ଅକ୍ଷର ଗଣି ସଂଗୀତ ବା କୌଣସି ରାଗ ରଚିତ ହୁଏ ବା ହୋଇଅଛି ବୋଲି ସହଜ ମନ୍ତବ୍ୟ ଦେଇଦେବା କେବଳ ସଂଗୀତଜ୍ଞାନ ଅଭାବର ପରିଚାୟକ । କେହି ସଂଗୀତଜ୍ଞ କବି ତାଙ୍କ ହୃଦୟରେ ଉଦିତ କୌଣସି ରସ ବା ଭାବକୁ ପ୍ରକାଶ କରି ବସିଲେ ପ୍ରଥମେ ସ୍ୱର ତାଙ୍କର ଅଯାଚିତ ବନ୍ଧୁରୂପେ କଣ୍ଠରେ ଚେତି ବସେ । ଏହା ହିଁ ରାଗ ବା ରାଗିଣୀ ଅର୍ଥାତ୍ ସଂଗୀତର ରୂପ ନିଏ । ତହୁଁ ତାଙ୍କର କବିତ୍ୱ-ପ୍ରତିଭା ବଳରେ ରଚିତ ହୁଏ ଗୀତର ପଦ । ଛାନ୍ଦ ଏହିଭଳି ଭାବରେ ସ୍ୱର ଓ ପଦ ଯେନ ଉଭା ହୋଇଅଛି ଅମର ମନ୍ଦିରରୂପେ । ଆମର ଜାତିର ନମସ୍ୟ ଛାନ୍ଦକାର-ମାନେ ଯେ ସୁନିଶ୍ଚିତଭାବେ ଥିଲେ ସଂଗୀତଜ୍ଞ ଏବଂ କବି—ଏଥି ସନ୍ଦେହ ନାସ୍ତି ।

ରାଗରାଗିଣୀ ବା ସ୍ୱର-ବିହାର ଅକ୍ଷରବନ୍ଧନୀରେ ଆବଦ୍ଧ ହୋଇ ନ ପାରେ । ତେଣୁ 'ଅମୁକ' ରାଗ 'ଏତେ' ଅକ୍ଷରରେ ପ୍ରସ୍ତୁତ ବୋଲି କହିବାଟା ଏକାନ୍ତ ହାସ୍ୟାସ୍ପଦ ବିଚାର । ଓଡ଼ିଶୀ ସଂଗୀତପକ୍ଷେ ଏହା ଅତ୍ୟନ୍ତ ମାରାତ୍ମକ ପ୍ରଚାର ।

ବଡ଼ ଦୁଃଖ ଲାଗେ ଯେ, କେତେକ ସଂଗୀତ-ଅନଭିଜ୍ଞ ଲେଖକ 'ଛାନ୍ଦରେ ଯତି-ରୀତି' ନିର୍ଦ୍ଦେଶ କରି କେତେଖଣ୍ଡି ପୁସ୍ତକ ଛାପିଛନ୍ତି । ସେହି ପୁସ୍ତକଗୁଡ଼ିକର ପ୍ରଚାର ଆମ ସଙ୍ଗୀତକଳାର ମଥାରେ କଳଙ୍କ-ପଙ୍କ ବୋଳିଦେଇଛି । କହୁଛି ତ, ସାରା ଭାରତରେ ଆମ ଛାନ୍ଦ ରଚନାର ତୁଳନା କାହିଁ ହେଲେ ନାହିଁ । ଆମ ଛାନ୍ଦ ଆମର ଦ୍ୱିତୀୟ କୋଣାର୍କ । ନ ବୁଝି ନ ଶୁଣି, ବିନ୍ଦୁମନ୍ତ ନ ଜାଣି ସାପବିଳରେ ହାତ ପୂରାଇବାପରି ଏ ଅପସାହସ—ଅପଚେଷ୍ଟା—ଅପପ୍ରଚାର ଆଉ କେତେ କାଳ ଚାଲିବ ?

ସଂଗୀତକୁ ଏପରି ଲେଖକମାନେ 'ଯତି' ନିବଦ୍ଧ କରିଦେଇଛନ୍ତି; କିନ୍ତୁ ଜାଣି ରଖିବା ଉଚିତ ଯେ 'ଯତିର୍ଜିହ୍ୱେଷ୍ଟ ବିରାମସ୍ଥାନଂ କବିଭିରୁଚ୍ୟତେ'—ଏ ନିୟମ ସଂଗୀତପାଇଁ ଖଟିବ ନାହିଁ । ଖଟିପାରେ

କବିତାପାଇଁ— ଗାୟନପାଇଁ ନୁହେଁ । ଅବୃତ୍ତି ବା ପାଠପାଇଁ ଯତିନିୟମ ପ୍ରବର୍ତ୍ତିବ । ଛନ୍ଦରେ 'ଯତିପାତ'ସ୍ୱୀକୃତ ପ୍ରବୃତ୍ତିତ ଏହାପରି କେତେଖଣ୍ଡି ପୁସ୍ତକ ହେଲା—

୧) ପ୍ରବନ୍ଧାବଳୀ
୨) ଯତିପାତ
୩) ଓଡ଼ିଆ ଛନ୍ଦ ପରିଚୟ
୪) ଓଡ଼ିଆ ଛନ୍ଦର ବିକାଶ—
୫) ଓଡ଼ିଆ ଗୀତି-କାବ୍ୟ
୬) ଓଡ଼ିଆ କବିତାର ଛନ୍ଦ······ଇତ୍ୟାଦି ।

ରାଗରାଗିଣୀକୁ ସ୍ୱରବନ୍ଧନୀରେ ବାନ୍ଧିରଖିବାର ଅପ୍ରଚେଷ୍ଟାର ଯୋଗ୍ୟ ରଚିତ ଏଭଳି ପୁସ୍ତକଗୁଡ଼ିକ ସମ୍ବନ୍ଧେ ଆଲୋଚନାର ସ୍ଥାନ ଅନ୍ୟତ୍ର । ତେଣୁ ତହିଁରୁ ବିରତ ହେଲି ।

କେତେକ ଛନ୍ଦ-ରାଗମାନଙ୍କରେ ଓଡ଼ିଶୀ ସ୍ୱତନ୍ତ୍ରତା ଅପୂର୍ବ । ଯେପରି ଚିନ୍ତା-ଦେଶାକ୍ଷ, ଚିନ୍ତା-ଭୈରବ ଓ ଶୋକ-କାମୋଦୀ ଇତ୍ୟାଦି । ଏହା ଶାସ୍ତ୍ରୀୟ ରାଗର ନାମସହିତ ଭାବ ବା ରସର ଅଭୂତପୂର୍ବ ସଂଯୋଜନା । ଉଦାହରଣସ୍ୱରୂପ-ଦେଶାକ୍ଷ ଶାସ୍ତ୍ରୀୟ ରାଗର ନାମ । କବି ଏହି ରାଗରେ ବିଶେଷଭାବରେ 'ଚିନ୍ତା'ଭାବ ଯୋଗାଇଛନ୍ତି । ତେଣୁ ଚିନ୍ତା + ଦେଶାକ୍ଷ = ଚିନ୍ତାଦେଶାକ୍ଷ । ଏଥିରେ ଦେଶାକ୍ଷ ରାଗ-ଗଠନର ନିର୍ଦ୍ଦେଶିତ ସ୍ୱରସହିତ ଆଉ ଗୋଟିଏ-ଦୁଇଟି ସ୍ୱର ଏପରି କୃତିତ୍ୱସହକାରେ ସଂଯୋଜିତ ଯେ ତାହା ବରଂ ମୂଳ ରାଗର ସୌନ୍ଦର୍ଯ୍ୟବୃଦ୍ଧିର ସହାୟକ । ଏଭଳି ସଂଯୋଜନା କେବଳ ବିଶିଷ୍ଟ ରସିକ ସଂଗୀତ-ବିଜ୍ଞାନୀ କବିଙ୍କଦ୍ୱାରା ସମ୍ଭବ ଏବଂ ଓଡ଼ିଶା ଭଳି ଏଭଳି ଅପୂର୍ବ ପରିକଳ୍ପନା ବା ନାମକରଣ ଅନ୍ୟତ୍ର ବିରଳ ।

ସ୍ଥୂଳତଃ ଛନ୍ଦଗୁଡ଼ିକ ସ୍ୱର, ଲୟ ଓ ତାଳ ଅନୁଶାସିତ । ସେଥିରେ ଚନ୍ଦ୍ରୋବୃତ୍ତଣ-ବିଧାନ ଗୌରବହାନୀକର ଏବଂ ସର୍ବଥା ଅବାଞ୍ଛନୀୟ ।

କବିସୂର୍ଯ୍ୟଙ୍କ ରସାନୁକୂଳ ଛନ୍ଦ-ରାଗକଳ୍ପନା, ରାଗାନୁସାରୀ ସାହିତ୍ୟ-ସର୍ଜନା ଏବଂ ସଂଗୀତର ସମୁପଯୁକ୍ତ ଲଳିତ ପଦ ସଂଯୋଜନାରେ ଧୁରନ୍ଧର ବୋଲି ସ୍ୱୀକାର କରିବାକୁ ହେବ । ତାଙ୍କର ସଂଗୀତ ତଥା ସାହିତ୍ୟ-ସୃଷ୍ଟି ଓଡ଼ିଶାର ଏକ ମାନମନ୍ଦିର ।

## ସଂଗୀତ

କେହି-କେହି ଓଡ଼ିଶୀ ସଂଗୀତକୁ ଚକ୍ରପଦୀ କହୁଥିଲେ ହେଁ ବାସ୍ତବରେ ସବୁଗୁଡ଼ିକ 'ଚକ୍ର—ପଦୀ' ନୁହେଁ ।

ମଧ୍ୟଯୁଗରେ ମୋଗଲ-ପ୍ରଭାବ ଯୋଗୁ ଉତ୍ତର-ଭାରତରେ ଭାରତୀୟ ମୂଳ ସଂଗୀତର କେତେକ ପରିବର୍ତ୍ତନ ଘଟେ । ଦକ୍ଷିଣ-ଭାରତରେ ମଧ୍ୟ ଏହିପରି ସମୟରେ କେତେକ ବିଶିଷ୍ଟ ସଂଗୀତଜ୍ଞ ସଂଗୀତ-ପଦ୍ଧତିରେ ପରିବର୍ତ୍ତନ ଆଣିଲେ । ଫଳରେ ଭାରତୀୟ ସଂଗୀତ ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ପଦ୍ଧତି ନାମରେ ଦୁଇ ଖଣ୍ଡରେ ପ୍ରଚଳିତ ହେଲା ।

ଐତିହାସିକ ତଥା ଭୌଗୋଳିକ ପରିସ୍ଥିତି ଓଡ଼ିଶାକୁ ଏଭଳି ପରିବର୍ତ୍ତନଠାରୁ ଦୂରରେ ରଖିଲା । ତେଣୁ ଏହି ଯୁଗରେ ଯେଉଁ ଓଡ଼ିଶୀ ସଂଗୀତ-ଗ୍ରନ୍ଥମାନ ଲେଖା ଯାଇଅଛି, ତାହା କେବଳ ଭାରତୀୟ ମୂଳସଂଗୀତ ଗ୍ରନ୍ଥର ଅନୁସରଣ କରନ୍ତି । ଯେଉଁ ସାମାନ୍ୟ ପରିବର୍ତ୍ତନ ଦେଖାଯାଏ, ତାହା 'ପ୍ରବୃତ୍ତି'ଗତ ଅର୍ଥାତ୍ ଦେଶ, କାଳ, ରୁଚି ଓ ଭାଷା ଇତ୍ୟାଦି ଯୋଗୁ । ଏପରି ଘଟିବା ସ୍ୱାଭାବିକ । ଏ ଶୈଳୀ ଓଡ଼ିଶାର ସ୍ୱତନ୍ତ୍ରତା; ଏହା ହିଁ ଓଡ଼ିଶୀ ବୋଲାଏ—ଯେପରି ଓଡ଼ିଶୀ ରାଗ, ଓଡ଼ିଶୀ ରାନ୍ଧଣା, ଓଡ଼ିଶୀ ଶାଢ଼ୀ ···ଇତ୍ୟାଦି । କବିସୂର୍ଯ୍ୟଙ୍କ ଗୀତମାନ ଏହି ସ୍ୱତନ୍ତ୍ର ରୀତିର ପରିପୁଷ୍ଟକ ।

"× × × ଓଡ଼ିଶାର ଦକ୍ଷିଣାଞ୍ଚଳର ବ୍ୟକ୍ତି ଥିବାରୁ ଓ ଦକ୍ଷିଣ ଭାରତ ସହିତ ଓଡ଼ିଶାର ଦୀର୍ଘକାଳବ୍ୟାପି ସଂପର୍କ ଦୃଷ୍ଟିରୁ ଦକ୍ଷିଣୀ ବା କର୍ଣ୍ଣାଟକୀ ସଂଗୀତ ଓଡ଼ିଶାର ଗୀତକାରମାନଙ୍କୁ ଅକୃଷ୍ଟ କରିଥିବା ବିଚିତ୍ର ନୁହେଁ"—ଏକଥା ଓଡ଼ିଆ ଗୀତିକାବ୍ୟ ଲେଖକ ଲେଖିଛନ୍ତି । କବିସୂର୍ଯ୍ୟଙ୍କ ରଚିତ ଗୀତଗୁଡ଼ିକରେ ନିର୍ଦ୍ଦେଶିତ ରାଗ-ତାଳପ୍ରତି ଟିକିଏ ଦୃଷ୍ଟି ଦେଇଥିଲେ କିଂବା ସେ ଗୀତଗୁଡ଼ିକର ପରମ୍ପରା ଗାୟକୀ ଶୈଳୀପ୍ରତି କାନ ଡେରିଥିଲେ ବିଜ୍ଞ ଲେଖକ ଏପରି ଅବାସ୍ତବ ମନ୍ତବ୍ୟ ଦେଇଥାଆନ୍ତେ ବୋଲି ମନେ ହୁଏ ନାହିଁ ।

ଓଡ଼ିଶାରେ ଦକ୍ଷିଣୀ ନାଚପିଲା ଓ ଓଡ଼ିଶୀ ଗୋଟିପୁଅ ବା ଅଖଡ଼ା-ପିଲା ନାଚ ବୋଲି ଦୁଇଟି କଥା ଏବେ ସୁଦ୍ଧା ପ୍ରଚଳିତ ରହିଥିବା ଜଣାଶୁଣା କଥା । ସେହିପରି ଓଡ଼ିଶୀ ଗାଇଣା ଓ ଦକ୍ଷିଣୀ ଗାଇଣା ବୋଲି ଦୁଇଟି କଥା ମଧ୍ୟ ରହିଛି ।

"ଓଡ଼ିଶୀ ସଙ୍ଗୀତ ଆଳାପବିସ୍ତାର ଓ ଏହା ଶାସ୍ତ୍ରୀୟ ନିୟମ ଅଥବା ସ୍ୱରଲିପିରେ ଆବଦ୍ଧ ହୋଇପାରି ନାହିଁ । ଏହି ସ୍ୱରଲିପି ଅଭାବରୁ ଓଡ଼ିଶୀ ସଙ୍ଗୀତ ଭଙ୍ଗିସ୍ତାର ଅନୁକରଣ ଅଥବା କଣ୍ଠସ୍ଥ ହେବାରେ ପରିବର୍ତ୍ତିତ ହୋଇ ତାହାର ମୂଳରୂପ ବା ସ୍ୱରକୁ ବହୁ ପରିମାଣରେ ରକ୍ଷା କରିପାରିଅଛି ।"

ଓଡ଼ିଆ ଗୀତକାବ୍ୟ (୮୩ ପୃ)ର ଏହି ଲେଖାରେ ଆଳାପ-ବିସ୍ତାର × × × ସ୍ୱରଲିପି ଅଭାବରୁ······ମୂଳରୂପ ରକ୍ଷା···ଇତ୍ୟାଦି ଓଡ଼ିଶୀ ସଙ୍ଗୀତ ସମ୍ବନ୍ଧେ ବାଢ଼ିଥିବା ମନ୍ତବ୍ୟମାନ ପ୍ରଳାପ ନୁହେଁ କି ?

ସଙ୍ଗୀତକଳାରେ ପ୍ରବେଶ ନ ଥାଇ ଏହିପରି ଅନେକେ ମଧ୍ୟ କବିସୂର୍ଯ୍ୟଙ୍କ ସଙ୍ଗୀତ ଉପରେ ଟୀକା-ଟିପ୍ପଣୀମାନ ଦେଇଥାଆନ୍ତି ।

କବିସୂର୍ଯ୍ୟେ ଦକ୍ଷିଣ ଓଡ଼ିଶାବାସୀ; କିନ୍ତୁ ଉପାନ୍ତବାସୀ ହୋଇ ନ ଥିବାରୁ ତାଙ୍କ ସଙ୍ଗୀତରେ କର୍ଣ୍ଣାଟକ ବା ଅନ୍ଧ୍ର ପ୍ରଭାବ ପଡ଼ିପାରି ନାହିଁ ବରଂ ଏଭଳି ପ୍ରଭାବପାତ ଭକ୍ତକବି ଗୋପାଳକୃଷ୍ଣଙ୍କ ସଙ୍ଗୀତରେ ଦୃଷ୍ଟହୁଏ । ଏହାର କାରଣ ହେଉଛି ଯେ କବି ଓଡ଼ିଶାର ଏକାନ୍ତ ପ୍ରାନ୍ତବାସୀ ।

କବିସୂର୍ଯ୍ୟଙ୍କ ରଚନାରେ ମହାକବି ଜୟଦେବଙ୍କଭଳି ସଙ୍ଗୀତରେ ନିର୍ଦ୍ଦେଶିତ ରାଗ-ତାଳକୁ ଦୃଷ୍ଟି ଦେଲେ ସହଜରେ ସେଗୁଡ଼ିକୁ ଓଡ଼ିଶୀ ପଦ୍ଧତିର ବୋଲି ବୁଝାଯାଇପାରିବ । ଅଠତାଳି ଓ ନିଃସାରି ତାଳ ଓଡ଼ିଶା ଭିନ୍ନ ଅନ୍ୟତ୍ର ପ୍ରଚଳିତ ଥିବାର ଦୃଷ୍ଟ ହୁଏ ନାହିଁ, ବିଭିନ୍ନତାଳରେ କେବଳ ମାତ୍ରାସଂଖ୍ୟା ଗଣନା ଦିଗରୁ ସାମ୍ୟ ଥିଲେ ମଧ୍ୟ ତାଳର ଗତି, ପ୍ରସ୍ତର, ବିଭାଗ ଓ ପ୍ରାରମ୍ଭ ସୂଚ ଇତ୍ୟାଦି ଇତ୍ୟାଦି ବହୁ ଦିଗର ବାର୍ତ୍ତର ରହିଛି । ଓଡ଼ିଶୀ ଗୀତର ଅଠ(ଡ଼)ତାଳରେ ସେହିପରି ବିଶେଷତ୍ୱ ବା ସ୍ୱତନ୍ତ୍ରତା ଅଛି ।

ମହାକବି ଜୟଦେବ ସଂସ୍କୃତ ଭାଷାରେ ଗୀତ ରଚନା କରିଛନ୍ତି । ତାଙ୍କ ପରେ ଓଡ଼ିଶାର ବହୁ କବି-ସଂଗୀତଜ୍ଞ ତାଙ୍କର ଅନୁସରଣରେ ସଂସ୍କୃତ ଭାଷାରେ ମଧ୍ୟ ଗୀତ ରଚନା କରିଥିବାର ଦେଖାଯାଏ । ସେତେବେଳେ ଓଡ଼ିଶାରେ ସଂସ୍କୃତ ଭାଷାର ପ୍ରଚଳନ, ପ୍ରଭାବ ଓ ସମାଦର ଅଧିକ ଥିଲା ।

ତତ୍ପରେ ମହାରାଜା ବୀରକିଶୋର ଦେବଙ୍କ ରାଜତ୍ୱକାଳରେ କବି ବନମାଳୀ ଓଡ଼ିଆ ଭାଷାରେ ସଂଗୀତ ରଚନା କରିଛନ୍ତି । ବନମାଳୀଙ୍କ ରଚିତ ଗୀତମାନଙ୍କର ରାଗତାଳରେ କର୍ଣ୍ଣାଟକୀ ପଦ୍ଧତିର ସୂଚନା କାହିଁ ହେଲେ ଦେଖାଯିବ ନାହିଁ । ତାଙ୍କପରେ ଅମ ଜାତିକୁ 'ଛାନ୍ଦ' ପରିପିଲେ ଓଡ଼ିଶାର ଛାନ୍ଦକାରମାନେ ଏବଂ ବହୁ ଗୀତ-କବି ମଧ୍ୟ ଗୀତମାନ ରଚନା କଲେ । ଏଗୁଡ଼ିକ କି ରଚନା, କି ଗାୟନରୀତି—ଉଭୟ ଦିଗରୁ ଦେଖିବାକୁ ଗଲେ କହିବାକୁ ହେବ ଯେ ଏହା ଓଡ଼ିଶୀ ସଂଗୀତର ସ୍ୱତନ୍ତ୍ରତାବ୍ୟଞ୍ଜକ । ତେଣୁ ଓଡ଼ିଶୀ ସଂଗୀତରେ କର୍ଣ୍ଣାଟକୀ ପ୍ରଭାବପାତ ଘଟିଛି ବୋଲି କହିବା କେତେ ଦୂର ବସ୍ତୁନିଷ୍ଠର ପରିଚାୟକ, ତାହା ସହଜ-ଅନୁମେୟ ।

କବିସୂର୍ଯ୍ୟଙ୍କ ସଂଗୀତ ପଢ଼ିଲେ ବା ଶୁଣିଲେ ଶ୍ରୀ ଜୟଦେବ ଓ କବି ବନମାଳୀଙ୍କ ଗୀତଭାବ ଓ ରାଗତାଳ ଅଜାଣତରେ ମନକୁ ଅସିଯାଏ । ଓଡ଼ିଶା ସୀମାନ୍ତ କବିମାନଙ୍କ ରଚନାରେ କର୍ଣ୍ଣାଟକୀ ପ୍ରଭାବପାତ ଏକାନ୍ତ ଅସ୍ୱୀକାର କରିହେବ ନାହିଁ । ଦୁଇଟି ପ୍ରଦେଶ ବା ଦୁଇଟି ଅଞ୍ଚଳର ପ୍ରାନ୍ତବର୍ତ୍ତୀ ଜନବସତିମାନ ଉଭୟ ପ୍ରଦେଶର ଭାବ, ଭାଷା, ଚାଲିଚଳଣି ଏପରି କି ସାମାଜିକ ରୁଚି ଓ ଖାଦ୍ୟପେୟର ପ୍ରଭାବପାତରୁ ମୁକ୍ତିଲାଭ ସମ୍ଭବପର ନୁହେଁ, ଯେପରି ବଙ୍ଗ ବା ଛତିଶଗଡ଼ ସୀମାରେ ଅବସ୍ଥିତ ଓଡ଼ିଶାବାସୀଙ୍କର ଭାଷା, ବାଚନଶୈଳୀ, ଗୀତସ୍ୱର, ଚାଲିଚଳଣି, ଖିଆପିଆ ଏପରି କି କେତେକ ଓଷାବ୍ରତ ପାଳନାରେ ସୁଦ୍ଧା ମିଶ୍ରଣର ଚିହ୍ନ ପରିଲକ୍ଷିତ ହୁଏ; କିନ୍ତୁ ଏଥିପାଇଁ ସାରା ପ୍ରଦେଶ ଯେ ସେହି ପ୍ରଭାବରେ ନିୟନ୍ତ୍ରିତ, ଏ କଥା କହିବା ଆଦୌ ଯୁକ୍ତିଯୁକ୍ତ ନୁହେଁ ।

କବିସୂର୍ଯ୍ୟଙ୍କ ସଙ୍ଗୀତରେ ଜୟଦେବୀ ଯମକ, ଅନୁପ୍ରାସ, କାନ୍ତ-କୋମଳ ପଦାବଳୀ ଗୁମ୍ଫନରୀତି ଉଭରିଅଛି । ଦୀନକୃଷ୍ଣ, କବିସମ୍ରାଟ ଓ ସାମନ୍ତସିଂହାର ପ୍ରଭୃତି ଛାନ୍ଦକାରମାନେ କବିସୂର୍ଯ୍ୟଙ୍କୁ ନିଷ୍ଠିତଭାବରେ ପ୍ରଭାବିତ କରିଛନ୍ତି ।

ଭାବ, ରସ ଓ ଭାଷା-ବସ୍ତୁରରୁ କବିସୂର୍ଯ୍ୟଙ୍କ ରଚିତ ଅଧିକାଂଶ ସଂଗୀତ ବିଲମ୍ବିତ ଏବଂ ମଧ୍ୟଲୟରେ ଗେୟ ନହେବା ରସସଙ୍ଗରେ ବ୍ୟାଘାତ ଘଟିବା ସମ୍ଭାବନା । ଦ୍ରୁତଲୟ ଏବଂ ବହୁକମ୍ପିତ ସ୍ୱରରେ ଅଧିକାଂଶ ସଂଗୀତ କର୍ଣ୍ଣାଟକ ରୀତିରେ ପ୍ରଚଳିତ ।

ନାନା ଦିଗରୁ ବିଚାରକଲେ ଦେଖାଯାଏ ଯେ ଓଡ଼ିଶୀ ସଙ୍ଗୀତରେ କର୍ଣ୍ଣାଟକୀ ପ୍ରଭାବ ପାତ କଳ୍ପନା ସମ୍ଭବ ନୁହେଁ ବା ଠିକ ନୁହେଁ ବରଂ ସ୍ଥଳବିଶେଷରେ କର୍ଣ୍ଣାଟକୀ ଢଙ୍ଗରେ ଓଡ଼ିଶୀ ଗୀତ ଗାଇଲେ, ତାହା ଓଡ଼ିଆ ଜାତିକୁ ବାସ୍ତବରେ "ଅଗଣ୍ଡିଆ" ଲାଗେ କିଂବା ଗୀତଶିଳ୍ପୀ ଉପହାସ୍ୟ ହେବାର ଆଶଙ୍କା ଉପୁଜେ ।

କେତେ ଜଣ କହନ୍ତି, ଓଡ଼ିଶୀ ସଂଗୀତରେ ଆଳାପ (ଅନିବଦ୍ଧ ଅଂଶ) ଯୋଗ କଲେ ତାହା ଆଉ ଓଡ଼ିଶୀ ସଂଗୀତ ବୋଲାଇ ନ ପାରେ । ରାଗାଳାପ ରାଗପରିଚୟର ପ୍ରଥମ ଓ ପ୍ରଧାନଅଙ୍ଗ । ଏହା ଆମ ସଙ୍ଗୀତରେ ନିଶ୍ଚିତଭାବେ ପ୍ରଚଳିତ ଥିଲା । ଆମର ଅଯୋଗ୍ୟତା ବା ଅପାରଗତା କିଂବା ଦେଶ-କାଳର ପରିସ୍ଥିତି ଆମକୁ ସମସ୍ତ କଳା ଚର୍ଚ୍ଚାଠାରୁ କ୍ରମେ ଦୂରରେ ରଖି-ଦେଇଛି । ଆଜି ଯଦି ଆମର କୋଣାର୍କ ମନ୍ଦିର—ଭଗ୍ନଚୂଡ଼ ହେଉ-ଛନ୍ତି—ତାହାର ବିଶ୍ୱବିଖ୍ୟାତ ସ୍ଥାପତ୍ୟ-ସମ୍ପଦ ଯେବେ ଲୁପ୍ତହୋଇ ନ ଥାନ୍ତା, ତେବେ ଏ ଜାତିର କଳାସ୍ଥାପତ୍ୟର ଗୌରବ ହୁଏତ ଓଡ଼ିଶା ବାହାରେ କେତେଣେ ଥାଉ, ଅନେକ ଓଡ଼ିଶାବାସୀ ମଧ୍ୟ ଅସ୍ୱୀକାର କରନ୍ତେ । ଯେହେତୁ କୋଣାର୍କ ଶିଳ୍ପ ଅଙ୍କମଣି ଶିଳା କଳା-ମୂର୍ତ୍ତିରେ ଅକ୍ଷୟ-ଅଜର ହୋଇ ଆଖି ଆଗରେ ଦଣ୍ଡାୟମାନ, ସେହେତୁ ଏ ଜାତିର ସ୍ଥାପତ୍ୟକଳା, ଗୃହକଳା ଗୌରବ ଅବଶ୍ୟ ସ୍ୱୀକାର୍ଯ୍ୟ । ସଂଗୀତର ଦୁର୍ଭାଗ୍ୟ ଯେ ତାହାର ପ୍ରସ୍ତର ମୂର୍ତ୍ତି ଗଠନ ସମ୍ଭବପର ନୁହେଁ ଏବଂ ସ୍ୱରଲିପି ଲିଖନପ୍ରଥା ମଧ୍ୟ ପୂର୍ବେ କେଉଁଠାରେ ହେଲେ ପ୍ରଚଳିତ ନ ଥିଲା । ସ୍ୱରଲିପି-ଲିଖନରୀତି ତ ମୋହର ଜୀବନ-କାଳମଧ୍ୟରେ ପ୍ରବର୍ତ୍ତିତ ।

ସଂଗୀତର ଧାତୁ ବା ପ୍ରସ୍ତର ମୂର୍ତ୍ତି ନାହିଁ; କିନ୍ତୁ ଚିନ୍ତାଶୀଳ ମାନବ ଟିକିଏ ଗମ୍ଭୀର ଦୃଷ୍ଟି ଦେଇ ବିଚାର କଲେ ଆମ ମନ୍ଦିରମାନଙ୍କରେ ବିରାଜିତ ମୂର୍ତ୍ତିମାନଙ୍କମଧ୍ୟରେ ସଂଗୀତର ସ୍ୱର-ତାଳ ଛନ୍ଦର ଅଲଭ୍ୟ-ସଙ୍କେତ ଅବେକ୍ଷଣରେ ପାଇପାରିବେ । ନାଟ-ମନ୍ଦିରରେ ଲାସ୍ୟନାୟିକାମାନଙ୍କ ଭଙ୍ଗି ସଂଗୀତଶାସ୍ତ୍ରସମ୍ମତ, ଏଥିରେ ସନ୍ଦେହ ନାହିଁ । ଏଗୁଡ଼ିକ କେବଳ ନୃତ୍ତ ନୁହେଁ—ନୃତ୍ୟମୂର୍ତ୍ତି । ଏହା ହିଁ ଓଡ଼ିଶୀ ନୃତ୍ୟଭଙ୍ଗିର ସ୍ୱରୂପ । ମନେ ରଖିବାକୁ ହେବ ଯେ ଓଡ଼ିଶୀ ନୃତ୍ୟାଭିନୟଲାଗି ନୃତ୍ୟର ବାଚିକ ଅଂଶ ଅପରିହାର୍ଯ୍ୟ । ସେହି ବାଚିକ ଅଂଶ ହିଁ ଓଡ଼ିଶୀ ଗୀତ । ବାଦ୍ୟଭିନ୍ନ ନୃତ୍ୟ ପ୍ରଦର୍ଶିତ ହୋଇ ନ ପାରେ । ଭାବାଭିନୟଲାଗି ଗୀତ, ଗୀତଲାଗି ତାଳ, ତାଳଲାଗି ବାଦ୍ୟ

ଏବଂ ବାଦ୍ୟଛନ୍ଦରେ ନୃତ୍ୟ ପ୍ରଚଳିତ । ବୁଝି ହୁଏ ନାହିଁ -ଓଡ଼ିଶୀ ନୃତ୍ୟର ସ୍ୱତନ୍ତ୍ରତା ବା ବିଶେଷତ୍ୱ ସ୍ୱୀକାର କରୁଥିବାବେଳେ ଓଡ଼ିଶୀ ସଂଗୀତ ଓ ତାହାର ଉକୁଟ ଅନୁସାରୀ ବାଦ୍ୟର ଅସ୍ତିତ୍ୱ ସ୍ୱୀକାର କରିବାକୁ ଥୋଡେ କି ବିବେକରେ କୁଣ୍ଠିତ ? ଆମ ଓଡ଼ିଆ ଘରେ ଗୋଟିଏ ଢଗ ବା ପ୍ରଚଳନ ଅଛି । ଏ ସ୍ଥଳରେ ତାହା ମନେ ପଡ଼ିଯାଉଛି । ସେଇଟି ହେଲା, 'ଟେଟୁ ନିଗ-ମହିଁ, ଡଙ୍କା ଅଇଁଷ'; ପୁଣି କେହି ମଧ୍ୟ କେହି କହିଥାଆନ୍ତି—'ଡଙ୍କା ନିଗ—ମହିଁ, 'ନାଡ଼ ଅଇଁଷ' । କଥାଟା ଏହିପରି ସିନା ?

ଆଜି ମଧ୍ୟ ପାଲାବାଲା ବା ପ୍ରଜାବାଲା (ଗାଅଣଦଳ) ତାଙ୍କର ଗୀତ-ଗାୟନର ପ୍ରାରମ୍ଭରେ 'ଅଳାପ' କରନ୍ତି । ପରିସ୍ଥିତିହେତୁ ଅବଶ୍ୟ ତାହା ସ୍ୱରବିଧାନ ଦୃଷ୍ଟିରୁ ଅଶୁଦ୍ଧ ହୋଇପାରେ; କିନ୍ତୁ ତାହା 'ଅଳାପ' ବୋଲାଇ ଆସୁଛି । ଏଥିରୁ ସହଜରେ ଅନୁମାନ କରିହେବ ଯେ ଓଡ଼ିଶୀ ସଂଗୀତ ଆଳାପ (ତେନ) ବିହୀନ ନ ଥିଲା ବା ନୁହେଁ । କାଳଗତିରେ କର୍ପୂର ଉଡ଼ିଯାଇଥାଇପାରେ, ହେଲେ କନାରୁ ସୁବାସ ଏକାବେଳେକେ ତୁଟି ନାହିଁ ।

ଯେଉଁମାନେ ବାସ୍ତବରେ ଓଡ଼ିଶୀ ଗୀତ (ଓଡ଼ିଆ ଗୀତ ନୁହେଁ) ଶୁଣିବାର ସୁଯୋଗ ପାଇଥିବେ, ସେମାନେ ଓଡ଼ିଶୀ ଗୀତମଧ୍ୟରେ 'ସରଗମ' ବା ସ୍ୱର ଏବଂ ବାଦ୍ୟର ଉକୁଟ (ପାଟ) ଉଚ୍ଚାରଣସହିତ ଗାୟନ ମଧ୍ୟ ଶୁଣିଥିବେ । ଏହିପରି ସ୍ୱର ଏବଂ ଉକୁଟ ସହିତ ଅନେକ ଓଡ଼ିଶୀ ଗୀତ ରଚିତ ହୋଇଅଛି ବହୁ କାଳରୁ । ଏହା ହିଁ ସଂଗୀତଶାସ୍ତ୍ରକଥିତ ସ୍ୱର ଏବଂ ପାଟ । ପୁନଶ୍ଚ ଗୀତମଧ୍ୟରେ 'ପଡ଼ି'ସଂଯୋଗ-ରୀତି ମଧ୍ୟ ଓଡ଼ିଶୀ ସଂଗୀତରେ ବିଶେଷ ଲକ୍ଷଣୀୟ । କବିସୂର୍ଯ୍ୟଙ୍କ ସଂଗୀତ-ରଚନାରେ 'ପଡ଼ି' ସଂଯୋଗ ଦୃଷ୍ଟ ହୁଏ ।

ଓଡ଼ିଆ ଭାଷା ବା ଓଡ଼ିଆ କଥା ଯେନ ଓଡ଼ିଶୀ ସଂଗୀତ ରଚିତ । ଓଡ଼ିଆ କଥା-ପ୍ରକାଶର ଯେପରି ସ୍ୱତନ୍ତ୍ରତା ଅଛି ବୋଲି 'କାନ ଥିବା ଲୋକେ' ଅବଶ୍ୟ ସ୍ୱୀକାର କରିବେ, ଓଡ଼ିଶୀ ଗୀତ ପରିବେଷଣରେ ଓଡ଼ିଆ କଥାକୁହା ଢଙ୍ଗକୁ ଅନାଇଁ ସେହିପରି ସ୍ୱରସଂଗ୍ରହର ସ୍ୱତନ୍ତ୍ରତା ସେମାନେ ବାରିପାରିବେ । ଏହା ତ ଲେଖାରେ ପ୍ରକାଶ କରିବା ସମ୍ଭବ ନୁହେଁ କେବଳ କାନ-ମନ ଏହାକୁ ସହଜରେ ବାଛିନେବ; କାରଣ,

ସଂଗୀତ ଗୁରୁମୁଖୀ ବିଦ୍ୟା । ସ୍ୱରଲିପି—ନାଯୂଙ୍କୀ ଶିକ୍ଷା; ଗାଯୂଙ୍କୀ ଶିକ୍ଷା କେବଳ ସୁଯୋଗ୍ୟ ଗୁରୁଙ୍କଠାରୁ ଲଭ୍ୟ ।

ଓଡ଼ିଆ ପ୍ରାଣରେ ଓଡ଼ିଶୀ ମନର ଭାଷା ଓ ଓଡ଼ିଶୀ ଗୀତ ବା ପ୍ରବୃତ୍ତିର ପରିବେଷଣ ଚିରସ୍ଥାୟୀ ବାସ ବାନ୍ଧି ରହେ, ରହିଛି, ରହିଥିବ । ତେଣୁ କବିସୂର୍ଯ୍ୟଙ୍କ ରଚିତ ସଂଗୀତ ଓଡ଼ିଆର ଅପାଶୋରି ।

କି ଭାଷା, କିବା ସ୍ୱରପ୍ରକାଶ—ତାହାରିସହିତ ମେଳ ନ ଥିବା ସ୍ଥଳରେ କେବଳ ପଡ଼ୋଶୀ ବୋଲି ଓଡ଼ିଶୀ ସଂଗୀତ କର୍ଣ୍ଣାଟ ସଂଗୀତର ସ୍ଥଳିତଳେ କ୍ଷୁଧାଇବହିଛି—ଏ ହାସ୍ୟାସ୍ପଦ ଯୁକ୍ତି ବିଜ୍ଞବିବେକୀ ସ୍ୱୀକାର କରିବେ ତ ?

ରଚନା

କବିସୂର୍ଯ୍ୟଙ୍କ ସଂଗୀତମଧ୍ୟରେ କେତେକ ଯାବନିକ ଶବ୍ଦର ଚତୁର ପ୍ରୟୋଗ ଲକ୍ଷ୍ୟ କରାଯାଏ । କାଳପ୍ରଭାବରୁ ଏପରି ଘଟିଅଛି; କିନ୍ତୁ ଏ କଥା ବିଚାର କରିବାକୁ ହେବ ଯେ, ଯେପରି ସ୍ଥଳରେ ଯେଉଁ ଯାବନିକ ଶବ୍ଦଟିମାନ କବିସୂର୍ଯ୍ୟ ଖଞ୍ଜିଦେଇଯାଇଛନ୍ତି, ତାହାର ପ୍ରତିବଦଳରେ ସେହିପରି ମଧୁର, ରୁଚିକର, ଏବଂ ତତ୍ତ୍ୱଭାବସିଦ୍ଧ ପଦ-ଯୋଜନା ସହଜସମ୍ଭବ ହେବା ଦୂରେଥାଉ ବରଂ ଅସମ୍ଭବ ବୋଲି ମନେ ହୁଏ ।

ଯେପରି—'ଗୋଡ଼ ଖସି ଖେଦ, ହେବାର ଦରଦ ଯିବାର ଉପାୟ କହ'—ଏଠାରେ ବଟ୍ଟେଦ ଶବ୍ଦର ପ୍ରତିବଦଳରେ ସେହିପରି ତିନିଗୋଟି ଅକ୍ଷରବିଶିଷ୍ଟ 'ଖେଦ' ଶବ୍ଦସହିତ 'ଦରଦ' ଶବ୍ଦର 'ଦ—ଦ' ଅକ୍ଷର-ସାମ୍ୟର ସାଂଗୀତିକ ମାଧୁରୀ, ସଙ୍ଗୀତିକ ଏବଂ 'ଦରଦ' ଶବ୍ଦର ଭାବାର୍ଥ ବା ଗୂଢ଼ ଅଭିପ୍ରାୟବ୍ୟଞ୍ଜକ ଆଉ ଗୋଟିଏ ଶବ୍ଦ ଖଞ୍ଜିବା ସମ୍ଭବପର ମନେ ହୁଏ ନାହିଁ । ଏହିପରି ବହୁ ଉଦାହରଣ ଉପସ୍ଥାପିତ କରାଯାଇ ପାରେ । କେତୋଟି ମାତ୍ର ଦେଖନ୍ତୁ—

"ମରଜିକି ଗୃହି ତୋର କିଣ୍ଡେ ନାହିଁ କଲି ଟି" (ପ୍ରେମୋଦପ୍ରରମ୍ଭ
"ନାଦାଚ ହୁଏ ଜଗଦେବ ଚେତନା ।" (ଗୀତ ୧୭୩)
ପଦମାଧୁରୀର ଫଟମୋସୁ ଥିବୁ ମୋଠାରୁ ବରଜ ବ୍ରୀଡ଼ା(ଗୀତ୨୨୩)

"ଇଚ୍ଛା ମ୍ଲାପଙ୍କେ ତୋ ବଚଣା ବନାଇଦ ଅଇବ ହୋଇ ଛୁଡ଼ା ଟେ"
"ବିଚ ମକରନ୍ଦ ବଳ ପଡ଼ିଲଣି କି ସମ୍ମୁଖା ଭକ୍ତୁ ମୋତେ ?"
(ଗୀତ ୩୨୪)

"ସ୍ତନ ତରୁଆର ଧାରରେ ଶରୀର ଥରେ ନୋହୁଥିଲେ ହାଣି"
(ଗୀତ ୩୨୪)

"ଖମଣି ଜେମା ବନ ଶିଖରୀ ଅଟନ୍ତେ" (ଗୀତ ୩୨୭)
ଜବାବ ନ ଦେଇ ଯୋଡ଼କର ହୋଇ ସେ ଦଣ୍ଡ ସହିବ ସବୁ ରେ
…(ମଞ୍ଜୁଳା ଚଉତିଶା) ଇତ୍ୟାଦ ଇତ୍ୟାଦ

କଠିନ ଶବ୍ଦ ବା ଯୁକ୍ତବର୍ଣ୍ଣ ରଚିତ ଶବ୍ଦ ଯେ କବିସୂର୍ଯ୍ୟଙ୍କ ରଚନାରେ ନାହିଁ, ସେ କଥା ନୁହେଁ; କିନ୍ତୁ ପାଠ ବା ଅବୃତ୍ତି-କାଳରେ ତାହା ଯେପରି ଅପାତତଃ କଠିନ ମନେ ହୁଏ, ଗାୟନକାଳରେ ସେଗୁଡ଼ିକ ସେହିପରି ସୁଖପ୍ରଦ—କର୍ଣ୍ଣ ପ୍ରୀତିକର ମଧ୍ୟ ।

ଅତି ସରଳ ଗ୍ରାମ୍ୟ ଶବ୍ଦ ନିପୁଣଭାବେ ଗୁନ୍ଥିବାରେ କବିସୂର୍ଯ୍ୟଙ୍କ ସମକକ୍ଷ କବି ସଂଗୀତଜ୍ଞ ଅତି ଦୁର୍ଲ୍ଲଭ । ଶବ୍ଦଯୋଜନା ସମ୍ବନ୍ଧେ ତାଙ୍କୁ ଯାଦୁକର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଶବ୍ଦଗୁମ୍ଫନ-ସମ୍ବନ୍ଧେ ଆଲୋଚନାଲାଗି ଏକ ସ୍ୱତନ୍ତ୍ର ଅବକାଶ ଲୋଡ଼ା ।

ପ୍ରାଣର ଅତି ଅନୁଭବ କଥା—ଲୋକ ଅନ୍ତର କୋଣର ଓଢ଼ଣା-ତଳ ଭାବ ପ୍ରକାଶ କରିବାରେ କବିସୂର୍ଯ୍ୟଙ୍କ କୃତିତ୍ୱ ସର୍ବଥା ବନ୍ଦନୀୟ, ସ୍ମରଣୀୟ । ଏହି ଅନୁଭବକୁ ଲଳିତ ଭାଷା, ଭାବାନୁସାରୀ ସ୍ୱର ଏବଂ ଓଡ଼ିଆ ଜୀବନର ଅତି ପ୍ରିୟ ଯମକ, ଅନୁପ୍ରାସ ଇତ୍ୟାଦି ବନ୍ଧକରେ ବାନ୍ଧି କବି-ସୂର୍ଯ୍ୟ ଓଡ଼ିଶାର ପୁରପଲ୍ଲୀରେ ନିତ ନୂଆ । କବିସୂର୍ଯ୍ୟ ସଂସ୍କୃତଜ୍ଞ ପଣ୍ଡିତ । କେତୋଟି ମାତ୍ର ଗୀତରେ (ଗଣିତରେ ଶତକଡ଼ା ବୋଧ ହୁଏ ଦୁଇ ବା ତିନି ହେବ କି ନାହିଁ) ତାଙ୍କର ସଂସ୍କୃତ ପଣ୍ଡିତପଣିଆ ସ୍ୱତଃ ଉକୁଟିଉଠିଛି । ଏହିଭଳି ଗୋଟି କେତେ ଶବ୍ଦ ଗୀତମଧ୍ୟରେ ସେଠାଏଠାଏ ଗୁନ୍ଥିଛନ୍ତି, ଯାହା ହୁଏତ ସଂଗୀତର ଅସହଣି । ସଂଗୀତ ଭାରି ସୁକୁମାରିଆ । କଠୋର କଠିନ ତଳପ-ପହୁଡ଼ ତା'ର ଦେହକୁ ସୁହାଏ ନାହିଁ । ଏ କଥାଟି ଗଣ୍ଠିଧନ କରିଥିଲେ ବୋଲି ମଧୁର-କୋମଳ-କାନ୍ତ ପଦାବଳୀ ଗୁନ୍ଥି ଆମ ମହାକବି ଜୟଦେବ ଚକାଡ଼ିଦର୍ଶନାର୍ଥୀ ଭକ୍ତଙ୍କ ଅଗୋଚରରେ ଶ୍ରୀମନ୍ଦିରର 'ଗର୍ଭଗୃହ" ଭସାଇ-ଦେଇ ପାରିଥିଲେ । ଯମକ ଓ ଅନୁପ୍ରାସ ଅର୍ଗଳୀଭୂତରେ କେବେଳେ କେବେଳେ

ଗୀତ ରଚିବାକୁ ଯାଇ ଠାଏଠାଏ ଏପରି ଭାଷା-ବିଚାରିତ ଶବ୍ଦକେତୋଟି
କବିସୂର୍ଯ୍ୟଙ୍କ ଗୀତମଧ୍ୟରେ ରହିଯାଇଛନ୍ତି । ହେଲେ 'ଦୂଷଣ ଯେଉଁଠି—ଗୁଣ
ସେଇଠି' ବୋଲି କଥାଏ ଆମର ଶୁଣାଯାଇଥାଏ ତ । କେଉଁଠି କେମିତି,
ଜାଣି ଅବା ନ ଜାଣି, କି ଅବସ୍ଥାରେ ବା କି ଅସୁବିଧାଯେନ ହୁଏତ କଠିଣ
ଶବ୍ଦ ଗୋଟାଏ-ଅଧେ ରହିଯାଇଛି ବୋଲି, ସେହି କଥାକୁ ଧରି କବିଙ୍କ
ସମ୍ବନ୍ଧେ ମନ୍ତବ୍ୟ ଚୂଡ଼ାନ୍ତ କରିଦେବା ଗବେଷକପକ୍ଷେ ସୁନ୍ଦର ଦିଶିବ ନାହିଁ ।
ଗୋଟିଏ କଥା ମନକୁ ଆସେ—ଏଠାରେ ତା ନ କହି ରହିପାରୁ ନାହିଁ ।
କବିସୂର୍ଯ୍ୟ ଜୟଦେବଙ୍କ ପଦାଙ୍କ ଅନୁସରଣ କରିଛନ୍ତି ରସ-
ରଚନାରେ; ମାତ୍ର ଜୟଦେବଙ୍କ ରଚନାରେ ପ୍ରେମୋତ୍ସବ ରହିଛି ।
କବିସୂର୍ଯ୍ୟ ଅନେକ ସ୍ଥଳରେ ମଦନ-ମହୋତ୍ସବର ସାଥୀ ହୋଇ-
ପଡ଼ିଥିଲାପରି ଲାଗେ । ଜୟଦେବଙ୍କ ରଚନା ସଂସ୍କୃତରେ—କବିସୂର୍ଯ୍ୟ
ଲେଖିଥିଲେ ପ୍ରାକୃତରେ । ତେଣୁ ଜୟଦେବଙ୍କୁ ବୁଝିବା ସାଧାରଣ-
ପକ୍ଷେ କଠିନ, କବିସୂର୍ଯ୍ୟଙ୍କୁ ବୁଝିବାଟା ହେଲା ସହଜ । ଜୟଦେବଙ୍କ ନାୟକ-
ନାୟିକା କେବଳ ରାଧାଗୋବିନ୍ଦ; କବିସୂର୍ଯ୍ୟ କିନ୍ତୁ ସ୍ଥଳବିଶେଷରେ
ସାଧାରଣ ପ୍ରାକୃତ ନାୟକ-ନାୟିକାଙ୍କୁ ଘେନି ସଙ୍ଗୀତ ଲେଖିଛନ୍ତି ।
ରାଧାକୃଷ୍ଣ କେଳିବର୍ଣ୍ଣନାରେ କବିସୂର୍ଯ୍ୟ ଜୟଦେବଙ୍କ ଗୁରୁ କରିଛନ୍ତି—
ଏ କଥାର କେତେ ପ୍ରମାଣ ତ ଉପସ୍ଥାପିତ କରାଯାଇପାରିବ । ତହିଁରୁ
ସାଧାନ୍ୟ ମାତ୍ର ଉଦାହରଣ ବାଢ଼ୁଛି—

କୁଞ୍ଜଭଙ୍ଗପରେ ଶ୍ରୀଗୀତଗୋବିନ୍ଦର ଦ୍ୱାଦଶ ସର୍ଗରେ ଶ୍ରୀମତୀ କହୁଛନ୍ତି:—
"କୁରୁ ଯଦୁନନ୍ଦନ ଚନ୍ଦନ ଶିଶିରତରେଣ କରେଣ ପୟୋଧରେ
ମୃଗମଦପତ୍ରକମତ୍ର ମନୋଭବ-ମଙ୍ଗଳ-କଳସ-ସହୋଦରେ
ନିଜଗାଦ ସା ଯଦୁନନ୍ଦନେ କ୍ରୀଡ଼ତି ହୃଦୟାନନ୍ଦନେ ।୧।

× × × ×

ମୃଗମଦରସ-ବଳିତଂ ଲଳିତଂ କୁରୁ ତିଳକମଳିକ ରଜନୀକରେ ।
ବିହିତକଳଙ୍କକଳଂ କମଲାନନ ବିଶ୍ରମିତଶ୍ରମଶୀକରେ ।।"

କବିସୂର୍ଯ୍ୟ ୨୪ ସେହିପରି କୁଞ୍ଜମିଳନପରେ କହିଲେ—
ଲାଜାନିଧି ହେ, ଲାଜେ ମୁଁ ଗଲିଟି ସରି
"ଲୁଚାଇଛ କାହିଁ ଶ୍ୟାମ ହେ, ଦିଅ ମୋ ଲାଗି ଶାଢ଼ୀ ।।୧।।

× × × ×

ଲିଭିଥିବ ଭୂରୁ ମଧ୍ୟ ତିଳକ
ଲେଖିଦିଅ ବେଗେ ନ ଦେଖୁ ଲୋକ ।।"...ଇତ୍ୟାଦି ।
ସମାନ ଭାବ—ସମାନ ରସର ଏ ଲେଖା ।

ଏହି ଅବକାଶରେ ଅନ୍ୟ ଗୋଟିଏ କଥା—ନାୟିକା ମଥାରେ ଚନ୍ଦନ ବା କସ୍ତୁରୀର ଗାର ବା ଟୋପିକୁ 'ତିଳକ'ରୂପେ ବର୍ଣ୍ଣନା କରି ଏକାଧିକ ସ୍ଥଳରେ ଲେଖିଛନ୍ତି କବିସୂର୍ଯ୍ୟ । ମହାକବି ଶ୍ରୀ ଜୟଦେବ ମଧ୍ୟ ଏହିପରି—"ମୃଗମଦ-ତିଳକଂ, ଲିଖିତ ସପୁଲକଂ ମୃଗମିବ ରଜନୀକରେ", ଲେଖିଛନ୍ତି ୭ମ ସର୍ଗ ଶ୍ରୀଗୀତଗୋବିନ୍ଦରେ । ସାଧାରଣତଃ ତିଳକ ପୁରୁଷ ବା ନାୟକଙ୍କ ବିଶେଷ ପ୍ରସାଧନ କ୍ଷେତ୍ରରେ ବ୍ୟବହୃତ ହେବାର ଦେଖାଯାଏ, ଯେପରି "କସ୍ତୁରୀ ତିଳକଂ ଲଲାଟପଟଳେ"—ଶ୍ରୀକୃଷ୍ଣଙ୍କ ରୂପବର୍ଣ୍ଣନାରେ ଉପଯୋଗ କରାଯାଇଅଛି । ଏଠାରେ ଲିଖିତ ତିଳକ—ସାଧାରଣ ମୃତ୍ତିକା-ତିଳକ ନୁହେଁ,—ଏହା କସ୍ତୁରୀତିଳକ । ଏହିପରି ନାୟିକା ମଥାରେ ତିଳକ ଦେବାର ବର୍ଣ୍ଣନା ଉତ୍କଳୀୟ ପ୍ରଥିତଯଶା କବି ପଣ୍ଡିତ କବିରାଜ ବିଶ୍ୱନାଥ 'ସାହିତ୍ୟ-ଦର୍ପଣ'ରେ ଲେଖିଛନ୍ତି—

"ସ୍ୱାମିନ୍ ଭଂଗୁରୟାଳକଂ ସତିଳକଂ ଭାଲଂ ବିଳାସିନ୍ କୁରୁ
ପ୍ରାଣେଶ ତ୍ରୁଟିତଂ ପୟୋଧରତଟେ ହାରଂ ପୁନର୍ଯୋଜୟ ।
ଇତ୍ୟୁଂ ସା ସୁରତାବସାନସମୟେ ସମ୍ପୂର୍ଣ୍ଣଚନ୍ଦ୍ରାନନା
ସ୍ପୃଷ୍ଟା ତେନ ତଥୈବ ଜାତ ପୁଲକାପ୍ରାପ୍ତଂ ପୁନର୍ମୋହନମ୍ ।।"
(ସାଃଦଃ ପୃ ୭୫—ଅକାନ୍ତ ନାୟିକା)

ମନେ ହୁଏ, ନାୟିକା ମଥାରେ ଟୋପା, ଟିପା ବା ଗାର ଅର୍ଥରେ ଏହି 'ତିଳକ' ବୋଲି କୁହାଯାଇଥିବା କଥାଟା ଓଡ଼ିଆ ଘରର କାରବାର । ଏ ତିଳକରଚନା ପୁଣି 'ଲାଟିରେ' ବଢ଼ୁଥିଲା । ସେଥିପାଇଁ କବିସୂର୍ଯ୍ୟ ନାଗର ଶ୍ରୀକୃଷ୍ଣଙ୍କ କଥାରେ ଲେଖିଛନ୍ତି—

"କେଉଁ କାରଣୁ ମୁଁ ତୋ ସେବାକୁ ଗୋ
ମୋ ଠାରେ ଅବଧାନ ହେବାକୁ ଗୋ ।।୦।।
ତୋ' ଗୁରୁ ମୁଖ ମାଟି—ଦେବା ତିଳକ ଲାଟି
ଭାଲଇଁ ଭାଲେ ନ ଦେଖିବାକୁ ଗୋ,

ଲାଗଇ ମନେ ଦୁଃଖ            ଦେଖି ରତ୍ନ ସମ୍ପୁଟ—
ଦଳିବା ଫଳ ଛପିଯିବାକୁ ଗୋ ॥”

× × × ×

କବି ବନମାଳୀ ଲେଖିଛନ୍ତି—

‘ଶ୍ରୀମତୀ ସରାଗ ତୋ ମୁଖେ ନାହିଁ
ପରାଗ ମୁଝିଲା ପଙ୍କଜପରାଏ ଦିଶୁଅଛୁ କାହିଁପାଇଁ ? ॥୦॥
ନିନ୍ଦୁ ଶ୍ୟାମଘନ ଶୋଭାକୁ ତୁ କପାଁ, ପିନ୍ଧଅଛୁ ନୀଳଚେଳ
ଗୃହୁ ମୃଗମଦତିଳକ ଲାବଣ୍ୟ ନଷିଲେ ହୋଇଛୁ ମେଳ ॥”

× × × ×

ଅମ ସାମନ୍ତସିଂହାରେ ପୁଣି ଲେଖିଛନ୍ତି—
“ତିଳକ ଚନ୍ଦନପାନ୍ତି—କି ବର୍ଣ୍ଣିବ କୋଟି ପାଟି
ଶ୍ରୀମୁଖ ଲାବଣ୍ୟ ସିନ୍ଧୁ, ଜଳନେ ବାନ୍ଧ
ବନାଇଁ ରଜତ ତଟୀ—ଯେପଣି ତିଳକ ଛର
ଥଳ ନ ପାଇ ଲାଜରେ ବୁଡ଼ିଲା ସେହୁ
ଅଧୋମୁଖେ ତଟୀ ଭାସୁଛି
ତାର ଶିର ଟୋପର ସିନ୍ଦୁର ମଣ୍ଡୁଛି ।      (ବାଃଚାଃ ୩୦।୨୭)

ମହାକବି କାଳିଦାସେ ଏହିପରି ନାୟିକା-ରୂପବର୍ଣ୍ଣନାରେ ତିଳକ ଶବ୍ଦ ବ୍ୟବହାର କରିଅଛନ୍ତି । କାଳିଦାସେ ଓଡ଼ିଶା ମାଟିର କବି ହୁଅନ୍ତୁ ଅବା ନ ହୁଅନ୍ତୁ, ସେ ଆଲୋଚନା ମୁଁ ଏଠାରେ ବାଢ଼ବସୁ ନାହିଁ । କିନ୍ତୁ ‘ମେଘଦୂତ’ର ମହାକବି ‘ରାମଗିର୍ଯ୍ୟାଶ୍ରମେଷୁ’ ଏଇ ଓଡ଼ିଶାର ଜୟପୁର ନିକଟ ‘ରାମଗିରି’ ପର୍ବତତଳେ ପ୍ରାବୃଟ-ପ୍ରକୃତିର ଶୋଭା ହେରି ଆତ୍ମହରା ହୋଇ ଲେଖିଛନ୍ତି—ଏ କଥା ବିଶ୍ୱାସ କରିବା ଅସଂଗତ, ମନେ ହୁଏ ନାହିଁ । ନନ୍ଦପୁରରେ ‘ବତିଶ ସିଂହାସନ’ର ଭଗ୍ନାବଶେଷ ଏବେ-ସୁଦ୍ଧା ମହାରାଜ ବିକ୍ରମାଦିତ୍ୟଙ୍କ ବତିଶ ସିଂହାସନ ମୂର୍ତ୍ତି ଦେଖାଇଦିଏ । ଜୟପୁର (କୋରାପୁଟ)ରେ ଏବେ ସୁଦ୍ଧା ଲୋକମୁଖରେ ଯୁଗଯୁଗାନ୍ତରର ସେହି ଅପୂର୍ବ ସ୍ମୃତିକଥନ ଶୁଣାଯାଏ ।

କେଉଁଠି ଏହିପରି :—

ତଦାନୀନ୍ତନ ନନ୍ଦପୁର ରାଜାଙ୍କର ଏକ କନ୍ୟା ଥିଲେ । ସେ ପରମାରୂପବତୀ । ମହାରାଜ ବିକ୍ରମାଦିତ୍ୟ ତାଙ୍କର ପାଣିଗ୍ରହଣ ଅଭିଳାଷୀ ହେଲେ । ପ୍ରତିବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ମହାରାଜ ବିକ୍ରମାଦିତ୍ୟ କେତେକ ମାସ (ଚାତୁର୍ମାସ୍ୟ) ନନ୍ଦପୁରଠାରେ ଅବସ୍ଥାନ କରିବେ—ଏହି ସର୍ତ୍ତରେ ବିବାହ ସିଦ୍ଧ ହେଲା । ତେଣୁ ବତିଶ ସିଂହାସନ ନିର୍ମିତ ହୋଇଥିଲା ନନ୍ଦପୁର ରାଜ୍ୟରେ । ମହାରାଜା ଏଠାରେ ଅବସ୍ଥାନ କରୁଥିବା-ବେଳେ ତାଙ୍କ ରାଜସଭାର ନବରତ୍ନ ମଧ୍ୟ ଗହଣରେ ଆସିଥିବା ସ୍ୱାଭାବିକ । ମହାକବି କାଳିଦାସ ନବରତ୍ନଙ୍କମଧ୍ୟରୁ ଅନ୍ୟତମ । ତେଣୁ ସେଠାରେ ଅବସ୍ଥାନକାଳରେ ରାମଗିରିର ଶୋଭା ମହାକବିଙ୍କୁ ମୁଗ୍ଧ କରିଥିବା ସ୍ୱାଭାବିକ । ଏହି ରାମଗିରିର ଶିଖର ଦେଶରେ ବର୍ଷନ୍ତ ମେଘମାଳାର ବିଚିତ୍ର ଲୀଳାଖେଳା ସଂଦର୍ଶନର ଫଳସ୍ୱରୂପ ରଚିତ ଖ୍ୟାତ 'ମେଘଦୂତ' ଗ୍ରନ୍ଥ । ଭାରତବର୍ଷରେ 'ରାମଟେକ' ପର୍ବତ ଅନ୍ୟତ୍ର ଅଛି—ରାମଗିରି କିନ୍ତୁ କେବଳ ଓଡ଼ିଶାରେ । ତେଣୁ ଓଡ଼ିଆ କୃଷ୍ଟି ମହାକବିଙ୍କୁ ଛୁଇଁ ନ ଥିବାଟା ଅସମ୍ଭବ ବିଚାରିବା କାହିଁକି ?

ମହାକବି ନାୟିକାମାନଙ୍କରେ ତିଳକ ବର୍ଣ୍ଣନା କରିଛନ୍ତି—ଏହା ନାୟକର ନୁହେଁ ।

'ଲଲାଟିକା ଚନ୍ଦନଧୂସରାଳକା'—କୁମାର ସମ୍ଭବ, ୫ମ ସର୍ଗ

'ସିନ୍ଦୂରବିନ୍ଦୁ ତିଳକଂ ଲଲାଟେ'—ଇନ୍ଦୁମତୀ ସ୍ୱୟଂବର—ରଘୁବଂଶ

'ଅଥାଙ୍ଗୁଲିଭ୍ୟାଂ ହରିତାଲମାର୍ଦ୍ରଂ, ମାଙ୍ଗଲ୍ୟମାଦାୟ ମନଃଶିଳାଞ୍ଚ ।
କର୍ଣ୍ଣାବସକ୍ତାମଳଦନ୍ତପତ୍ରମାପତ୍ରଦ୍ଧୀୟଂ ମୁଖମୂନ୍ନମଯ୍ୟ ?—॥୨୩॥

ଉମାସ୍ତନୋଦ୍‌ଭେଦମନୁପ୍ରବୃଦ୍ଧୋ—ମନୋରଥୋ ଯଃ ପ୍ରଥମଂ ବଭୂବ ।
ତମେବ ମେନାଦୁହିତୁଃ କଥଞ୍ଚିଦ୍‌ବିବାହ ଦୀକ୍ଷାତିଳକଶ୍ଚକାର ॥୨୪॥
[କୁମାରସମ୍ଭବ—୭ମ ସର୍ଗ]

ମାଘ କାବ୍ୟରେ ଏହି ତିଳକ ଶବ୍ଦର ବ୍ୟବହାର ରହିଛି; କିନ୍ତୁ ନାୟିକାର ପ୍ରସାଧନରୂପେ ନୁହେଁ; ଯଥା—

ବିଶେଷକୋ ବା ବିଶିଶେଷ ଯସ୍ୟାଃ
ଶ୍ରିୟଂ ତ୍ରିଲୋକ୍ୟା ତିଲକଃ ସ ଏବ । [ମାଘ ୩।୬୩]

'ରଘୁ' କାବ୍ୟରେ କୁହାଯାଇଅଛି :—

ନ ଖଲୁ ଶୋଭୟତିସ୍ମ ବନସ୍ଥଲୀଂ
ନ ତିଲକସ୍ତିଲକଃ ପ୍ରମଦାମିବ । [ରଘୁ ୯।୪୧]

ଏ ସ୍ଥଳରେ 'ତିଲକ' ଶବ୍ଦ ପ୍ରୟୋଗ ରମଣୀୟତେ ବୋଲି ଲକ୍ଷଣୀୟ ।

କବିସୂର୍ଯ୍ୟ ଏହି କବିକୁଳର ପରମ୍ପରାର କାସ୍ତାପର ଅନୁସରଣ କରିଛନ୍ତି ରସ, ରୀତ, ତାଳ, ଭାଷା ଓ ଲାଳିତ୍ୟ ମାଧୁର୍ଯ୍ୟ ଘେନି ।

ସ୍ଥୂଳତଃ କହିବାକୁ ହେବ, ତାଙ୍କ ସଂଗୀତ ରଚନାର ଶବ୍ଦ-ଗୁମ୍ଫନରେ ବାଧାବନ୍ଧନ ନାହିଁ—ସାଧ୍ୟସାଧନା ନାହିଁ—କୃତ୍ରିକସରତ୍ ନାହିଁ । ଏହା ଅବାଧ ନିର୍ମଳନିର୍ଝର । ପାଠକ ପକ୍ଷରେ—ସରଳ ତରଳ ଅମୃତ ପାନୀୟ ଏବଂ ଶ୍ରୋତାକର୍ଣ୍ଣରେ ତାହା ନୀରବ ନିଶିଥର ହୃଦ୍‌ଗତ ବଂଶୀଧ୍ୱନି ।

## ଚଉତିଶା

ଚଉତିଶା ଅମର ଯୁଗ-ଯୁଗାନ୍ତରର ପୁରୁଣା ଗୀତ ବା ସଙ୍ଗୀତର ସ୍ୱତନ୍ତ୍ର ରଚନାରୀତି । ଗୁହାଳୀ (ଗୁଣାଳୀ—ଗୁଣ୍ଠଣାଳୀ)ର ସୃଷ୍ଟି କେବେ, ସେ କଥା, ମୁଁ ଏକା ନୁହେଁ—ବୋଧ ହୁଏ କେହି ହେଲେ କହିପାରିବେ କି ନାହିଁ, ସନ୍ଦେହ । ସେଇ ଗୁହାଳୀରେ 'ମାଟିବଂଶ ଅବଧାନେ' ଛେଳୁଲ ଗୁଣ୍ଠିଧର ଗୁଣ୍ଠିକୁ ଘୋଷାନ୍ତି :— କ-କ—କାଳିନ୍ଦୀ ତୀରେ ।

ଖ-ଖ—ଖଣ୍ଟିଲି ଧୀରେ ।......

ଯାହାକୁ ମଧ୍ୟ ଗୋଟାଏ ପ୍ରକାର ଚଉତିଶା ବୋଲି କହିଲେ ଚଳେ । ତା'ପରେ—

'କମଳ ଲୋଚନ ଶ୍ରୀହରି
କରେଣ ଶଙ୍ଖ-ଚକ୍ରଧାରୀ'...ଇତ୍ୟାଦି

ଏହା ମଧ୍ୟ ଏଇ ଦାଣ୍ଡ ଧରି ଲେଖା ।

ଚଉତିଶା ପଦ୍ୟ ବା କବିତା ଶ୍ରେଣୀରେ ଯିବ ନାହିଁ, ଏହାକୁ ସ୍ୱର କରି ଗାଇବାକୁ ପଡ଼େ । ତେଣୁ ଗୀତ ବୋଲି କହିବାକୁ ହେବ । ଏହି ଗୀତ ରଚନାରେ କିନ୍ତୁ ବିଶେଷତ୍ୱ ଅଛି, କ,ଖ,ଗ, ଘ ଇତ୍ୟାଦି ଅକ୍ଷର ନିୟମ କ୍ରମରେ ପ୍ରତିପାଦର ପ୍ରାରମ୍ଭିକ ଶବ୍ଦମାନ ଖଞ୍ଜାହୋଇ ଚଉତିଶା ରଚିତ ହେବାର ବିଧି ।

ଚଉତିଶାରେ ଗୃହି ପାଠ ପଢ଼ିଛି, ଭକ୍ତ ଗୁହାରି ଭଣିଛି, ରସିକ ରସ ପରଶିଛି,—ମୋଟ ଉପରେ ସୁଖୀ ଯେମିତି ମନଖୁସିରେ ଗୀତ ଗାଇ ସୁଖିଲା ଡାଳରେ ଫୁଲ ଫୁଟାଇଛି, ଦୁଃଖୀ ସେମିତି ଫଟା ବାସ-ବଉଳକୁ ଖର ନିଃଶ୍ୱାସରେ ମଉଳାଇ ଦେଇଛି ।

ଚଉତିଶା ସଂଗୀତ-ଶାସ୍ତ୍ରର ଅବୋଲକରା ନୁହେଁ । ବରଂ ଶାସ୍ତ୍ର ବିଧିକୁ ମାନିଛି ଆଉ ତା' ସହିତ ଓଡ଼ିଆ-ସୁଲଭ ସହିତ୍ୟ ଗୌରବକୁ ଯୋଖି ଦେଇଛି;—ବର୍ଣ୍ଣ ନିୟମରେ ଶବ୍ଦ ଯୋଟକର । ଚଉତିଶା ମଧ୍ୟ ପାଞ୍ଚାଳୀ ଶ୍ରେଣୀସ୍ଥ । ଗୋଟିଏ କଥା :—ସେ ସାଧାରଣ 'ଧ୍ରୁବା' ବା 'ଘୋଷା' ବିଧିବିଧାନକୁ ସହଜରେ ଅଡ଼େଇ ଦେଇ ସବୁବେଳେ, ସବୁମତେ, ସବୁ ସ୍ଥଳରେ ମନକଥାର ଅଦେଶ ମାନି ଆପଣା ସୁଖେ ଅଗେଇ ଗୃଲିଛି ।

ଚଉତିଶା,—ବଣମଲ୍ଲୀ । ସୁଖୀ, ଦୁଃଖୀ ସବୁରିପାଇଁ—ଅଯାଚିତ ଭାବରେ—ସବୁରି ଅଜାଣାରେ—ମଳୟକୁ ତା'ର ସୁବାସ-ପଶରା ଟେକି ଦିଏ ।

ଓଡ଼ିଆ-କବି ସଂଗୀତକାର ସଂପାଦ ରଖିଛି ସ୍ୱର-ସାହିତ୍ୟ-ରସ-ଭାବ ଇତ୍ୟାଦି ତା'ର ଚଉତିଶା ଗନ୍ତାଘରେ ।

କବିସୂର୍ଯ୍ୟ ଏକଥା ଠୁଲେ ହେଲେ ପାଶୋରି ନାହାନ୍ତି । ତାଙ୍କ ଚଉତିଶା ଗୁଡ଼ିକ, ଗାଇବା ଦୂରେ ଥାଉ, କେହି ରସିକ—ଗ୍ରାହକ ଖାଲି ପଢ଼ି ଦେଲେ, ଆପଣା-ଭୁଲା ହୋଇ, ସେଇ ସ୍ଥିତିରେ ତଲ୍ଲୀନ ହୋଇ, ଦଣ୍ଡେ ଅଧେ ହେଲେ ଥକ୍କା ମେଣ୍ଟାଇ ନେବେ । ମୂଳରୁ ଚୂଳଯାଏ, ମନର ଟିକିନିଖି ସବୁ କଥା ବଖାଣିବାର ସୁଯୋଗ, ସୁବିଧା ଦିଏ ଏଇ ଚଉତିଶା । କବିସୂର୍ଯ୍ୟ ତେଣୁ ତା'ର ଆଶ୍ରୟ ନେବାକୁ ମଙ୍ଗୁଆ ହୋଇନାହାନ୍ତି ।

ବିବସ୍ତ୍ରୀ ଚଉତିଶା, ମଞ୍ଜୁଳା ଚଉତିଶା, ମୋହନା ଚଉତିଶା, ସଖୀ ଚଉତିଶା ପ୍ରଭୃତି କେତେକ ରସଭରା ଚଉତିଶା ଓ କବିସୂର୍ଯ୍ୟ ତାଙ୍କ ଗୁଣଗ୍ରାହକ, ପୃଷ୍ଠପୋଷକଙ୍କ ନାମରେ ଭଣିତାକରି ରଚନା କରିଛନ୍ତି । ତା'ବାହାରେ କିନ୍ତୁ ଅପଣା ମନକଥାପିଟାଇ ଅବଶ ଜଣା କରିବାବେଳକୁ ସେ ଏକ ଚଉତିଶାର ସ୍ତବ-ସାହିତ୍ୟ ଅଶ୍ରୟରେ 'ମହାବାହୁ'ଙ୍କୁ ଡାକି କହିଛନ୍ତି :—

"କ୍ଷିତିକି ବହିବା ଅଛି, କ୍ଷମ ନୋହିବାକୁ କହି—
ନ ପାରନ୍ତି ଯାହାର ପ୍ରବଟେ,
କ୍ଷମା ପୀୟୂଷ ସମୁଦ୍ର, ତୁମ୍ଭେ ହେବାକୁ ମୁଁ କ୍ଷୁଦ୍ର
ଶ୍ରୀ ଗ୍ରନ୍ଥରେ ଜଣାଇଲି ଏତେ
ହେ ମହାବାହୁ,
କ୍ଷମ ଅପରାଧ ଏ ତ ନୁହେ
କ୍ଷମାଧିକ ବନାଧିବାସ ହେ !
କ୍ଷମା କରିଅଛ ହେବ, କ୍ଷିତିସାର ବଳଦେବ
କବିବର ଗ୍ରନ୍ଥଗୁରୁ କହେ ।"

ଏ ଗୀତ, ଏ ରସ, ଏ ଭାବ, ଏ ସ୍ୱର ଏବଂ ଏକଳ ସାହିତ୍ୟ ସଜାଡ଼ି 'ଚଉତିଶା' ରଚନା ଓଡ଼ିଶା ଭଳି ଅନ୍ୟତ୍ର ବିରଳ।

———

# ଚୌପଦୀ (ଚଉପଦୀ)

ଚାରିପାଦିଆ ଗୀତକୁ ଚଉପଦୀ କୁହାଯାଏ । କିନ୍ତୁ ଦୁଇ ବା ତିନି ପଦିଆ ଗୀତକୁ ମଧ୍ୟ ଚଉପଦୀ ବୋଲି କହୁଥାଆନ୍ତି ଲୋକେ । ଚାରିଗୋଟି ପଦରେ ରଚିତ ଚଉପଦୀର ପ୍ରଥମ ପଦକୁ ସ୍ଥାୟୀ, ଧ୍ରୁବ ବା ଘୋଷା ପଦ, ଦ୍ୱିତୀୟ ପଦକୁ ଅନ୍ତରା, ତୃତୀୟ ପଦକୁ ସଞ୍ଚାରୀ ଏବଂ ଚତୁର୍ଥ ପଦକୁ ଆଭୋଗ ବା ଭଣିତା ପଦ କୁହାଯାଏ । ଘୋଷା ପଦର ଅକ୍ଷର ସଂଖ୍ୟା ଅନ୍ୟାନ୍ୟ ପଦମାନଙ୍କଠାରୁ ପ୍ରାୟ ଊଣା ହୋଇଥାଏ । ତା'ଛଡ଼ା ଚଉପଦୀ ସଂଗୀତରେ ପଦଗୁଡ଼ିକର ଅକ୍ଷର ସଂଖ୍ୟା ପ୍ରାୟ ସମାନ । ତେଣୁ ଗାୟକମାନେ ସେଗୁଡ଼ିକୁ ପ୍ରାୟ ଏକା ଢଙ୍ଗରେ ଗାଇ ଥାଆନ୍ତି । ଏପରି ସ୍ଥଳରେ ସେଗୁଡ଼ିକୁ କେବଳ ଅନ୍ତରା ବୋଲି କୁହାଯାଇପାରେ ; କେତେକ ଗୀତରେ 'ପଢ଼ି' ଯୋଗ ହୋଇଥାଏ । ଏପରି ପଢ଼ି ଲଗା ଗୀତ ଓଡ଼ିଶୀ ସଂଗୀତର ବିଶେଷତ୍ୱ ଚିହ୍ନାଏଁ । ପଢ଼ିରେ ଲୟ ଓ ତାଳର ଚମତ୍କାରିତା ସଂଗୀତର ଶ୍ରୁତି ମଧୁରତା ବଢ଼ାଇବା ସଙ୍ଗେ ସଙ୍ଗେ ଗୀତକାର ଓ ସ୍ୱର ଶିଳ୍ପୀଙ୍କର ବାହାଦୁରୀ ଫୁଟିଉଠେ ।

ସଂଗୀତରେ ରସସିଦ୍ଧି ମୁଖ୍ୟ । କବିସୂର୍ଯ୍ୟ ସଂଗୀତଜ୍ଞ । ତେଣୁ ରସ ଭାବକୁ ଅନାଇଁ, ସ୍ୱରତାଳ ଭିଆଣି କରି ସେ ଲେଖିଛନ୍ତି ସରସ ସୁନ୍ଦର ସଂଗୀତ । ବେଳେବେଳେ ସେଗୁଡ଼ିକ ଚାରି ପାଦରୁ ବଳକା ହୋଇଅଛି । ମନେହୁଏ ହୁଏତ କବିଙ୍କ ମନକଥା ମାତ୍ର ପାଦ ଚାରିଗୋଟି ଭିତରେ ସାଇତା ହୋଇପାରିଲାନାହିଁ ପରି । ତେଣୁ ଅଉ ପଦେ ଦି'ପଦ ବଳକା ପଡ଼ିଛି । ରାଗ-ତାଳ ବନ୍ଧନୀ ଭିତରେ ଥାଇ ଏହି ସଂଗୀତଗୁଡ଼ିକ ଆପଣା ଆପଣାର ନିର୍ଦ୍ଦିଷ୍ଟ ରସ ଫୁଟାଇପାରିଛନ୍ତି । ଗାୟକ ବା ସ୍ୱରକାର ଅବଶ୍ୟ ଯେ କୌଣସି ଗୀତ-କଥାକୁ ତାଙ୍କ ମନଇଚ୍ଛା ରାଗ ତାଳରେ ନିବଦ୍ଧକରି ଗାଇପାରନ୍ତି । କିନ୍ତୁ ଏତିକିରେ ତାହାକୁ ଆଦୌ ସୁଗାୟକ ବା କୃତିସ୍ୱରକାରଙ୍କ ଗୌରବ ବୋଲି କହିହେବ ନାହିଁ । ସ୍ୱର ତାଳ ଯେବେ ଗୀତ-କଥାର ରସ ଭାବବିଶ୍ଳେଷକ ନୋହିଲା, ତେବେ ସଂଗୀତର ବାସ୍ତବ ଧର୍ମ ଆଉ ରହିଲା କେଉଁଠି ? ଏଭଳି ରସଜ୍ଞାନ ହୀନ ସ୍ୱରଶିଳ୍ପୀ ଲୋକରେ ଅଧମ ଶ୍ରେଣୀୟ ବୋଲି ବିବେଚିତ ହେବା ସ୍ୱାଭାବିକ । କବିସୂର୍ଯ୍ୟଙ୍କ ରଚିତ ଅନେକ ରଚନା, ସ୍ଥଳବିଶେଷରେ ଏପରି ଭାବରେ ଗୀତ ହେବାର ଶୁଣାଯାଏ, ଯାହା ଆଜି କବିସୂର୍ଯ୍ୟଙ୍କର ଶୁଣିବାର ଅବକାଶ ଥିଲେ କେବେହେଲେ ସେ ଗାୟକ ବା ସ୍ୱରକାରଙ୍କୁ

ଶୁଭାଶୀର୍ବାଦ କରିପାରନ୍ତେ ନାହିଁ । ସଂଗୀତରେ କବିତା ଅଛି, କିନ୍ତୁ କବିତାରେ ସଂଗୀତ ଧର୍ମ ଅଭାବ ହେଲେ ଚଳେ । କବିସୂର୍ଯ୍ୟ ଲେଖିଛନ୍ତି ସଂଗୀତ—ଯାହାକୁ ଆମେ ସାଧାରଣ କଥାରେ କହୁ 'ଚଉପଦୀ' । ସେଗୁଡ଼ିକ ଯଥାର୍ଥ ସଂଗୀତ ଧର୍ମୀ । କବିସୂର୍ଯ୍ୟ ଯେ ଆମର ଜଣେ ଜାତସ୍ୱର ସଂଗୀତକାର ଏକଥା ବାହାପିଟି କହିବାପାଇଁ ତାଙ୍କ ଗୀତର ରସାନୁକୂଳକ ସ୍ୱର ତାଳର ମହତ୍ତ୍ୱ ରକ୍ଷା ଆମର କର୍ତ୍ତବ୍ୟ । ନୋହିଲେ ଆମର ମହତ ପଦାରେ ପଡ଼ିବ ସିନା ।

## କଅଣ ସେ?

—ତାଙ୍କୁ ଦୁଃଖୀ ବୋଲି କହିବି—ନା ସୁଖୀ ବୋଲି କହିବି ? ଜୀବଦ୍ଦଶାରେ କବିସୂର୍ଯ୍ୟ ସମ୍ମାନର ତୁଙ୍ଗ ଆସନର ଅଧିକାରୀ ହୋଇପାରିଛନ୍ତି —ଦେଶର, ଦଶର ବହୁମାନପାଇଛନ୍ତି । ରାଜଦରବାରରେ ଦେବାନ୍ ରୂପେ ରାଜ୍ୟ ପରିଚାଳନା କରି ସେ ସୁଖ୍ୟାତି ଅର୍ଜିଛନ୍ତି । ତେଣୁ ଲକ୍ଷ୍ମୀ-ସରସ୍ୱତୀ—ଦୁଇ ମାଆଙ୍କର କରୁଣା ତାଙ୍କପ୍ରତି ଊଣାଥିବାର ବିଚାର କରିଯାଇ ନପାରେ । ଏପରି ସୌଭାଗ୍ୟ କୌଣସି କଳାକାର ଜୀବନରେ କଦାଚିତ୍ ଘଟିଥାଏ । କିନ୍ତୁ ଧନ-ମାନର ପ୍ରାଚୁର୍ଯ୍ୟ କଅଣ ବାସ୍ତବରେ ଜୀବନର ଏକମାତ୍ର ସୁଖର କାରଣ ? କବି ଜୀବନରେ ଆଖିଦେଖା ବାହାରର ସୁଖ ଆଉ ଭିତରର ମନ-ମାନିଆ ଶାନ୍ତି—ଏ ଦୁଇଟା କଥା ଏକାବେଳେ ନିଆରା ନିଆରା । କବି ନାମକ ଏ ଜୀବଟି ପୃଥିବୀଛଡ଼ା ପ୍ରାଣୀ । ବେଳେବେଳେ ମୁହଁରେ ହସ ଲାଗି ରହିଥିଲେହେଁ ବୁକୁରେ ଅଲିଭା ନିଆଁ ଜଳି ଜୀବନଟାକୁ ଦଗ୍‌ଦହନ କରିଦିଏ କବିର । ପୁଣି ଆଶ୍ଚର୍ଯ୍ୟର କଥା ଯେ, ଏଇ ଜ୍ୱାଳା, ଏଇ ଦହନ ହିଁ କବି ଜୀବନର ଶ୍ରେୟ,—ପ୍ରେୟ, ଧ୍ୟେୟ, ଜ୍ଞେୟ । ଏ ଦହନଟୋଳା ଆନନ୍ଦ-ଚନ୍ଦନ, କବି ଦୁକୁସାରି ଲେପିଦିଏ ଲେଖଣୀର ମୁନ । କଥାରେ ସିନା ଅଛି, 'ବନ ପୋଡ଼ିଗଲେ ସଭିଏଁ ଜାଣନ୍ତି, ମନ ପୋଡ଼ିଗଲେ ଜାଣିବ କିଏ ?' କବି ବୋଲି ଏଇ ଅଦ୍‌ଭୁତ ଜୀବଟି କିନ୍ତୁ ତା'ର ମନପୋଡ଼ିକୁ ଦୁନିଆଁ ଆଗରେ ପରଶିଦିଏ ଲେଖଣୀ ଗିରିମାରି । ଅନୁଭୂତ ଓ ସ୍ମୃତ କବିକୁ ବିକଳ କରିଦିଏ ଏବଂ ଏଇଥିରୁହେଁ ଦିଅନ୍ତି ସହୃଦୟଙ୍କୁ ପରମାନନ୍ଦ କବି ଜଳେ, ଜଳି କିନ୍ତୁ ଜାଳେ ନାହିଁ, ଜ୍ୱଳନ ବଦଳରେ ସହୃଦୟଙ୍କୁ ସେ ଦିଏ ଅଭୁଲା ଆନନ୍ଦ । ସଂଗୀତର ସ୍ୱର ପୁଣି ଏ ଆନନ୍ଦର ପାଠ ପରଶୁଣିଅ ।

ଧନ,ଜନ, ଗୋପ, ଲକ୍ଷ୍ମୀ କାହାରି ସାଧ୍ୟ ନାହିଁ କବି ମନବନର ଏ ନିଆଁ ଲିଭାଇବାକୁ । ଯେଉଁ କବି ଯେତେ ଅନୁଭବୀ, ସେତେ ଦୁଃଖୀ,

ସେତିକି ସେ ଜନପ୍ରିୟ । କବିସୂର୍ଯ୍ୟ ଏକାଣ୍ଟିଆ କବି । ମନର କଥା
ବେଭ୍ରତ ସେ ଅଜ ଅଜର—ଅମର ।

ଏବେ ତ ସେ କବି, ତହିଁରେ ପୁଣି ସଂଗୀତ ଶିଳ୍ପୀ । ତେଣୁ ଯେ ଯାହା କହିବାର କୁହନ୍ତୁ, ମୁଁ ମୋ ଅଙ୍ଗେ ଲବ୍ଧ ଅନୁଭବରୁ କହିବି, କବିବର ବଡ଼ ଦୁଃଖୀ । ନୋହିଲେ ତାଙ୍କ ଭାବ-ମସିଙ୍ଗ ଲେଖନୀ-ମୁନରୁ କି ସହଜେ ବାହାରି ଥାଆନ୍ତା—

‘ମୋ ଭାଲେ ଥିଲ କି ଲିହି ?
କଳି ମଲ୍ଲୀ ବେପଣି-ଡହୁଁ କଲ୍ଲି ତୃଣ
ଚନ୍ଦ୍ରାରତନଗଣ୍ଡି-ଦେହଲ ପାଷାଣ କଣ ?

ଅଥବା

ମାନସ, ପ୍ରପଞ୍ଚରୁ ବଞ୍ଚି ପଳା
ଜାଣୁ ତ ଏ ଜୀବ-ଗତ ରଙ୍ଗ ତରଙ୍ଗ ପର ଚଞ୍ଚଳା ।

\+ \+ \+ \+

ଲାଲ ପାଲିଙ୍କି ମସାଲ ଶାଲ ହାର ସରୋଜ ପୁଞ୍ଜ ଅବଳା ।
ବିଷୟ ବାସନା ବିଷମ ଏହି ତ ତହିଁ ରୁ ମତି ନ ବଳା ରେ ॥

—ଏମିତି ତ କେତେଣି କେତେ ତାଙ୍କ ମନକଥା କହି ଯାଇଛନ୍ତି ସେ । ସୁଖ କାହାଣୀଠୁଁ ଦୁଃଖ ଗାଥାଣୀ ତରଳାଇ ଦିଏ ସିନା ଚାନ୍ଦର ଗ୍ରାହକର ମନ । ବାହାରଆ ଲୋକ ଦେଖାରୁ ପ୍ରାଚୁର୍ଯ୍ୟ ଭିତରେ ଥାଇ, ଏକାନ୍ତ ‘ଅଭାବୀ’ ଜୀବନ ବିତାଇଛନ୍ତି କବିସୂର୍ଯ୍ୟ । ଦୁଃଖର ସଂଗୀତ ହିଁ ବାସ୍ତବରେ ଅତି ମଧୁର ପରା । ତେଣୁ କବିସୂର୍ଯ୍ୟଙ୍କୁ ଦୁଃଖୀ କହିବ ନା ସୁଖୀ କହିବ ?

ନିଜର ଅଭାବକୁ, ଦୁଃଖକୁ ସେ ସବୁରି ମନ ବୁଝା କରି ପରଶି ଯାଇଛନ୍ତି । ନୋହିଲେ ତାଙ୍କ ବାଣୀ ଶୁଣି ଲୋକ ତୁଣ୍ଡରୁ ଆପେଁ ଆପେଁ କାହିଁକି ବାହାରି ପଡ଼ନ୍ତା—“ଆହା” ।

———

# ସ୍ୱରୂପ

ସେଭଳି ଅପଣାର କରି ନ ପାରିଲେ କେହି ତାହାର ଉପରେ ବଳ ଖଟାଇ ଦ'ପଦ କହିପାରେ ନାହିଁ । ହାତ ପତାଇ ଭିଖ ମୁଠିଏ ମାଗେ ସିନା ଭିଖାରି, ଆପଣାରଜନ କିନ୍ତୁ ଅଳି କରି—ଅଝଟ କରି—ନିଜର ମନ କଥା ବଖାଣି କବରଣରେ ଆପଣା କାମ ହାସଲ କରେ । ଏଠି ଖୋଷା-ମଦର ପ୍ରଶ୍ନ ଉଠେନାହିଁ—ଉଠେ ଦାବୀ ବାଢ଼ିବାର ଯୋଗ୍ୟତା ବିଗୃହ କଥା । ତେଣୁ କବିସୂର୍ଯ୍ୟ ଉସ୍ରିବହରିର ତାଙ୍କ ମନର ଠାକୁରଙ୍କ ସମ୍ମୁଖେ 'ବଢ଼ାଇବାକୁ ଛୁଡ଼ା ହୋଇ' ଦମ୍ଭରେ କହିଛନ୍ତି :—"ମୋ କଥା ଯେବେ ବାଧିଲା ତୁମକୁ—କ୍ଷମା କର ଅବା ଦଣ୍ଡ ଦିଅ—ମୋର ତହିଁକି ତିଳେ ହେଲେ ଖାତର ନାହିଁ । ମୋ ମାଗୁଣି,—ମୋ ଅଳି ଯେବେ ପୂରଣ ନ କରିବ ତୁମେ—ତେବେ ଜାଣିରଖ ଠାକୁର, ତମର ଯାବତ ଦୁର୍ଗୁଣ ଗାଇ, ଲୋକରେ ତମ ମହତକୁ ଦ' କଡ଼ାର କରି ଦେବି ।"

ସେଭଳି ଟାଣ ନ ଥିଲେ କି ଏ କଥା ସହଜେ କାହାର ତୁଣ୍ଡରୁ ବାହାରିବା ସମ୍ଭବ ?

କବିସୂର୍ଯ୍ୟଙ୍କ ରଚନାରେ ଶୃଙ୍ଗାର ରସ ଭରି ରହିଛି, ସତ । କାରଣ "ଶୃଙ୍ଗାରୀ ଚେତ୍ କବି" । ମୋ କ୍ଷୁଦ୍ର ବୁଦ୍ଧିରେ ଏହା ତାଙ୍କର ଯଥାର୍ଥ ରସିକତାର ପରିଚୟ । ଏହି ରସବୋଧ ତାଙ୍କୁ ମୂର୍ତ୍ତିମାନ ଶୃଙ୍ଗାରରୂପ ଧାରୀ 'କ୍ଷମାନୁକମ୍ପାଧର'ଙ୍କ ଶ୍ରୀଚରଣ ଶୋଭାଦର୍ଶନ କରାଇଛି । ପାର୍ଥିବ ପ୍ରୀତି-ଚିତ୍ତମୂଳକ କେତେକ ରଚନା ଦେଖି ତାଙ୍କ ସଂବନ୍ଧେ ଗୋଟାଏ ସହଜ ମନ୍ତବ୍ୟ ବାଢ଼ି ଦେବାଟା ସମୁଚିତ ମଣୁନାହିଁ । ଏସବୁ ରଚନା କବିସୂର୍ଯ୍ୟଙ୍କ କବି ପ୍ରତିଭାର 'ବାହାରଅ' ରୂପ । 'ଭିତରଅ' କାୟା କିନ୍ତୁ ତାଙ୍କର ଡାକ ବଜାଇ ଶୁଣାଉଛି :—ବାଧିଲା ଜାଣି···

## ସର୍ପ ଜଣାଣ

### ରାଗ—କାମୋଦୀ

ବାଧିଲା ଜାଣି କ୍ଷମା-କର ନୋହିଲେ ରମା-
ରମଣ ଦଣ୍ଡେ ଦଅ ଟାଳି ।
ତୁମ୍ଭଙ୍କୁ ଜଗନ୍ନାଥ !   ଆଜ ମୋ ମନୋରଥ
ଭରତ କର ଦେଣ୍ଢ ଘାଳି, ହେ କୃପାନିଧି !
କରୁଣାସିନ୍ଧୁ ବୋଲି କବି,
କହନ୍ତି ବୁଧେ ଡର ମରି ।
କାଳ-ସର୍ପ ଆପଣ   କବଳ କର ପ୍ରାଣ-
ପବନମାନଙ୍କ ସବୁରି, ହେ କୃପାନିଧି ।୧।
ଜଳଧିଅନ୍ତେ ନାଗ,   ଘର ଦେବାଥିବାଙ୍କ
ବୁଡ଼ାଇ ଦେଇଛ ଆପଣ ।
ତୁମ୍ଭର ସିନା ଘେନ   ଆଶ୍ଚର୍ଯ୍ୟ ନୁହେ ଆନ-
ଜନର ଘରବୁଡ଼ା ପଣ, ହେ କୃପାନିଧି ।
ଭୁଜଙ୍ଗ ସାମ୍ୟ ଆମ୍ଭ ଭୁଲେ,
ବତାଅ ବୋଲି ଅଜ୍ଞ ହେଲେ,
ମୁଁ ନୁହେଁ ଘରବୁଡ଼ା   ବତାଇବାକୁ ଛୁଡ଼ା-
ହୋଇଛୁ ବତାଇବ ଭଲେ, ହେ କୃପାନିଧି ।୨।
ତାହାକୁ ବୋଲି ଚକ୍ରୀ   ଚକ୍ର ଥିବାରୁ ଚକ୍ରୀ
ତୁମ୍ଭେ ତ ବୋଲାଅ ମଣ୍ଡଳେ ।
ବୋଲାଇ କୁଣ୍ଡଳୀ ସେ   ଆପଣ ତ ବିଶେଷେ
ଭୂଷିତ ମକର-କୁଣ୍ଡଳେ, ହେ କୃପାନିଧି ।
ଅଦୃଶ୍ୟ ହେବାରୁ ତ ପାଦ,
ତାହାକୁ ବୋଲି ଗୂଢ଼ ପଦ ।
ଆପଣା ଚରଣ ତ   ବରଷିକୁ ଗୁପତ
କାହିଁ ତା'ଠାରୁ ତୁମ୍ଭ ଭେଦ, ହେ କୃପାନିଧି ।୩।
ହେବ ବା ଅବଧାନେ   ତାହାକୁ ଦ୍ୱିଜିହ୍ୱବନେ
ବୋଲନ୍ତି କାକୋଦର ନରେ ।

ଏ ତ୍ରିପିଷ୍ଟପଯାକ    ମଧ୍ୟେ ଗୋଟିକ ଭାଗ
ନାହିଁ କି ତୁମ୍ଭର ଉଦରେ, ହେ କୃପାନିଧି ।
ବବରେ ସେ ଅଛି ଲମ୍ପଟ,
ଶବର ବିହଙ୍ଗମ ଗୃହ ।
ବିଧିରେ ସେ ଲମ୍ପଟ    ଆପଣେ ସେ ତ ପଟ-
ପଟଲେ ହୋଇଅଛ ସ୍ପୃଷ୍ଟ, ହେ ମହାପ୍ରଭୁ । ୪ ।
କାନ ନ ଥାଇ ଆଖି    ଭୁଜଙ୍ଗଠାରେ ଦେଖି
ନୟନଶ୍ରବା ବୋଲି ତାକୁ ।
କହ କମଳାନନ,    କାହିଁକି ତୁମ୍ଭ କାନ
ସର୍ପ ହୋଇଲେ ଚଳିବାକୁ, ହେ କୃପାନିଧି ।
ଫଣିକାୟାକୁ ବୋଲି ଭୋଗ,
ଥିବାରୁ ସେ ଦୁଇ ସଂଯୋଗ ।
ତାହାକୁ ବୋଲି ଭୋଗୀ    ତୁମ୍ଭେ କି ନୁହ ଭୋଗୀ
କରୁ ଯା ଅଛ ମହାଭୋଗ, ହେ କୃପାନିଧି । ୫ ।
ଯେବେ ଭୁଜଙ୍ଗ ନୁହ    କାଳିୟଠାରେ ଦ୍ରୋହ
କଲ କାହିଁକି ଏତେ କହ ?
କେତେ ନ ଥିଲେ ଗୋପେ    ତୁମ୍ଭେ କାହା କି କୋପେ
ତାହାକୁ ଦେଲ ପ୍ରାଣେ ମାରି, ହେ କୃପାନିଧି ।
ଅଦ୍ୟାପି ହୋଇଛନ୍ତି ଜନମ    ତାହାର ନାମେ ତୁମ୍ଭ ନାମ
ଯେବେ ସ୍ୱଗୋତ୍ର ଦ୍ରୋହ ନଥାନ୍ତା ନାଥ, କହ
କିପାଇଁ ହୁଅନ୍ତା ଏ କ୍ରମ, ହେ ମହାପ୍ରଭୁ । ୬ ।
ଜାଣି ବାତ୍ତୁଡ କାନ୍ତୁ    ଲବଣୀ ହାଣ୍ଡି ତଳୁ
ଧରି ପାଶରେ ଦୃଢ଼େ ଭିଡ଼ି ।
ଦୟା ନ କଲ ତିଳେ    ଯାମଳା ତରୁ ତଳେ
ଜନନୀ ନେଇ ଦେଲେ ଗଣ୍ଡି କୃପାନିଧି ।
ଯେତେକ ଥିଲା ଗର୍ବେ ପଡ଼ି,
ଜୀର୍ଣ୍ଣ ହେବାକୁ ହେଲ ଭିଡ଼ି ।
ତିନି ଜଗତ ଯାକେ    ଜାଣି ତ ଥିବେ ଲୋକେ
ସେ ତରୁ ଯିବାରୁ ଉପୁଡ଼ି, ହେ କୃପାନିଧି । ୭ ।

ବ୍ରହ୍ମା ଶଙ୍କର ମୁଖ୍ୟ          ଦେବଙ୍କଠାରୁ ମୋକ୍ଷ-
ପ୍ରଧାନ ଧନ ଗୁଣ କଲ ।
ପଞ୍ଚତତ୍ତ୍ୱ ନ ପୋଷି-          ବାରୁ ସମରେ ଅଶୀ-
ବିଷ ପର୍ଯ୍ୟ ଅଗ୍ରସିଲ, ହେ କୃପାନିଧି ।
ଅସାବଧାନେ ଗଲେ ମିଳି,
ଗୋଟିକୁ ଗିଳଇ କୁଣ୍ଡଳୀ ।
ଅଗଣିତ ବ୍ରହ୍ମାଣ୍ଡ—          ହାଣ୍ଡିମଣ୍ଡଳୀ ଖଣ୍ଡ—
କରି ଅପଣ ଅଛ ଗିଳି, ହେ କୃପାନିଧି ।୮।
ଅହି ତ ବୋଲାଏ ସେ          ଏକ ଅକ୍ଷର ଲୋପେ
'ଅ'ହି ତ ବୋଲାଅ ନିପୁଣ ।
କଂସ ପ୍ରମୁଖାସୁର          ବିପକ୍ଷମାନଙ୍କର
ଅହିତ ହୋଇଛ ଆପଣ, ହେ କୃପାନିଧି ।
ଜଗତେ ଧରି ଯେତେ ଅହି,
ଘଟ ଗୋଟିକେ ନେଇ ଥୋଇ ।
ଅଛ ଯାବତ ଘଟେ          ବଞ୍ଚାଅ ଯେ କପଟେ
ମୋର ହାରୁଣ୍ଡୁ ଯିବ କାହି , ହେ କୃପାନିଧି ।୯।
କେଉଁ ଶିଶୁ କାମିନୀ          ସ୍ତନ୍ୟପାନରୁ ଘେନି
ଜୀବନ ଯାଇଛୁ ଜଗତେ ?
ଶୋଷି ପୂତନା ପ୍ରାଣ          ଘେନିବାର ଜୀବନ
ନାହିଁ କି ତୁମ୍ଭ ଦବ୍ୟ ଶତେ, ହେ କୃପାନିଧି ।
ସକଳ କଥା ମୋର ଦେଖି,
ଅଛନ୍ତି ଲକ୍ଷ ଲକ୍ଷ ସାକ୍ଷୀ ।
ବ୍ରଜେ ଭୁଜଙ୍ଗ ଗୃହ          କରି ମୁଁ ନାହିଁ ବୋଲି
ତୁଅ ତ ଥରେ ଚକାଅକ୍ଷି, ହେ କୃପାନିଧି ।୧୦।
ନୁହେ ଅବାସ ଘର          ମାନସ ସରୋବର
ଶ୍ୱେତ ନାଗେଶ୍ୱର ବବ ।
କ୍ଷଣେ ନ ରହି ଧାଇଁ—          ଗଲଟି କାହିଁ ପାଇଁ
ଆଜ ନ ଥିଲେ କେତେ ଦେବ, ହେ କୃପାନିଧି ।
ମନ୍ତ୍ର ଜାଣିବା ଲୋକେ ବଶ,
ହୁଅନ୍ତି ସବୁ ଅଶୀବିଷ ।

ମନାଧୀନ ତ ତୁମ୍ଭେ           ବଶୀଭୂତ ଅଛ ଦମ୍ଭେ
ଭକ୍ତଙ୍କ ନୁହ ଅନ୍ୟ ବଶ, ହେ କୃପାନିଧି । ୧୧ ।
ମୁହିଁ ଇନ୍ଦ୍ରିୟସୂର୍ଯ୍ୟ           ନାଥ ନୁହ ଅଧୈର୍ଯ୍ୟ
ଏଣିକି ମହତ ନ ଯାଉ ।
ମୁଁ ତୁମ୍ଭ ପରସ୍ତର           ଜାଣିଲେ କି ବସ୍ତର
କଥରେ ନ ଜାଣନ୍ତି ଅଛ ହେ କୃପାନିଧି ।
ଯେତେବେଳେ ମୋ ଅନ୍ତ ହେବ,
ଏତିକି ମାତ୍ର ମୋତେ ଦେବ ।
ପରେତରାଜ ଦ୍ୱାର           ପାପାତ୍ମ ଘରଦ୍ୱାର—
କରାଇ ଏଥୁଁ ତଥୁଁ ନେବ ହେ କୃପାନିଧି । ୧୨ ।

ଅଉ ବେଶୀ କହିବାର ଲୋଡ଼ା ନାହିଁ । ଗୋଟିଏ ମାତ୍ର ତୁଳସୀ-ପତ୍ରରେ ଅମାପ ଅମୁଣିଆଁ ମହାପ୍ରସାଦ ହୁଏ ପରା ?

—ତେବେ କବିସୂର୍ଯ୍ୟଙ୍କର ଏଇ ଗୋଟିକ ରଚନାରୁ କଅଣ ତାଙ୍କୁ ଚିହ୍ନିବାରେ ଅଉ ବାକି ରହୁଛି ?

ଏଇ ତାଙ୍କର ସ୍ୱରୂପ—ପ୍ରକାଶ ନୁହେ କି ?

———

## —କୃତଜ୍ଞତା—

ନାନା କାରଣରୁ ଗଂଜାମ ସହିତ ମୋର ଘନିଷ୍ଠ ସଂପର୍କ ରହି ଆସିଛି, ବହୁ କାଳରୁ । ୧୯୨୭ସାଲରେ ଥରେ ଯାଇଥିଲି ମଂଜୁଷାଗଡ଼କୁ । ଗଂଜାମ ଅଂଚଳ ସେତେବେଳେ ଥାଏ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସି ଅଧୀନରେ । ଗଞ୍ଜାମର ଜମିଦାର (ରାଜା)ମାନେ ବଡ଼ କଳାରସିକ, ଗୁଣଗ୍ରାହକ ବୋଲି ମୋର ଅନୁଭୂତିରୁ କହୁଛି । ରାଜା ୧୦୮ ବ୍ୟାଘ୍ରହନ୍ତା ଶ୍ରୀ ଶ୍ରୀନିବାସ ରାଜମଣି ରାଜଦେଓ ସେତେବେଳେ ଥାଆନ୍ତି ମଞ୍ଜୁଷାର ନରପତି । କବି— ଗାୟକ ରୂପେ ମୁଁ ତାଙ୍କ ସାକ୍ଷାତ କଲି । ସଂଗରେ ମୋର ଯାଇଥିଲେ ପୁରୀର ସ୍ୱର୍ଗତ ମୋହନ ମହାପାତ୍ର । ଏକଦା ସେ ଥିଲେ ପୁରୀ ପଥର ଅଖଡ଼ାର ଅଖଡ଼ା ପିଲା(ଗୋଟିପୁଅ) । ତାଳ ଜ୍ଞାନ ତାଙ୍କର ଭଲ । ପଖଉଜ ବା ମର୍ଦ୍ଦଳ ସଂଗତ କରୁଥିଲେ ସେ ମୋ ସହିତ । ମଂଞ୍ଜୁଷା ରାଜାଙ୍କ ନିକଟରେ ଭେଟିଲି ଖଲ୍ଲିକୋଟର ରାଜବଂଶଧର ସ୍ୱର୍ଗତ ସାମନ୍ତ ଶ୍ରୀ ଲୋକନାଥ ସିଂହଙ୍କୁ । କଥା- ପ୍ରସଂଗରେ କବିସୂର୍ଯ୍ୟଙ୍କ ସଂଗୀତ ସମ୍ବନ୍ଧେ ଚର୍ଚ୍ଚା ହେଲା । କେତୋଟି ଅପ୍ରକାଶିତ ଗୀତ ସେ ମୋତେ ଦେଲେ । ମୁଁ ରାଜାସାହେବଙ୍କୁ ଓ ତାଙ୍କୁ କବିସୂର୍ଯ୍ୟଙ୍କ ରଚିତ ଗୀତ ସଂଗ୍ରହ କରି ଦେବାକୁ ଅନୁରୋଧ କଲି । ବନ୍ଧୁ ଲୋକନାଥ ବାବୁ ମୋ କଥା ରଖି ପ୍ରାୟ ବର୍ଷେ ଦେଢ଼ବର୍ଷ ପରେ ଅନେକ ଗୁଡ଼ଏ ଗୀତ ସଂଗ୍ରହ କରି ଦେଇଥିଲେ ମୋତେ । ମନରେ ଦୁଃଖ ରହିଗଲା ଯେ ମଞ୍ଜୁଷା ରାଜାସାହେବ, ସ୍ନେହର ମୋହନ ଓ ବନ୍ଧୁ ଲୋକନାଥ ବାବୁ—ତିନିହେଁ କେହି ଆଜ ନାହାନ୍ତି ଏ ସଂଗ୍ରହର ପ୍ରକାଶନ ଦେଖି ଆନନ୍ଦ ହେବାପାଇଁ । ମଂଜୁଷା ରାଜାସାହେବ ଏବଂ ଲୋକନାଥ ବାବୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ମୁଁ ଅନ୍ତରର କୃତଜ୍ଞତା ଜଣାଇ ମନର ଦୁଃଖ ମନେ ମନେ ମାରି ରହୁଛି ।

ଶ୍ରୀମାନ୍ ତ୍ରିଲୋଚନ ଦାଶ ମୋର ସେହି କାଳର ସଂଗୃହୀତ ଜରାଜୀର୍ଣ୍ଣ ପାଣ୍ଡୁଲିପିଟି ଉଦ୍ଧାର କରି ଛାପାଖାନାକୁ ଯିବାଭଳି ରୂପ ଦେଇଛନ୍ତି । ସ୍ନେହାଶୀର୍ବାଦ ମୋର ତାଙ୍କୁ ।

ଶ୍ରୀମାନ୍ ଯଦୁନାଥ ମିଶ୍ର (ସ୍ୱରଭୂଷା ପ୍ରେସ) ପ୍ରୁଫ୍ ଦେଖା ଓ କଠିନ ଶବ୍ଦାର୍ଥ ଲେଖାରେ ମୋତେ ସାହାଯ୍ୟ ଦେଇଛନ୍ତି । ଧନ୍ୟବାଦ ଦେଉଛି ତାଙ୍କୁ ।

ପରିଶେଷରେ ଶ୍ରୀଯୁକ୍ତ ଜଗନ୍ନାଥ ରଥେ ଏହି ଗୀତାବଳୀଟିର ପ୍ରଥମ ସଂସ୍କରଣ ଏକହଜାର ପୁସ୍ତକର ପ୍ରକାଶ ଭାର ଅଦାନରେ ଗ୍ରହଣ କରିଥିବାରୁ ଅଜି ଏଗୁଡ଼ିକ ଲୋକ ଅଖିକୁ ଆସିପାରିଲା । ତେଣୁ ତାଙ୍କୁ ଅଶେଷ ସାଧୁବାଦ ଜଣାଉଁଛି ।

ଆହୁରି କେତେକ ସ୍ନେହୀ ମୋର, ମୋତେ କବିସୂର୍ଯ୍ୟଙ୍କ ରଚିତ କେତେଗୁଡ଼ିଏ ଅପ୍ରକାଶିତ ଗୀତ ଯୋଗାଇ ଦେଇଥିବାରୁ ସେମାନଙ୍କ ନିକଟରେ ମୁଁ ଋଣୀ ରହିଲି ।

—କାଳୀଚରଣ—

ସହୃଦୟଙ୍କ ନିକଟରେ—

ଗୀତାବଳୀର କେତେକ ସ୍ଥଳରେ ମୁଦ୍ରଣ ଜନିତ ତ୍ରୁଟି ରହିଯାଇ-ଥିବାରୁ ମୁଁ ଦୁଃଖ ପ୍ରକାଶ କରୁଛି । ଦ୍ୱିତୀୟ ମୁଦ୍ରଣର ସୁଯୋଗ ହେଲେ, ଏଥିପ୍ରତି ସଜାଗ ଦୃଷ୍ଟି ଦେବି । ନିଜଗୁଣେ କ୍ଷମା ଦେବେ, ବିନୀତ ନିବେଦନ

କଟକ
ତା।୧୫।୭।୭୮

'ସଂପାଦକ'

———

# ସୂଚିପତ୍ର

## ପ୍ରେମୋଦୟ ଚମ୍ପୂ



---

## ଚଉତିଶା



---

## ଛାନ୍ଦ



---

## ମନାସ

# କବିସୂର୍ଯ୍ୟ ଗୀତାବଳୀ

( ୧ )

ରାଗ— ପୂରବୀ । —ଝୁଲା ।

ଅନୁସରନ୍ତୁ ରେ, ମନୁ ପାସୋରନ୍ତୁ ନାହିଁ,
ବଢ଼ି ଅଭିଳାଷି, କଢ଼ି ପଦ୍ମପ୍ରାନ୍ତେ, ଉଚ୍ଚ ହୋଇ କୁଚ ଦୁଇ ।ଘୋଷା।

କରକରଦନା, କରଯୋଡ଼ି ଜଣାଇବ ଯେତେବେଳେ ତୋତେ,
ଦରହାସ ମିଶା ପରଶନ ମୁଖ ଦରଶନ ଦେବୁ ମୋତେ । ୧ ।

ରଙ୍ଗା ଅଧରୀକା, ଭଙ୍ଗୀର କହିବେ ପ୍ରୀତ ବଚୋଧିନୀ ଯେତେ,
ସୁକ୍ଷ୍ମୀନ ବସନା । ଲୁଚିବା ଉଚିତ, ଲୁଚି ଦଣ୍ଡଦେବୁ ମୋତେ ।୨।

ତରୁଣି-ବରଙ୍କ ରଜା ଯେତେବେଳେ ହେବୁ କରୁଣା ଲହରୀ,
ଅଜନ୍ମସୁଖି ରେ । ଲାଜ ପ୍ରବଳରେ ଦେବୁ ପରି ମନାକର ।୩।

ଜମ୍ବୁନଦଜାତ ସମ୍ପୂର୍ଣ୍ଣ ସ୍ତନ ଏକା ପଡ଼ୁ ମୋର ହସ୍ତେ,
କବଦନକର ସମ୍ପୁଟରୁ ବୋଲେ ହାର କରଥିବ ତୋତେ ।୪।

—*—

( ୨ )

ରାଗ—ଚୋଖି । —ଝୁମ୍ପା

ଅନା ଅନା ସୁନୟନା । କଳ୍ପିତ କୃପାରେ । ଘୋଷା ।

ଦୋଷ ମୋତେ ଅନୁକମ୍ପାଦୃଷ୍ଟି ଶିରୁପାରେ,
ନ ହସି ମୋ ଉଗାରଏ ସତ୍ତନୁ ନପାରେ । ୧ ।

ଭେଟେ ଭେଟେ ଜନ୍ମେ ଧନ । ମୁଁ ଜଳକପା ରେ,
ଲେଖିଛୁ ଅଳତା ଚନ୍ଦ ତୋ ଜନକ ଘା'ରେ । ୨ ।

ନ ଫିଙ୍ଗେ ଦୃଷ୍ଟି ତୋ ବିନା ଆନ ସ୍ୱରୂପାରେ,
ଚନ୍ଦ୍ରାମଣି ଥାଉଁ ଥାଉଁ କେ ରସେ ରୂପାରେ ।୩।

ଭସିଲି ଟି ଡାକୁଛି । ସ୍ମର-ଅକୂପାରେ,
ତରୁଣି । ତରଣୀ ହୋଇ ଲଗାଅ ତୁ ପାରେ ।୪।

ଜଳନ୍ତର ପୁରନ୍ଦର ଗୃହୁଁ ଜଳପା ରେ,
ରସିଲ ରସିକା ରସ କୁତୂହଳ ପାରେ ।୫।

—*—

( ୩ )

ରାଗ—ଚୋଖି । —ଏକତାଳି ।

ଅନାରତ ସରସମନା ମୋ ଧନ କିସ ମନାସି ପରିଜନେ ରୁଷିଲ.ରେ,
ନିଶାରମଣି-ଜୟ-ବିଶାରଦ ବଦନ ନବାରୁଣ ସଦୃଶ ଦିଶିଲ ରେ । ଘୋଷା ।

ଲୀଳାହଂସ ଗରବ—ଦଳା କୁନ୍ତଳେ ନବ,—
ଆଳାପ ସୁମୁଖୀ ନ ଖୋସିଲ ରେ,
ଭଲା ଗୁଣ ମୋହନ, ଚଳାଚଳ ନୟନ—
ଦଳାନ୍ତରୁ ତ ବଳ ଖସିଲ ରେ ।୧।

ଘୋଷପାଳ ଭିତରେ, ମୋ ସଙ୍ଗମ ଇତରେ,
ଅଛି କି ନାହିଁ ତ ନକଷିଲ ରେ,
ଦୋଷ ବିନା ଏପରି,ରୋଷ କଲେ କି ପରି—
ଜନ ବର୍ଣ୍ଣିବ ଯେନ ସୁଶୀଳା ରେ । ୨।

ଯେଉଁଦିନୁ ମୋତେ ସେ, କଉତୁକଣା ରସେ,
ନେତ୍ରାନ୍ତ ବରଛିରେ ଭୂଷିଲ ରେ,
ପଜ୍ଜୁଷ ମୋହର, ନଜକର ତାହାର
ଚରଣ ମାଜିବାର ସୁଶୀଳା ରେ ।୩।

ଦିବା ସମୟେ ଦିନେ, ବିବାଦ କରି ମନେ
କିବା ସତତ ତା' ହିଁ ଯୋଷିଲ ରେ,
କାହିଁକି ଟି ଧରଣୀ, ଗୃହିଁ କିଶୋରୀମଣୀ,
ଗୁମାନକୁ ମାନସେ ପୋଷିଲ ରେ ।୪।

କହେ ବସୁ ଦୁର୍ଗେଶ, ଅହେତୁକ ତା ରୋଷ
ଶହେ ଗୁଣରେ ସମୁଲ୍ଲାସିଲ ରେ,
ପ୍ରାଣ ନେବାକୁ ମୋର, ବାଣ ମୀନରଥର,
ଶାଣରେ ନିରନ୍ତର କଷିଲ ରେ । ୫ ।

—※—

( ୪ )

ରାଗ—ମୁଖାରୀ । —ଅଠତାଳି ।

ଅନାଁ ଅନାଁ ରେ ମୋତେ, କସୁଧାକୁ ଅନାଅନା ରେ ।
କେଉଁ ଖଳଜନ କହିଛି କି ମନମୋହନା କିଛି ମୋହୋ ନାଁ'ରେ ।

ଖଳ ଭାଷିତକୁ, ସରସ ଚିତକୁ, ଆଣିବୁ ନାହିଁ ନବୀନା ରେ,
ଯେନ ତ ଷିତରେ, କେ ରସେ ସ୍ଥିତରେ, ସୁନ୍ଦର କୁନ୍ଦନ ବିନାରେ ।୧।

ମୋ ଅଙ୍କ ପର୍ଯ୍ୟଙ୍କ, ଗୂଢ଼ ହରିଣାଙ୍କ—ବଦନା ତଳେ ବସନା ରେ,
ଇନ୍ଦୁ କରକାନ୍ତିପଟଳୀନନ୍ଦନ କୁନ୍ଦକଳିକାଦଶନା ରେ । ୨ ।

ଅଳସ ଥିବାରେ ଗୃଳଦେଲ୍ ଯାହା ଦଶନାମ୍ବରେ ରସନା ରେ,
ଛିତ୍କି କରଜେ, ମୋ ବନ୍ଧୁ ଶତ୍ରୁ ଯେ, ଏଣ୍ଡିକି ମୋ ଦୋଷ ସିନା ରେ ।

ପରଣି ଦେବାର ଦୋଷୀକି ସୁନ୍ଦର ନ ରଣି ମନେ ଭୁହନା ରେ;
ଅନ୍ତକର ବୃଥା ସଉଭାଗ୍ୟ କଥା ମସ୍ତକ ପୋଡି ରହନା ରେ । ୪ ।

ଅଦର ଗୃଦରପର ପରଜନେ ଅଦର ଜଣା କରନା ରେ,
କମ୍ପ-କଜୁକ-ଫଲକା-ମଣ୍ଡନା ଚମ୍ପକ ବରବରନା ରେ । ୫ ।

ହର ଗୃହୁ ଢେନ ହେଲେ ଅମାନନୀ ପରଣତ ଚନ୍ଦ୍ରାନନା ରେ,
ଅଷ୍ଟବର୍ଗ ଲେଖାଧୀପ ହେଲେ ଲେଖା ତୁଷ୍ଟ ପ୍ରମୁଦିତ ମନାରେ ।୬।

—*—

( ୬ )

ରାଗ—କାଫି ।—ଏକତାଳି ।

ଅନାଁ ଅନାଥରେ ଥରେ ରସି ରସିକା ରେ । । ପଦ ।

ଇନ୍ଦରାକୁ ନିନ୍ଦ ଇନ୍ଦୀବରବର୍ଣ୍ଣିକା ରେ,
ବନ୍ଦଇ ମୁଁ ନୀଳଜଳ, ଜନମ ଧିକ୍କାରେ । ୧ ।

ମୀନମାନେ ଜାଲେ ମର ସରନ୍ତୁ ବିକାରେ,
ସଞ୍ଚରୁ ତୋ ନେତ୍ର ଶଫରକେଳିଶିବିକା ରେ । ୨ ।

ଭ୍ରମରମଣ୍ଡଳୀ ସବୁ ଝଙ୍କାର ଉକାରେ,
ଷଡ଼ାଙ୍ଘ୍ରିଗପଦଛନ୍ଦ ସ୍ୱରକୁ ଠେକା ରେ । ୩ ।

ଅସ ମୁଁ ମଣ୍ଡିବ ଗଣ୍ଡ ସୁମ କରକାରେ,
ସ୍ତନ କନକ କଳଶ ମୂଲ କରକା ରେ । ୪ ।

ହର ଚିରେ ହରିଣାକ୍ଷୀ ଲଜେ ଧାଡିକାରେ,
ଛପିଗଲେ ଜଗଦେବ ଶତ୍ରୁ ଲକ୍ଷିକାରେ । ୫ ।

( ୬ )

ରାଗ—ସୁରଠ ।—ଏକତାଳି

ଅରଜିବି ପଛେ ଜନ ଅପଖ୍ୟାତି କି ଗୋ,
ବରଜିବି କେହ୍ନେ ଘନଶ୍ୟାମ ପ୍ରୀତିକି ଗୋ । ଘୋଷା ।

ଟେକି କାଇଁଦଳ ଶେଯ, ଘନସାର ମଳୟଜ,
ଝରବ କେ ରାଜୀବଦଳକୁ ଗତିକି ଗୋ । ୧ ।

ତା ସୁନ୍ଦର ମନ୍ଦ ହାସ, ରୁଚିର ଭ୍ରୂରୁ ବିଳାସ,
ଗ୍ଲଡ଼ି ଅଡ଼ିବ କେ ଫୁଲବାଣେ ଗ୍ଲତିକି ଗୋ ।୨।

ପଦ୍ମକୁ ପୁରନ୍ଦରର, କରଦେବି କର ଗ୍ଲର,
ନିତି ନିତି ତା ସୁରତେ ସତେ ମାତିକି ଗୋ । ୩ ।

ଟେକିଣି କୋଣି ଗୃହାଣୀ, ପୀୟୂଷ ମଧୁର ବାଣୀ,
ସହିବ କେ କାମରାଜ ଫଳି କାତିକି ଗୋ । ୪ ।

କରି ଗାଢ଼େ ପରରମ୍ଭ, ତା ଅଧର ପକ୍ୱ ବିମ୍ବ,
ପିଉଥିବି ପାହିଯିବା ଯାଏ ରାତିକି ଗୋ । ୫ ।

ବୋଲେ ବସୁଦୁର୍ଗ ପତି, ଧ୍ୟାନ କର ତା ମୂରତି,
ନାମ ଭଜନରେ ବ୍ରତି ହେବ ଯତିକି ଗୋ ।୬।

---

( ୭. )

ରାଗ—ପୁରବୀ ।—ଆଦିତାଳ

ଅରଜି ଥିବାର ପ୍ରୀତି,
ବରଜି ଦଅନ୍ତ ମନୁ କେହ୍ନେ ରୁପେ ପରୁଷ ପୁରୁଷ ଜାତି । ପଦ ।

ମନୁ ସରିଯିବାଯାଏ ଗୃହୁବାଣୀ ଭଣି ଦୁଣି ପାଣି ଧରି,
ତନୁ ସରଯାଏ ଭଜିବା ଅଣାରେ ଅନୁସରି ଅନୁସରି । ୧ ।

ମୁରଲୀ ବଜାଇ ନାଚ ନାଚ ଯାଇ ସଙ୍ଗଧକୁ ଲାଗି ଲାଗି,
ବେଶ ହୋଇ ନଟ ନଦୀତଟ ବଟ-ବନବାଟ ଜଗି ଜଗି । ୨ ।

ଗୃଲ୍‌ଯିବା ମାର୍ଗ ଚରଣ-ଲାଞ୍ଛନ-ଦାଲ୍ ଗଭୀରବେ ଢୋଳି,
ଦେଇ ଶତ ଚୁମ୍ବ ପୁଲକାବଲମ୍ବ ହୋଇ ଶିରେ ବୋଳି ବୋଳି ।୩।

ଢୋଟେ ତ ଗୋଚର ପେଶି ଶିଶୁତର ଯେତେରୂପେ ମନଧସ୍ତ,
କରେ ଦେଇ ମଞ୍ଜୁ କୁସୁମ ପୁଞ୍ଜରେ ସଜାଡ଼ି ସଜାଡ଼ି ହଁସ । ୪ ।

ପରସନ ହେବା ନୋହିବା ସନ୍ଦେହୁଁ ପରଶନ ଦେଖି ଦେଖି,
ଅମ୍ଳାନ କେତକୀ ପ୍ରସୂନ ଦଳରେ ପ୍ରେମରେଖା ଲେଖି ଲେଖି ।୫।
ଦେବୀ ବାଣୀ ଶୁଣି କହିଲେ ମିତଣୀ ଅଷ୍ଟଦୁର୍ଗ ନାଥ ବୋଲେ,
ହେଲେ ହେଲେ ବାମ ଶ୍ରମ ଲଭି, ପ୍ରେମ ଉଚିତ ସେ ଶ୍ୟାମ ଭୁଲେ ।୬।

———

( ୮ )

ରାଗ— ପିଲୁ ।—ଏକତାଳି ।

ଅରୁଣାମ୍ବୁଜଚରଣା ତୁ ରସାରେ ଭରସା ରେ,
କରୁଣାନିଧି ଶରଣାଗତଠାରେ କି ରୁଷା ରେ ? । ପଦ ।

ଅସିତକେଶି । ମୁଁ ତୋ ପଦ୍ମଗୁର, ରୁଷି କି ନ କର କିଛି ବିଗୁର
ସୁଗୁଣ- ସବତ-ପତ ତୋ ପର ତ ନାହିଁ ସରସା ରେ । ୧ ।
ନବହ ସୁଦନ୍ତି । ବଦନ ଯୋତ, କଳପ ଅଳପ ହସନ ମୋତି,
ମୃଦୁଳ-ସରସ-ରସ-ହୃଦୟା ତୁ ହୋ ନା ପରୁଷା ରେ । ୨ ।
ନ ନେ ଉନ୍ମାଦନ ଧୃତକି ଗୁଣି, ଗରଳ ଗିଳାବଟି ପିକବାଣି ।
ତରକି ହୃଦୟ କର-କିଶଳୟ ଗଣ୍ଡେ ନରସା ରେ ।୩।
ନକର ମୁକୁରମୁଖି । ନାସଗ, ବିଷମ ବଡ଼ କୁସୁମ ଶରାସ
ସହଜରେ ମିତ ବଚନ ଅମୃତ ଧାର ବରଷା ରେ । ୪ ।
ଅତ ରତପର ଚନ୍ଦ୍ର ସୁଧୀର, ମାତ ଗୁଣି ମୁରମଥନ ଶୀର,
ଅଷ୍ଟଦୁର୍ଗ ପତ କହେ ସ୍ଥିତବତୀ ହେଲେ ଭରସା ରେ । ୫ ।

ରାଗ—ଭାମୋଦ୍ରୀ ।—ଝୁଲ୍ଲ ।

ଅଲଙ୍ଘ୍ୟ ହେବାରୁ ମୋ ରାଣୀ ପରାଣ ବନ୍ଧୁ ! ଯାହା ବଚନେ ବଚନେ,
ସହଜ-କୃପାଳୁ ଗୁଣ ପରିପାଳୁ ମୋହପରି ନଧୁବନେ ରେ,
କିଶୋରୀ !
ସେ ଭାଳେ ଯେଉଁ ସମ୍ଭର,
ଢଳପ, ଧୀପ, ମୋ ମନ, ନେବ, କଣ ଏମାନେ କିଛି ଜାଣନ୍ତି ରେ । ୧ ।

ଶ୍ରୀହସ୍ତ କଞ୍ଜଚରଣ ଅଭରଣନବହ ହେବାରୁ ମୁକ୍ତ,
ରତନ ମେଖଳା କ୍ଷୁଦ୍ର ଘଣ୍ଟିମାଳା, ହୁଏ ମହାବାବଦୂକ ରେ,
କିଶୋରି !
ପଡ଼ାଇ ନିପଟ ଢାଲ,
ଅଧୋମୁଖ ସୁନାକଳସ ଉପରେ ନଗୁଇ ନକ୍ଷତ୍ର ମାଳ ରେ । ୨ ।

ମଣିମୟନଥ-ନାଠୁଆ ତାହାକୁ ବରାବେ କଣିମା ପାଞ୍ଚେ,
କମ୍ବୁଣିରେ ମାରି ଦରପଣ ରଖି ତହିଁ ତିଳଫୁଲ ନାଚେ ରେ,
କିଶୋରି !
କି ଯୋଦେ ଲଜ୍ଜାନାଗରୀ,
ଦେଖୁଥାଇ ନାଠ ତା ପକ୍ଷ୍ମକବାଟ ଅଡ଼ଅଡ଼ପେଲି କରି । ୩ ।

ନୀଳମେଘୀ ଶାଢ଼ୀ ଗଳାପରି ଭଉଁ ଖସାଇ ଲହସା ଖୋସା,
ରଜତ ମୁଦ୍ରିକା ବାନ୍ଧିଦେଲାପରି ସେ ସମୟ ମନ୍ଦହସା ରେ,
କିଶୋରି !
ରତି ମନମଥ ଭୁଲେଁ,
ପଣାର ପିଚକା ଖେଳୁଥିଲି ପ୍ରାୟେ ସ୍ୱେଦ ବିନ୍ଦୁ ଢଣେ ଦେହେ ରେ ।୪।

ବେଳକୁବେଳ ବ୍ୟାକୁଳ କରିବାରେ ନାରିଚେ ପଞ୍ଚବିଶିଖ,
ଅଲେଖ ସୁଖ ଅସ୍ୱାଦନେ ଭମାଇ ଦେଲବେଳେ ଚନ୍ଦ୍ରମୁଖ ରେ,
କିଶୋରି !
ମୁକୁତା-ଝାଲି ତାଠଙ୍କ,
ଦୋହଲି ବା ଦେଖି ହୂରହୁଏ ଅଖି ପୁତ୍ରିର କୁରଙ୍ଗ ପଙ୍କ ରେ ।୫।

ଚମ୍ବାଇ ଚୁମ୍ବି ମୋ ଅଧର ବଦନେ ପୀଡ଼ ନେଇ କଞ୍ଚ ଖୋସି,
ଅତୁଳ୍ୟ ଅମୂଲ୍ୟ ଝଲ ଝଲମଲ ଗଣ୍ଡକୁ ମୋ ଗଣ୍ଡେ ଘଷି ରେ,
କିଶୋର !
ଯାହା ଭାସ୍ତୁ ମଲି ଇଷି,
ଅଖଣ୍ଡ ପ୍ରମୋଦ ପ୍ରବାହେ ମୋ ହୃଦ ଅନାୟସେ ଯାଏ ଭାସି ।୭।

ଘନସାର ବାସ ପ୍ରଖର ନିଃଶ୍ୱାସ ଶରମଭରୁଁ ପ୍ରସରେ,
ନିଦାଘେ ଲୁଲିଲ୍ ନବୀନ ମଞ୍ଜରୀ ପରି ଜମି ମୋର ଉରେ ରେ,
କିଶୋର,
ଦେଇଅଛୁ ସୁଖ ଯେତେ,
ତୋ ପଦ ରଞ୍ଜିବେ ଅଲତା ହେଲେ ମୁଁ ସୁଝିବ ଅବା କିଛିତେ ରେ ।୭।

ଏପରି ସମ୍ପତ୍ତି ଗୁଡ଼ଅପି ସ୍ଥିତ ବନଧରି ନଦୀ ଦେଶେ,
ମୋ ହୃଦୟ ଫାଟିନଗଲା ଯାହାଟି ବଳନ୍ତୁ କଷ୍ଟେ କୁଳଶେ ରେ,
କିଶୋର !
ଲୋଡ଼ଲେ ଅଜ କେ ଦେବ,
ବ୍ରଜ ବରଜାଲ ଦନୁ ସେ ଗଲାଣି କହେ ଶ୍ରୀମୁକୁନ୍ଦ ଦେବ ରେ ।୮।

---

( ୧୦ )

ରାଗ—ପୂରବୀ । —ଅଠତାଳି ।

ଅଳ୍ପ ଚିତାକୁ ଗୋ, ଅଳ୍ପ ଦଣ୍ଡକୁ ଗୋ, ବୃଥା କଥାକୁ ଗୋ,
କାହିଁକି ଦୁଃଖ ଭୁଷଣା ?
ଶ୍ୟାମ ମୋର ଜୀବବନ୍ଧୁ ବୋଲି, ଯିବ
ଏହି ଶ୍ରୀମୁଖରୁ ଶୁଣା । ୦ ।

ସରଦାର ମଧୁ ଫରମାସିଲନ ନିକୁଞ୍ଜମନ୍ଦର ମଣ୍ଡା,
ଅନଙ୍ଗ-ରଙ୍ଗ ରଙ୍ଗସ୍ଥଳେ ଉଡ଼ବ ଶୃଙ୍ଗାର ମଙ୍ଗଳ ଧଣ୍ଡା । ୧ ।

ସରମ ସମୟ ସମ ରସମୟ ସବୁ ରୂପେ ହୋଇବାକୁ,
ନାଜ ଜୟ ହେତୁ ଧ୍ୱଜ କରିବୁ ତୁ କୋମଳ ରୋମଲତାକୁ ।୨ ।

ନବୀନ ଘନ ଶ୍ୟାମଳ କୃଷ୍ଣ ପକ୍ଷେ ଚନ୍ଦ୍ରାଭିଖ୍ୟା ନ ଦର୍ଶିବ,
ସ୍ମର ସହଚର ସାବୟବ ଲଂଘି ବନମାଳିକା ବାସିବ ।୩।

ତଦନନ୍ତର ତୁ ମୋଠାରେ କରୁଣାରସ ସିଞ୍ଚ ବା ନ ସିଞ୍ଚ,
ମିଳିବ ତୋ ପଦ-କଞ୍ଜକୁ ଶିଖଣ୍ଡମୟୁ ଚୂଳାଞ୍ଚଳ ଲଞ୍ଚ ।୪।

ମିଳିବାକ୍ଷଣେ ତୋ ପୀୟୂଷ ମଧୁର ମୁଖସୁବାସ ରାଜୀବ,
ମୁରଲୀ ଚୁମ୍ବନ ମୁରଲୀ-ମୋହନ ମନରୁ ପାଶୋରି ଯିବ ।୫।

ଗଜର ବରନା ଗଜରବ ମନା କର ମନ କଲୁ ତା'ରେ,
ବଣିକହସ୍ତର ମଳାଇବ ହର ମଣି କନକଲତାରେ ।୬।

ରସି ସଖୀଗୀରେ ହସି ରାଧା ଧୀରେ ଭାଷିଲେ ସ୍ନେହେ ଯା'ମ ଯା',
ହଟିଲେ ନିଃସର୍ଗ ଧୀର ଅଷ୍ଟଦୁର୍ଗ ବସୁଧା-ବଳୟ ରାଜା ।୭।

———

( ୧୧ )

ରାଗ—କାଫି ।—ଝୁଲ ।

ଅଜ ଗମାର ମାରକୁ କେ'ମାନେ ରେ । ପଦ ।

ସହୁ ସେ ନସହୁ କହୁଅଛୁ ଅଭିମାନେ
ମୋର ହେଲେ ଡର ନାହିଁ ଧାନେ ରେ ।୧।

ତୋର କର୍ପୂରହାସି । ତୁ ପର ଅବଧାନେ
ରଖିଲୁନି ଯେବେ ସନ୍ନିଧାନେ ।୨।

କହିଲେ ହେଁ ମୋ ଭାଗ୍ୟ ନ ସହି ଖଳଜନେ
ଧନ ଯେବେ ନ ଶୁଣିଲୁ କାନେ । ୩ ।

ପହୁଡ଼ ତୁ ଯାହା ଦେଇ ବଳ ଅବସାନେ
ମସ୍ତକ ମୋ ହସ୍ତ ଉପଧାନେ ।୪।

ରସନିଧି ! ଯାହା ମୋ ଉରସ ଅନୁମାନେ,
ତୋ ପୃଷ୍ଠ ବମ୍ବ ଓଷ୍ଠ ଚୁମ୍ବଦାନେ ।୫।

କଶୋରୀ କଶୋରୀ ଗୁରୁ ପଦକଞ୍ଜ ଧ୍ୟାନେ
ଭଣେ ଜଗନ୍ଦେବ ସାବଧାନେ । ୬ ।

---

( ୧୬ )

ରାଗ-ପୂରବୀ ।—ଅଦତାଳ ।

( କାମଦୁହା ବୃତ୍ତ )

ଅରେ ଜବାଧର,
ରାଜତ୍ଛ ହାତେ ପଛେ ଯିବା ଧର
ରସି ରସେ ଯଶ ରଖି ଥିବା ଧର । ପଦ ।

ଭବ ନାନା କେଳି ମିଳି ରସେ, ଉରନା ଗୁରୁଜନରୁ ଲେଶେ,
ବର ନାଗରୀଯାଙ୍କର ନାମ ନାଶ ଲଭୁ ତୋ ଛଦ୍ମ ପରକାଶେ । ୧ ।

ବଜାର ମଧ୍ୟରେ ଜନ ଗାଜ, ରଜାର ସମାଜେ ପଡ଼ଯାଉ,
ହଜାର ଅକଟ ହେଲେ ହେଁ ପ୍ରକଟ କରବା, ଡ଼ରବା ନାହିଁ ଅଜ ।୨।

ଅଦକ୍ଷତ ନୋହୁ ଯାଉ ଦେଖା, ରଦକ୍ଷତ ନଖଶିଖ ରେଖା,
ଭ୍ରୂଲଇ ବଚନେ ଭୁଲାଇ ଦେବାର ଲିପିଅଛୁ ଦୁଇଭ୍ରୂଲେ ଲେଖା । ୩ ।

ଉଲପ ସଙ୍ଗମ ବେଳେ ତୋର, କଲପଦା ମୁଁ ତ ଜରଜର,
ଜଳପ ଅଳପ ଶୁଣିଲେ ମଣନ୍ତି, ଭଲପର ସମ୍ପତ୍ତିକ ଘୁର । ୪ ।

ରାଜାଧିପତ୍ୟଙ୍କୁ ଶୁଣିବାକୁ, ବାଜାବୃନ୍ଦ ନିନ୍ଦା ଭଣିବାକୁ,
ଖଞ୍ଜିରଖିଅଛୁ ଶ୍ରୁତିକି ତୋ ପଦ ମଞ୍ଜିର ସିଞ୍ଜିତ ଶୁଣିବାକୁ । ୫ ।

ଏପର ନିଶି ପ୍ରସର, ବଂଶୀ,—ନିନଦ ଭୁଜଙ୍ଗୀ ହେଲା ବଂଶୀ,
ଅଷ୍ଟବୁର୍ଗ ନେତା ବୋଲେ ହତଚେତା ହେଲେ ଗତଜାତ କଳହଂସୀ।୬।

---

( ୧୩ )

## ରାଗ-ଭାଟିଆରୀ । ଏକତାଲି

ଅରେ ଦୁଃଖିଧନ,
ସୁଖୀ ଏକା ଏ ସଂସାରେ ସେହି ଜନ । ପଦ ।

ମହାରସୋଦୟ ରାଜ୍ୟଥିବ, ଉଦ୍ଧି ଯାହାର ସାମ୍ରାଜ୍ୟ ଥିବ,
ହଂସଧ୍ୱଜ-ଯୁଦ୍ଧ ସମୟେ ବିବିଧ ରସକୁଶଳା ସାହାଯ୍ୟ ଥିବ । ୧ ।

ହରି ଚରିତରେ ଭକ୍ତି ଥିବ, ମସ୍ତିରେ ମହା-ମହତ୍ତ୍ୱ ଥିବ,
ଜଡ଼ିବାକୁ ଅଙ୍ଗେ, ମନସିଜ ସଙ୍ଗେ, ଲଢ଼ିବାକୁ କାନ୍ତି ସତ୍ତ୍ୱ ଥିବ । ୨ ।

ଅଲକାସଦୃଶ ବାସ ଥିବ, ସୁଧା ସହୋଦର ଗ୍ରାସ ଥିବ,
ନୂଆ ରସିକାର ସୁଆଗ ସରସ, ଖିଅଲରେ ଅଭିଳାଷ ଥିବ । ୩ ।

ଜରେ ଗୃହ୍ନ ଚନ୍ଦ୍ରହାର ଥିବ. ବଚନରେ ସତ୍ୟ ଧାର ଥିବ,
ହରଷ ଦାୟିନୀ ମୁନିବିମୋହିନୀ ସରସ ହୃଦୟା ଦାର ଥିବ । ୪ ।

କାବ୍ୟରସେ ଧନ ବଞ୍ଚୁଥିବ, ପରଂପଦ ପୂଣ୍ୟ ସଞ୍ଚୁଥିବ,
ସୁମିଳନ ଆଶେ, ଗଣ୍ଡିଧନ ତୁଲେ ନିର୍ମଳନ ଲୀଳା ରଚୁଥିବ । ୫ ।

ବିନୟ ସଂପଦ ପୂରିଥିବ, ଗିରପର ମତ୍ତକରୀ ଥିବ,
ହରିବାକୁ ସ୍ମର ଅହଙ୍କାର ଯାର ପରଣିତ ବିମ୍ବାଧରୀ ଥିବ । ୬ ।

ସତ୍ତ୍ୱ ସମୃଦ୍ଧି ସମ୍ପଦ ଥିବ; ସବୁ ସୁଖେ ଧନ୍ୟ ପଦ ଥିବ,
ପୀଡ଼ିବାକୁ ସାର ଜଗତୀ-ଭୂଷାର ସୁରସ ସୁବଦଛଦ ଥିବ । ୭ ।

ଗୃହୁ ଦେଖି ହୃତ୍ତୁ ଲସୁଥିବ, ସଦାନନ୍ଦ ଜଳେ ଭାସୁଥିବ,
ନାଶିଯାକ ରଙ୍ଗେ, ରସି ମିଶି ଅଙ୍ଗେ, ଶଶୀମୁଖୀ ତୁଲେ ବସୁଥିବ । ୮ ।

ଅନ୍ୟାୟ ବିଭବ ଜୁଟୁଥିବ, ଅରଗର୍ବ ଶିର ଚୂଟୁଥିବ,
ବଧୂର ମଧୁର ରସଗର୍ଭିଗୀର ପଦକୁ ପଦେ ଯେ ପୁଟୁଥିବ । ୯ ।

ସମୀପେ ସୁମନ୍ତ୍ରୀବର ଥିବ, ମଜ୍ଜିବାକୁ ଦିବ୍ୟସର ଥିବ,
ହେଲେହେଁ ମିଥୁନ, ପ୍ରିୟ ପ୍ରିୟାଜନ, ମନୋହର ସ୍ୱରଦର ଥିବ । ୧୦ ।

ସକଳ କେଳିରେ ମନ ଥିବ, ବୁଲିବାକୁ ଫୁଲବନ ଥିବ,
ଦଳିବାକୁ ଘନଜଘନାର ପୀନ କନକ-କଳଶ-ସ୍ତନ ଥିବ । ୧୧ ।

ମାନୁଥିବା ଅଭିମାନ ଥିବ, ବଳିକି ଛଳିବା ଦାନ ଥିବ,
ବରତନୁ ରତେ ଦରବ ପିବାକୁ ହରପର-କଳା ଜ୍ଞାନ ଥିବ । ୧୨ ।

ହାଟକ ଝଟକ ଦ୍ୟୁତି ଥିବ, ମାର-ମଞ୍ଜୁଳ ମୂରତି ଥିବ,
ଅସିତକେଶୀର କରୁଣା ବଶରୁ, ରସିକ-ରାଜ୍ୟରେ ଛତ୍ର ଥିବ । ୧୩ ।

ଅକଳଙ୍କ ହେବା ଗୋଚର ଥିବ, ତହିଁ ସମୁଚିତ ପୂଜ ଥିବ,
ବୋଲେ ଗ୍ଳୋଟରାପ୍ତୁ, ଯାହାର ନିଷ୍ଟପ୍ତୁ. ଅନ୍ତ ସମପ୍ତକୁ ଯୋଗ ଥିବ ।୧୪।

———

( ୧୪ ).

ରସକୁଲ୍ୟା ।

ଅହା ନୀଳାଦ୍ରି କେଶରୀ ଶ୍ରୀହରି ! କାହା ଅଗରେ କରିବି ଗୁହାରି,
ଯାହା ହେଉଅଛି ତାପ ଚିତ୍ତରେ, ତାହା କେ ଯେଣିବ ତିନି ଲୋକରେ,
ସାହାହୀନ ମୁଁ ଯେ ଦେଖ ହେ !
ବାହାରେ ତୁମ୍ଭର ଅନ୍ୟଗତି ନାହିଁ, ମହାପ୍ରଭୁ ରଖ ରଖ ହେ । ୧ ।

କହୁଛ ପରା ଶ୍ରୀମୁଖେ ବଚନ,— ସହି ନ ପାରଇ ଦୀନ କନ୍ଦନ,
ମହୀପାଳ ମତେ ଦଣେ ଅନ୍ଧାର, ଦହିଲା ଚିନ୍ତାନଳ ନିରନ୍ତର,
ରହିଲା ନାହିଁ ଭାରତୀ ହେ,
ନୋହିଲା କରୁଣା କିମ୍ପାଇଁ ତ ମୋ' ଠାରେ ବଢ଼ିଲା ବଡ଼ ଅକୀର୍ତ୍ତି ହେ । ୨ ।

ସାର ତୁମ୍ଭ ଆର୍ତ୍ତିଭଞ୍ଜନ ବାନା, ବାରଣୀ ଗ୍ରାସରୁ ଯାଉଛି ଜଣା,
ଗାର ମୋର ସମ ନାହିଁ; ଆରତ ବାରମ୍ବାର ଜଣାଉଛି ମୁଁ ନିତ,
ତାରଣ ତୁମ୍ଭେ ଏଥିକି ହେ,
ଧାରଣ କରୁଛି ଚକ୍ର କିପାଁ କରେ ନ ହର ଭକ୍ତବିପତ୍ତି କି ହେ । ୩ ।

ଚରମଦଶା ହେଲା ନିରନ୍ତର, ମରମକୁ ବାଧିଲାଣି ମୋହର
ଶରମ ସରିତ ସ୍ରୋତେ ପଡ଼ିଲି, ଭରମରେ ବେଳୁବେଳ ବୁଡ଼ିଲି
ପରମ ବେଳକୁ ସେବି ହେ,
କରମକୁ ମୋର ଯେବେ ସୁମରିବ, ଧରମ କାପାଁ ଲେଉଡ଼ିବ ହେ ? । ୪ ।

ଅମରବର ଅଁଦ ଦେବତାରେ, ପାମର ବୁଦ୍ଧିରେ ସେବନ୍ତି ନରେଃ
ଚାମର କଳପତରୁ ରୁଚିର, ଶ୍ୟାମ ମୂରତି କରୁଣା ସାଗର,
ଅମର ସକଳେ ଥିଲେ ହେ,
ଭ୍ରମରବର ନୃପ ଏକା ଶରଣ ତାମରସ ପଦତଳେ ହେ । ୫ ।

---

( ୧୫ )

ରାଗ-ତୋଡ଼ି । —ଝୂଲା ।

ଅରେ ବିଧୁବଦନା,
ଘେନିଲୁ ତ ନାହିଁ ମୋ ନିବେଦନା । ୦ ।

ମହାବ୍ରତ ପୁଞ୍ଜ ପାଳିକାଶିରେ, ଦେଉଥିଲି ଜବା କାଳିକା ଶିରେ,
ପିଠି କରିବାକୁ କି ମୋ ଅଙ୍ଗକୁ, ସମର୍ପି ଦେଇ କାମ ଶଅଙ୍ଗକୁ । ୧ ।

ମାଳିଯାକ ବହୁଥାନ୍ତି ଉଦକ, ଜାଳି ଜାଗର କରି ଅଭିଷେକ,
କାଳଟି ଯାକ ସେବି ଶଙ୍କରଙ୍କୁ, ଚୁମ୍ବ ଗୋଟିକୁ ଯେ ବଳିଲି ରଙ୍କୁ ।୨।

ଘନକର ପ୍ରିୟସଖୀଙ୍କି ଭଜୁ, ସ୍ତନ କଳଶ କଠିନତା ତାଜୁ
ନାହିଁ କିଛୁ ସୁଖ ମୋ ଦେହେ ବୋଲି, କାହିଁକି ଦେଉ ମୋ ପାଣିକି
ପେଲି । ୩ ।

କଳ-ବନପ୍ରିୟ-କୂଜିତ ବାଣୀ, ଖଳବଚନ ସତପରି ମଣି,
ସୁରଜ୍ୱରଜାତ ଯାତନା ସିଁହୁ, କରଜ ମୁନେ ଶରୀରରୁ ମହି । ୪ ।

ସ୍ମରତେ କହୁଥାଏ ଏଣୁ ତୋର, ସ୍ମରତେ ନ ରହେ ବିବେକ ମୋର,
ଅଧରେ ଲୁଚିଲେ ମୋ ଦନ୍ତ ଶେଷ, ନ ଧରିବୁ ଶବ୍ଦେ ବୋଲି ଟମା
ଦୋଷ । ୫ ।

ବସୁବର୍ଗ-ସ୍ୱର୍ଗ-ଶକ୍ର ବିନୟେ, ବସୁମତୀ-ଭୂଷା ତୁଷ୍ଟ ହୃଦୟେ,
ଶଙ୍କର ତ ଏ ତୁମ୍ଭର ବୋଇଲ, ପଦ୍ମରମ୍ଭ କର ନୂଆ ଛଇଲା । ୬ ।

---

( ୧୭ )

ରାଗ-ବିହାଗ । —ଝୁଲ ।

ଅରେ ମୋ ହୃଦହାରି,
କାହିଁ ବହେ ନେଇ ନୀରଧାରି ରେ । ପଦ ।

ଶୋଇଅଛୁ କାହିଁ ଧରିରେ ରାମା,
ପଙ୍କଜାକ୍ଷି ହେଜ ମୋ ଅଙ୍କ ତୋ ନିଜ—
ବିଜୟ-ପଲଙ୍କ ପରି ରେ । ୧ ।

ଥିଲେ ହେଲେ ମୋର ହରି ରେ ରାମା,
ତୁ ଅଟୁ ତ କ୍ଷମାକଳନିଧି ବାମା-
ରାଜଙ୍କ ମସ୍ତକ ସ୍ଥିରି ରେ । ୨ ।

ଘନ ପୀନ ପୟୋଧରି ରେ ରାମା,
କନ୍ଦୁ ତୋ ମୂରତି ସୁଷମା ଝଂପଇ
ମୋ ମନ ନୟନ କାରି ରେ । ୩ ।

ନବପଲ୍ଲବ ଅଧରି ରେ ରାମା,
ଗୁମାନ ନ ଧର ଧରଣୀର ଶିର-
ମଣ୍ଡନା ଟମକଟରି ରେ । ୪ ।

ଛିଡରେ କରଜ ଚିରି ରେ ରାମା,
ନକର ରେ ଜୀବବନ୍ଧୁ ଅଭିନବ—
ପଲ୍ଲବ ସୁନ୍ଦରାଧରି ରେ । ୫ ।

ଢେନ ମୋ ଶୀହସ୍ତଧରି ରେ ରାମା,
ଜଗଦ୍ଦେବଙ୍କୁ ତୋ ବନ୍ଧୁକଅଧର
ମଧୁରସ ପାନକରି ରେ । ୬ ।

---

( ୧୭ )

ରାଗ-ଇମନ କଲ୍ୟାଣୀ ।—ଆଠତାଳ ।

ଆହା ! ମୃଦୁଦେହା ବରସ୍ନେହକୁ ତୁ ହୁଡ଼ିଲୁ । ୦ ।

ହଜାରବାର ଯମୁନା— ନ ଯା' ବୋଲି କଲେଁ ମନା
ଯାହା, ସୁଖ ରାହା ତେଜି ତା ହାରୁଡ଼େ ପଡ଼ିଲୁ । ୨ ।

ମୁଁ ଜାଣେ ତା ସଙ୍ଗ-ରସେ, ନଥାଏ ତୋ ମନ ଲେଶେ,
ତାହିଁ ଦୋଷ ନାହିଁ ଥରେ ଗୃହିଁ ଦେଇ ସଢ଼ିଲୁ । ୨ ।

ତଟେ ତ ଥିବ ଗୋଚର ସେ ତ କାଠବଙ୍କ ବର
ଲାଭ ବିନା ଯା ଭରସି, ତା ଭରମେ ବୁଡ଼ିଲୁ । ୩ ।

ଅବସାନେ ଏହି ଫଳ, ଅଛୁ ବୋଲି ଜଳଜଳ-
ଦଣ୍ଡୁଥିଲୁ, ଶିଶୁପର କି ସୁଖକୁ ଛଡ଼ିଲୁ । ୪ ।

କହେ ଅଷ୍ଟଦୁର୍ଗ ନାହା ଅହେତୁରେ ଏବେ ଯାହା
ଧରାଦେବୀ-ଟରା । ତାହା ସରାଗରେ ଗଢ଼ିଲୁ । ୫ ।

---

( ୧୮ )

ରାଗ—ପୂରବୀ ।—ଏକତାଳ

( କାମଦୁହା ବୃତ୍ତେ )

ଅରେ ରସସିନ୍ଧୁ !
ନାହିଁ ନାହିଁ କିପାଁ କରୁ ପ୍ରାଣବନ୍ଧୁ ରେ । ପଦ ।

ରାଜୀବର ଅରେ ସୁ-ରମଣି, ରାଜୀବର-ମୁଖୀ ମୋର ବାଣୀ
ବାଜଯାଉ ଅରେ କଟିର କିଙ୍କିଣୀ, ଭାଜିଯାଉ କାମଦର୍ପ ଶୁଣି ରେ ।୧।

ମିଶିଯା' ମୋ କୋଳେ କିପାଁ ଲାଜ, ତୋଷିଯା' ମୋତେ ନାଗରରାଜ,
ରସିକା, ମଦନ ରସେ ମୋର ସଙ୍ଗେ, ରହିଯା ଗୋ ମରଜ କି ଅଜ ରେ ।୨।

ଫୁଲଇ ନାସାକୁ ହୋଇ ତୋଷ,   ଟେଳଇ ପଦେ ବଚନ ଭାଷ,
ଝୁଲିଯାଉ ଥରେ ଅପଘନ ତୋର, ଭଳି ତୁ ଦେଖିବୁ ମୋ ମାନସ ରେ ।୩।

ବାସ ପ୍ରତି ଅଙ୍ଗୁ ଖସିଯାଉ,   ଦୁଇ କଳେବର ମିଶିଯାଉ,
ଝଲକ ଅଧରୁ ହାସ ଦଶିଯାଉ,   ନିମିଷ ପରେ ଜଣିଯାଉ ରେ । ୪ ।

ଝରକାଗ୍ର ବାଜିବର ଯାଉ,   ଜଘନାଦ୍ଧ ଅଙ୍ଗ ଥରିଯାଉ,
ଥିବା ମନୋରଥ ମୋର ପୂରିଯାଉ,   ମଦନ ଭଣ୍ଡାରୁ ସରିଯାଉ ରେ ।୫।

ଭଣେ ଅଷ୍ଟଦୁର୍ଗ ମହୀପାଳ,   ରସେ ଝର ମର୍ଜି ଅତି ଭୋଳ,
ନାଚିଯାଉ ଥରେ ନାସା ନୀଳମଣି, ପାଚିଯାଉ ସବୁ ଲତା ଫଳ ରେ ।୬।

---

( ୧୯ )

ରାଗ—ବେହାଗଡ଼ା । —ଅଧ

ଅଜ ରସବତୀଙ୍କର ରାଜା । ଝୋଡ଼ୁ ନ ଯା ରେ । ୦ ।

ସରିଯିବ ସିନା ସୁନାଗୋରି । ଦୁଃଖ ବେଳାରେ,
ଥରେ ଅଉ ତୋ ରସପାତରେ ମୋତେ ଭଜା ରେ । ୧ ।

ତୁହିଙ୍କ ନାମେ ଡିଣ୍ଡିମ ବାଜୁ ବ୍ରଜ ବଜାରେ,
ଅସରସ ଲୋକ କି କରିବ ନିନ୍ଦ ହଜାରେ । ୨ ।

ଭଣାଯାଉ ଗଣା ଯା ଅଦୃଷ୍ଟ ବୃଷ୍ଟ ରଜାରେ,
ଝରନ୍ତୁ ଦୁରନ୍ତେ ଲେଖା ମୋ ରସେ ଗରଜାରେ । ୩ ।

ଦେହମହୀ ପୂରନ୍ତୁ ପୁଲକ ବ୍ୟାଜ ଗଜାରେ,
ଏ ସମୟେ ସ୍ମରାନଳ ଝାସରେ ନ ଭଜା ରେ । ୪ ।

ଶ୍ରୀମତୀ ଏପରି ହରି ଭାରତୀ-ଭାନୁଜା ରେ,
ବୁଡ଼ିଗଲା ପରି ଅଙ୍କେ ବିରାଜିଲେ ଲଜ୍ଜାରେ । ୫ ।

କୃପାକର ବସ୍ତୁଦୁର୍ଗ ବସୁନ୍ଧରା ରଜାରେ,
ସ୍ମିତ କଲେ ବସିଲେ ମଦନ ମହାପୂଜାରେ । ୬ ।

---

( ୨୦ )

ରାଗ—କାମୋଦୀ, ଅଠତାଳି ।

ଆଉ କି ସହ୍ମୀ ସହି କରବ ଗୋ,
କହି ମହତ ସିନା ସରବ ଗୋ ॥ ଘୋଷା ॥

ଶ୍ୟାମ ଗୁଣ ପରଖି ଚିତ୍ତ ଭିତରେ ସଖି !
ରଖିଲଣି କପର ଭରବ ଗୋ;
ଭରି ଗଲଣି କ୍ଷୀର,— ଭାଣ୍ଡରେ ଯେବେ ଖାର
ଘ୍ରାଣି କେ ସ୍ୱାଦୁ ବାର ପାରବ ଗୋ । ୧ ।
ଲୁଟିଲଣି ମରନ୍ଦ ଆଉ କି ହୋଇ ରାଜ
ନିକୁଞ୍ଜେ ତୋ ସଙ୍ଗେ ବିହରବ ଗୋ,
ସୁଧାରେ ବିଷ ଦେଇ ଯତ୍ନେ ଘ୍ରାଣିଲେ ନେଇ
ତହୁଁ କି ମଧୁ ଆଉ ଝରବ ଗୋ । ୨ ।
ଦେଲଣି ସ୍ନେହ ଭାଙ୍ଗି ତୋ ଠାରୁ ସେ ଶୁଭାଙ୍ଗୀ
ଆଉ କି ତୋ ବୋଲ ସେ କରବ ଗୋ,
ଛେଦ ପାଦପ ମୂଳ ସିଞ୍ଚିଲେ ନେଇ ଜଳ
ସେ କି ନବପଲ୍ଲବ ଧରବ ଗୋ । ୩ ।
ଅଷ୍ଟଦୁର୍ଗ ଅବନୀ- ପତି ଭାଷେ ସଜନି !
ଆଉ କି ତୋ ଦୁଃଖ ସେ ହରବ ଗୋ,
ପରଖ ଦେବା ଲାଗି କଲଣି ଯେବେ ପାଞ୍ଚ
ପଞ୍ଚବାଣକୁ ସେ କି ଡରବ ଗୋ । ୪ ।

---

( ୨୧ )

ରାଗ—ମଲ୍ଲୁଆ, ଅଠତାଳି

ଆଜ ଏ କି ଗୁମାନ ରେ ( ଚନ୍ଦ୍ରାନନା )
ଦେଖି ନାହିଁ ସ୍ୱପନ ରେ ॥ ପଦ ॥

ସୁନ୍ଦର ରଦବାସ, ମନ୍ଦାର ଦଳେ ହାସ—
କୁନ୍ଦକୁ ପରକାଶ, କୁନ୍ଦନାଙ୍ଗୀ ମୋ ଧନ !

( ପଡ଼ )

ତୁ ବିନା ମୋର ପ୍ରାଣ,   ରମଣୀଗଣ ରାଣ,
ରାଣ ଅଛୁଟି ମାଣ—   ବକ ମୃଗାକ୍ଷୀ ଜାଣ,
ଦାରୁଣ ସ୍ମର ରାଣ,   ଶାଣ ଦଅ ତୀକ୍ଷଣ,—
ବାଣ ଗଣରେ, ନିଶ୍ଚେଁ   ନେବଟି ଏ ପରାଣ । ୧ ।

ଗୃହୁ ଚମ୍ପକ ଦେହା ରେ, ଚନ୍ଦ୍ରାନନା;
କାହୁଁ ଶିଖିଲୁ ଏହାରେ ।
ଅଶ୍ରୁ ପ୍ରସରବାର   ମହ୍ଲାକ ଚରବାର,
ଆଜନ୍ମ ପରଗୃର   ସଂସାର ସାରବାର । ୨ ।

ମର୍ମ ଗଳୁଟି ଫାଟି ରେ, ଚନ୍ଦ୍ରାନନା !
ମାର ମାର୍ଗଣ ଧାଟି ରେ,
ବନ୍ଧୁଅ, ସରଳଟି   ତୋ କୀର୍ତ୍ତି ପରିପାଟୀ,
ରୋପିବାର ଲତାଟି   ମୂର୍ଚ୍ଛା ନ ପକା କାଟି । ୩ ।

ଦୋଷ ଦେଖି ତୁ ଦଣ୍ଡରେ, ଚନ୍ଦ୍ରାନନା !
ମଣ୍ଡନା କର ଗଣ୍ଡରେ,
ବାହୁ ପାଶେ ନିତାନ୍ତେ   ବାନ୍ଧିବା ବସନାନ୍ତେ
ଓଷ୍ଠ ବିଦାର ଦନ୍ତେ   ଭୂଷ କରଜ-କୁନ୍ତେ । ୪ ।

ଅରମ୍ଭିଲେ ତୁ ରୁଷା ରେ, ଚନ୍ଦ୍ରାନନା !
ଭରସା କେ ମୋ ରସାରେ,
ତେଜିଲେ ତୁ ମୋ କୋଳ   କେତେ ମୋ ଧୃତି ବଳ
ସହେ କି କରବାଳ   କେଳି-କମଳ ଦଳ ? । ୫ ।

ଶ୍ୟାମ ବନସ୍ତୁ ଭାଷା ରେ, ଚନ୍ଦ୍ରାନନା,
ମନ୍ଦ ମଧୁର ହସା ରେ,
ଭାଷିଲେ ପ୍ରିୟବାଣୀ   ରସେ ସେ ସୁଲକ୍ଷଣୀ,
ରସିଲେ ମନ ଜାଣି,   ଶ୍ରୀ ଗୋଷ୍ଠରାୟ ଭଣି । ୬ ।

---

( ୨୨ )

## ରାଗ—କାମୋଦୀ, ଏକତାଳି

ଆଜ କେ ଶିଖାଇଲା ରୁଷାକୁ ରେ, ରାଜକୁରଙ୍ଗୀ—ଶିଶୁ ଦୃଷାକୁ ରେ;
ଲଜ-ମିଳିତ-ମନ୍ଦ-ବିକାଶ ବାସକୁନ୍ଦ ରମ୍ୟହାସିନୀ
ବରଯୋଷାକୁ ରେ ॥ ଘୋଷା ॥

ଶୁଣିବାକୁ ମୁଁ ବାହାର ହେଲେ ଦୃଷ୍ଟି ଯାହାର
ଦଣ୍ଡେ ମୋ ବିହାର ଆଶାକୁ ରେ,
ଉଭା ହେଲି ସମୀପେ ନ ଗୃହିଲା ଯେ କୋପେ
ବୋଲିବା ସିନା ଦୁଷ୍ଟ ଦଶାକୁ ରେ । ୧ ।

ବସି ଉନାରୀ ପାଶେ ଅସିତ କେଶୀ ତୋଷେ,
ହସି ଫୁଲାଇ ଗୃହ୍ଣ ନାସାକୁ ରେ,
ପୁଲକୁ ଥାଏ ପରି ମୁଁ ଲପୁଥିଲେ ଧୀରି,
ଶୁଣି ମୋ ସାଧାରଣ ଭାଷାକୁ ରେ । ୨ ।

ଅଧରୁ ସୁଧାଙ୍କର, ଦେଇ ଯେ ନାଶେ ମୋର
ବିଷମ ଶର-ଜ୍ୱର-ତୃଷାକୁ ରେ,
ଚନ୍ଦ୍ରାବ୍ଦଶାନୁ ହାସେ, ସାରଦେଲା କି ଦୋଷେ
ପଗୃରବଟି କଣ୍ଠୀବ୍ଦଶାକୁ ରେ । ୩ ।

ଯାହାକୁ ଅଧିକତ, ଦେଇଥାଏ ସୁଦତୀ,
ଖୋସା ଉପର ହୀର ଭୂଷାକୁ ରେ,
ଏହ ସିନା ବଚନ କେହ ସେ ହେଲା ପାନ
ମୁହିଁ ନ ଗୃହିଁ ଭଲ ଘୋଷାକୁ ରେ । ୪ ।

ଏବେ ହେଁ ଗୃହୁଁ ଭର୍ଗ- ମୋହନା ଅଷ୍ଟଦୁର୍ଗ-
ଧରାକପଟ ସ୍ୱର୍ଗ ବୃଷାକୁ ରେ,
ନ ରଚୁଁ ନଖେ ଏଣୀ- ଦୃଶାକୁ ପଦେ ବାଣୀ
ଖିରଚୁ କହ ଧରାଭୂଷାକୁ ରେ । ୫ ।

---

( ୨୩ )

ରାଗ—ମୁଲତାନ, ଅଠତାଳ

ଆଜ ଏ ରୁଷାରେ,
ପାଳଲ ନାହିଁକି ତୋର ହୁକୁମ ସୁସାରେ ॥ ପଦ ॥
ହେଲୁ ଯେ ଗଣ୍ଡମଣ୍ଡିତ-କର ସାରସାରେ,
ତୋ ବିନା ଅଛୁ କେ ମୋର ଭରସା ରସା ରେ । ୧ ।
ଚନ୍ଦ୍ରାମଣି ପରି ତୁ ମୋ ଚିତ୍ତ ଘରଷା ରେ,
ଚନ୍ଦ୍ରାଅନା କୁଚକୁମ୍ଭ ଅଶ୍ରୁ ବରଷା ରେ । ୨ ।
ସହ ! ସରଳନ୍ତି ହର ଅହୃତ ତୃଷାରେ,
ବନ୍ଧ ପଡ଼୍ରୁ ସ୍ମିତ ମକରନ୍ଦ ପରଷା ରେ । ୩ ।
ଗୁଣାମ୍ବୁଧି ଥରେ ସ୍ମର ସମରେ ଚସା ରେ,
ଭଣା ଯାଉ ତୋର ଗଣା ନ ଯା ନିରାଶା ରେ । ୪ ।
ଜଗଦ୍ଦେବ ବୋଲେ ଶ୍ୟାମ ବିନୟ ତୃଷା ରେ,
ଶଙ୍କିଲା ଦେବୀଙ୍କ ମାନ ପଙ୍କଜ ଦଶା ରେ । ୫ ।

---

( ୨୪ )

ରାଗ—ଖମ୍ବାଜ, ଅଦ୍ଧତାଳ

ଆଜ ମଦନ ସାଜକି ନାଗର ଭର ରାଜ ରେ ॥ ଘୋଷା ॥
ଲଙ୍ଘିଲ ଯା ଶଙ୍କା ଗୁରୁଭୟ ବନ-ରାଜ ରେ ।
ରସସିନ୍ଧୁ ତଟରେ ସଞ୍ଚରୁ ମନ ବାଜ ରେ । ୧ ।
ରସବତୀ ଚକ୍ରବର୍ତ୍ତୀ ଯଶକୁ ନିହାଜ ରେ,
ଭୁଲଇ ମୂଲଇ ଯାନ ଦେବ ସିନା ସାଜ ରେ । ୨ ।
ପରକର ନାଶ ମଣି ତାର କରେ ମାଜ ରେ,
ଧରଣୀ ମଣ୍ଡନା ବେଶ ଦେବ ସୈନ୍ୟ ସାଜ ରେ । ୩ ।
ଭାଷେ ଜଗଦ୍ଦେବ ଶ୍ୟାମ ବାଣୀ ଭଙ୍ଗାବାଜ ରେ,
ହଜଟଲ ରାଜୀବାର ଶଙ୍କା ଭୂନିତାଜ ରେ । ୪ ।

---

( ୭୪ )

ରାଗ— ତୋଡ଼ି, ଅଠତାଳି ।

ଆରେ କୁରଙ୍ଗୀଦୃଶା, ଆଜ ନାଶି କି ହେବ ତୋ ଦଶା ରେ ॥ ପଦ ॥
ଲଳିତ ପଡ଼ୁଛୁ ପହୁଡ଼ିଲେ ମୃଦୁଳ ତୂଳୀ ତଳପରେ ଯଣେ,
ପୁରୁଷ ତୁଲେ କି ଖେଳିବୁ ସଂସାର ଗୁରୁ ସମର ପ୍ରାଙ୍ଗଣେ । ୧ ।
ନୂତନ ବୟସୀ ଜାଣିବ ଯତନ ତୁ ତ ନ ଜାଣୁ ପହିଲେ,
ସଞ୍ଚୁଅ ହେବୁ କି ସେ କାମ ଅମଳ ମତୁଆଳ ଯୁବା ତୁଲେ । ୨ ।
ଶରୀର ଲତା ତୋ ନ ଜାଣେ ଜନମୁ ପରିରମ୍ଭଜାତ ପୀଡ଼ା,
ବଳିଗଲେ ଲମ୍ବି ସହିବୁ କେହ୍ନେ ସେ ଅରଗଳ ଭୁଜ ଭିଡ଼ା । ୩ ।
କୋଟିଏ ସବତ ଅଳିଙ୍କର ହେଲେ ଗୋଟିଏ ନ ଢେନୁ ଚୁମ୍ବ,
ପୀବର ସ୍ତନାରେ ବ୍ରଣେ ଏବେ ପ୍ରସରିବ ରଦ ବାସ ବିମ୍ବ । ୪ ।
ବିଧୁବଦନା ତୋ ଲାଜ ବଳାସିବ ନିଧୁବନ ପରଶ୍ରମେଁ,
ରାଜୀବ ଚରଣ ଝୁଲିଲେ ନୂପୁର ବାଜିବ ଯେ ଝୁମୁଝୁମୁ । ୫ ।
ଭରତ କରି ସମସ୍ତ ମନୋରଥ ବରତ ଆସିବୁ କେହ୍ନେ,
ବୀର ରାମଚନ୍ଦ୍ର ଦେବ ବୋଲେ ମୋର ନିରନ୍ତର ଚିନ୍ତା ଏହି । ୬ ।

———

( ୭୫ )

ରାଗ—ପୂରବୀ, ଏକତାଳି
ଆରେ ହେମଦେହା,
ତୁ ତ କୁହାଉ ରସିକା, କହୁ ଏହା ରେ ॥ ପଦ ॥
ମୋହନ ପୁଣି ସେ ହସୁଥିବ,—ବାହାର ଭିତରେ ଦିଶୁଥିବ,
ନର ନାଗ ନାକେ ବରବରନା କେ, ପର ଉପଦେଶେ ରୁଷୁଥିବ । ୧ ।
ଭଙ୍ଗି ଧୃତ ଚନ୍ଦ୍ର ଚୁହୁଁଥିବ— ନାଠୁଆ ନେତ୍ରାନ୍ତେ ଚୁହୁଁଥିବ,
ସେ ଖେଳା ଭ୍ରୂବଲ୍ଲୀ, ଚୁହିଁଦେବ ବୋଲି, ବିବେକ ସେକାଳେ କହୁଥିବ ।
ତା ଶିଖଣ୍ଡ ଚୂଡ଼ା ଝଲକରେ—ପଡ଼ିଲେ ଦୃଷ୍ଟି ଅପଲକରେ,
ମହୀଲୋକେ ରମା, କେ ହୀନ କରମା, କେହି ନ ପୂରିବ ପଲକରେ ।୩।
ସଞ୍ଜବେଳ କଞ୍ଜ ପରି ରହି—କରରୁହ ମୁନେ ଚିର ମହୀ,
ମନମଥ ମନ, ମଥକୁ ପଥକୁ, ନୟନର ନ ଆଣିବ କେହି । ୪ ।

ସକପଟ ମନେ ପୋତ ମଥା—ନ କହିବ ଯେଉଁ କ୍ଷଣ କଥା,
ସକଳ ସୁକୃତ ଫଳ ମୂରତକ, ସେ କ୍ଷଣୁଟି ନୋହିବ କ ବୃଥା । ୫ ।
କହନ୍ତେ ଏପରି ସୁଦଶନା—ସହଚରୀ ହୋଇ ସହି ସିନା,
ଅଷ୍ଟଦୁର୍ଗ ନାଥ କହନ୍ତ କହିଲେ, ତୋ ମରଜ କଷୁଥିଲି ସିନା । ୬।

---

( ୬୭ )

ରାଗ—ତୋଡ଼ି ପରଜ, ଏକତାଳି ।

ଆରେ ମୋ ବନ୍ଧୁ ମହାକ ରୁହୁଁ କାହିଁକ ?
ସରସ ହୃଦୟା ମୋ ଠାରେ ସୁଦୟା ପୂରୁବ ପରି ନାହିଁ କ ? ॥ ପଦ ॥
ମୋ ରଦ ଲଙ୍ଘନ ନ ଥିବାର ପାନ ମଣୋହି ନ କରୁ କେବେ
ପରମ ଦୟାଳୁ ବନା ଅପରାଧେ ଚରମ କରୁ ତୁ ଏବେ । ୧ ।
ନିଦନ ବରହେ ଅବବୋଧ ଗୃହେ ଭିତରେ ଲେଖି ମୋ ମୁଖ
ସ୍ନେହ ଅବଲମ୍ବବଶେ ତହିଁ ଚୁମ୍ବ ଦେଇ ହରୁ ପରା ଦୁଃଖ । ୨ ।
ସୁବେଶ ପଗଡ଼ି ଝରା ମାନ ଛାଡ଼ି କରେ ଧରି ତାକୁ ଆସୁ
ମୁଁ ମୋ କରେ ଶିରେ ଦେବା ଲଳସରେ ନଦରେ ବୋଲି ତ ହସୁ । ୩ ।
ମଙ୍ଗଳାଙ୍କ ଓଷା ମୋହପାଇଁ ଯୋଷାମଣି ତୁ କରିବା ଦନ
କଉତୁକେ ଥରେ ହୃକୁଳ ଉପରେ ଛୁଇଁଦେଲି ସିନା ସ୍ତନ । ୪ ।
ପରୁଁ ଯେଉଁଦନ ଲୁଚି ମୁଁ ବିଧାନ ରଚୁ ପଢ଼ିଲୁ ତହିଁକି
କ୍ଷମା ଛାଡ଼ି ରୋଷେ ଶ୍ରବଣାବତ୍ତ ସେ ପ୍ରହାରୁଛୁ ତ ତହିଁକି । ୫ ।
ସନ୍ଧ୍ୟ ପଞ୍ଜର ପାଖେ ବସି ତୋର ମୁଖଚନ୍ଦ୍ରେ ରଖି ଆଖି
ପକ୍ୱ ବିମ୍ବାଧରେ ଚୁମ୍ବି ଦେଲା ବେଳେ ଦେଖିଲା ସିନା ତୋ ସଖୀ । ୬ ।
ମଧୁବନେ ତେଢ଼େ ନବଢ଼େ ନ ଭଢ଼େ ଲଭିଲା ଭଳି ବ୍ୟଥାକୁ
ଅଷ୍ଟଦୁର୍ଗପତ ବୋଲେ ଅତ ପ୍ରୀତ ଜନ୍ମାଇ ଏହି କଥାକୁ । ୭ ।

---

( ୬୮ )

ରାଗ—ଭାଟିଆରୀ, ତାଳଝୁଲା

ଆରେ ସହଚରୀ, ଥିବ ତୁମ୍ଭଙ୍କ ଏକା ଭରସା କରି ॥ ପଦ ॥
ମଧୁଆ ମଦନ ରଣ କଥା, ଶୁଣି ଜନମେ ଯା' ତନୁ ବ୍ୟଥା
ଏ ଦଣ୍ଡ ତା' ଭଳ ନୁହେଁ ନା ବୋଇଲି ଲାଜେ ଛାଡ଼ି ଗଡ଼ୁଅଛୁ ମଥା ।୧।

ଦିଅଇ ମୋତେ ଏଭଳି ଦଶା, କରାଇବାକୁ କି ଲୋକହସା
କରୁଥିଲି ବେଶ ସମସ୍ତେ ଦିବସ ମଧ୍ୟରୁ ପ୍ରବେଶ ହେଲା ନିଶା । ୨ ।
କହୁଛନ୍ତି ସହଚରୀ ବୋଲି, ମୁଁ ଉଲ୍ଲାସେ ସଧ କରିଗଲି
ତହିଁ ଫଳ ଜଣା ହେଲା ଯା ଅପଣା ଅଙ୍ଗୁଳି ସହିତେ ସରିଗଲି । ୩ ।
ରହିଥିଲି ବନ୍ଧା ଲୋକ ପରି, ଚୁମ୍ବନେ ଶବୁକ ଗଲା ପୂରି
ପ୍ରଦୀପ ଗୁଡ଼ିକ ଜଳି ଝକଝକ ଦିଶୁଥିଲା ହେଲି ଏତେ ସରି । ୪ ।
ଏତେ ଯତନେ ସଧାଇ ତହିଁ, ପାଇଲି କି କି ବଧାଇ କାହିଁ
ଉରଜୁ କାଞ୍ଚିଲା ନ ଘୁଞ୍ଚି ବଞ୍ଚିଲା ଉପାୟୁ ହିଁ ଯେ କହିଲା ନାହିଁ । ୫ ।

---

( ୨୯ )

ରାଗ—ଭୈରବୀ, ଆଦିତାଳ

ଅଛି ଏତେ ମନୋରଥ କରି ରେ, ସହଚରୀ । ପଦ ।
ତମାଳ ମହେନ୍ଦ୍ରମଣି ଅପଘନ,
ପରିରମ୍ଭକୁ କି ଅଟେ ମୁଁ ଭାଜନ,
କେବଳ ଡାକିବ ଥରେ ସେ ମୋହନ, ମୁରଲୀ ମୋ ନାମ ଧରି । ୧ ।

ଯାଉ ଯାଉ ବାଟେ ଭେଟିଲେକ ରାଧା,
ତାଙ୍କୁ ଦେଖି କୃଷ୍ଣ ହୋଇଲେକ ଶ୍ରଦ୍ଧା,
ଯମୁନାର ତଟେ, ବୃନ୍ଦାବନ ଘାଟେ, ଡାକିକରି ମନେ ତୋରି ରେ ।୨।
ଶ୍ୟାମ-ସଙ୍ଗ ରଙ୍ଗଭାବ ରସକେଳି,
ଲଭିବାକୁ ମୁଁ କି ସ୍ଥିର ଏତେ ଭଳି
ଏତେଭଳି ଦେଖିଥିବି ଥରେ ନୀପକୁଞ୍ଜ କେଳି ବିଜୟ ଶୋଭା ମାଧୁରୀ ।୩

ଜଣାଉଛି ଜଗଦ୍ଦେବଙ୍କ ଛାମୁରେ,
ତ୍ରିଭୁଜଭଙ୍ଗୀ ବିଳାସ ମଦରେ,—
ଅଳପ ମୋଠାରେ ପକାଇ ଦେବାରେ, କରୁଣାକଟାକ୍ଷ

---

( ୩୦ )

ରାଗ—କଳହଂସ, ରୂପକ

ଅହା ମୋ ଖଞ୍ଜନାକ୍ଷୀ, ଅନଙ୍ଗେ ମୋ ବନା ଦୁଃଖୀ ରେ,
ଅବନୀରେ ଛଳ ପଡ଼ିବାରୁ ତୋଳ ଧରୁଥିବେ ପ୍ରିୟସଖୀରେ ।ପଦ।

ଅହର୍ନିଶ ଝୁରି ଝୁରି, ଅତି କୃଶ କୃଶୋଦରୀ
ଇନ୍ଦୁକଳା ତନୁ ତାକୁ ନିନ୍ଦବ ନି ତାର ଛାର ତନୁଶିରୀରେ । ୧ ।

ଅଶ୍ରୁଭରେ ନେତ୍ର ଚକ୍ରୀ, ଅବାରତେ ପୂରିବ ନି,
ଅସାର ମାର ଅକୂପାରେ ପଡ଼ିଣ ମୃଦୁହାସୀ ଭାସିବ ନି ରେ । ୨ ।

ଆଭରଣ ଦୂର କରି କେଉଁ କୁମ୍ଭ ପୟୋଧରୀ,
ଅମଳ ମୃଣାଳ ଖଣ୍ଡ ପାଣି ପିଣ୍ଡେ ମଣ୍ଡୁଥିବଟି କପରି ରେ । ୩ ।

ଅବଧିରେ ଛେଳ ଆଶା, ଅଧିକରେ ଅଭିରସା,
ଅତି ଶ୍ବାସଖରି ପଡ଼ୁଥିବ ପରି ହେବ ନି ଦଶମ ଦଶା ରେ । ୪ ।

ଅଷ୍ଟାଦୁର୍ଗେଶ୍ବର ଭଣି, ଅଭିନବ ରାମାମଣି
ଉମାଧବ କୃପା ସତେ ହେବ ଅବା ଜୀବ ଯିବାଯାଏ ପୁଣି ରେ ।୫ ।

---

( ୩୧ )

ରାଗ—ଭୈରବୀ, ଅଠତାଳ

ଆହା କି ଭାଲେ ଲିହ,—ଥିଲି ଦାରୁଣ ବହି
ହେବାକୁ କାମେ ଦହି ଗୋ । ପଦ ।

କ୍ଷଣେ ହେଲେ ଅନ୍ତର,—ନୋହି ପାଶେ ଗୃହର,—ପରି ସେବାଥିବାର ଗୋ
କୁଳାଙ୍ଗୁଁ ବଳ ଚାଉ, ମୋଠାରେ ପ୍ରାଣନାଥ,
କରିବାର ଉଚିତ ହେଲା କି ଗୋ ସଙ୍ଗାତ । ୧ ।

ନିତ ନିଶା ବାସରେ, ଶୟନ ଆବାସରେ, ଥିଲି ପରି ପାଶରେ ଗୋ
ଉରେ ଜମାଇବାକୁ, କୋଳକୁ ଆଣିବାକୁ
ଗୃହୁଁ କଲି ବେଳକୁ, ଅଉ ନ ଦେଖିବାକୁ । ୨ ।

ଏ ବିରହ ବେଦନା, ସହିବାକୁ ନଜାଣା, ଅଛି କେ ମୋହି ବିନା ଗୋ
ସନ୍ତାପ ଅକୂପାର, ଗଣ୍ଡେ ନମଳି ବାର
ଜନେ ହେବାକୁ ପାର ଥିଲେ କହି ବିଗୁର । ୩ ।

ମୋହନ ଅନାଥରେ,—କୃପା ହୃଦ ପଥରେ, ନଇଲେ କପାଁଥରେ ଗୋ
ଦୁଃଖେ କବସବତା, ଭାବେ ଶୁଣି ଲଳିତା ।
ଏ କାଳେ ଏତେ ଚିନ୍ତା ବହିଲ ଗୋ ବଧାତା । ୪ ।

———

( ୩୨ )

ରାଗ—କଲ୍ୟାଣୀ, ଏକତାଳି

ଅହେ ବଂଶୀଧର । ତନୁ-ଅଙ୍ଗୀର ହେଲଣି ଅଙ୍ଗିକାର ହେ । ପଦ ।
ଏତକ ଅଯୁତ ପଦ୍ମ ନୀର—ବାହାର ହୁଅଇ ଭେଦ ନୀର ।
ହୁଅଇ କ ହାସ, ବଦନେ ବକାଶ, ନ ଲାଗିଲେ ପ୍ରଭାକର-କର । ୧ ।
ଲୋଡ଼ାଙ୍କରେ ଭୃଙ୍ଗ ମଧୁପାନ—ନ ଥାଏ କ ପୁଷ୍ପ ସମାଧାନ
ସ୍ୱଇଚ୍ଛାରେ ନେଇ, ତା ପାଶେ ରଖାଇ, ବୋଲଇ କ ମଧୁ ପାନକର ।୨।
ହେବାଠାରେ ପୂର୍ଣ୍ଣ ଚନ୍ଦ୍ରୋଦୟ—ନୁହଇ କ କୁମୁଦନୀ ପ୍ରିୟ
ଚନ୍ଦ୍ର ସିନା ନଣା, ଅନ୍ତର ନରାଶା କରଇ ଦଇବ ରସଭର । ୩ ।
ଗାଡ଼ି କୂପ, ନଦୀ ସରୋବର—ରହିବା ଆୟୁତ ଚାତକର
କପର ସେ ପାନ, କରିବଟି ବନ, ନ ବରଷୁ ଜଳଧର ନୀର । ୪ ।
ଜଣାଉଚ୍ଛୁ ଜଗଦେବ ଗିର—ଥାଏ ହୋଇ ମୂକ ପିକବର
କରେ ଅଗମନ, ଋତୁଙ୍କ ରାଜନ, ନ କରେ କ ଗାନ ମନୋହର । ୫ ।

———

( ୩୩ )

ରାଗ—ସାବେରୀ, ଅଠତାଳି

ଏ କ ରୂପା ରେ ଖଞ୍ଜନଦୃଶା, ସୁନ୍ଦର କୁନ୍ଦ—ପସନ୍ଦ ସ୍ମିତ ବନା ରେ । ପଦ ।
ବାରବାନ ଚାମିକର ଦେହା, ବାରଣେନ୍ଦ୍ର ଗମନା ସୁସ୍ନେହା—
ସାର ସରଳଟି ଚାହିଁ ଏହା—
ମାରଦର ନାଶକୁ ତୁ ସିନା ଭରସା ରେ । ୧ ।
ଦୋଷ କରିବାର ନାହିଁ ଜାଣି—ଏ ସକାଶୁଁ ଗଣ୍ଡେ ଅଜ ପାଣି
ମୋ ସପଥଟିରେ ବୀଣାବାଣୀ—
ରୋଷକାରଣ କହ ଦରିଅରେ ଭସା ରେ । ୨ ।

ଧନାଧିକ ତୁ ମୋର ଜଗତେ—ଘନାଗ୍ନାଲ କୁନ୍ତଳା ସୁରତେ
ଅନା ସଦୟ ନେତ୍ରପ୍ରାନ୍ତେ ମୋତେ—
ମନା ନ କର, କର କରୁଣା ବରଷାରେ । ୩ ।
ଭାସି ତରଳା ମୋ ସୁଖ ସ୍ପୃହା, ମାର ପକାଅ ସେ ଯିବ ସୁହା
ବାରଙ୍କର ନୟନୁ ନ ଗୁହା—
ଗୃହ ଧରମ ହେବଟି, ତୋ ରସେ ରସା ରେ । ୪ ।
ସ୍ମିତ ବଳସୁଥିଲେ ତୋ ମୁଖେ—ଶରମୁଖେ ଖାଉର ନ ରଖେ
ଇତରଙ୍କ ସୁଖୀରେ ନ ଲେଖେ—
ନିତମ୍ବିନୀ ବର ରସକେଳାଲସା ରେ । ୫ ।
ହର ମୁଖୁଁ ଏ ଭାରତୀ ଝର—କର ଶ୍ରବ ଅବତଂସ ପର
ଭର ମନକୁ ମୋଦେ କଶୋରୀ—
ହରଚନ୍ଦନ ଭଣେ ସୁଖେ ନେଲେ ନାଶାରେ । ୬ ।

———

## ( ୩୪ )

### ରାଗ—ଝଂଜୋଟି, ଏକତାଳି

ଏ ବସନ୍ତ ଦିନେ ଯେ ବସନ୍ତୀ ମାନେ, ସେ ବଧୂ ନୁହନ୍ତି ଶୀଳା । ପଦ ।
କଳ କୋକିଳ ରୁତ—ଗାନେ ମନ୍ଦ ମରୁତ
ଆଚରୁଛି ହୋଇ ଖେଳା ଗୋ । ୧ ।
ସବକୁଳ ବାସନ୍ତୀ—ସବ୍ୟମାଳା ଦଂଶନ୍ତି
ଅନାଇଁ ସ୍ମେଳମ୍ବ ଲୀଳା ଗୋ । ୨ ।
ଏତେ ସୁଖ ସମୟ—ନ ଘେନେ ପ୍ରାଣପ୍ରିୟ
ସଙ୍ଗେ କେ ରଚିବ ହେଳା ଗୋ । ୩ ।
ଏକାଳେ ରତିବନ୍ଧୁ—ଶୀଳା ମନ୍ମଥ ବନ୍ଧୁ
ଭିତରୁ ତରବା ଭେଳା ଗୋ । ୪ ।
ସ୍ନେହୀରେ ଯେ ଟି ମାନ—କରେ ତାହାର ସ୍ତନ
ନୀରସ ମାଟିର ଢେଲା ଗୋ । ୫ ।
ନୋହୁ ପ୍ରଶୟ ବଶ—ରୁଷିବାର ସାହସ
କେବଳ ଦେଉଳ ଶିଳା ଗୋ । ୬ ।
ଶ୍ରୀ ଜଗଦ୍ଦେବ ଭଣେ—କୃଷ୍ଣକଥା ନ ଶୁଣେ
ସେ ଶୃତ ନୁହେ, ସେ ଵଳା ଗୋ । ୭ ।

( ୩୫ )

ରାଗ—ଖମ୍ବାଜ, ଏକତାଳି

ଏ ରଜନୀ ବ୍ରଜବନ୍ଧୁ ଙ୍କୁ, ଗୋପିନାଥଙ୍କୁ, ରଖିଲେ କେଉଁ ସଜନୀ । ପଦ ।

ତାମ୍ବୁଲ ପୁଣି ଅଳାଇଚରେ—ଭାଙ୍ଗି ରଖିଥିଲି ଯତନକରେ
ଚୁଆ ଚନ୍ଦନରେ କର୍ପୂର ମିଶାଇ, ବୋଳିବାକୁ କୃଷ୍ଣ ଶ୍ରୀଅଙ୍ଗରେ । ୧ ।

ଜାଳିଣି ସୁରଜ୍ଞ ଦୀପାବଳି—ଉଜାଗରେ ନିଶି ପୁହାଇଲି
ନାନା ସୁବେଶରେ ବେଶ ମୁଁ ସାଜିଲି—
କା' ପୁରେ ରହିଲେ ବେଣୁପାଣି । ୨ ।

ମୁଁ ଦୁଃଖୀ ହୋଇଲି ଅଭାଗିନୀ—କୃଷ୍ଣ ମୋ ପୁରେ ନଇଲେ ପୁଣି
ନାନା ଜାତି ପୁଷ୍ପେ ଶେଜ ଶେଜାଇଲି—
ମାଧବ ରଖିଲେ କେ ତରୁଣୀ । ୩ ।

କହେ ଶ୍ରୀଚନ୍ଦନ ଏହି ଗୀର—ଶ୍ରୀମତୀ ଶ୍ରୀକୃଷ୍ଣ ବିରହର
ଝାଳିବାକୁ ଶଠ ନଟବର କଣ୍ଠ—
କାଶୋଗ୍ନି ହୋଇଅଛନ୍ତି ମାନୀ । ୪ ।

---

( ୩୭ )

ରାଗ—ଇମନ କଲ୍ୟାଣ, ଏକତାଳି

ଏହା ମୃଦୁଦେହା ବରସ୍ନେହା ବଡ଼ ହୁଡ଼ିଲୁ ରେ । ପଦ ।

ହଜାର ବାର ଯମୁନା—ନ ଯା ବୋଲି କରେ ମନା
ଯାହା ସୁଖ ଗ୍ରହା ତେଜି ତା ହାବୁଡ଼େ ପଡ଼ିଲୁ ରେ । ୧ ।

ମୁଁ ଜାଣେ ତା ସଙ୍ଗରସେ—ନ ଥାଏ ତୋ ମନ ଲେସେ
କାହିଁ ଦୋଷ ନାହିଁ ଥରେ ଗୃହିଁ ଦେଇ ସଢ଼ିଲୁ ରେ । ୨ ।

ତୋତେ ତ ଥିବ ଗୋଚର—ସେ ତ କାତବ କାଙ୍କର
ଲଭ ବନା ଯାଇ ରସି ତା ଭରମେ ବୁଡ଼ିଲୁ ରେ । ୩ ।

ଅବସାନେ ଏହି ଫଳ—ଅଛୁ ବୋଲି ଜଳଜଳ—
ଦଶୁଥିଲି, ଶିଶୁପର କି ସୁଖକୁ ଛଡ଼ିଲୁ ରେ । ୪ ।

କହେ ଅଷ୍ଟଦୁଗ ନାହା—ଅହେତୁରେ ଏବେ ଆହା
ଧରାଦେବୀଙ୍କର ତାହା ସାଗରେ ଗଡ଼ିଲୁ ରେ । ୫ ।

---

( ୩୭ )

ରାଗ—ସିନ୍ଧୁକାମୋଦୀ, ନିପୁଟା

ଏହି ଦୋଷ ସହି, ମୁଁ ଇହିଁରେ ଗୋ, ବାଞ୍ଛିତ ସୁଖଦ ରତି
କରିବା ବେଳରେ ଯୁବତୀ ଜୀଇବା ମରିବାର ନ ଜାଣନ୍ତି । ପଦ ।
କେ କାହାକୁ କେଡ଼େ ନିବଡ଼େ ନ ଭିଡ଼େ ପୂରିଥିବାଠାରେ ସ୍ନେହ
କରି କି ଏପରି ଯହିଁ ନୋହେ ପରିଚୟ କେ କାହାର ଦେହ । ୧ ।
ମୁଁ ସହଜ ଭୀରୁ ନ ସହଇ ଉରୁ ଭିଡ଼ା ମୋତେ ବାଧେ ବଡ଼
ମୋହ ନିମନ୍ତେ ସେ ଦେହକୁ କରନ୍ତି ଲୌହ ନିର୍ମିତ ନିଗଡ଼ । ୨ ।
ଚିବୁକ ଅଧର ଗଣ୍ଡ ଚୁମ୍ବିବାରୁ ସଂସାରେ ଥିବା କଥାଏ
କେ ଜାଣେ ଏମନ୍ତ ପ୍ରପଞ୍ଚୁ ସୀମନ୍ତ ଯାଏ ପୁଣି ସୁଧା ଥାଏ । ୩ ।
ଶୁଭେ ଅର୍ଦ୍ଧକ୍ଷଣେ ଚରଣାଭରଣ ରଣ—ରଣ୍ଡିମ ବାଜଣା
ପୁଣି ମୋର ଚେତା କାହିଁ ରହେଛି ତା ସେହି ନାଗରକୁ ଜଣା ୪ ।
ତହୁଁ ଯେତେବେଳେ ଠଉରାଇ କୋଳେ ଭିଡ଼ିଥାନ୍ତି ନନ୍ଦସୁତ
ତେବେହେଁ ପଳାଇ ଯିବାକୁ ବଳାଇ ପାରଇ ନାହିଁ ମୋ ଚିତ୍ତ । ୫ ।
ସଖୀ ଠାକୁରାଣୀ ଶ୍ରୀମୁଖୁ ଏ ବାଣୀ ଶୁଣି ସ୍ନେହେ ଚୁମ୍ବ ଦେଲେ
ଅଷ୍ଟଦୁର୍ଗ ଧରାମଣ୍ଡଳୀ ଅମରା-ବତୀ ନାଥ ରସେ ବୋଲେ । ୬ ।

---

( ୩୮ )

ରାଗ—ବେଗଡ଼ା, ଏକତାଳି ।

ଏହି ସେହି କି ମୋ ସହି । ସତ କହଛି । ପଦ ।

କହିବାକୁ ଜିହ୍ୱାଞ୍ଚଳ କରୁ କରୁ ଭ୍ରୂ ଚଞ୍ଚଳ,
ହୃରସର୍ପ କଳ୍ପନା ରସନା ଲହଲହ ଛି । ୧ ।
ଅନନୁକୂଳ ଏ ଦ୍ୟୁତ, ଅନାଇଁ ସେ କେଉଁ ସତୀ,
ଠଉରିବ ନଉକର କରିବାରେ ନ ହଛି । ୨ ।
ଏହା କରି କି ଗୋ ଯଶଃ,—କୁସୁମ ମାନଙ୍କ ବାସ,
ବାସବ ନିବାସ ଯାଏ ଯାଉଥାଏ ଚହଟି । ୩ ।
ଏଠାରେ ନାସ୍ତି ସଞ୍ଚିତ, ହୋଇଛନ୍ତିରେ ପ୍ରଣମିତ,
ଅଳ୍ପକଳ୍ପନ ସେ ଅବଗହ ରବଗ୍ରହଛି । ୪ ।
କବିବର ସୂର୍ଯ୍ୟଗୁରୁ, କହୁଥାନ୍ତି ରେ ଚତୁରୁ,
ଏହାଙ୍କ ଭଜନୁ ଆନ ନାହିଁ ସୁଖାବହଛି । ୫ ।

( ୩୯ )

ରାଗ—ମଲ୍ଲୁଆ, ଏକତାଳି ।

କଙ୍କେଳିମୂଳ ସଙ୍କେତ ଅତି ପ୍ରତିକୂଳ । ପଦ ।

ସଖିଖଣ୍ଡଚୂଳ, ଭୁଲେ ପଛେ ଖେଳ, ସାହସେ ମାନ ପ୍ରବଳ ରେ । ୧ ।

ମଧୁବନ କୋଳ—ତୋ ପଦକମଳ
ବାଜିଲେ ହେବ ସେହୁ ଖେଳ ରେ । ୨ ।

ଅକାଳେ ତା ଡାଳ, ମାନଙ୍କର ଜାଳ
ହେବଟି ସମୂଳ ତୁଳରେ । ୩ ।

ସେ ଛଣେ ଗୋକୁଳ—ମଧ୍ୟେ ହେବ ଠୁଳ
ତୋହର ନାମେ କଲଙ୍କ ରେ । ୪ ।

ସହ ମହୀତଳ ଯାକେ ତୋ ପାତଳ
ଲାବଣ୍ୟ ଲବେ କାହିଁ ତୁଲ ରେ ।୫।

ଅଷ୍ଟଦୁର୍ଗ ପାଳ ଭଣେ ଶୁଣି ମାଳ—
ବାସିନୀ ହେଲେ ରାଜକୁଳ ରେ । ୬ ।

——

( ୪୦ )

ରାଗ—କାମୋଦୀ, ଅଠତାଳି ।

କର୍ମି କମାଇଲେ ରେ ଘସା ଚୂନବସା ଦନ୍ତି
ମୁଁ ନିକ ଶୁଣିବି ମୁନି ମୋହନୀର ତୁନିକୁହା ଭାବଖଣ୍ଡି । ପଦ ।

କୁସୁମ—ସମୟ ନ ଜାଣି କୁସୁମ—ବିଶିଖେ ହୋଇ କାତର
କରକୁମ୍ଭଯୁଗ ନିନ୍ଦିବା ଉରଜେ ପକାଇଦେବାକୁ କର । ୧ ।

ଜାଣି ନିଶୀଶେଷ ଲାଜପାଇ ବେଶ ପାଶୁଁ ଉଠିବାର ବେଳେ
ବଳିଆଇ କେଳି ସଦନେ ବାଳାକୁ ବସାଇ ଦେବାକୁ କୋଳେ ।୨।

ଆଳି ନିକଟରେ ଥିବାର ନ ଜାଣି ନବୀନା ବାଳୀକି ଧନେ
ଛନ୍ଦ ବାହୁଯୁଗେ ଅବଙ୍କ କରଣେ ଚୁମ୍ବଦେବାକୁ ବଦନେ । ୩ ।

କବରବ ରାସ୍ତ—ଗୁରୁ ବୋଲେ ପ୍ରୀତେ ଦନେ ସୁଜନକ ଗୋସ୍ୱାମୀ
ମଙ୍ଗଳାଙ୍କୁ ପୂଜୁଥିଲୁ ତା ନ ଭାବ ପଛୁ ପକାଇଲୁ ଧରି । ୪ ।

——

( ୪୧ )

ରାଗ—ଖମ୍ବାଜ, ଏକତାଳି ।

କଦମ୍ବ କାନନରେ କିସ ପଶିଲା ରେ
ପଶିଲାକ୍ଷଣି ବିବେକ ଖସିଲା ରେ
ମନକଲି ବେଗେ ଧାଇଁ, ଘନଘନ ଶ୍ୟାମ ଧ୍ୟାୟୀ,
ବନ ବନ ବୁଲୁଥିବି ବୋଲି ସୁଣୀଲା ରେ । ପଦ ।

ଶୃଙ୍ଗାର ମଙ୍ଗଳ ବିମୋହନ ବେଶ—ସଂସାର ସାର ନୀଳିମା ସୁଧାରସ
ଶରଦ ରଜନୀ କର—ନିକର ଭାନୁ ପ୍ରକାର
ଏ ସବୁ କି ସେ ହଠାତେ ମିଶିଲା ରେ । ୧ ।
ଭେରୀ, ତୁରୀ, ବୀଣା ସ୍ୱଣା ଅଛି କାନେ—ଶୁକ ପିକରୁତ ଗୋପ ଉପବନେ
ଜଗତୀ ହେଲା ବଧିର—କି ଧ୍ୱନି ସେ କି ମଧୁର
ହୃଦୟ ନବବଧୂର ଦଂଶିଲା ରେ । ୨ ।

ନିନ୍ଦେ ବରନଟ ଖଞ୍ଜରୀଟ ଖେଳ—ଇନ୍ଦିବର କି ସେ ନୀଳ ମହୋତ୍ପଳ
ତହୁଁ ଜନମି ଅନନ୍ତ—ବିଶେ ବିଷାଇବାକୁ ତ
ଧୃତକି ରଙ୍ଗେ ନିରତ ଭୂଷିଲା ରେ । ୩ ।

କିଶୋର ସମୟ ପରି ହେଲା ଜଣା—କି ସୌରଭ ମାନ ଅବା ହେବ ଊଣା
ମଦନ କୋଟି ସମ୍ଭାର—ସଦନ କରି ତାହାର
ପଦ ନଖ ଅଞ୍ଚଳରେ ବସିଲା ରେ । ୪ ।

କଲା ମୋତେ ବାଇ ଯହୁଁ ଦେଲ ଚାହିଁ—ଗଲା ମହତ ମୋହର କାହିଁ ନାହିଁ
ଭଲା ମନୋହର ଦଶେ—ଲଲାମ ଉପରେ କି ସେ
ଅଖଣ୍ଡ ଶିଖଣ୍ଡଚନ୍ଦ୍ରୀ ଖୋସିଲା ରେ । ୫ ।

ଅଷ୍ଟଦୁର୍ଗ ପୁର ପୁରନ୍ଦର କହେ—ଯିବା କି ସଙ୍ଘାତ ଦେଖି ମିଶି ଦୁହେଁ
ନିନ୍ଦଲେ ନିନ୍ଦିବେ ଜନେ—ତାର ସେବନେ ସେ ବନେ
ରହିବ ତହିଁ ମୋ ମନ ରସିଲା ରେ । ୬ ।

— ——

( ୪୬ )

ରାଗ—ସାବେରୀ, ଅଠତାଳ

କର କ୍ଷମା ରେ, ରତି-ପ୍ରତିମା ତୁ, କର କ୍ଷମା ରେ,
ଜାଣୀ ନ ଥିଲି ମାନିନୀ, ହେବେ ବୋଲି ଜେମା । ଘୋଷା ।

କେଉଁ ପ୍ରତିହାରିଣୀ କା ଦାସୀ,
କହିଥାନ୍ତା ଯେବେ ଧାଇଁ ଆସି,
ତା ନମାନ ପଶିଥିଲେ ହସି,
ମାନ ଉଚିତ ମୋଠାରେ ତନୁମଧ୍ୟମା ରେ । ୧ ।

ବାର ପାର ନାହିଁ ରେ ସୁକେଶୀ,
ବାର ମଧ୍ୟେ ତୁ ଥିଲୁ ବିଳସି,
ଗୃହପାଶେ ଘେରିଥିଲେ ଦାସୀ,
ଭାର ନିତମ୍ବ ସ୍ତନ-ଜଘନ-ସୁଷମା ରେ । ୨ ।

ଭଙ୍ଗ ବଦନେ ବସନାଞ୍ଚଳ,
ତଡ଼ିଲ୍ଲତାରୁ ହୋଇ ଚଞ୍ଚଳ,
ବଳାଶିଞ୍ଜିତ କରି ପ୍ରବଳ,
ପଳାଇ ଯା ମଣ୍ଡିଦେଲୁ ମଣ୍ଡପ ସୀମାରେ । ୩ ।

ଦାଉ ପାଇ ମୁଁ ହେଜିଲି ଏବେ,
ଆଉ ଏପରି କରିବ ଯେବେ,
ସାରଦେବୁ ମୋତେ ପରିଭବେ,
ବାଳୁକାକ୍ଷୀ ପୀନସ୍ତନେ ଆଜକ ଜମା ରେ । ୪ ।

ଶୁଣି ଶ୍ରୀକୃଷ୍ଣ ବଚନ୍ତ ବାଣୀ,
ହର୍ଷପରେ ସେ ରମଣୀମଣି,
ମଧୁବନ ରଚିଲେ ସେକ୍ଷଣି,
ବୋଲେ ବସୁଦୁର୍ଗ ବସୁନ୍ଧରା-ସୁଦାମା ରେ । ୫ ।

———

( ୪୩ )

ରାଗ—କେଦାର, ତ୍ରିପୁଟା

କେବେ କି ରାଜ, ଚନ୍ଦ୍ରାନନୀ ଆଜ,
ମୋ ଅଙ୍କେ ବିରାଜ ଖେଳିବାକୁ,
ସମରେ ନ ଭାଜିବାର ମାର ପାଜ,
ମଳ୍ଳା ବଳ ରାଜି କଳିବାକୁ । ଘୋଷା ।
ମୋର ଅନଳପ ପୂରବର ତପକଳାପ—
କଳପବଲ୍ଲୀରୂ ସେ ଗୋରୀ,
ହେଲା କି ଏଥର ମୋ ମନୋରଥର
ସମୁଚିତ ଫଳ ଫଳିବାକୁ । ୧ ।
ନବୀନ ବିଳାସବତୀ ସେ ତ ବାସ—
ଲତା ଦୁଇପାଶ ମଧ୍ୟେ ତା ନିବାସ,
ମୋହପରି ପାଞ୍ଚିଅଛୁ ମୁଁ ଯେ କାଞ୍ଚି
କିଙ୍କିଣୀ ନିଚୟ ଗୁଳିବାକୁ । ୨ ।
ଅଭିନବ କ୍ରୀଡ଼ା କାଳେ ଗାଢ଼ ଭିଡ଼ା
ଅନୁଭବରୁ ତ ଲଭିଥିବ ବ୍ରୀଡ଼ା,
ହେବ ଅନୁକୂଳ କି ଉରୁ ଦୁକୂଳ—
ତଳସ୍ଥଳେ ପାଣି ଗୁଳିବାକୁ । ୩ ।
ଶିଶୁ-କଳାକର-ଚୂଡ଼ାମଣିପର
ଅମଳରୁ ଜ୍ଞାନ ନଥିବ ମୋହର,
ପାରିବି କି ବାରି ନିକି ସୁକୁମାରୀ
ଶ୍ରୀଅଙ୍ଗ ଲତାଟି ଲୁଳିବାକୁ । ୪ ।
ରଦନ-ବସନ ବିମ୍ବକୁ ଦଶନ—
ଅଞ୍ଚଳେ ପୀଡ଼ିତେ ହେବ ସୁଧାସମ,
କୁନ୍ଦକୁଳ ଗଣନ ତା ମନ୍ଦହସନ
ଦୁଇ ଶୋଭା ନେନେ ତୋଳିବାକୁ । ୫ ।
କହେ ବଳଦେବ କବିରତ୍ନ ନବ—
ନଟବର ଶନ୍ତ ପ୍ରିୟାସଙ୍ଗୋତ୍ସବ,
ମିଳି ସଖା ବ୍ରଜେ ମୋଦେ କଲେ ବିଜେ,
କୁଞ୍ଜରୁ କୁସୁମ ତୋଳିବାକୁ । ୬ ।

## ( ୪୩ )

### ରାଗ—ଝଙ୍କୋଁଟୀ—ବେହଡ଼ା ଏକତାଳ

କରବା କି ବୁଦ୍ଧି ଶ୍ୟାମ ଜାଣିଲଣି ପୁଣି ଲୋ । ୦ ।
ସୂନା ସରୋରୁହ ଲତା ହୋଇବାର କୁସୁମିତା
ସଞ୍ଚରବାର ଚଞ୍ଚଳେ ଚଞ୍ଚରୀକ ଶ୍ରେଣୀ ଲୋ । ୧ ।
ଖଣ୍ଡରସ ସରସରେ ନ ରସେ ସତ ରସରେ
ଅରୁଚ କରୁଚ ପୀଯୂଷକୁ ମଣି ଲକ୍ଷଣୀ ଲୋ । ୨ ।
କିଶୋରୀର ରଦାମ୍ବର ଧ୍ୟାନେ ପୁଣି ପୀତାମ୍ବର
ଉପରେ ପକ୍ୱ ବିମ୍ବର ଚୁମ୍ବେ ଗଣି ଗଣି ଲୋ । ୩ ।
କୁଚକୁ ଚିତ୍ତରେ ଧ୍ୟାୟି ଚୁଚୁକ ଉରେ ଲଗାଇ
ଲୋଚନ ବୁଜୁଛି ପରରମ୍ଭ ସୁଖ ମଣି ଲୋ । ୪ ।
ନବଲତାକୁ ନିବଡ଼େ ପ୍ରବଳ ଉନ୍ମାଦେ ଭିଡ଼େ
ପ୍ରାଣେଶ୍ୱରୀ ହା କିଶୋରୀ । ବୋଲି ହୁଏ ଗୁଣି ଲୋ । ୫ ।
ଆମ୍ଭ ଆଳିର ତ ବେଶ ଉଚିତ ହେଲ ବୟସ
ଧର ହୃଦେ ମଣ୍ଡିବ କି ହର ନୀଳମଣି ଲୋ । ୬ ।
ଅଷ୍ଟଦୁର୍ଗ ପୁରନ୍ଦର କହେ ଦୂରୁଁ ଯୋଡ଼ିକର
ଭୀରୁମଦ-ଗଜକୁ ତା ଭୂରୁଭଙ୍ଗୀ ଶାଣି ଲୋ । ୭ ।

———

## ( ୪୪ )

### ରାଗ—ପୂରବୀ—ଝୁଲ୍ଲ ।

କହୁ କାହିଁକି ରେ, ସରୁକଣ୍ଠୀ ମୋତେ ଲାଜ ?
ଅରୁଚ ଧୁଣ୍ଡିବା ସରୁ ଚୁମ୍ବନକୁ ନ ରୁଚିଲ ପର ଆଜ । ପଦ ।
ଛନୁଟି କୁଆଁ ଇନ୍ଦୀନ ଦୋଲି ନିପଟ ଧନୁଟି ପରା ତୁ ମୋର
କାନ୍ତ-କରଜା ରେ, ଗ୍ଲତରେ ନ ମିଶି ରାତଯାକ ହରବର । ୧ ।
ପୀଡ଼ିବ ସିନା ମୁଁ ଅଧର ଅଳପ ଭିଡ଼ିବ ସିନା ରେ ସ[illegible]
ଘରୁଟି ବୁଡ଼ିବ ଦରୁଟି ବଚନ ଥରୁଟିକୁ ନାହିଁନାହିଁ । ୨ ।

ଅଙ୍ଗ ଚିହ୍ନାକୁ ତ ସୁଖ ଯିବ ସବୁ ଦାଉ ବଳଯିବ ସିନା
ପାଶବାର ସାଚ-ପାନଖିଲ ମୋର ଯାଚ ଦେଲେ ହେଲେ ମନା । ୩ ।
ନୀବିକି ଫିଟାଇ କାମ ସଦନରେ ଦେବକି ଚଳାଇ ନଖ
କଟି କେ ମୋ କର ବାନ୍ଧାଇ ଦେଉଛୁ ପୋଡି ଅଚ୍ଛେ ଚନ୍ଦ୍ରମୁଖ । ୪ ।
ଭାରତୀକି ଶୁଣି ଜଗଦ୍ଦେବଙ୍କର ଗୀତସାର ଗୁଣନିଧି
ହସହସ ହୋଇ ଅରଜି ଦେଲା ଯେ ବୃଷଭାନୁଜବନ୍ଧ ବିଧି । ୫ ।

---

( ୪୫ )

ରାଗ—ସାବେରୀ—ଅଠତାଳ

କଳାବତୀରେ, ଚଳା ମୋରେ କୃପା ଅପାଙ୍ଗ ଚିହ୍ନି ରେ । ପଦ ।
ଏ କି ଭଙ୍ଗୀରେ ତୋ ଜବାଧରୀ,
କେଣି କହେ କି ବାଧି ସୁଧୀରୀ,
ଠେକିଅଛୁ ବିବେକିମାନଙ୍କ ଚକ୍ଷେ ଛଳିରେ । ୧ ।

କଣ୍ଠାଧାରୀ-ମୋହନୀ ବିବେକୀ,
ହଣ୍ଠା ଅଭିମଣ୍ଡଳେ କରକି,
ଫିଟା ମୋ ସନ୍ଦେହ ଗଣ୍ଠି ଚିହ୍ନି,
ଖେଣ୍ଟା ତ ମୁଁ କରନାହିଁ ଦନେ ତୋ ଜୀବରେ । ୨ ।

କାନେ ନ ଶୁଣି ମୋ ନିବେଦନା,
ମାନେ ବଳିଲେ ରେ ସୁନୟନା,
ଧ୍ୟାନେ ହେଲେ ପ୍ରାଣଧନ ବିନା,
ଅନେ ନ ଥାଏ ତ କେବେ ମୋର ସମ୍ମତରେ । ୩ ।

ନାସେ ସରଳତି ମଦନର,
ହାସେ କାମ୍ପା ନ ମଣ୍ଡୁ ଅଧର,
ଦାସେ ଥିଲେ ଯେତେ ଦୋଷ ତାର,
ନାଶେ ବଳଇ କି ମତି ମତିକି ମତରେ । ୪ ।

ଦାସ ବତ୍ସଳା ରେ ଘନକେଶା,
ଭାଷ ପଦେ ସୁଧା-ସ୍ୱାଦୁ ଭାଷା,
କାଶହାସୀ ନ ନାଶି ମୋ ଆଶା,
ଆସ ମୋ ଅଙ୍କ ଜଗତୀଙ୍କ ଗଜଗତି ରେ । ୫ ।

କଳକଣ୍ଠୀ ରସିଲେ ସଦୟ,
ଜଳନ୍ତର ବସୁଧା ବଳୟ,
ଛଦ୍ମ ସୁର ସଦ୍ମ ହରହୟ,
ଶ୍ରୀ ପୁରୁଷୋତ୍ତମ ଶ୍ରେଷ୍ଠରାୟ ଭାରତୀ ରେ । ୬ ।

---

( ୪୭ )

ରାଗ—ଝଂଝୋଟି—ରୂପକ ।

କଳାକେଶୀ କଳାକର ହାସୀ, ରୁଷିମୋହନୀ ନ ବସ ରୁଷି । ଘୋଷା ।
କଳାନାଦେ ପଳା ପଳା ବୋଲି ଚଳା କାମକୁ ତୁ ଚଳାଚଳଦୃଶୀ ।୧।
ରସବତୀ କୁଳ ଚକ୍ରବର୍ତ୍ତୀ-ହୋଇ ନ ଢେଙ୍କାଲେ ମୋ ମିନତି
ନୀରସବତୀ ବୋଲିଣ ରହିଯିବ ଜଗତରେ ତୋର ଅକୀରତି । ୨ ।
ସୁନାଗୋଷ୍ଠୀ ଯେବେ ଏତେ ସର—କରିବାକୁ ଥିଲୁ ତୁ ବତ୍ସର
ପୀଯୂଷ ରସକୁ ମଧୁର ଅଧରୁ ପିଆଇ ନ ଥାନ୍ତୁ କୃପାକର । ୩ ।
ଭାଷା ବନଜିତ ମଧୁରସା—ସୁଖୀକର ପଦେ କହୁ ଭାଷା
ଆଶାକୁ ମୋହର ନ ଭାଙ୍ଗରେ ବର-ରସାଳସା ତୁ ତ ମୋ ଭରସା ।୪।
କଳକଣ୍ଠୀରବ କଣ୍ଠୀକଣ୍ଠୀ—ଚତୁ ଜାଣିଥିବାଠାରେ ଖଟି
ନବକୁ ବଦୁର ହର ପରହର ତୋତେ ଏ ବଚନ ନୁହଇଟି । ୫ ।
ପ୍ରାଣକୁ ପର ପ୍ରୀତିଙ୍କ ପାଳି—ଥାଉ ପରା ମୋର ଗଳାମାଳ
ଜାଣିଥାଇ ଦୁଃଖ ଖଣାକୁ ପେଲୁଛୁ ଚତ୍ରେ ମୋର କେଉଁ ଦୋଷ ଭଲ ।
ଶ୍ରୀ ବାଲୁକେଶ ନୃପତିବର—ତୋ ଗୁମୁରେ ଅଛୁ ନିରନ୍ତର
ତେବେହେଲେ ରସ ବଚକ୍ଷଣୀ, ଶୁଣା ନ ଗଲା ଛଣା ପୀଯୂଷ ଗୀର ।୬।

---

ରାଗ—ପଞ୍ଚମବରାଡ଼ୀ—ଝୁଲ୍ଲ ।

କଳା-ବଳାହକ ତୁଳା- ଦଳିତ ନୀଳ-କୁନ୍ତଳା
ଚଳା ଚଳା ଗୃହୁ ନେଇଆଁଳା
ବାଳା ବଳୟୁ ଇଚ୍ଛଳା- ଗଭା ସଦୃଶୀ ମଞ୍ଜୁଳା
ଦଳା ଗୋରୋଚନାଙ୍ଗୀ କୋମଳା ରେ
କଳାବତି
କଳାନିଧି ଶ୍ରୀମୁଖ ମଣ୍ଡଳା,
ଛଳାନେନେ କର ମୋ ସଙ୍ଗଳା,
ବାଳା ହଳାହଳଗିଳା- ଚୂଳାଭରଣକୋମଳା
ଜଳାତ ନିର୍ମିଳାନ୍ତବତ୍ସଳା ରେ । ୧ ।

କି ମାନମା ସୀମା ଦେଖି ପ୍ରମାଦ ମାର୍ଗ ଉପେକ୍ଷି
ରମା ସମାଜମାନଙ୍କ ହର ।
ସମାନ ବିମ୍ବ ଚନ୍ଦ୍ରମା- ମୁହିଁ ତୋ କୁନ୍ତଳେ ଜମା-
ହେଲ ତମାଲ-ମାଳ ମାଧୁରୀ ରେ,
କ୍ଷମାନିଧି,
ଗୁମାନ ମାଣ ନ ଧର ମୋରେ,
ଜମାଅ ମାଗୁଛି ପୟୋଧରେ,
ରମା ଜମା ତୁରଙ୍ଗମା ସମାନସାଧ୍ୱୀମଧ୍ୟମା
ତମାର ମାର ମାରୁ ନାଶରେ ରେ । ୨ ।

ତୁଷାରସାମ୍ୟସୁପ୍ରହ-ସାନନା ତୁ ମୋହ କ୍ଷୁଭ-
ଦଶାର ସାର ସାମଗ୍ରୀ ବର ।
ତୁ ସାର ସାକ୍ଷୀକ ହେଜ ପ୍ରାସାଦ ସାମ୍ରାଜ୍ୟ ଭେଜ
ତୁଷା ତୁଷାରୁ ସାମର୍ଥ୍ୟ ମୋର ରେ,
ରସାଳସା, ମୁଁ ସାରସ ଚରଣରେ ପଶି,
ଅସାର ସାଙ୍ଗରେ ନାହିଁ ବସି,
ତୁ ସାର ସାର ବିବେକ ତୁଷା ତୁ ସାକ୍ଷୀ ତହିଁକି
ରସାଅ ସାର୍ଥରେ ଥରେ ହସି ରେ । ୩ ।

ହରାପରାଧୀ ଦୁର୍ଜର                    ନାରାଜ ରାଜ୍ଯରେ ମୋର
ପରାଭବ ଏଜା କଲେ ଫନ୍ଦା ।
ଧରା ଧରାଧିପସ୍ତନା                    ଚରାଚରାନ୍ତେ ତୋ ବନା
ପରାଭବ କାହିଁ ହେବ ନନ୍ଦା ରେ,
ଧରା ହରା,                    ଅରାତ ନୁହଇ ମୁଁ ସୁଟକେଶା,
ଖରାପ ନ କର ଏଡ଼େ ଆଶା,
ସୁରାତୁର ଜଳନ୍ତର                    ଧରା ମରା ବଡାସୁର
ପରାଣ ପାଇଲେଟି ପ୍ରଶଂସା ରେ । ୪ ।

———

( ୪୮ )

ରାଗ—ନଟ—ଝୂଲ୍ଲା ।

କଳାକୁଶଳା ରେ ସତେ କହିଲୁ କି ସଖି ?
ତୋ ବନା ମୋ ସ୍ନେହ ଅନେ ଥିଲୁ ପର ଦେଖି । ପଦ ।

ନୂତନାମ୍ବୁଦମଣ୍ଡଳିକି କି ଦୃଢକାଣ୍ଡଜ ତେଜଇ,
ଭୂତଳେ ସରସୀଜଳେ ନକ୍ର ତା ତୃଷ୍ଣା ଭଜଇ ।
ସ୍ୱର୍ଣ୍ଣଦୀକୃତଲୀଳ ହଂସ କି କୂପଟକଳିକି ସାଜଇ,
ଏ କର କି ଅନ ନାରୀ ଚରୁକେ ବାଜଇ । ୧ ।

ତୋ କୃପାତରୁ ମୋ ମଦୋଲ୍ଲତ ଶାଖି-ମୌଳି ନମାଇଲୁ,
କୌତୁକେ ରଚବାର ପାଠବ ମୋ ପର ଜନ ମାଇଲୁ ।
ମାନସେ ଅନୁମାନ ସେ ପରହାସିନୀ ଜନ ମାଇଲୁ,
ପଙ୍କଜ ବାନ୍ଧବେ ତ କଲଙ୍କ ଜନମାଇଁଲୁ । ୨ ।

ତଥ୍ୟ ମାନ ଅତଥ୍ୟ ଭାଷି ତ ପୋତନା ମୁଖ ମାନରେ,
ବାହାକୁ ପ୍ରବଳାଇ ଦେ ପରରମ୍ଭବୈଭବ ଦାନରେ ।
ତୋଷ ମୋ ରସନାକୁ ତୋ ମଧୁରାଧରାମୃତ ପାନରେ,
ରସ ଧନ, ମଦନମର୍ଦ୍ଦନ ବଧାନ ରେ । ୩ ।

ରସରଙ୍ଗିଣୀ ଆସ ସୁନ୍ଦରୀ ହାସକୁନ୍ଦ ବିକାଶରେ,
ବାସବାଶ୍ରୟ ବାସ ଭାଗ୍ୟ ବିଳାସ ଦେ ନ ବିନାଶରେ ।
ସ୍ୱସମାନ ଜବାଧରୀ କି ନିରାଶରେ ନିଜ ଦାସରେ,
ଅନ୍ତରାୟ ନ ରଚ ମୋ ସୁଖାଭିଳାଷରେ । ୪ ।

ଅଧିକାଧର ନନ୍ଦନନ୍ଦନ ଚିତ୍ରୁପାଟବ ବାଣୀରେ,
ରାଧିକା ସୁଗୁଣାଧିକା ସ୍ୱକପୋଳକୁ ନିଜ ପାଣିରେ ।
ଘୁଞ୍ଚିଲେ ରଞ୍ଜିବାର ମାନସମୋହନ ସ୍ମିତ ଠାଣିରେ,
ବନ୍ଦେ ଅଷ୍ଟଦୁର୍ଗନାଥ ଲୁଟି ଧରଣୀରେ । ୫ ।

---

( ୪୯ )

ରାଗ—ବିଲହୋର—ଝୁଲା ।

କଲି ଭଲି ଅଭିସାର; ମାଧବ ଏକା ସାର ରେ । ୦ ।

ସକପଟ ପଟୁ ଘୁଣ୍ଟିରେ କରଇ ସଦ୍ଗୁଣ ଓର ଭୂଷାରେ
ବଞ୍ଚାଇ ନାୟିକା ସାର ଯା ଦିଅଇ ଏ ଗୁଣ ବଡ଼ ଅସାର ରେ । ୧ ।
ଦଣ୍ଡିକ ରାତିରୁ ଜଗି ଜଗି ହେଲି, ମଣ୍ଡନ ମଣି ତୁଷାର
ପରମ ଡରେ କି କିଶୋରୀ ପଳାଏ ଚରମବେଳେ ନିଶାରେ । ୨ ।
ବାସି ହୋଇ କୁନ୍ଦହାସୀ ବେଶ ଯେବେ ଉଦୟ ହେଲା ପୁଷାର
କି ଶଙ୍କ ବିଚାର ବିଳାସନିଧିର ପ୍ରବଳବାର ରୁଷାର ରେ । ୩ ।
ଗୃଳିବ ଦାଣ୍ଡରେ କାଲି ବରଯୋଷା କେହି ହୋଇଲା ଟସାର
ସହି ମାଲୁ ଡରୁ ନ ଥାଏ ଯେ ତାର ମହିମାରୁ ଭରସାର ରେ ।୪।
ଏବେ ଯତନେ ଯା ସେ ଟଭ୍ୟନ୍ତନାର ଭେଟ ହେଲା ଅସୁସାର
ଏହି ଏକା ପରି ଫଳ ଶ୍ୟାମପଦ ତଳ ଶରଣପଶାର ରେ । ୫ ।
ସଖୀଙ୍କି କେ ଚନ୍ଦ୍ରମୁଖୀ କହିବାର ହରି ପ୍ରସଙ୍ଗ ପ୍ରସାର
କରନ୍ତି ହରିଚନ୍ଦନ ଜଗଦ୍ଦେବ ମୁକୁଟ ଉଟମସାର ରେ । ୬ ।

---

( ୫୮ )

ରାଗ—ଶ୍ୟାମ କଲ୍ୟାଣ—ଅଡ଼ତାଳ ।

କହ କି ହେଲା, ସହି କି ହେଲା,
କପଟ ରୁଷାରେ । ପଦ ।
ନ ଗୃହି ପୁଣି ତାଙ୍କ,— ଶ୍ରୀମୁଖ ହରଣାଙ୍କ,
ସଖି ଆଖି ରଖିଲୁ ରସାରେ । ୧ ।
ଘମୁ ନଜର-ମଣି- ମଯୂ ମଣ୍ଡନ ଶ୍ରେଣୀ,
ଗୁଣିଦେଲୁ ପୁଣି ମୃଗତୃଷ୍ଣାରେ । ୨ ।
ଚରଣେ ପୁଣି ଦଳି,- ପକାଇ ଦେଲୁ ଚଳି
ତୁ ସୁନ୍ଦର କୁସୁମ ଭୂଷାରେ । ୩ ।
ଦେଖି ତୋ ରୁଷା ସ୍ୱିତ ଗିରିଧରଙ୍କ ଧୃତ
ଥିଲା କି ହୋଇଲା ଅତି କୃଷାରେ । ୪ ।
ମୃଦୁ ଶ୍ୟାମଳ ଗୋରା ଝାଉଁଳି ଗଲେ ପରା
ହର-ପର-ଶର-ଜ୍ୱର ତୃଷାରେ । ୫ ।
କରୁ ଏହି କଠୋଳ ମଣ୍ଡିଦେଲୁ କି କାଳ
ପୂର୍ବଦିଗ ପର୍ବତକୁ ପୂଷାରେ । ୬ ।
ଶ୍ରୀ ଜଗଦେବ ବୋଲେ ତେବେ କଲୁ କି ହେଲେ
ବେଳେ ଧରି କୋଳେ ତାଙ୍କୁ ସୁସାରେ ।୭।

---

( ୫୯ )

ରାଗ-କେଦାର, ତାଳ—ରୂପକ ।

କହ ରେ ଜୀବସଙ୍ଗିନି ।
ତୋ ମନ ଘନଶ୍ୟାମ ରସେ ବଳିଲା କି ?
ପଦେ ପଦେ ସୁଖ ଦେବା ପ୍ରେମ ଲେଖ ମିଳିଲା କି,
ବାଞ୍ଛା ଫଳିଲା କି । ପଦ ।

ତରଣିଜାକୂଳ, ନୀପମୂଳସ୍ଥଳ,
କୁତୂହଳ ଖେଳ, ଏ ତୋ ନେତ୍ରାଞ୍ଚଳ,
ମୋହନ ବିଗ୍ରହେ, ଅକପଟ ସ୍ନେହେ,
ଭଳିଲଣି କି ଚିତ୍ତ ଚଳିଲଣି କି । ୧ ।

ସ୍ମର ଦଳନାର ଅମଳେ ତୁ ଧୀର
ହେଉଥିଲୁ ନାରୀମଣି ମନୋହାରୀ,
ଧୈର୍ଯ୍ୟ ସରୋଜ ବନମାଳ ଗଜ
ଦଳିଲଣି କି ତହୁଁ ଲୁଳିଲଣି କି । ୨ ।

ଅବସର ଦଣ୍ଡକରେ ସେ ଶିଖଣ୍ଡ-
ମଣ୍ଡନ ଅଖଣ୍ଡ ନୟନାନ୍ତ ଦଣ୍ଡ,
ତୋ ମରଜ୍ଞ ବକ୍ର ବସୁନ୍ଧରା ଚକ୍ର
ନଳିଲଣି କି ସବୁ ଢଳିଲଣି କି । ୩ ।

ଏ କି ଚମତ୍କାର, ସେ ତ ସୁକୁମାର,
ଶୃଙ୍ଗାର ମଙ୍ଗଳ ମୂରତି କିଶୋର,
ତାହା ମନ-ମୂନ ତୋ କଠିନ ସ୍ତନ
ଗଳିଲଣି କି ଏଥୁଁ ବଳିଲଣି କି । ୪ ।

ବଳତେ ରଜତ ଶାତକୁମ୍ଭେ ଶାତ—
କୁମ୍ଭ ସିନା ଟଳେ ଜଗତେ ବିଦିତ;
ଜମ୍ବୁନଦସାର ତଳରେ ମସାର
ଟଳିଲଣି କି ତାପ ଝଳିଲଣି କି । ୫ ।

ଜଗଦ୍ଦେବ ବାଲ୍ୟକେଶ ବସୁନ୍ଧରା,-
ବଳୟୁ ଅମରପତି ବୋଲେ ଦ୍ୱିରା;
ଖେଦ-ତିମିରକୁ ମୁଦ କଉମୁଦୀ
ଗିଳିଲଣି କି କାଳ ମିଳିଲଣି କି । ୬ ।

———

( ୫୨ )

ରାଗ—ଜୌନପୁର ତୋଡ଼ି, ତାଳ—ଅଠତାଳି ।

କହି ନାହିଁ କି ରେ ପହିଲୁ ତୋତେ ମୋ ଗୁଲି,
ମହୀମହିଳା ପରି ମୋ ଦୋଷ ପ୍ରାଣସହି, ସହିଦେବୁ ବୋଲି । ପଦ ।
ନବଛଇଲା ରେ ନାହିଁ କି ତୋ ଦିବ୍ୟ ଅବଧାନ ଉହୁଁ ଲବ,
ପରିରମ୍ଭକାଳେ ଜଣାଇଥିଲି ଯା ଧରି ତୋ ପାଣି-ପଲ୍ଲବ । ୧ ।
ଛୁଆଁଇ ନ ଦେଇ ଯେ ଗୃହୁ ଚିବୁକ ନୁଆଁଇ ବସିଛୁ ମଥା,
କି ବନଜନେଦା ନ ଜାଣୁ ଏ ତ ମୋ ଜୀବନ ଘେନିବା କଥା । ୨ ।
ଚୁମ୍ବାଇ ମୋତେ ତୋ ଶ୍ରୀମୁଖ ମୋ ମୁଖ ଚୁମ୍ବୁ ପରି ଅନୁରାଗେ,
ଅନାଁ ଥରେ ଏବେ ପଡ଼ି ଗଲିନି ଟି ଅନାଥ ପରି ତୋ ଆଗେ । ୩ ।
ବିଧୁବଦନାରେ ଏତିକି ମୋ ଦୋଷ ବାଧୁବନେ ବାରମ୍ବାର,
ବସନ ନ ରଖି ପ୍ରତି ଅଙ୍ଗ ଚୁମ୍ବି ଦଶନ-ଅଙ୍କ ଦେବାର । ୪ ।
ମୋଷ ହୋଇଯାଏ ଚେତନାରେ ବନ୍ଧୁ ତୋ ସଙ୍ଗମେ ମାର ମୋଦେ,
ସାରସରସା ରେ ଘେନ ତ ମୁଁ ଜଗି ପାରଇ କି ପ୍ରତି ପଦେ । ୫ ।
ସାଧାରଣେତର ଶ୍ୟାମଚନ୍ଦ୍ର ଗିର ସୁଧା ପିଅନ୍ତେ ଶ୍ରବଣେ,
ଅଷ୍ଟଭୂତ ପରି ଆଲିଙ୍ଗନ କଲେ ଅଷ୍ଟବୁର୍ଗନାଥ ଭଣେ । ୬ ।

---

( ୫୩ )

ରାଗ-କାମୋଦୀ—ଅଦତାଳ ।

କହିବାକୁ ଲଜ, ସଖି ଯାହା ହେଲା ଆଜ ॥ ଘୋଷା ॥

ପହୁଡ଼ିଥିଲେ ଜଣା- ନଥିଲା ମୋତେ ବୀଣା,-
ଆଳାପେ ଲଗାଇଲି ଗେଲେ ଲପ୍ତ,
କାନ୍ତ ମୋ ଗଣ୍ଡେ ଆସି ଚୁମ୍ବିଲେ ପରଶଂସି
ମରଣୁ ବଳଗଲା ସେ ସମସ୍ତ । ୧ ।

ଖସିପଡ଼ଲା କଞ୍ଚୁ,  ବିପଞ୍ଚୀ ଧରୁ ଧରୁ,
ମେରୁ ଗରୁଅ ହେଲା ଗଭାଫୁଲ୍,
ଟେକ ନୋହିଲା ମୁଖ,  ତହିଁ ପଞ୍ଚ ବିଶିଖ,
ଚଣ୍ଡାଳ କଲା କେତେ କଲବଲ । ୨ ।

ଚୁମ୍ବିଲେ ଅଙ୍ଗସୀମା,  ଜାତ ପୁଲକରମା,
ଶୀତ୍କାର ଉପୁଜିଲା ବାରମ୍ବାର,
ନିବଡ଼ ଭୁଜବନ୍ଧୁ,  ଛାଡ଼ି ନ ଦେଲେ ବନ୍ଧୁ,
ପଳାଇବାକୁ କାହିଁ ରାହା ମୋର । ୩ ।

କେତେ କଥାକୁ ଏତେ,  ଦଶା ଲଭିଲି ଚିତ୍ତେ,
କି ନ କଲା ଏ ଲାଜ ଘେନ ମନେ
କପର ଗୋ ସଙ୍ଗାତ,  ବିପରୀତ ସୁରତ,
ରସକୁ ରସୁଥାନ୍ତି ବାମାମାନେ । ୪ ।

ଭାଷଇ ଜଲନ୍ଧର,-  ଅବନୀ ପୁରନ୍ଦର
ହେଲେ ହୋଇବ ଏକଗୁଣ ଲୋପ,
ଆଜ ପାପ ସଙ୍ଗୀତ-  ବିଦ୍ୟା ସଧରେ ଚିତ୍ତ
ନ ଦେବି ବୋଲି କଲି ସଂକଳପ । ୫ ।

———

( ୫୪ )

ରାଗ—କାମୋଦୀ, ଏକତାଳି ।

କହିବାକୁ ସଙ୍ଗିନୀ ତୋ ଆଗେ ଲୋ ଲାଜେ ତୋଳି ନୁହେଁ ମଥା ।
ସାଧିବାକୁ ମନ ଥିଲେ ହେଁ ପ୍ରାଣକୁ ବାଧିବା ଯାଏ କି କଥା ? ॥ ଘୋଷା ॥

ଦେଖୁଛୁ ତ ମିତ !  ଚୁମ୍ବିବାର ମତ୍ତ—
ମିଳାଇ ସ୍ୱଜନସମାଜ,
ପିଏ କି ବଲ୍ଲଭ  ଗୋଷ୍ଠିଯାକ ଧରି
ଘେନ ତ କି ଲୋକଲାଜ । ୧ ।

ଜଳ ଯାଉଥିବା ଦେବଘାଟ ଅବା
ଅଳି କରୁଥାଏ କେତେ,
ବଳି ଦେବାକୁ କ ଘାଳୁ ଏତେ ସବୁ
ଦଳି ଦେଉଥାନ୍ତି ମୋତେ । ୨ ।

କଞ୍ଜ ମଞ୍ଜୁସ୍ୱରେ କୁଞ୍ଜରର ହେଲେ
କଣ୍ଠ ଅନୁରାଗ ଥିବ,
ଅଞ୍ଜନ ନୀଭର କୁଞ୍ଜ କଳଭର
ଚଉେ ନାହିଁ କୃପା ଲବ । ୩ ।

ରଖ ରଖ ବୋଲୁ- ବୋଲୁ କ ଖର ସେ
ନଖର ଶିଖର କେଳି,
ନୁହଇ ମୋ ଦେହ ଅଳପ ତଳପ-
ତଳକୁ ଛୁଇଁବା ଭଳି । ୪ ।

ଯା' ଚରଣ ଧରି ଜଣାଉ ଏପରି
ଆଚରଣ ପରିପାକ ,
ପୁଣି କ ଭଙ୍ଗୀରେ ନବନୀତାଙ୍ଗୀ ରେ
ବୋଲି ପଡ଼ୁଥାଏ ଡାକ । ୫ ।

କହୁ ଏ ରୂପରେ ପ୍ରଣୟ କୋପରେ
ପୂରାଉ ସୁଖ ସୁକେଶୀ ,
ଛପି ଶୁଣୁଥିଲେ ଘାପିଞ୍ଛି-ଶ୍ୟାମଳ—
ଲୁବ ଦେଲେ ଉଠେ ହସି । ୬ ।

ସେ ସରସ ପଳା- ଉଣୀ ବେଳ ବଳା-
କଳାପ କଙ୍କିଣୀ ରବ,
ଧ୍ୟାନେ ଜ୍ଞାନେ ସେବ କ ସୁଖାନୁଭବ
ହେବେ ନୃପ ଜଗଦ୍ଦେବ । ୭ ।

———

( ୫୫ )

ରାଗ—କାମୋଦୀ, ଏକତାଳି ।

କହିବ କେତେ ଥରଥରକୁ ରେ, ମହୀ ମଣ୍ଡଳଭୂଷା ବରକୁ ରେ ।
ସହିବ କେହୁ ଦଣ୍ଡଧର ସଦୃଶ ଚଣ୍ଡ ଚଣ୍ଡୀରମଣ-ଫର ଶରକୁ ରେ ॥୦॥
ମାଦରଚ୍ଛେଦ ପାପ କର୍ମତ କଲ୍ପ ଅପବାଦ ନିରତ ଲୀଳା ଗାରକୁ ରେ
ଗୃଦର ଧରା ଦାସଠାରେ କର ନିରାଶ ଆଦର କଲ୍ପ ରୁଷା ଘୁରକୁ ରେ ॥ ୧
ନିନ୍ଦଇ ଯେଉଁ ମୁଖ ସୁଧାମୟୁ ମୟୁଖ ସୁନ୍ଦର ବିଭାବରୀ-ବରକୁ ରେ
କୁନ୍ଦନାଙ୍ଗୀ ତା' ଶିରୀ ସାରଦେଲ ପ୍ରସାର କନ୍ଦନୁ ଅଞ୍ଜାନାଶ୍ରୁ ଝରକୁ ରେ ॥ ୨
ସୁହାଇ କମେ କମେ ଦୟାଳୁ ମଣି ପ୍ରେମେ ଲୁହାଇଥିଲ ପୟୋଧରକୁ ରେ
ମୁହାଇଠାକୁ ପ୍ରାଣ ରଖିଛୁ ପଞ୍ଚବାଣ ତୁହାଇ କଟର ଯେ ପ୍ରହାରକୁ ରେ ॥ ୩
ଜଣା ନ ଥାଏ ତେବେ ହେଲେ ଦୟାଳୁଭାବେ ମଣାଇଧର କଞ୍ଜକରକୁ ରେ
ବଣା ନୋହିବୁ ପ୍ରୀତିପଦବୀ ବୋଲି ନିତ ଜଣାଉଥାଏ ଏହି ଗିରକୁ ରେ ॥୪
ନିକାତ ତୁଲ ପର ଭଜଅଛୁ ନ କର ଟିକାଏ ହେଲେ ପରିହରକୁ ରେ
କା କା କର ନ ପାରେ ପ୍ରଭୁ ଯେ ଯାହାଠାରେ ବିକଥାଇଛି ନିଜ ଶିରକୁ ରେ ॥ ୫
କରୁଣା ସୁଧାରାଶି ଅନାଇ ଆଜ ଭାସିଯିବାର ପସନ୍ଦ ନିତରକୁ ରେ
ଶ୍ରୀ ଜଗଦ୍ଦେବ ବୋଲେ ରସିକା ଏବେ ହେଲେ ସଦୟ କରୁ ହୃଦନ୍ତରକୁ ରେ ॥୬

---

( ୫୬ )

ରାଗ—ତୋଡ଼ି

କାଞ୍ଚନ ବରନା ଚଞ୍ଚଳେ ଅନା ରେ ବଞ୍ଚନା କର ନା ॥ ପଦ ॥
ମାରଦର ପରଗୃର ଜନର ନିବାର
ଯୁବ ମଦବାରଣେନ୍ଦ୍ର-ଗତି ସାର
ସାରସ ସୌରଭ ଭାର ବାସିନୀ ॥ ୧ ।

କନ୍ଦର୍ପ ସାଲସୀ ସୁନ୍ଦରହାସୀ ପନ୍ଦର ବରଷୀ
ମନ୍ଦ ବଦଳାତ କୁନ୍ଦ ବଟକାକବୃନ୍ଦ ଗଳିତ
ମରନ୍ଦ ରସଙ୍ଗର ବନ୍ଦୁ ଏନିଭ ମୋହନ—
ସ୍ମିତ କାନ୍ତି ତୁନ୍ଦଲ ଗଣ୍ଡ ମଣ୍ଡଳୀ ॥ ୨ ।

ନାଧୁ ଭିଙ୍କବଦନା ଚନ୍ଦ୍ରବଦନା ରେ ମୋ ଶ୍ରମସଦନା
ଦୋଷ ନ ସମର୍ଥି ରୋଷ ନ କର ଏ ଘୋଷ ତରୁଣୀ ରେ
ତୋ ସମାନ ତ ନାହିଁ ଗୁହିଁଲି କାହିଁରେ
ଅବଗାହିବା ମନା ନ ଥାଇରେ ଧନ ॥ ୩ ।

ମାନସମୋହନା ମାନ ତୁ ସହନା ବିରସେ ରହନା
ଖଣ୍ଡ ରସନିଧି ଖଣ୍ଡ-ପରଶୁ ପରଚଣ୍ଡ ଶର ଦର ଦଣ୍ଡଭୁପର-
ପୃଷ୍ଠ ଭୂଷିଣୀ ଅନ୍ତ ତୋ ବଶ
ଅଷ୍ଟଦୁର୍ଗ ପୁରନ୍ଦର ରେ । ୪ ।

———

( ୫୭ )

ରାଗ—ଶାବେରୀ, ଏକତାଳ ।

କାନ୍ଦ ନା ମୁଁ ନୋହିବ ବିଦେଶୀରେ, ମନ୍ଦହାସୀ । ପଦ ।

କା'ର ବୋଲେ ସହି, ଗାର କାଢୁ ମହୀ,
ହାର ପର ନେତ୍ରଧାରକୁ ବୁହାଇ,
ବାରଣ ଗତିକି କାରଣଟି ଏହି ଛାରକଥାକୁ କି ରୁଷି ରେ ।୧ ।
ଛୁନ୍ଦରବଦନା ମୋ ପଦ୍ମରବୟସୀ-ମନ୍ଦର-ଉରଜା ଚନ୍ଦ୍ରକାନ୍ତିହାସୀ
କନ୍ଦର୍ପ ଶରେ ମୁଁ ଦେଖୁଁ ଗଲି ଭସି, ସୁନ୍ଦର ନାକ ଏ ଦଶି ରେ ।୨।
ଦରପଣମୁଖୀ ପରସନ ହୁଅ-ଉରଜରେ କରଗଣ୍ଡକୁ ନ ଦିଅ
ଦରହାସୀ ଦରହାସେ ଦୟାବହ, ସରସ ବଚନ ଭାଷି ରେ ।୩।
ହରଣୀ-ନୟନା ଧର ତୋର କର-ସରଗଲାଣି ମୁଁ କହୁଛୁ ନାଙ୍କର ।
କରବ କି ବୁଦ୍ଧି ହରସୁତ-ଶର, ମରମେ ଯାଉଛୁ ପଶି ରେ ।୪।
ସେବଥିବ ତୋର ପାଶେ ଅନୁବ୍ରତେ-ଯିବ ନାହିଁ କାହିଁ ଥିବା ରେ ଜୀବତେ
କବ ରବ ବୋଲେ ଏ ଗୀତରେ ଏତେ ପାଇଛୁ ଗଙ୍ଗାରେ ଝାସି ରେ ।୫।

———

( ୫୮ )

ରାଗ—ତୋଡ଼ି ଜଙ୍ଗଲ, ଅଦ୍ଧତାଳ ।

ତା ମନେ ଥିଲା ବନ୍ଧୁ ଏ କଥା ଗୋ
କଳା ଅଙ୍ଗ ସଙ୍ଗ ହେବ ଅନ୍ୟଥା ଗୋ । ପଦ ।

ସଙ୍କୁଚିତ ମୃଦୁଳ ସରଳ ଭାଷା
ଶୁଣିବେ ମଥୁରାନଗରୀ ଯୋଷା ଗୋ ।୧।
ସ୍ୱପ୍ନ ହୋଇବ ଶିଖଣ୍ଡ ମଣ୍ଡନ
ନୋହିବ ନେତ୍ର କପଟ ଖଣ୍ଡନ ଗୋ ।୨।
ବସ୍ତ୍ରୁରୀ ନୀଳୋତ୍ପଳ ମିଶା ବାସ
ବ୍ରଜମଣ୍ଡଳେ ହେବ ଇତିହାସ ଗୋ ।୩।
ପଙ୍କଜବାସିନୀ ଦାସୀ ଯା ରସେ
ମଜ୍ଜିଯିବେ ବୋଲି ଲୁବ୍ଧୀ ଚାରସେ ଗୋ ।୪।
ସ୍ମର ଜ୍ୱରଶେଷେ ଜୀବନ ଯିବ
ମଧୁରାଧର ତୋଟକେ ନ ମିଳିବ ଗୋ ।୫।
ଭଜା ହେଉଥିବା କାମ ଦହନେ
ରାଜୀବ ପଦ ନ ଲଦିବା ସ୍ତନେ ଗୋ ।୬।
କେ ଜାଣିଥିଲା ଏ କଣ୍ଠ ପହିଲେ
ଅଷ୍ଟାଦୁର୍ଗ ଧରାଧୀଶ କହିଲେ ଗୋ । ୭ ।

———

( ୫୯ )

ରାଗ—ଇମାନ କଲ୍ୟାଣ, ଅଠତାଳି ।

କାଳନ୍ଦୀ କୂଳକୁ ମୋର ସଙ୍ଗାଳି ନ ଯାରେ । ପଦ ।

ଯା ଶିରେ ଚନ୍ଦ୍ରିକା ଚୂଳ, ରଙ୍ଗସ୍ଥଳ ନୀପମୂଳ
ତା ନୟନ ଅଞ୍ଚଳଟି ଜାନହଜା ରେ ।୧।
ନବଯୁବତୀଙ୍କ ଜାତି, ନେବ ବୋଲି କେତେ ଜାତି
ସୁଅଗ ଜାଣଇ ସେ ନାଟୁଆ ରଜା ରେ ।୨।

କାମୁନାଦ ଜଟେ ବାର,           ଅଣନ୍ତୁ ତୋ ପରବାସୀ,
କୂପ ଉପକଣ୍ଠେ ଶ୍ରୀଅଙ୍ଗକୁ ମଜା ରେ ।୩।
ଏହି ପୁରେ ତୋ କାମନା           ଭରତ ହୋଇବ ସିନା,
ଶ୍ୟାମ ଅଙ୍ଗସଙ୍ଗ କରଥିଲେ ମଜ୍ଜାରେ ।୪ ।
ତା ବେଣୁ ନିଃସ୍ୱନ ହିରୁ           ଜନମାଉଛୁ ଦେହରୁ
ନୀପଫୁଲ ପରି ରେ ପୁଲକଗଜା ରେ ।୫।
ନ ଛପାଅ ମନ ଥିଲେ           ବନ୍ଧ କବ ରବ ବୋଲେ,
ସୁଖେ ବ୍ରଜମଣ୍ଡଳେ ଉଣ୍ଡିମ ବଜା ରେ ।୬।

———

( ୭୦ )

ରାଗ—ଶାବେରୀ—ଅଠତାଳି ।

କାହା ପ୍ରୀତରେ, ମଜ୍ଜି ରହିଲେ ସଜନି ! ଆଜ ରଜନୀରେ । ପଦ ।

ବାସ କୁସୁମ ମଣ୍ଡାଇ ବାସେ—ବାସ ତାମ୍ବୁଲ ଭିଙ୍ଗି ହରଷେ
ରତ୍ନଦୀପ ଜାଳି ଚଉପାଶେ
ଶେଜ ସଜାଇଲି ପାଖୁଡ଼ା ସେବତୀରେ ।୧।

ମୁଁ ହୋଇଥିଲି ଦିବ୍ୟବେଶ—ରହୁଁ ରହୁଁ ନିଶୀ ହେଲା ଶେଷ
ସେ କି ମୋ ଠାରୁ ଅଛେ ସୁରସ
କେଡ଼େ ମହାପାତକୀ ମୁଁ ଏହି ଧରତୀରେ ।୨।

ମୁଁ ଯେ କରିଥିଲି କେଡ଼େ ଆଶା, ପାଇ କେଉଁ ରମଣୀ ଭରସା
ବୃଥା ହୋଇଗଲା ମୋର ଆଶା
ଭୃଙ୍ଗ ପରାଏ ପର-ପୁରୁଷଙ୍କ ମତରେ ।୩।

ରାମଚନ୍ଦ୍ର ଶ୍ରେଷ୍ଠରାୟ କହେ, ଯାହା ହୋଇଗଲା ସେ ସମୟେ
ଶେଷମୁଖେ ଆଉ କହି ନୁହେ
ଆଣିଦେବ ବ୍ରଜରାଜ କିଶୋର ରାତିରେ । ୪।

———

( ୭୧ )

ରାଗ—ଖମ୍ବାଜ—ଏକତାଳ ।

କାହିଁରେ ମନ ନାହିଁଟି ହେ ମୋହନ,
ଗୃହବାବେଲ୍ଲୁ ଏ ପାଣି ॥ ୦ ॥
ଅଣିଲ୍ କପଟ ତା ମନ-ସଫର ନେବାନ୍ତ ବଡ଼ୀଶେ ଟାଣି ।୧।
ସେହ କାଳଟାଙ୍କ ସ୍ବର ପୀଡ଼ିଲ୍ କ ରଖିଥିବା ଶର ଶାଣି ।୨।
ଆଜଯାଏ ରାଧା ନେହପ୍ରୀତି ବାଧା ପାର ନ ଥିଲଟି ଜାଣି ।୩।
ମୁଁ କାହା ଆପୃଣ୍ଣ ନୁହଇ ରେ ମିତ ବୋଲ୍ ଯେ ହୁଏ ବଖାଣି ।୪।
ସ୍ବମନୋର ଥର ପୂରଣା ଏଥର କରବାଅ ରସଗ୍ରଣି ।୫।
ପ୍ରବଳିଲ୍ ନନ୍ଦ ସୁତଙ୍କ ଆନନ୍ଦ ଶୁଣି ଲଳିତାଙ୍କ ବାଣୀ ।୬।
ଅଷ୍ଟବୁର୍ଗ-ପତ ଦେଲେ ହରସୁତ-ଖଡ଼ଗେ ଦୁରିତ ହାଣି ।୭।

---

( ୭୨ )

ରାଗ—କାମୋଦୀ—ତାଳ ଏକତାଳି ।

କାହିଁରେ ମନ ସହ, ପ୍ରସନ୍ନ ହେଉନାହିଁ,
ଏଥିକି କହ କେଉଁ ଗତିକି ରେ,
କି କର ଅରଜିବ, କି କର ବରଜିବ,
ସେ ନବଘନ ଶ୍ୟାମ ପ୍ରୀତିକି ରେ ॥ ୦ ॥

ଯୁଗଠାରୁ ଅଧିକ, ହୋଇଲ୍ଣି ପଲକ,
କେମନ୍ତେ ସମ୍ଭାଳିବ ଧୃତିକି ରେ,
ତ୍ରିଭୁବନ ମୋହନ, ବାଇମ ବଂଶୀସ୍ବନ
କାହୁଁ ଚୁମ୍ବିଲ୍ ମୋର ଶ୍ରୁତିକି ରେ ।୧।

ଇନ୍ଦ୍ରନୀଳ-କପାଟ, ପୁଟରୁଚ ସେ ନଟବର
ମୁକୁଟମଣି ହାଟକି ରେ,
ମାନସେ ଭାବ ଭାବ, ଜନମେ କି ଛାଡ଼ିଦେବ,
କୁଳବରତ ଜାତ ନୀତିକି ରେ ।୨।

ଗରଳ ଗିଳି ଅବା, ରବ ନନ୍ଦନ ସେବା—
ବଧିରେ ବଳାଇବ ମତକ୍କ ରେ,
ଅବା ଶ୍ୟାମ ଫଗଡ, ଲଭି ସୁଭାଗ୍ୟବନ୍ତ—
ମଣ୍ଡଳେ ଟେକାଇବ ଛତକ୍କ ରେ ।୩।
ନିକୁଞ୍ଜେ ସଢେ ବେଳେ, ଘେନି ବସିବ କୋଳେ
ସେ ନବ—କିଶୋର ମୂରତି ରେ,
ପରଢେ ନାହିଁ ମୋର, କରଢେ ମଦନର
ବସି ପାରିବ କି ବରତକ୍କ ରେ ।୪।
କହେ ଶ୍ରୀ ଗ୍ଲେଟରାୟ, ନୃପତି କୁବଳୟ—
ନେତ୍ରେ ଲପନ ନିଶାପତକ୍କ ରେ,
ଦେଖାଇ ଦେଇ ଥରେ, ଏବେ ଭାଗ୍ୟପଥରେ
ପକାଇ ନେବେ ଅଙ୍କାରତ ରେ ।୫।

---

( ୭୩ )

କାଟ—ବେଟଡ଼ା—ଏକତାଳି

କାହିଁକି ଲପନ ଇନ୍ଦ ଶୁଖାଇଛୁ ରସସିନ୍ଧୁ,
କହ ମୋ ପରାଣବନ୍ଧୁ ରେ । ୦ ।
ତୁ ପରା ମୋ ଗଳାମାଳା ପୀରତି-ପଦ ଶୃଙ୍ଖଳା
ନଳୀନାକ୍ଷି ପ୍ରେମଶିଳା ଅପରାଧ ବିନା ବାଳା ।୧।
ବାଳକାମଣି ମଜ୍ଜନ ବରଜ ରଙ୍କ ରଞ୍ଜନ
ଅରଜ ଗୁମାନ ଧନ ସବଳ୍ପ ଏକା ମଜନ ।୨।
ନବୀନ ତମାଳ ଶ୍ରେଣୀ ସବନୟ ମୃଦୁଭାଷୀ
କି ମନାସି ଦରହାସୀ ବିମନା ରତ ଲାଳସୀ ।୩।
ତରୁଣାଙ୍ଗୀ ପ୍ରିୟ ସହୁ, ଅରୁଣାଧରୀ ସୁସ୍ନେହୀ
କରୁଣା ଅପାଙ୍ଗ ଫେଇ ଶରଣାଗତେ ନ ଗୃହି
ଦ୍ୱିଜ କବିରବ ଭାଷେ ଗଜପତି ବାହୁପାଶେ
ବାନ୍ଧିବା ଉଚିତ ଦାସେ ବ୍ରଜରମଣୀ ଲର୍ଦୋଷେ ।୫।

---

( ୭୪ )

ରାଗ ମୁଖାରୀ—ଅଠତାଳି

( କୃଷ୍ଣଙ୍କ ପ୍ରତି ଯଶୋଦା )

କାହିଁକି ଅଜ ସୁନ୍ଦର କାନ୍ଦ
ମଲି ମୁଁ ଆହା ମୋ ଶ୍ୟାମଳ ଚାନ୍ଦ ।୦।
ସଜଳ ଦଶ୍ଚନ୍ଦ୍ର ନେତ୍ରାରବିନ୍ଦ,
ଅଚ୍ଛୁଟ ଦନ୍ତବାସ କୁନ୍ଦବୃନ୍ଦ।୧।
କେ କଲା ତୁମ୍ଭ ତୁଲେ କଳି ଦ୍ୱନ୍ଦ
କହ କରିଦେବା ସେବା ବାସନ୍ଦ।୨।
ଆହା ମୋର ମନ ନୟନାନନ୍ଦ,
ଚଳି ହେଲେ କି ତୁମ୍ଭ ତାତ ନନ୍ଦ।୩।
ଅଳରେ କରୁ ଗୃହକୃତ୍ୟ ବନ୍ଦ
ଧନ ବନା ମୁଁ ନ ବୋଲେ ଗୋବିନ୍ଦ,
ଅଁ ମୋ ଚାନ୍ଦ ହସ ମନ୍ଦ ମନ୍ଦ
ଦେବି ନବନୀତ ମିଶାଇ କନ୍ଦ।୫।
ପାଇ ତୋହ କୃପା ସୁଧା-ନିସ୍ୟନ୍ଦ,
ହେଉ ବାଲ୍ୟକେଶ ଦେଉ ଚସନ୍ଦ ।୬।

---

( ୭୫ )

ରାଗ—ପୁରୀକଲ୍ୟାଣ—ଏକତାଳି ।

କାହିଁକି ମାଁ କାହିଁକି ଗୋ,
କାହିଁକି ସେ ଗୃହି ରହିଲେ ମୋତେ ଅଜ । ୦ ।
ନଥିଲି ମୁଁ ଏକା ଜଣେ, ଥିଲି ତ ମୋର ଗହଣେ
ରସ ରୂପବତୀଙ୍କ ସମାଜ ।୧।
ମୋ ପ୍ରିୟ ସଖୀ ବୋଲଇ, ପ୍ରିୟ ବଚନେ ଭୁଲାଇ
ଅଚରିଛି କି ଗୋ କରୁ ବ୍ୟାଜ ।୨।

ମୁଁ ପରାଧୀନା ଯୁବତୀ, କୁଳ—ଶୀଳ—ଲଜବତୀ
ମୁଁ କେ, କେ ସେ ବ୍ରଜ ଯୁବରାଜ ।୩।
ଜନ ବଦନେ କେ ଜାତ, ଦେବ ହେବ ଏଥୁଁ ଖ୍ୟାତ
ପ୍ରୀତି ହେଲା ପରା ଏ ନିଅଜ ।୪।
ଜଗଦେବ ବୋଲେ ଗୀତେ, ଚେତକ୍ଷ ବେଲରୁ ମୋତେ
ଛୁଡ଼ାଇ ଦେଉଛୁ ବଡ଼ ଲାଜ ।୫।

---

( ୭୭ )

ରାଗ—ବଙ୍ଗଳାଶ୍ରୀ—ଝୁଲା ।

କାହିଁ ବରକେଳି—ମଣ୍ଡଳେ ଜୋଛବ ସୁଧାରେ ତାର ସମାନ
ଅମରେଶ୍ୱରଙ୍କୁ ମିଳୁଥିବ ଅବା ସୁଧାରେ ତା ରସମାନ ।୦।

ସଜ୍ଜବଭ ଲୋଭେ ଝାମ୍ପୁଥିଲା ଯହିଁ ମଧୁପ ଗୁଞ୍ଜବଦରେ
ହରିଲିଟି ବୋଲି ବାମାର ଅଧର ମଧୁପ ଗୁଞ୍ଜ ବଦରେ ।୧।

ଯେଉଁପରି ହରିଚନ୍ଦନୁ ମିଳିବା ବଦନେ ମଧୁର ସାର
ସେପରି ଥିବଙ୍କ ରସ ସରଜନେ ବଦନେ ମଧୁ ରସାର ।୨।

ଗୃଷ୍ଟରେ ବନବା ଏଥୁଁ ଯେବେ ଅନ୍ୟ ଭରମେ ଦାଖଣ୍ଡ ସରେ
କି ବାବୁ ମିଳିବ ଏକ୍କମାନ ଶ୍ରମ ଭରମେ ଦାଖଣ୍ଡ ସରେ ।୩।

ଏ କେଳି ଝଳାରୁ ଉଣା ହେବ ମଜା ଅପୂର୍ବ ସୁଆଦ ରସ
ର?କୁ ଘେନିଲେ ଇକ୍ଷୁଖଣ୍ଡ ହେବ ଅପୂର୍ବ ସୁଆଦରସ ।୪।

ନାଷିଦ୍ଧ ଏ ବୋଲି ନବହେ ଯା ତାକୁ ମହୀମ କର ମାସରେ
ଘେନୁଛୁ ମୁଁ ମନେ ତା'ଠାରୁ ବଗଡ଼ ମହ ମକର ମାସରେ ।୫।

ଦେବଙ୍କ ପ୍ରସାଦରୁ କରିପାରିବି ଏ ସଂସାରେ କବି ବିଶେଷ
କବିଦେବ ବୋଲେ ଏ ରସ କି ପରସଂସାରେ କରିବି ଶେଷ ।୬।

---

( ୭୭ )

ରାଗ—କଲ୍ୟାଣ—ଅଧତାଳ

କାହିଁକି ନଇଲେ ଶ୍ୟାମ ଏ ଯାମିନୀ ସଖି ରେ ।୦।
ମଣ୍ଡନ କେଳିବାସରେ ଥିଲି ତୋଷରେ
ଖଣ୍ଡନ କଲେ ମୋ ସୁଖ ନଆସି ମାଧବ ଏ ପୁରେ ।୧।
ଇଚ୍ଛାସେ ମୁଁ ବସିଥିଲି ଦିବ୍ୟ ବେଶରେ, ସଖି ରେ,
ଭଲ ସେ ନାଗରବର ବଢ଼ାଇଲେ ସନ୍ତାପ ମୋରେ ।୨।
ରଜନୀକର ମିଶାଇ ଘନସାରରେ, ସଖି ରେ,
ସଜାଇ ମୁଁ ରଖିଥିଲି ଆସିବେ ବୋଲି ମୋ ପୁରେ ।୩।
ଶେଜାଇ ଫୁଲ ଶେଜରେ ଥିଲି ତୋଷରେ, ସଖି ରେ,
ଫଙ୍କାଇ ତୁ ନ ଆଣିଲେ ଜୀବ ଯିବ ମାର ଶରେ ।୪।
ଆଣ ଯା ବେଣୁପାଣିଙ୍କି ଶ୍ରୀମତୀଙ୍କ ରେ, ସଖିରେ,
ଭଣେ ରାମଚନ୍ଦ୍ର ଦେବ କୃଷ୍ଣଙ୍କ ଗୁଣି ମନରେ ।୫।

---

( ୭୮ )

ରାଗ—ଭୈରବୀ—ଅଡ଼ତାଳ

କାହିଁ ଲୁଚାଇ ସେ ସ୍ନେହ, ଗୃହିଁଲୁ ଧରାରେ । ୦ ।
ମଦନ—ଦର୍ପଣ ତୁଲ—ସଦନ ସସ୍ମିତ କେଳ
ବଦନ ବିମୋଦ ନତ-ଅଙ୍ଗୀ ନକର ରେ । ୧ ।
ଅରୁଣଓଷ୍ଠୀ ରୁଚିର—ଚରଣ ପଙ୍କଜ ତୋର
ଶରଣ ତୁ ପର ମୋର ମଙ୍ଗଳ—ଝରା ରେ । ୨ ।
ଠିକ ଯୁବ ମଦ କଳ—ପିକଭାଷୀ ତୋ ତାମ୍ବୁଳ—
ପିକଦାନୀ ଦାନବର ମୋ କରେ ଧରା ରେ । ୩ ।
ମନକୁ ମ୍ଳାନ ନ କର—ଘନ କୁନ୍ତଳା ମୋହର
ଧନକୁ ଜୀବନକୁ ତୁ ଅଧିକ ପରା ରେ । ୪ ।
ଶଶିହାସୀ ମାର ମଦେ—ଇଷି ଭାଷି ମୋର ହୃଦେ
ଠେସି ଦିଅ ପୀନସ୍ତନ-କନକ-ଗିରା ରେ । ୫ ।
ବସ୍ତୁ ଦୁର୍ଗନାଥ ବୋଲେ—ବସୁମତୀ-ଭୂଷା ଗେଲେ
ବସ୍ତୁ ଲେଖା ହେଲ ସ୍ବର ଦୁଃଖ ପାଶୋରା ରେ । ୬ ।

---

( ୭୯ )

ରାଗ—ତୋଡ଼ି—ଏକତାଳି ।

କି ଭଲ ମଲ୍ଲୀହାସୀକୁ,
କି ଦୁଃଖ ଦେଲୁ ଗୁଣରାଶିକୁ । ୦ ।
ଅହା ମୋ ଲୀଳା-ବିଳାସୀ
ସମ୍ପୂର୍ଣ୍ଣ ଶରଦଶଶୀ—
ବଦନ, କରେ ନିବେଶି,—ଥିବ ବସି ।
( ପଦ )
ମୋ ଘର ପାଇଁ ଜୀବନ ମୀନଗରବଗଞ୍ଜନ—
ନୟନୁ ସରୁଅଞ୍ଜନ ଧୋଇଲା
ସେ ମୋର ମହଲା କାହାର ମଣି ସେ ନସହିଲା
ଧିକ ଧିକ ମୋ ଜୀବନ ବେନି ସପତ ଭୁବନ
ଖୋଜିଲେ ସୁଲକ୍ଷଣହୀନ ନଥିବ ମୋପରି ଆନ ।୧।
କଲେହେଁ ବହୁତ ଦୋଷ, କରନାହିଁ ଧନେ ରୋଷ,
ସେ ଦୟାକୁ ଅବତଂଶ,—ନାଗରୀ ଈଶ
( ପଦ )
ଶ୍ୱେତ ନଳୀନ ମୁଖୀକି ଅହା ଆଜନ୍ମ ସୁଖୀକି
ମନନୟନ ପ୍ରୀତିକି,—ଦେଇ ଘାତକି ମାଇଲୁ କାତିକି । ୨ ।
ଏବେ ଅତି ସୁକୁମାରୀ, ସେ ତ ନବୀନା କିଶୋରୀ—ମୋ ମନୋହାରୀ
( ପଦ )
ଅହର୍ନିଶ ବସୁଧାରେ, କୋଟିବାର ଲୋଟିବାରେ
ଘୋଟିଲା ମଳିନ ଯୋଷା କେତକୀ । ୩ ।
ମୃଣାଳ-ବାହୁ ବଲ୍ଲରୀ, କରେ ଛତ କେତେ ପରି, ସେ ନାଗରୀ
( ପଦ )
ସେ ତ ଭବମାନ ହର,—କରି କରେ ଏ ମନ୍ତ୍ର
ଅଷ୍ଟବର୍ଗ ମହାମନ୍ତ୍ର ଲଭିଲା,—ମୋର ସୁଶୀଳା
ଅତେଜ ଅଙ୍ଗନା ମିଶିଲା । ୪ ।

---

( ୭୦ )

## ରାଗ—ପୂରବୀ—ଅଠତାଳ ।

କଣା ପର ନିକୁଞ୍ଜ-ବିଳାସୀ, ରେ ବୀଣାଭାଷୀ । ୦ ।
ବାମନୟନା ରେ, ଭଲ୍ କି ନାରଣ, ଶ୍ୟାମ ଶ୍ରୀମୁଖେ ତ ନାହିଁ ଅଉ ହାସ
ସ୍ୱାମ ନ ଯାଉ ସେ ଏବେ ରଦବାସ, ଦେଖାଇ କର ଉଲ୍ଲାସୀ ରେ । ୧ ।
ଛଳନା କର ତ କି ଅପରାଧରେ, ଲଳନାମଣି ବଳନା ଏ ବାଧିରେ
ଜଳଜାକ୍ଷ ଗୁଲ ଗୁଲ ଭ୍ରୁ ସଧୀରେ, ଦରହାସ ପରକାଶି ରେ । ୨ ।
କାହିଁ ଛପିଅଛୁ ମୂରଲୀ ବାଜଣା, ନାହିଁଟି ଆଜ ତ ଶ୍ରୀଅଙ୍ଗ ମାଜଣା
ଗୃହୀ ସହୁଅଛୁ ସହ ! ତୋ କରୁଣା, ସାଶାକଣା ମୃଦୁଭାଷୀରେ । ୩ ।
ଭଣେ କବିରବି ଶୁଣ ଏ କପଟ, କ୍ଷଣେ ବରାଷୀ କର କୃପା ପ୍ରକଟ
ଜଣେ ତ ଅଟେ ସେ ନାଟୁଆମୁକୁଟ, ତା' ଚରଣତଳେ ଦାସୀରେ । ୪ ।

---

( ୭୧ )

## ରାଗ—ତୋଡ଼ିପରଜ—ଏକତାଳି ।

କି ନକରେ ପ୍ରେମବ୍ରତରେ, ସଜନି !
ସେ ଶ୍ୟାମ ଅନୁସନ୍ଧାନେ ସଖୀ ମୋର ହେଉଛୁ ଯେତେ ଅଜୀତରେ । ୦ ।
ଶିରୀଷ କୁସୁମ ତାଡ଼ନରେ, ସହୀ-ମେଳେ ଯେ ମୋହକୁ ଯାଇ,
ସେ କରକାମିଣୀ ପ୍ରଖର ବରଷା ସହୁ ଥିରା ଥିରା ଯାଇ । ୧ ।
ଉଠେ ଯେ ସଜନୀ କରେ କର ଦେଇ ଦେହଳି ଲଙ୍ଘିବାପାଇଁ,
ସେ କଣ୍ଟା ଅବାଟ ନଗଡ଼ ନିପଟ ନମାନି ସଙ୍କେତେ ଯାଇ । ୨ ।
ଦିବସେ ଯେ ଡରେ ସ୍ୱହଚରୀ ମେଳେ ଚମଧାମେ ନ ପଶଇ,
ସେ ବିଜୁଳୀ ଦେଖା ହୋଇଣ ଅଶାଖା ନିତ ବୃନ୍ଦାବନେ ଧାଇଁ । ୩ ।
ଭିତ୍ତିରେ ଚିତ୍ରରେ ଲେଖା ଉରଗରେ ଭୟେ ଯେ ନ ଦଏ ପାଣି,
ସେ ଶାଢ଼ୀ ଶେଷରେ ତନୁ ଛପାଉଛୁ ଫଣିମଣି ତେଜ ଜାଣି । ୪ ।
କବିରବି ବୋଲେ ସେ ମୋହନଛବି ଯେ ଦେଖେ ନୟନ ଭୁଲେ,
କହିଲେ କି ବାଳୀ ମାନିବ ଏକଥା ବୃଥା ହେବ କଥା ତୁଲେ । ୫ ।

---

( ୭୨ )

ରାଗ—ବାହାର—ଝୁଲା ।

କି ଭଙ୍ଗୀରେ ଅଇଲ ରେ ନୂଆଛଇଲା । ୦ ।
ମୋ ଧନ ରଙ୍ଗେ ମଦନସଙ୍ଗେ
ଲଢ଼ିବା ଛଡ଼ୁଯାକ ଧଇଲ । ୧ ।
ତାହା ମାଧୁରୀ ସୁଧା ନିର୍ଝରୀ
ନେକେ ପାତକ ଫଳ ଧୋଇଲ । ୨ ।
ମୋ ମନ ଚୈତ୍ର କର କାଶୋରୀ
ସ୍ତନ କନକ ଘଟେ ଥୋଇଲ । ୩ ।
ବନ୍ଧୁଅ ମୋର କେଡ଼େ ସୁନ୍ଦର
ଶ୍ରୁତିମଣ୍ଡନ ଦୋହଲାଇଲ । ୪ ।
ସରସ ସ୍ମିତ ସୁଷମାରୁ ତ
ଚନ୍ଦ୍ରମା ଛବିକି ଛପାଇଲ । ୫ ।
ସେ କ୍ଷୀଣକଟୀ କଟୀରେ ରଚି
କିଙ୍କିଣିକି କଣି ପକାଇଲ । ୬ ।
ଅଭ୍ରବୁର୍ଗେଣ ରଣବା ରସ
କୃଷ୍ଣଚରଣକୁ ଚକାଇଲ । ୭ ।

---

( ୭୩ )

ତୋଡ଼ି ଜଙ୍ଗଲା-ଏକତାଳି

କି ଭାବର ବାଣୀ ସବୁ ଜାଣିଜାଣିରେ ଅଜ ଏ କି ଠାଣି ରେ ।୦।
ଖଳ କି ବନାଣୀପଣେ ଅନ୍ତର୍ବାଣୀ—
ହୋଇ ଦେଲ ଏ ଗୃମାଣୀ ମୁରତି ନିର୍ମିଣି ରେ । ୧
ମୋ ଧଇର୍ଯ୍ୟ ଲୁଣି ନେବାକୁ କି ଠାଣି
ଗଣ୍ଡକୁ ମଣ୍ଡିବୁ ନବ କାଶଳସ୍ୱ ପାଣିରେ । ୨
କେଡ଼େ ମୂଢ଼ ପ୍ରାଣୀ ହେଲେ ଯେ ପଞ୍ଚାଣି
ବରଜ କି ସୁଧାରସ କେଡ଼େ ତବ ବାଣୀ ରେ । ୩

ଫୁଲ୍ଲରୂପ-ପାଣି ତୋ ମହ୍ନୀ ଗୃହାଣୀ
ଦେଖ, ରକ୍ଷଲଣିଟି ମାର୍ଗଣେଗଣ ଶାଣିରେ ॥ ୪
ଅଦୋଷରେ ଅଣି ଦୁମନନ୍ଦେ ହାଣି
ଅନା ଜଗଦେବଙ୍କ ସୁନ୍ଦରୀ ସାମନ୍ତାଣୀରେ ॥ ୫

---

( ୭୪ )

ରାଗ—କାମୋଦୀ-ଝୁଲା ।

କି ରସିକ ସେ, ବିରସ ଯାହାର ମୁଖୁ ନିକଳେ
ମୂର୍ଖ ହୋଇ ଯେ ନାରୀମନସୁନା ପ୍ରୀତି କଣ୍ଠିରେ ଯେବେ ନକସେ । ୦ ।
କଳନା ନ ଯାଏ ଲଳନାର ମୁଖ କମଳ ପରାଗେ ସଦା ବିକଶେ
ଅଳି ହୋଇ ଯେବେ ତୃପ୍ତି ନପାରଇ ଅଳି କରିବାର ତାର ଧିକ ସେ ॥ ୧
ଚତୁରୀ ଗୃତୁରୀ ବଚନ ଉକ୍ତାର ମରମେ ନୟନ ଶରକୁ ପେଷେ
ଲହିକି ଯେ ପ୍ରତିଉତ୍ତର ନ ଦେଲା ଯୁବାବୃନ୍ଦ ମଧ୍ୟେ ଅବିବେକ ସେ ॥ ୨
ଭିତରେ ସଦୟ ବାହାରେ ସଭୟ ଦେଖାଇ କହନ୍ତି ମାତରକି ସେ
ଘେଳାଇ କରି ଯେ ଛଳାଇ ନ ଦେଲା ନ ଜାଣଇ କିଛି ବାତରକି ସେ ॥ ୩
ପଙ୍କଜାକ୍ଷୀ ବାଳା ଯା'ଅଙ୍କେ ନ ବସେ କେଉଁମନ୍ତେ ଭାଗ୍ୟବନ୍ତ ଅଟେ ସେ
କହେ କବିରବି ମୋହନୀ ମନ୍ତର ଜାଣି ମୁଁ ତାହାର ମନକୁ କଷେ ॥ ୪

---

( ୭୫ )

ରାଗ-ଶଙ୍କରାଭରଣ—ଆଦିତାଳ ।

କାହେ ବିପଞ୍ଚିବାଣୀ,
ବଞ୍ଚାଇଲୁ ମୋର ଦୋଷ ଜାଣିରେ । ୦ ।
ସଞ୍ଚରିଲି କି ବିନା ନିର୍ଦ୍ଦେଶରେ,
ମଞ୍ଚରେ ତାହାକୁ ଦେଖି ଚଞ୍ଚଳ ଚଳିକି ଅଙ୍ଗ
ଅଞ୍ଚଳକୁ ରସିଲିକି ବିଦେଶରେ । ୧ ।

ଚଞ୍ଚରିକ ପରି କି ମୁଁ ହେଲି ଚୋଳ,
ଚଞ୍ଚମ ପଞ୍ଚମାର୍ଗଣାକ୍ଷୀରେ, ଦୁର୍ଗୁଣ ନ ଦେଖି
ହୋଇଲୁ କି ଅବା ସୁଖେ ପ୍ରତିକୂଳ । ୨ ।
ମନମଥ ମଦଲାଗି ହୃଷ୍ଟ ମୋର,
କେତେବେଳେ ରଖେ ଜ୍ଞାନ ଜ୍ଞାନ ନ ଥିବା ଦଶନ
ବସନେ କଲେ କି ରଦବ୍ରଣ ଚୋର । ୩ ।
କୁଚ ଯୁଗଳତ କଲୁ ଗିରିଗରୁ,
ଏକା ନୁହେଁ ଆଲିଙ୍ଗନ ଧରିବାରୁ ତ ବିଧାନ
ଲାଗିଥିବ ନଖ ମୂନ ଧରୁ ଧରୁ । ୪ ।
ନ ଜାଣେ ନଜକେ ଥିଲି ସଖୀ ଚୋର
ଖସାଇ ନୀତମ୍ବବିମ୍ବ— ଅମ୍ବର ରଚିଲି ଚୁମ୍ବ
ଏଥକୁ ରେ ଦୋଷ ବିମ୍ବଓଷ୍ଠୀ ମୋର । ୫ ।
ବ୍ରଜବନ୍ଧୁ ଗୂଢ଼ବାଣୀ ବିଳସିଲେ,
ହସି ହାରିଲେ ଅଙ୍ଗି - କାର କଲେ ଗଜଗାମୀ
ଅଷ୍ଟଦୁର୍ଗ ପୁରନ୍ଦର ବୋଲେ । ୬ ।

—————

( ୬୭ )

ରାଗ-ପଞ୍ଚମ ବରାଡ଼ି—ଅଠତାଳି ।

କଶୋରୀମଣିଙ୍କ ମନ,—ମାନରୁ ହେବାରୁ ମ୍ଳାନ
ମୋହନ ମୁରଲୀପାଣି ଜାଣି ।
ମୁହିଁ ଅବଲମ୍ବେ ରୁଷା—ହେବାପରି ଅଙ୍କଭୂଷା
କହନ୍ତି ସାକୁତ ଗୂଢ଼ବାଣୀ
ରେ । ମୃଦୁଳାଙ୍ଗୀ;
ନଜଙ୍କର କରିବାର ଦାସ—ନିତ ନିତ କରୁଥାଏ ଦୋଷ
ପ୍ରଭୁ ଯେବେ କରେ କ୍ଷମା-ପ୍ରସରିଲ ନିରୁପମା-
ମୃତ-କର-ବରିବର ଯଶ ॥ ୧
ଦବାରିତ ଆଚରଣେ—କିବା ବ୍ରତ ନିଷ୍ଠା ରଣେ
ନିବାରିବାରୁ କି ଧେନ କାହୁଁ

ଅନାଭିଜ୍ଞ ପର ବାକ୍ସ-ମୁଖରୁ ଦୁର୍ଗଣ ନିଃସ୍ୱ
ବାକ୍ସାସୀ ଜନକୁ ଗୃହ୍ମ ଗୃହ୍ମ
ରେ ରସାଳସା,
ଦଣ୍ଡିବୁ ତୁ ଅବଶ୍ୟ ମୁଁ ଜାଣେ-ନ ଦଣ୍ଡ ମାନବଙ୍କ ଫୁଲବାଣେ
ତୋ କଟେ ଯେଉଁ ଦଣ୍ଡନ—ସେ ମୋ ବଗ୍ରହ ମଣ୍ଡନ—
ମଣି ବୋଲି ମନକୁ ମୁଁ ଆଣେ ॥ ୨

ସତେ ମୁଁ ଦୋଷର ସୀମା—ରଢ ପ୍ରତିମା ତୁ ଷମା—
କରୁଛୁ କି ଆଣ ମାନସକୁ
ଦେହଲେ କୁନ୍ଦ-ଦଶନା—ଲଜ୍ଜିତ ହୋଇବୁ ସିନା
ଦଣ୍ଡ ବଳାପଡ଼ୁଛୁ ଦୋଷକୁ
ରେ ଶୋଭାନିଧି,
କୁଚଗିରି ମଧ୍ୟେ ରଖି ରୁନ୍ଧ—ନିଜ ଭୁଜପାଶେ ଦୃଢ଼େ ବାନ୍ଧ—
ପକାଇ ଦେବାଟର ନଣା—ଗୋଟିପାକୀ ଯେଉଁ ଦଶା
ବସନ ସବକା ନାହିଁ ପିନ୍ଧ ॥ ୩

ଚିବୁକ, ଅଧର, ଗଣ୍ଡ ଦଶନରେ ଖଣ୍ଡ ଖଣ୍ଡ
କରୁଛୁ କି ନାହିଁ ସତ କହ
କରରୁହ ଶିତକୁନ୍ତ—ମୂନରେ ଜୀବିତ ମିତ,
ଶର ପକାଉଛୁ ମୋର ଦେହ
ରେ ବାଳାମଣି,
ଜଘନେ ଯକାଇ ଭଲେ ମୋତେ—ଜତ୍ତୁଙ୍ଗ ଉରଜ ପରବତେ
ଅକରୁଣ ହୋଇ ଉର—ଛେଚ ପକାଉ ଯେ ମୋର
ନାହିଁକି ଅଳପ ହେଲେ ଚିତ୍ତେ । ୪ ।

ମୋତେ ଅଚେତନ ଦେଖି ଶରଦଚନ୍ଦ୍ରମାମୁଖୀ
ରଦାମ୍ବରୁ କସଟି ପିଆଉ
ସଚେତ ହୋଇଲେ ପୁଣି—ପ୍ରହାରବ ବୋଲି ମଣି
କର୍ଣ୍ଣ ଫୁଙ୍କି ପର ତୁ ଜୀଆଉ
ରେ କଳାବତୀ,
ସହୁଥାଏ ଯେ ଏତେ ଫଜତ-ସେ କି ହୁଏ ଦଣ୍ଡରୁ ଲଜ୍ଜିତ
କଲେ ହେଲେ ତୁ ଅନ୍ତର—ଷମା ସରସୀରେ ତୋର
ଅନାରତେ ରହୁବ ମଜ୍ଜିତ । ୫ ।

ଅଷ୍ଟଦୁର୍ଗ ଧଣ୍ଟପତ—ଶ୍ୟାମଚନ୍ଦ୍ର ପଦେ ନତ

ବନ୍ଦ ମହାଆନନ୍ଦରେ ଭାସେ,—

ଏପର ସରସିତର ଗୃହୂର୍ଣ୍ଣ ଗର୍ଭକ ଗିର

ଚୁମ୍ବିଦେଲେ ଯହୁଁ ଶ୍ରୁତପାଶେ

ସେ ବିମ୍ବାଧର

ସମ୍ଭାଳି ନ ପାରି ଅଛହାସେ-ଘନସାର ପରାଗ ବରଷେ

ଘନେ ଶମ୍ପାପରି ସ୍ନେହେ—ମିଶି ଘନଶ୍ୟାମ ଦେହେ

ମଣ୍ଡିଲେ ଯମୁନା ତଟ ରସେ । ୬ ।

---

( ୭୭ )

ରାଗ କେଦାର—ଆଠତାଳି

କି ସମୟେ କରନ୍ତି ଆସି କି ସୁଖେଦେଲ୍ଲ କରନ୍ତି ରେ ।ଘ।
ମନୋରଥ ପଥ ସଞ୍ଚାରି ପଦାର୍ଥ ମିଳନ୍ତେ କରଲ୍ଲଗକୁ ରେ
ଦୂରେଥାଉ କନ୍ଧ ଯଉବନ ଦୁଇ ସଫଳ ହୋଇବା ଭୋଗରେ
ଡରେ କମାଇ ସମ୍ବାଦ ନ ପାରିଲି ତା ଶ୍ରୀଅଙ୍ଗ ଅଙ୍ଗରାଗରେ ।୨।
ଛନ ଛନ ହେଉଥିଲ କୋଳେ ନୀଳ ଘନ କେଶାବରବଧୂ ରେ
ମନପୂରିକରି ପିଇ ନ ଥିଲି ତା ବଧୂଲ୍ଲି ଅଧର ମଧୁ ରେ ।୩।
ରହିଲବେଳେ ମୋ ଭୁଜାନ୍ତେ ସେ ମହାମହିଳା ଚମ୍ପୋଚର୍ଣ୍ଣିସ୍ୱରେ
ଖର ନଖର ଖେଳାଇ ତା କୁଚେ ମୋ କର ନଥିଲ୍ଲି ଠଉରି ରେ ।୪।
ନବାରମ୍ଭ କାମ କେଳି ଭଙ୍ଗୁ ଶ୍ୟାମ ସୁନ୍ଦର ବିବଶ ହେଲେ ରେ
ଜବାରୁଣ ତାଙ୍କ ଶ୍ରୀଚରଣ—କଞ୍ଜ ଭାବି ଜଗଦେବ ବୋଲେ ରେ ।୫।

---

( ୭୮ )

ରାଗ—ମୋହନା, ଅଦତାଳି ।

କୁଞ୍ଜ ନିଳୟଭୂଷା ଅଞ୍ଜନପୁଞ୍ଜ ମସାର୍ଦ୍ଧ ଘନକେଶା,
କଞ୍ଜଚନ୍ଦ୍ର ମଦଗଞ୍ଜନାସ୍ୟରୁଚ, କୁଞ୍ଜର-ଗତ ମନୋରଞ୍ଜନ ବେଶା ।ପଦ।
ଆସ ମୋ କୋଳରେ ବିରାଜ, ଦାସର ସରିକ ଭବ କି ଲାଜ

ବାସକୁ ପରିକର ଅଜ, ନାଶ ଦୁଃଖସମାଜ
ଧନ ମୋତେ ବାସବାଦ ପରିହାସ ଚତୁର କର,
ବରବରନାବର ନାଗରୀରଜା ।୧।
କୁନ୍ଦ ସୁନ୍ଦର ଦଶନାଳ, ସୁନ୍ଦରୀମଣି ତୁ ମୋର ସଙ୍ଗାଳ
ଚନ୍ଦନ ସଜ୍ଜରଭପାଳୀ, କୁନ୍ଦନମୟମାଳ,
ବୃଷରବିନନ୍ଦନୀନ୍ଦ୍ରମଣି ମଞ୍ଜୁଭୁଜଗଭୁକ୍ତ,
ଚଳନୟନାଞ୍ଚଳ ଦେ ଥରେ ତାଳ ।୨।
ମାର ରଞ୍ଜିଛୁ ଶରଶାଣି, ତାର ତ ଚରିତ ଅଛୁ ପରି ଜାଣି
ସାରକୁ ଘେନିଯିବ ଘ୍ରାଣି, କା'ର ସେ ରଖେ ଠାଣି,
ମୋର ହୃଦୟ ତାର ହାର ହୁଅ
ଥରେ ସୁଗୁଣବତୀ ରତି-ଚତୁରୀ ନବପଲ୍ଲବପାଣି ।୩।
କାଞ୍ଚନ—ଭଜସ୍ରୀ ବଗ୍ରୁର, ବଞ୍ଚନ ବର୍ଦ୍ଧକ ବରଚବାର
ମୁଞ୍ଚ ଧନ ମୁଁ ପରଗୁର, ମଞ୍ଚରେ ତ ତୁ ସାର,
ଅବିରତ ପଞ୍ଚବାଣ ରଣକୌଶଳ
ପରିଚୟ କର ସୁରସାବର ସାର୍ଥରେ ମୋର ।୪।
ଏପରି ନବଘନ ଶ୍ୟାମ, ଗୃହୁଁ ବିରଚି ଲଭୁଁ ବିରାମ,
ସମ୍ପ୍ରତି ତରୁଣୀ ଲଲାମ, ପୂରିଲେ ହରିକାମ
ନୃପ ଜଗଦ୍ଦେବ ସେ ସମସ୍ତ ବେଶ ଲଳିତ—
ପଦଯୁଗ ଯୁଗଳ-ଜଳଜାବଳୀ ଦାମ ।୫।

— : —

( ୭୯ )

ରାଗ—ମୁଖାରୀ—ଅଠତାଳ ।

କୁନ୍ଦରଦନା ରସବତୀ, ରସବତୀ ରାମା ରସବତୀ ।ଘୋ।
ଜଳ ଲଗି ତାହା ସଙ୍ଗତେ ମାତି,
ଯେତେ ବନ୍ଧେ ହେଲା ସୁରତି,
ରତିରେ ମାତି ନ ହେଜଲ ରାତି,
ତାକୁ ଥିଲା ତାର ନେତ୍ରସମ୍ପତ୍ତି,
ଉଡ଼ିଲା ଦେଇ ଘ୍ରାତକ ଘ୍ରାତ ।୧।

ନାଚ କରୁଥିଲ ନାୟିକାମଣି,
ଫିଟି ଚରଣେ ଲୋଟୁଥିଲ ବେଣୀ
ବାଜୁଥିଲ ତାର କଟୀ କିଙ୍କିଣୀ,
ନେଉଥିଲ ମୋର ଚିତ୍ତକୁ କିଣି,
ଭାସିଲ ହୁଁ ହୁଁ ଶବଦ ବାଣୀ ।୨।

ଜରଜେ କରକ ଗୃଲନ୍ତେ ନେଇ,
ଚମକି ଇଷି ବୋଲ୍ଲଣ ଭାଷଇ,
କହୁଥାଇ କେତେ ବିନୟ ହୋଇ
ଏଥକୁ ଆଉ ମୁହିଁ ନପାରଇ
—ବୋଲଇ ଆଜ ପଡ଼ିଲ୍ କାହିଁ ।୩।

କେତେବେଳ ଅନ୍ତେ ଜୀବଜୀବନ,
ଆରମ୍ଭିଲ ବିପରୀତ ବହନ,
ସେତେବେଳେ ଯାହା ହେଲ ମୋ ମନ,
ତହିଁକି କେବଳ ସାକ୍ଷୀ ମଦନ
ଗଣି ଦେଉଥିଲ ଚୁମ୍ବନ ଦାନ ।୪।

ଅଷ୍ଟଦୁର୍ଗପତି ବୋଲେ ଏ ରସ,
ଏହୁ ଅଙ୍କ ମୋତେ ହେବ ଗିରାଶ ।
ଖଟିଥିବ ଅନବରତ ପାଶ,
ବସି ଗୃହିଁଥିବ ମୁଖସାରସ ।
ଯେନ ବଞ୍ଚୁଥିବ ରାକ ଦିବସ । ୫ ।

— —

( ୮୦ )

ରାଗ କେଦାର କାମୋଦୀ—ଅଡ଼ତାଳି

କୁନ୍ଦକଳିଦଶନା, ନନ୍ଦନନ୍ଦନ ଶୋଭିକୁ ଅନାଁ ଗୋ । ୦ ।
ଇନ୍ଦ୍ରନୀଳସାର ଶରୀର ଏହାର କଟିତଟପଟ ସୁନା ଗୋ
ସେଭଙ୍ଗୀରେ ଉଭାହେବା ଛବିକି ମୁଁ ଲୁଚି ହୋଇପାଏଁ କିନା ।୧।
ଶରଦଚନ୍ଦ୍ର ବିମ୍ବରେ ଏ ଦ୍ୟୁତିରୁ ନାହିଁ ବୋଲି ଅଧଶନା ଗୋ
କମ୍ବୁକ୍ଣ୍ଠ ଅଖଣ୍ଡ ଶିଖଣ୍ଡ ମଣ୍ଡନ ମୁକୁଟ ଉପଟବାନା ଗୋ ।୨।

ମଧୁର ଅଧର ବନ୍ଧୁଲୀକ ତହିଁ ମୁରଲୀ ମୋହନ ସ୍ୱନା ଗୋ
କହ କହ କୁଳବ୍ରତ ଲତାମୂଳ ଏହୁ ଚାଳୁଅଛୁ ସିନା ଗୋ ।୩।
ଶ୍ରୀଅଙ୍ଗ ଛୁଇଁ ଅସିବା ମରୁତର କରୁଅଛୁ ଆଶ୍ୱାସନା ଗୋ
ମୃଗମଦସାର ଦଳ ଇନ୍ଦୀବର ମିଶାମିଶି ସୁବାସନା ଗୋ ।୪।
କୁଙ୍କୁମ ଚନ୍ଦନ ମୃଗମଦ ଘନସାର ଶିର ଶୋରୋଚନା ଗୋ
ଏହାଙ୍କ ସେବା କୃତକୃତ୍ୟ ହେବାକୁ କରିଛୁ ଧାତା ରଚନା ଗୋ ।
ଜଗତୀ ଧୃତ ବଧ୍ୱଂଶ ନୁହଇ ଏ ନେତ୍ରାଞ୍ଚଳ ଖେଳ ବନା ଗୋ
ବୋଲେ ଜଗଦ୍ଦେବ ଏଥୁଁ ମନୋଭବ ମାର୍ଗଣ ଗଣ କି ଶୁଣା ଗୋ ।୫।

---

## (୮୯)

ରାଗ—ସୋମ—ଏକତାଳି ।

ଇନ୍ଦୁବଦନା ରେ ଧନ୍ୟ ଧନ୍ୟ ତୋ ଲାବଣ୍ୟ ।
ଗୃହିଁଛୁ ଯା ମୋ ନେତ୍ର କରିଛୁ କେତେ ପୁଣ୍ୟ । ୦ ।
ସାରସାନନୀ ଯା ବିସାଇଲ ମଣ୍ଡିଲୁ ପଦ୍ମ-ବାରିଜେ
କେଳତୀ ଦୁ୍ୟତି ଗନ୍ଧ ସମ୍ପଦ ହେଲେ ଦେଲୁ ସାର ଯେ
ତୋ ତୁଲେ ରସି ହେବ ମନ୍ମଥ କେଳିକୁଞ୍ଜ ବିହାର ଯେ
ତରୁଣେନ୍ଦ୍ର ହେବେ ତାର ଗୃମରଧାସ୍ୱି ଯେ ।୧।
ଥାଉ ସାହସ ତୋ ସୁଧାରସ ପୂର ଅଧର ପାନରେ
ମୋର ଏ ପରଗୃର ବୋଲ ତୁ ଘେନିଲେ ଅବଧାନରେ
ଅଜ କା'ମନ ହେବ ରେ ଧନ ଅନରେ ଅଭିମାନରେ
ଯୋଷା । ତୋ ସଦୃଶ ନାହିଁ ବିଧି ବିଧାନରେ ।୨।
ଲଜରେ ମୁଖଚନ୍ଦ୍ରମଣ୍ଡଳ ଟଞ୍ଚମେଚକ ବାସରେ
ଲୋଚଲୋଚନ କୋଣରେ ଧନ । ଗୃହୁଁ ଯା ସବିଳାସରେ
ଗୃକର କରବାକୁ ମୋ ମନ ଥାଇ ତୋ ପଦପାଶରେ—
ଧରନ୍ତୀ ହୋଇଛୁ ହୁଏ ଏ ଅଭିଳାଷରେ ।୩।
ଅସ ବାସବଶାଳଗୃମରକୁନ୍ତଳେ । ଦରହାସରେ
ବାଣଶ୍ରସୁଭାଜୀ ବଳବଲ୍ଲୀ କୁଟୀମ ବାସରେ

ମୋ ସମାଗମ ତୋଷ ମନ୍ମଥ ମୋଷ କୌଶଳ ରସରେ
ବାହାର ହରଣୀ ନେକା ସ୍ୱରତ ଉଲ୍ଲାସରେ ।୭।
ନନ୍ଦସୂନୁ ମୁକୁନ୍ଦ ଏ ବର ଭାଷିଲେ ନବବାଷଣରେ
ଶ୍ରୀମତୀ ଅତ ଲଜରେ ହସି ଚାହିଁଲେ ସରସ ଈକ୍ଷଣରେ ।
ବାଲୁକେଶ୍ୱର ମାନବେଶ୍ୱର କଲ୍ପିଲେ ଭବ ମୋକ୍ଷଣେରେ
ବାହାରିଲେ ହର ହରଣାକ୍ଷୀ ସଙ୍ଗେ କ୍ଷଣେ ରେ ।୫।

---

( ୮୨ )

ରାଗ—କାମୋଦୀ ତାଳ—ସରମାନ

କେଉଁ କାରଣୁ ମୁଁ ତୋ ସେବାକୁ ଗୋ,
ମୋ ଠାରେ ଅବଧାନ ହେବାକୁ ଗୋ । ୦ ।
ତୋ ଚାରୁମୁଖ ମାଠି, ଯେବେ ଶଶଙ୍କ କାଠି,
ଭାଳଇ ଭାଲେ ନିବେଶିବାକୁ ଗୋ ।
ଲାଗଇ ମନେ ଦୁଃଖ, କୋଟି ସୁଧା ମୟୂଖ,—
ଦଳିବା ଝଳ ଛପି ଯିବାକୁ ଗୋ ।୧।
ମନୋହର କବରୀ, ସାଜ ପାରଇ ଗୋରୀ,
ଜାଣି ତୋ ଚିତ୍ତେ ରସାଇବାକୁ ଗୋ ।
ଭରସା ନୋହେ ମୋର, ସ୍ଥିର ନୀଳଗ୍ରୀମର—
ଚଉଁରୀ, କେଶେ ମିଶାଇବାକୁ ଗୋ ।୨।
ତୋ ପୟୋଧର ହେମ— ଦାମ ଛଡ଼ା କୁସୁମ—
ପର ମୋ ଚିତ୍ତେ ଅଭ୍ୟସିବାକୁ ଗୋ;
ମରଣୁଁ ଲାଜ ବଳେ ଚାହୁଁ ଚାହୁଁ ତୋ କଳେ-
ବରକୁ ଅଲଙ୍କାର ଦେବାକୁ ଗୋ ।୩।
ସାର ସକଳ ବେଶ ଦେଖାନ୍ତି ଆଦରଶ
ହେବା ନୋହିବା ପରୀକ୍ଷିବାକୁ ଗୋ;
କବିମିହିର କହେ ସତେ ଧଣେ ତୋ ଦେହେ
କେବଳ ଅନୁଗ୍ରହ ଥିବାକୁ ଗୋ ।୪।

( ୮୩ )

ରାଗ—କେଦାର—ଅଠତାଳି ।

କେଡ଼େ କଞ୍ଜନ୍ଦୁଖୀ ବଳାଗ୍ରନ୍ଦ ଲୋ । ୦ ।
କେଉଁ ଯୁବତୀକୁ—ନେଉ ନାହିଁ ଝିଙ୍କି
ଇନ୍ଦୁ ତା ନୟନ ଫାନ୍ଦ ଲୋ । ୧ ।
କୁଚେ ଥାଏ କର—ବଦନ ମଧୁର
ହସିତ ଶୁଖିଲା ଚାନ୍ଦ ଲୋ । ୨ ।
କର୍ଣ୍ଣକୁବଳୟ—ଲୁଣ୍ଠାଇ ପ୍ରଣୟ—
ଚୋପଟି କେଡ଼େ ପସନ୍ଦ ଲୋ । ୩ ।
କା'ମନ ନ ମୋହେ—ସେ କିଶୋର ନୁହେ
ଶୃଙ୍ଗାରଭୂରୁହ କନ୍ଦ ଲୋ । ୪ ।
କମନୀୟ ବେଶ—ହାଲହଅ ସେ କି
ଜଗତୀ ନୟନାନନ୍ଦ ଲୋ । ୫ ।
ଅଷ୍ଟଦୁର୍ଗ ନାଥ ତାଙ୍କ ପାଦପାଥ—
ରୁହ ମରନ୍ଦ ମିଳିନ୍ଦ ଲୋ । ୬ ।

———

( ୮୪ )

ରାଗ—କଳହଂସକେଦାର—ଝୁଲା ।

କେଡ଼େ ସୁନ୍ଦର ତୋ ଠାଣିରେ
ପରଭୃତ ରୁତ ବାଣୀ ରେ
ସତ୍ତ୍ୱୀ ତୋତେ ମହୀ ପୁଣ୍ୟବନ୍ତ୍ରୁ ବହୁ
ଅବତରିଛନ୍ତି ଅଣି ରେ । ୦ ।
ଲୋଚନ ହୃଦୟ ଥିବ ବଚନେ ହରେ କରିବ
କେଉଁ ନିରଖିବ ତୋ ଗଣନା ବର—
ସିମନ୍ତିନୀ ସାମନ୍ତାଣୀ ରେ । ୧ ।
ଜଗତୀ ପାବନ ହେବ ବୋଲି ଅବା କେଉଁ ଦେବ
ବୋଲୁଅଛନ୍ତି ଧନ୍ୟ କି ତୋତେ ଲାବଣ୍ୟ—
ପୀୟୁଷ ପୂରନ୍ତୁ ଘଣି ରେ । ୨ ।

କାହିଁକଟି ସେ ସୁରସେ, ଖାତର କରବ ଲେଶେ
ଖେଳିଯିବ ଯାହା ଦେହେ ଚମ୍ପାଦେହା
ତୋ ଭୁଜୁନଗ୍ଧୁ ଗୃହାଣୀ ରେ । ୩ ।
ନାଗ ରେ, ନାକେ, ଭୂତଳେ-ନାହିଁ ଜଣେ ତୁଳା ଛଳେ
କି ପଦାର୍ଥ ତୁ ଟି କି ପରଗାକଟି
ଅନୁମାନେ ନୋହେ ଜାଣି ରେ । ୪ ।
ମୁଁ ମାନ ମାଗୁଛି ଏତେ, ପରଖି ନ ଦେଇ ଯୋଉତ
ନ ମଣ୍ଡିରୁ ଗଣ୍ଡସ୍ଥଳକୁ ଅଖଣ୍ଡ—
ସୁଷମ ପଲ୍ଲବ-ପାଣି ରେ । ୫ ।
ଅଷ୍ଟଦୁର୍ଗନାଥ ବୋଲେ ଘନଶ୍ୟାମ ଗିରେ ଗେଲେ
ସମନ୍ଦାଯହସା ସ୍ନେହରସ ମିଶା—
ମିଶି ହେଲେ ଠାକୁରାଣୀ ରେ । ୬ ।

---

( ୮୫ )

ବେହାଗ—ଏକତାଳ ।

କେତେ କହିବ ଜଞ୍ଜାଳ ରେ ମୁଁ ଅଳ ତୁ ତ କଞ୍ଜାଳ ରେ
ନ ବୋଲ ନୀରସ, ଜନ୍ମା ମୋ ହରଷ, ମକରନ୍ଦରସ ଢାଳ ରେ ॥ ପଦ ॥
ନଗୃଅ ଭୂରୁ ଯୁଗଳ—ପଗୃଅ ମୋ ପୁଣ୍ୟ ଫଳ
ସଞ୍ଚାଅ ଅମନ୍ଦ-, ସୁଖ ବ୍ରହ୍ମାନନ୍ଦ ସରସ ନେତ୍ରାନ୍ତ ଗୁଳ ରେ ।୧।
ଧାଗ ଜବାଦନ୍ତ ବାସୀ—ବଗଜ ମୋ କୋଳେ ଆସି
ଭରଜ ଶଙ୍କରେ, କସ୍ତୁରୀ ପଙ୍କରେ, ସମର୍ପିବ ପଗ ଢାଳ ରେ ।୨।
ପାଞ୍ଝି ଚତ୍ରେ ରତ୍ନଠାଣି—କାଞ୍ଚି ଚଞ୍ଚଳ କିଙ୍କିଣି
ବାଜବାଜ ଧୀରେ, ରାଜୀବାକ୍ଷି ଧୀ ରେ, ଅଳ ମାନସ ଦେ' ଝାଳ ରେ ।୩।
ରଚରେ ମତ୍ତ ସିନ୍ଦୁର—ଗତ୍ତ ପ୍ରବନ୍ଧ ବନ୍ଧୁର
ହେବାର ସୁରତ, କରବା ଭରତ, ମଦନ ବଦନ କାଳ ରେ ।୪।
ଶୁଣି ଏ ଶ୍ୟାମ ଭାରତୀ—ହସି ରସିଲେ ଶ୍ରୀମତୀ
ଭଣେ ଜଗଦ୍ଦେବ, ମନୋଭବ ଗର୍ବ, ଉଡ଼ାଇଲେ କରତାଳ ରେ ।୫।

---

( ୮୬ )

ରାଗ—ତୋଡ଼ି, ତାଳ—ଝୁଲ୍ଲା ।

କେଳି ପ୍ରବୀଣା, କେବଳ ତୋତେ ସିନା ଜଣା ରେ,
ପ୍ରଣୟ ଧନେ ପ୍ରାଣ କିଣା ରେ । ପଦ ।
ନେହାନ୍ତ ଖେଳଯୁକ୍ତ,—କରାଇ ମିଛ ସ୍ମିତ,
ବିବେକ କରଦେଉ ବଣା ରେ ।୧।
ଦରଶନ ଅବସ୍ତେ, ସରସ ଗିର ଦମ୍ଭେ,
ପରିଷିବାର ସରପଣା ରେ ।୨।
ଦରକଣ୍ଠି ସୁନ୍ଦର, ଦରହସା ମଧୁର,
ସରସ ଗିର ପଦେ ଶୁଣା ରେ ।୩।
କରୁଣାମୟ ଚିତ୍ତେ, ଅରୁଣାଧର ମୋତେ,
ତୋ ଦାସୀ ଗଣନାରେ ଗଣା ରେ ।୪।
ମୁଁ ଏହୁ ଅଭିଳାଷେ, ଶିବ ଶିବାଙ୍କ ପାଶେ,
କରୁଥାଏ ଟି ଜଣାମଣା ରେ ।୫।
ଗୁଣେ ଲାବଣ୍ୟବତୀ,-ପାଶେ ଭାରତୀ, ରତି,
ନୁହେଁ ତୋଠାରୁ କିଛି ଊଣା ରେ ।୬।
ବୋଲେ ଶ୍ରୀ ଜଗଦ୍ଦେବ, ତୋ ସ୍ନେହୁଁ ମନୋଭବ
ମସ୍ତକେ ମାରିପାରେଁ ଠଣା ରେ ।୭।

---

( ୮୭ )

ରାଗ—ମୁଖାରୀ ।—ଅଡ଼ତାଳ

କେ ସହିବ ପ୍ରଭୁପଣେ ମାଳାଦ୍ରି କେଶରୀଙ୍କ ।
ଯାହାଠାରେ ଦୀନ ଦୟା ଚୂଡ଼ିଅଛି ନଟଠାରୁ ଶିଖା ସରିକ । ପଦ ।
ଯା' ପଦକଞ୍ଜ ଅଙ୍ଗୁଷ୍ଠ-ନଖ ଫିଙ୍ଗି ଦୁନ୍ଦୁଭି ଅସ୍ଥି ଶିଖରୀଙ୍କୁ;
ବାଳୀ ବଳମୁଖେ କାଳ ଦେଇ ରାଜପଦ ଦେଲେ ମିତ ହରିଙ୍କ ।୧।
ଉପଳ ପ୍ରବଣ ନବ ଶ୍ରୀଚରଣ ପଦ୍ମ ଜିଣି ଯାର ଛବିକ
ହେସ ଭବସମୁଦ୍ରରୁ ତାରିଲେ ଶଙ୍କଠ ସ୍ୱରୂପଧାରୀଙ୍କ ।୨।

ଯାହାଙ୍କ ଉଦାର ବଚନରୁ ଦର ଫିଙ୍ଗିଦେଇ ଦସ୍ୟୁ ବାଲକ
କାମଳ ଭକ୍ତକୁ ଜ୍ଞାନରେ ବସାଇ ପେଷିଲେ ଦିବ୍ୟ ନଗରୀକ ।୩।
ଯାହାଙ୍କର ଗୁପ୍ତ ଛଳଙ୍କର ଷୋଡ଼ଶ ଅପରାଧ ଗୋବକ
ତାଙ୍କ ପଦଜାତ ଲକ୍ଷ୍ମୀନକୁ ନେଲେ କଉସ୍ତୁଭମଣି ସରକ ।୪।
କର ପରରମ୍ଭ ଯାହା ବାହାସ୍ତମ୍ଭ ସୁଦାମା ଦାରିଦ୍ର୍ୟ ଖୁରୀକ
ନାଶି କନକେ ମଣ୍ଡିଦେଲେ ତାହାଙ୍କ ପର ପଦ-ପରଗୃହୀକ ।୫।
ଜାଣିବାରୁ ଯାହା ଶ୍ରବଣ ଦ୍ରୁପଦ ଜେମା ବିପତ୍ତି ଲହରୀକ
ପୂରାଇଲେ ଦୁଃଶାସନ ବସନ ବିଦୁରୀକରଣେ ତାହାରକ ।୬।
କେବଳ ସହାୟ ହୋଇନାହାନ୍ତି ସେ ପଣ୍ଡୁ ରାଜକୁଳ ନାୟିକ
ଜଗତ ଭରିଲେ ଯଶେ ଉଦ୍ଧରିଲେ ଅରି ଧରି ବରକରୀକ ।୭।
ନେହ ଯାହାଙ୍କର ଚଞ୍ଚଳ କପଟେ ପ୍ରସାରି କରୁଣା ଫରକ
ଦବାଇଲେ ଉରୁ ଖଡ୍‌ଗେ ବ୍ରଜବାଳକଙ୍କର ଶମ୍ବରୀ ବଇରକ ।୮।
ବାରନାରୀ ବାଳଭୁଲେ ଫୁଲମାଳ ଦେଲାକାଲେ ଧଣ୍ଡଧାରୀକ
ଶିଖା ଯାହାଙ୍କର ଶୁଣିଲେ କିଙ୍କର ମହାବିପତ୍ତି ଗୁହାରିକ ।୯।
ଭୋଗ କରୁ କରୁ ଅଷ୍ଟଦୁର୍ଗ ପରି ସ୍ୱର୍ଗ ତୁଳ୍ୟ ଧରିତ୍ରିରକ
ତହୁଁ ଶ୍ରୀ ବାଲୁଙ୍କେଶ୍ୱର ଦେବଲୋକେ ସୁଖଦ ବୋଲି ଯା ଧରିକ ।୧୦।

---

( ୮୮ )

ରାଗ—କାମୋଦୀ ।—ଝୁଲ

କୃଷ୍ଣଚନ୍ଦ୍ର, ବନକୁ ନ ଯିବୁ ରେ ଧନକୁ ମାଗୁଛି ଏତେ
ଦେଖିଲି ପାପ ସପନ ଆଜ ଅଜଗର ଗିଳୁଥିଲା ତୋତେ । ପଦ ।

ବରତନ କରି ଜଗାଅ ବାଛୁରୀ ଘର୍‌ଧନ ସବୁ ଦେଇ
କର ଧରିକରି ମାଗୁଛି ମୁଁ ତୋତେ ଏ ପୁରୁ ନ ଯିବୁ କାହିଁ ।୧।
ବଆ କେଉଁକଥା ଦେଇନାହିଁ ଧାତା କି ନାହିଁ ନନ୍ଦ ସଦନେ
ଦୁଃଖୀର ସଙ୍ଗାଳି ଦୁଃଖୀ ପରି ହୋଇ ବୁଲିବୁ ଘୋର କାନନେ ।୨।
କାଢ଼ିବ ପୁରୁଣା ଧନ ତା' ସବଲେ ବାଢ଼ିବ ଦଧି ପସରା
ତେଜବ ନାହିଁ ମୋ ଅଖି ପାଖୁ ତୋତେ ତୁ ମୋର ଦୁଃଖ-ପାଶୋରା

ଲଙ୍କାରେ ଘରାନ୍ତରେ ଥିବା ଲୋକର ମଙ୍କାରେ ଅଳପ ହାତି
ହଙ୍କାରେ ଲୋକ ଥିଲେ ହେଲେ ଅମୂର ବଜାରେ ବିକିବା ଜାତି ।୪।
ପୋଡ଼ିଯାଉ ପଛେ ଏ ଘର ସମ୍ପତ୍ତି ପୋଡ଼ୁ ଏ ପାପ ସଦନ
ଭଣେ ରାମଚନ୍ଦ୍ରଦେବ ଜ୍ୟେଷ୍ଠରାମ ତୁ ସିନା ମୋ ସର୍ବଧନ ।୫।

---

( ୮୯ )

ରାଗ—କେଦାର ।—ସରିମାନ ।

ଶଠ ବଚନକୁ ସତ ମଣିକି ରେ । ପଦ ।
ଆଦରଟେ ଥିବ ବାଙ୍କ, ଗଙ୍ଗାଜଳେ ଅଛି ପଙ୍କ,
ରବି— ବିମ୍ବରେ କଳଙ୍କ ଭଣିକି ରେ ।୧।
ଉତ୍ତ୍ୟର ବିଶ୍ୱାସ ଦେଖି, କହିଥାଇ ଯେବେ ସୁଖୀ,
କାଲେ ଘା ଚଉରେ ରଙ୍ଗ ଟାଣିକି ରେ ।୨।
ମଦନ ଅମଲ ବଶେ, ଯତ ଯେବେ ଦନ୍ତ ବାସେ,—
ଦଣେଇ ଏ ଦୋଷ ଦୋଷେ ଗଣିକି ରେ ।୩।
ଯେବେ ଭ୍ରୂଭଙ୍ଗ ପଣ କର,— ପାଦିବୁ ହିରଣ୍ୟଗୋର,
ଜାଣିଯିବ କରେ ଧରି ଫଣୀକି ରେ ।୪।
ଲଭିବାକୁ ମୁଁ ପତ୍ରିତା,— ବର ତୋ ପରଗୃହିତା,
ଲକ୍ଷ୍ୟ ନ କରେଁଟି ଚନ୍ଦ୍ରାମଣିକି ରେ ।୫।
ଏଣିକି ତୋ ଅନୁଗ୍ରହ, ନୋହିଲେ ମୋ ରମୁବ୍ୟୁହ,
କହିବ ମୋ ପାଇଁ ଦେହ ପଣିକି ରେ ।[illegible]।
ଅଗଣିତ ଅନ ମନ, ଅନାଥ ବରଜ ମାନ,
ରାମୁଗ୍ରହ ଜବଦନମଣିକି ରେ ।୭।

---

( ୯୦ )

ରାଗ—ଭଳାହୁରି ।—ଏକତାଳି

ଖଞ୍ଜରୀଠ ନୟନା ଅଳପ ଗୃହିଁାରେ । ପଦ ।
ଖଞ୍ଜନକୁଚ ମଦଗଞ୍ଜନ କେଶା, କଞ୍ଜସୁନ୍ଦର— ମୁଖ— ଗଞ୍ଜନବେଶା,
ଖଞ୍ଜ କୁମୁଦ ସମ ହାସବିଳାସା, ତୁ ସିନା ସାହା ରେ ।୧।

ଦନ୍ତ ବସନ-ରୁଚି ସନ୍ତତ ଗୁଞ୍ଜି, ସନ୍ତତ ତବ ତନୁ କାନ୍ତିରେ ଲଞ୍ଜି,
ଭାହିଁ ଭରସି ରସିନାହିଁ ମୋ ଅଙ୍ଗ, ତୋହର ବାହାରେ ।୨।
ବାରଣବରଗମନା ରସକାରୀ, ପରିଚିତ ରଣରଣି ଧରଣୀ ବିହାରୀ,
ରଚବଚନାମୃତ-ନିର୍ଗତ ଧାରୀ, ମିଶ ହୃଦହାରେ ।୩।
ଚଣ୍ଡମଦନଙ୍କର ଦାରୁଣ ବାଣେ, ଦଣ୍ଡକୁ ସମୁଚିତ ନୁହଇ ମୁଁ ଠାଣେ,
ମଣ୍ଡ ଗଲକୁ କହେଁ ଅଗଣିତ ଗୁଣେ, ମୃଦୁଳ ବାହାରେ ।୪।
ମଗ୍ନ ମୁଁ ତୋର ରସ ନିର୍ଝର କୂପେ, ତନୁ ରୁଚି ନିର୍ଧୂତ ହାଟକରୂପେ,
ସକରୁଣ ହୁଅ ହରିଚନ୍ଦନ ଭୁପେ, ମୋ ସୁଖ ଗ୍ରାହା ରେ ।୫।

---

( ୯୧ )

ରାଗ—ତୋଡ଼ି ଲଙ୍ଗଲ ।—ଅଦତାଳ ।

ଖୁଣ୍ଟି ନ ଥିବା ଗୁଣି— ଗଜସ୍ତ କି ମୋ ରଣି—
ଲାଗି ତନୁ ଶୁଝିବୁ ଅଉ ରେ । ପଦ ।
କେଣେ ସ୍ତନେ ମୋ ପାଣି ନବହୁ ବୀଣାବାଣୀ
ବହେଁ ମୁଁ ତୋ' ଲାଗି କଠାଳ ରେ ।୧।
ଥିଲେ ତୋର ମାନସ ତୋତେ ନ ଘଟେ କାସ
କାହିଁକି ଶୁଝି ନ ପଚାଉ ରେ ।୨।
ନ ଦେଉ କାହିଁ ଧନ, ମୋତେ ପ୍ରତି ଚୁମ୍ବନ
ମୋର ଅଗ୍ରହୁଁ ଛ ଚୁମ୍ବାଉ ରେ ।୩।
ଟିପେ ମୁଁ ତ ସ୍ତନରେ ଥରେ ତୁ ମୋ ତନୁରେ
କାହିଁକି ନଖ ନ ଖେଳାଉ ରେ ।୪।
ଉରେ ଜମାଇ ତୋର ଉରଜ ମହୀଧର
ଭିଡ଼େ ତୁ ନଭିଡ଼ି ବଞ୍ଚାଉ ରେ ।୫।
ମୁଁ ଯେ ଲଭିଏଁ ତୋର କସ୍ତୁରି ଚିତାଙ୍କର
ତୁ କାମାକଳ ନ ଲଭାଉ ରେ ।୬।
ଶ୍ରୀ ଜଗଦେବ ବୋଲେ ବିଶୋଧନ ନୋହିଲେ
କି କରି ନପାରେଟି ସାହୁ ରେ ।୭।

---

( ୯୨ )

### ରାଗ—ଏମନ କଲ୍ୟାଣ ।—ଅଡ଼ତାଳ ।

ଚଳଗତେ । ଏ ଜଗତେ ତୁ କାହାର ମୋହନୀ ରେ । ପଦ ।
ନୟନ ମୋର ଏ ଭୂଲୋକରେ, ମନ ନାଗ ନାକ ଦ୍ୟୁଲୋକରେ,
ବୁଲୁଛି ଯେ, ଭୁଲୁଛି ଯେ, ନାହିଁ ନାହିଁ ତୋହପରି ଝିଅ ।୧।
କି ତପ କରିଛି କେତେ ଯୁଗ, ଜିତ ପଙ୍କଜ ତୋ ପଦଯୁଗ,
ସୁହାସି ରେ, ଯାହାଶିରେ ଧରୁଅଛି ବସୁନ୍ଧରା ରେ ।୨।
ମୁଖ ସିତପଞ୍ଚଦଶୀପତି, ଲାବଣ୍ୟ ନିକୁରମ୍ବର ଶ୍ରୁତି,
ଶେଷ କହି, ଶେଷ ନୋହି, ନୋହିଅଛି ତ ଅଧୁରା ରେ ।୩।
ସୁରଶିଖରଗରବ ଚୋର, ଉରସିଜକୁମ୍ଭ ବାଳା ତୋର,
ନବତନୁ, ନବତନୁ—ଲତା ଭାଜିଯିବ ପରା ରେ ।୪।
ବନ୍ଧୁ, ଜୀବ-ବନ୍ଧୁ ଦନ୍ତବାସ, ବନ୍ଧୁ ହେବାବେଳେ ମନ୍ଦହାସ,
ପୀୟୂଷର ସରସାର, ସ୍ୱାଦୁ ପାଇ ଯାଏ ଧରାରେ ।୫।
ଏ ଶୋଭା ଦେଖିଛି ଯେଉଁ ଆଖି, ସେହି ସେହି ସିନା ତହିଁ ସାକ୍ଷୀ,
ଗିରେ କାସ, କହି ଶେଷ ହେବ ମୋ ଦୁଃଖପାସୋରା ରେ ।୬।
ଅଷ୍ଟାଦୁର୍ଗେନ୍ଦ୍ର ସେକାଳେ ଭଜେ, ଶ୍ୟାମଗିରେ ସପ୍ରଣୟ ଲାଜେ,
ବସି ମଥା, ପୋଡି କଥା, ନ କହିଲେ ବିମ୍ବାଧରା ରେ ।୭।

---

( ୯୩ )

### ରାଗ—ଖଣ୍ଡକାମୋଦୀ ।—ଏକତାଳି

ଗଲା ସବୁ ସର ରେ, ନବଙ୍କାଶୋଭା । ପଦ ।
ଯାହା ଶ୍ୟାମ ଅଙ୍ଗ ଚୁମ୍ବି ଆସିବା ସମୀର,—
ଛୁଇଁଲେ କେବଳ ହୋଇ ରସେ ଜର ଜର,—
ପୁଲକେ ଭରତ କରୁ ମୃଦୁ କଳେବର, ସେ ଯେବେ ହୋଇଲେ ପର ।୧।
ଯାହା ବେଣୁ ଶୁଣି ଏକା ହୋଇ ନଣୀଥରେ,
ବୋଲନାହୁଁ ଦନେ ଆସ ଯିବା ମିଶି ଥରେ,
ହୃଦ ମଦନ ବଭବ ସମୁଲ୍ଲସି ଧରେ, ବଗ୍ରହ ତାହା ସାଥରେ ।୨।

ହୃଷ୍ଟି କରଧର କହ୍ନ ଘେନାଇଁ ଘେନାଇଁ,
ନୀପ ନିକୁଞ୍ଜ ପୁଞ୍ଜକୁ ଅନାଇଁ ଅନାଇଁ,
ଧନ ହରୁ ସୁମନସ୍ତ ବନାଇ ବନାଇ, ମୀନକେତନା ଯାହାପାଇଁ ।୩।

ସ୍ତନେ ଲଦ ଚୁମ୍ବିବାର ଯା ପାଦ କମଳେ,
ମନେ ବାଞ୍ଛିବା କୁବେର ବାମାଙ୍କ ନ ମିଳେ,
ଚୁମ୍ବିଲେ ସେ ଶୋ ପଦ ଚନ୍ଦ୍ରକୁ ଚୂଳାଞ୍ଚଳେ, ଗୃହିଁଦେଲ୍କ ନାହିଁ ହେଲେ ।୪।

ରସବତୀ ଭଲ ନୋହୁ ଏ ଅପସନ୍ଦର,
ଆସ ଏବେ ଯିବା କେଳି ମଞ୍ଜରୀ ମନ୍ଦର,
ବନ୍ଦନ କରଇ ମୃଦୁ ପଦାରବିନ୍ଦର, ଶୋଷ ଶ୍ୟାମଳସୁନ୍ଦର ।୫।

ଅଷ୍ଟଦୁର୍ଗନାଥ କହେ ହୋଇ ଅଭିଳାଷୀ,
ମିତଣୀ କଥିତ ବଚନରେ ଶ୍ରୁତିପାଶୀ,
ଲମ୍ପଟ ହେବାକୁ, ହୋଇ ଦରସ୍ପୃହାର୍ଥୀ, ବଜେଇଲେ ବାଂଶାଭିଷୀ ।୬।

---

( ୯୪ )

ରାଗ—ଭୈରବୀ ।—ଆଦତାଳ ।

ଗଲା ଚ ଅନୁରାଗ ଜଣା, ଯା ଯା ମୋହନ ଯା । ପଦ ।

ଯା ପଦ ଅଳକତ ଶିଖଣ୍ଡ,— ମଣ୍ଡି ସୁରତ ସୁଖ ଅଖଣ୍ଡ,—
ଦେଇଛୁ ସେ ଚରଣୁଲଙ୍ଗରଜାକୁ ଭାକୁ ଭଜ ଯା ।୧।

ଯା ସଙ୍ଗେ ମାଡ ରଜନୀଯାକ, ସେହି ରସକୁଶଳୀକୁ ଡାକ,
ମୋ ନାମରେ ବୋଲ ନିଲସୁ ମୁରଲୀ ବାଜା ନ ବଜା ।୨।

ଅଳି ନ ବହ ବଙ୍କିକିଶୋର, ଗାଳି ନ ଶୁଣୁ ବନ୍ଧାନୁ ମୋର,
ଚରଣ ନ ଧର ତୁ ମଧୁନଗରରାଜା ଭଣଜା ।୩।

ଭୁପଇ ଜଳନ୍ତର ମନ୍ଦ୍ରିର, ନନ୍ଦକୁଳସୁ ଗଗନଚନ୍ଦ୍ର,
ବହିଜ ସୁନୟ କରୁ ଯେ ବିନୟ, ନାହିଁ କି ଲଜ୍ଜା ।୪।

---

( ୯୫ )

ରାଗ—ଚୋଖି ଜଙ୍ଗଲା ।—ଅଡ଼ତାଳି

ଗାନ-ପଣ୍ଡିତା ତୋତେ ଆନ ନାରୀଙ୍କ ପରି
ମାନ ମାନଇ ନାହିଁ ଲେଶେ ଟୋ । ପଦ ।

ଦନ୍ତ ବାସ ପଲ୍ଲବ ବିନା ଅରୁଣ ଭାବ
ନ ରହେ ମୁଖ ପରିବେଶେ ।୧।

ପୋଡିବାକୁ ଲପନ କଲେ ହେଲେ ଯତନ
ତତ୍ତ୍ୱ ସ୍ତନ କଳଶ ଦେଶେ ।୨।

ବିଶାଳ ବସୁମତୀ ମୋ ଛୁଟ ବୋଲି ଚନ୍ଦ୍ର
ଭୁଭୂଷା ଭୂଷ୍ଟ ନଖଦେଶେ ।୩।

କଞ୍ଜର କଣଳସ୍ତ— ପର ଦଣଇ ଶଯ୍ୟ—
ପଲ୍ଲବ ଦେଲେ ଗଣ୍ଡଦେଶେ ।୪।

ନ ଥାଏ କେଉଁ ଶୋଭା ତୁ ମନ୍ମଥା-ଗଭା
ଚଉ ନ ଦେଲେ ହେଲେ ବେଶେ ।୫।

ବସିବା ବେଳେ ରତି କି ରମ୍ଭା କି ଉର୍ବଶୀ
ଦଶିବ ଛୋ'ପର ସେ କେ ସେ ।୬।

ଦଣନ୍ତା ରୁଷାପର ନ ଥିଲେ କୃପା ପୁର
ଶ୍ରୀ ଜଗଦେବ ଅବନୀଶେ ।୭।

———

( ୯୬ )

ରାଗ—ଚୋଖି ।—ଏକତାଳି

ଗାନ-ପଣ୍ଡିତା ମୋ ସୁଖରାଶିରେ,
ମାନ ମାନସରୁ ଯାଉ ଖସି ରେ ।
ପାନ ପିକଦାନୀ ଧରିରେ ସ୍ୱମାନୀ,
ହୋଇ କି ମଣ୍ଡିକ ଗୃହିଁ ବସି ରେ । ପଦ ।

ମନ୍ଦାରଅଧର। କୁନ୍ଦହାସୀ ରେ,
ମନ୍ଦାକିନୀ ଧୂଳି ଗର୍ବେ ହାସି ରେ ।
ଫନ୍ଦାକର ତୋତେ, ବାନ୍ଧୋଇଛୁ ନାରତେ
ଜଣେ ତୋ ଚରଣକଞ୍ଜ ଦାସୀ ରେ ।୧।

ଅଗାଧ ହୃଦୟ ଘନକେଶୀ ରେ,
ଲଗାଇ ମୋʼଠାରେ ଅଙ୍କମସୀ ରେ,
ଭଗାର କେ ମୋର, ଶୀଘ୍ରମୁରେ ତୋର
ଜଣାଇଛୁ ଯେବେ ଦାଅ କସି ରେ ।୨।

ମୋ ସଙ୍ଗାଳି ବାଗାକ୍ଷି ଶାନ୍ତ୍ୱୀରେ,
ଦୋଷ ଥିଲେ ଦଣ୍ଡ ଫରମାସୀ ରେ,
କା ସଙ୍ଗାଣୁ ରୁମ୍ବା ଆଚର ସୁଦ୍ଧିଷା,
ମୋ ସମ୍ପଦ ପଦ ଦେଇ ନାଶି ରେ ।୩।

ତୁମ୍ଭି ଅଛୁ କା ତୋ କଣ୍ଠପାଶୀ ରେ,
ହେବବୋଲି ଆଜ ପରବାସୀ ରେ,
ତୋ ଭଠାର ବାଣୀ ଅନ୍ତରେ ପଶୁଣ
ଧନ, ସେବଥିବ ବାରମାସୀ ରେ ।୪।

ଘନନୀଲକେଶା ଗୃରୁବେଶୀ ରେ,
ଅନାଇଁ ନେବାକୁ ଥରେ ଆସି ରେ,
ବନାଇଁଦେ, ମୋର କୁଭାଗ୍ୟକୁ ଜର—
ସ୍ଥଳେ ପୀନସ୍ତନ ଘଟ ଠେସି ରେ ।୫।

ଏ ବାନୟୁଁ ମୋଦ ସୁଧାରାଶି ରେ,
ଦେବା ରୁଷି ନୋହୁ, ଗଲେ ଭାସି ରେ,
ସେବ ସେ ଯୁଗଳ ଚରଣ କମଳ,
ସେ ହରଚନ୍ଦନ ହେଲେ ତୋଷି ରେ ।୬।

———

( ୯୭ )

ରାଗ—ସିନ୍ଧୁକାମୋଦୀ—ଏକତାଳି ।

ଗୁଣନିଧି ଲାବଣ୍ୟଲହରୀ ରେ, ମୋ ଗୁଣଟି କହ କହ,
ଦିବ୍ୟ ଅବଧାନେ—ଯେବେ ହେଲେ ଧାନେ,
ଅଛି ମୋରେ ଅନୁଗ୍ରହ । ପଦ ।

ଲୀଳା ସଭଧରେ ଆରମ୍ଭ ଥିଲି ତ ବିଳାସ-ମଧୁର ଗାନ,
ହରିଣୀଙ୍କ ବିମ୍ବ ଗ୍ରହିଁ କାପିଁ ବିମ୍ବଅଧରୀ ଦେଲି ମଣ୍ଡନ ।୧।
ଶଶୀଙ୍କ ନିବାସ ଛାଡ଼ିକରି ଶଶ କଲେ ଶ୍ରୀମୁଖ ଆଶ୍ରୟ,
କମଳବଦନ ହେବ ମଳିନ, ବୋଲି ଲଭିଲି କି ଭୟ ।୨।
ପଲକେ ପଲକଙ୍କ ମୁଁ ପ୍ରିୟଙ୍କ ଅଙ୍କେ ନିଶି ନୋହିଥିଲେ ସ୍ଥିତ,
ଏହି ନିଶାଚର ପିଅଇ ରୁଧିର ବୋଲି ହେଲୁ କି ଚକିତ ।୩।
କରକଣ୍ଠର ଅକର୍ମ ପଥର ଦ୍ରବାଏ ମୋ କଣ୍ଠଧ୍ୱନି,
ପୀୟୂଷ-ମୃଦୁଳ ମଧୁର କି ବଳ ବଧିର ହେଲି କି ଭୁମୀ ।୪।
ଅଷ୍ଟଦୁର୍ଗପତି ବୋଲେ ଗଜପତି, ନ କର କପଟ ଲେଶ,
କର ଚନ୍ଦ୍ରାନନ ଜୁ ହେବାରୁ ମୂକ ହୁଏ ସନ୍ଦେହ ଅଶେଷ ।୫।

———

( ୯୮ )

ରାଗ—ମୂଲତାନୀ—ଅଠତାଳି

ଗୁମାନ ବଢ଼ନାରେ, ମୋହନା ରେ ।
ମୁଁ ଦେହଧରି ବଞ୍ଚିଛି ଛୋଡ଼ ନାଁ'ରେ । ପଦ ।
ଜଳିଲି କି ନାହିଁ ଛୋର କରିବା ମନା ରେ
ମହିଳା ମଣିକି କେ ମିଛ କହିଲି ମୋ ନାଁ'ରେ ।୧।
ଛୁଟିଗଲେ ଛୋ କରୁଣା ଗୋଟିଏ ଚିନାରେ
କାଞ୍ଚନବତ ମୁଁ ଦୁଃଖେ ସହିବି ସିନା ରେ ।୨।
ବର ତୁ ସବୁ ରସିକାବରବରନାରେ
କର କୃପାମନେ ମାଲ ଉର ଭରନା ରେ ।୩।

ଜାଣୁ ଛ ଯେବେ ମୁଁ ତୋତେ ପ୍ରାଣୁ ଅଭିନ୍ନା ରେ
ସବୁ ମଧ୍ୟା ଲେଖାନୁହ କରୁଣା-ହୀନା ରେ ।୪।
ଭଣେ ଜଗଦ୍ଦେବ ଶୁଣି କିଶୋରୀ ବନା ରେ
ରମା ରସିକଙ୍କ ଛଳେ ସମାନ ମିନାରେ ।୫।

———

( ୯୯ )

ରାଗ—ଇମନ କଲ୍ୟାଣ ।—ଅଦ୍ଧତାଳ

ଗୁମାନ ମାନସୁ ତେଜ ନିଜ ଦାସରେ
ଜମାଅ ମ ଲତି ମୃଦୁଦେହେ ହାସରେ । ପଦ ।
ବସନିଧି ଦାମ୍ଭାତ୍ରୁ ତା ଯଶ ପରକାଶରେ,
କର ମୋର ଉତ୍ସଙ୍ଗେ ନିବାସରେ ।୧।
ଧନ, ମହା ସୁଖଲତା ଲଭିଲଣି ନାଶରେ,
ମନମଥ ଧନଞ୍ଜୟ ତ୍ରାସରେ ।୨।
ଦୁଃଖ ଉପଜ ମୋ ବକ୍ଷସ୍ଥଳକୁ ଅଶ୍ୱାସରେ,
ସ୍ତନ ସୁଧା କଳଶ ବିନ୍ୟାସରେ ।୩।
ତମ୍ଭାଉଜ୍ୱରକେହ୍ୱା ମୋର ବିନାଦୋଷରେ,
କମ୍ପକୁ ନ ପାଳ ରଦବାଡ ରେ ।୪।
ରତି ଶୁଣ ସ୍ମିତ ନବମଲ୍ଲୀ ସମୁଲ୍ଲସରେ,
ଶୁଭାଙ୍ଗୀ ଭାରତୀ ପଦେ ଭାଷ ରେ ।୫।
ମଞ୍ଜିଲେ ଶ୍ରୀମତୀ ହରିଗିର ଶୃତପାଶରେ,
ତୋଷେ ବସୁକୁର୍ଣ୍ଣ ପରାଧୀଶ ରେ ।୬।

———

( ୧୦୦ )

ରାଗ—ମୁଖାବରୀ— ଅଡ଼ତାଳି

ଗୋ, ତା' ତୁଲେ ହେବ କେ' ସମ
ଯେ ସୁଧାସ୍ୱାଦୁ ବଚନରୁ ବଚ୍ଛମ । ପଦ ।
ସଜୀବ ଅଜୀବ ଯା ପଦଭ୍ରାନ୍ତି
ନିନ୍ଦବ ଇନ୍ଦୀବରକୁ ଯା' କାନ୍ତି ।୧।

ମୁଖଜିତ ହୋଇ ଯାଉ ଶିଖଣ୍ଡ
ସେବନ୍ତୁ ହୋଇ ଶଶୀ ଖଣ୍ଡ ଖଣ୍ଡ ।୨।
ମଦନ ମଦନ ହୋଇବ ଲବ
ଆନ ସମାନ ସଂସାରେ କେ ହେବ ।୩।
ସୁର ସମର ସମସ୍ତ ପାଟବେ
ତରୁଣୀ ତରୁଣୀ ତା'ଠାରୁ ହେବେ ।୪।
କେବଳ ସେ ବଳ ନୁହେଁ ଆମ୍ଭର
ଜଗତୀର ଗତି ପୀତାମ୍ବର ।୫।
ଅଷ୍ଟଦୁର୍ଗସ୍ୱର୍ଗମଘବା ଭଣେ
କଷ୍ଟ ହରନ୍ତୁଏ ଯାହା ବିଷୟେ ।୬।

———

( ୨୦୧ )

ରାଗ—ପୂରବୀ ।—ଏକତାଳି

ଗୋ ରସନା ଟି, କୃଷ୍ଣନାମ ଛାଡ଼ି ଆନେ ରସନା ଟି । ପଦ ।
ଅଟକି ନ ରହ ଅଳସରେ, ରଟ ରଟ ଚଳ ବିଳାସରେ,
କୃଷ୍ଣ, କେଶବ, କେଶି, କଂସ-ଦଳନ ବଲ୍ଲବୀଜନ-ବଲ୍ଲଭ ହରେ ।୧।
ଉପଳ ଶାକର ରସଫେଣୀ, ମଧୁ ମଧୁରସା ସରପଣୀ,
ସୁଧା ତାମରସ-କେଦାରଦବାସ, ଏ ସବୁ ଶ୍ୟାମ ନାମରୁ ଊଣା ।୨।
ମକରନ୍ଦ, ପକ୍ୱଚୂତ-ରସ, ପ୍ରବାହେ ନ ରଖ ତୁ ତରସ,
ବିଲକ୍ଷଣ ହରିନାମଙ୍କ ମାଧୁର୍ଯ୍ୟ, ଇତର ସକଳ ଗତରସ ।୩।
ବୃନ୍ଦାବନବ୍ୟୋମ କଳାକର, ବିରାଜ ଧ୍ୱଜ ହେ ବିଶ୍ୱମ୍ଭର,
ଅଜ ବାସୁଦେବ, ମୁକୁନ୍ଦ, ମାଧବ, ଗୋବିନ୍ଦ ବୋଲ କୀର୍ତ୍ତନ କର ।୪।
ଖଣ୍ଡ ମରିଚ କର୍ପୂର ଚୂର, ଦେଲେହେଁ ସୁରଭୀ-କ୍ଷୀରେ ଭର,
ଶ୍ୟାମ ରମଣୀୟ ମୋହନ ବିଗ୍ରହ, ନାମର କଳାକୁ ନୋହେ ସର ।୫।
ବୋଲ ବୋଲ କଂସ ନିସୂଦନ, ଜୟ ଜୟ ଦେବ ଜନାର୍ଦ୍ଦନ
ଅଷ୍ଟଦୁର୍ଗପତି କହିବା ଭାରତୀ ଇଷ୍ଟ ସୁଧାରସ ପର ଧେନ ।୬।

— — —

( ୨୦୨ )

ରାଗ—ପୂରବୀ ।—ଅଡ଼ତାଳ ।

**ଗୋ, ସେ କି ଧର ଭୂତା ପାଣି,**

ସହିବ ସେ ଲାଘବ କହିବ ଗୃହୁରାଣୀ । ପଦ ।

ଯା'ଙ୍କର ପଙ୍କଜେ ଭ୍ରମେ ଲଭିଲେ ସ୍ମରଣ

ଗୃକର ହେବାକୁ ହେବ ଶଙ୍କର ଭରସ ।୧।

ହେଲେ ହେଲେ ଭୁବନ ମୋହନ ବିଶାରଦ

ଶୁଣି ଯାହା ବାଣୀ ବୀଣା ଛାଡ଼ିବେ ନାରଦ ।୨।

ଯେ ରାଜା କରଇ କୋଟି ସଂଖ୍ୟକ ସବତେ

ବ୍ରଣ ଲେଶ ନ ଦିଶଇ ନଖଦନ୍ତ କ୍ଷତେ ।୩।

ନ ଗୃହୁଁ ଯେ ଗୃହୁଁ ଥାଏ ସ୍ନେହେ ନେତ୍ରାଞ୍ଚଳେ

ଗୃହିଁ ନ ଗୃହିଁବା ଭଙ୍ଗୀ ପ୍ରକାଶଇ ଛଳେ ।୪।

ଶ୍ରୀମତୀ ସଖୀଙ୍କି କେଉଁ ସହଚରୀ ଭାଷେ

ଶ୍ରୀହରି ଚନ୍ଦନ ଜଗଦ୍ଦେବ କହେ ତୋଷେ ।୫।

---

( ୨୦୩ )

ରାଗ କଲ୍ୟାଣ—ଏକତାଳି ।

ଘନଜଘନା, ମନ ଅଛି ନକର ମନା ରେ । ପଦ ।

ତୋର ଅଭିଳାଷ ଗୃଲି ରେ, ସୁରସବଲ୍ଲୀ

କହୁଛି ନାଚୁଣୀ ଗୃଲୁଚଲି ରେ ।୧।

ତୁଚ୍ଛା କି ହୁଏ ଭଦ୍ରତ, ମୋ ପ୍ରାଣମିତ !

ସରସ ସୁନ୍ଦର ଶିତ ସ୍ମିତରେ ।୨।

କମ୍ପୁଛି ଉରୁ କଦଳୀ, ମୋ ଗଳାମାଳି

କପାଳ ସ୍ଥଳେ ପୁଲକ ପାଳି ରେ ।୩।

ସଦୟ-ଅପାଙ୍ଗ ଭଙ୍ଗି, ସିଗ୍ଧ ଅଙ୍ଗୀ ।

ସନ୍ଦେହ ଦେଉଛୁ ଗାଙ୍ଗି ରେ ।୪।

ଅଚଳଲେ ତୁ ବଳମ୍ବ, ଫୁଲ୍ଲକଳମ୍ବ

ଫିଙ୍ଗିବଟି ତା କଳମ୍ବ ଶମ୍ବରେ ।୫।

ବେଗେ ଅଙ୍ଗୀକର କର, ରସିକାବର !

କହେ ଅଷ୍ଟଦୁର୍ଗମହେଶ୍ବର ରେ ।୬।

---

( ୧୦୪ )

ରାଗ—ସାବେରୀ ।—ଅଡ଼ତାଳି

ଘନ ନିଶାରେ, ରମଣୀମଣି ଦେଲା ବାସବ ଭୂତ ମୋରେ । ପଦ ।

କାନ୍ତି ଉପବନ ଜଗତୀକ, ପ୍ରୀତି ସଙ୍କେତ ଗଜଗତିକା
ମତି-ମୋହନା ଚେନ୍ନା ଭ୍ରାନ୍ତିକା
ବିଜେ କଲା ଝରଝର ନୀର ବରଷା ରେ ।୧।

ଜିଣିବାକୁ ରାମା ପଞ୍ଚବାଣ, ମଣିଭୂଷଣେ ହୋଇ ଭୂଷଣ
କିଣି ଘେନିଗଲା ମୋର ପ୍ରାଣ,
ଘୃତ ସୁପାତରେ ମାତ ସେ ନେବ ନିଶାରେ ।୨।

ତରତର ଝଲକା ଝଲକ, ବାରବାର ଲୁଟିଲା ପଲକ
ମୋର ହରଲା ଧୀର ବିବେକ,
ନଚାଇଲା ଯୋଡ଼ି ମୋତିବସଣୀ ନାସାରେ ।୩।

ଧରି ବରାରୋହା କୁଚ କୁମ୍ଭ, ବାରିରୁହ ମୁଖେ ଦେଇ ଚୁମ୍ବ
କରି ବାଲା ମୋହିତ ପରିରମ୍ଭ
ମନ ମୋହିନେଲା କହିକହି ବିନୟ ଭାଷାରେ ।୪।

କେଳିରସେ ନିମଜ୍ଜିତ ରଙ୍ଗେ, ଚାଲି ନୟନ ଗୃହେଁ କି ଭଙ୍ଗେ
ଛଳି ଝୁଲିଯାଏ ମୋର ଅଙ୍ଗେ
ପୂର୍ଣ୍ଣକଲା ଜ୍ୟେଷ୍ଠରାୟ ଦେଇ ଲପିସା ରେ ।୫।

---

( ୧୦୫ )

ରାଗ—ଧନାଶ୍ରୀ ।—ଏକତାଳି ।

ଘେନ ଘେନ ମନ ଘନସମ ଶ୍ୟାମଳଅଳୁ,
ପିଲଟି ଦିନୁ ପୂତନା ପ୍ରାଣ କବଳଅଳୁ । ପଦ ।

ବରଜ ଗୋପୀଙ୍କର ମକର କୁଣ୍ଡଳଅଳୁ,
ଅଖଣ୍ଡଚନ୍ଦ୍ର ସୁନ୍ଦର ମୁଖମଣ୍ଡଳଅଳୁ ।୧।

ମଦଗଜ ଗମନକୁ କଦମ୍ବ ମୂଳଅଳୁ,
ମଖଶାଳାଭିଖାରୀକୁ ଶିଖଣ୍ଡଚୂଳଅଳୁ ।୨।

ସମୁଦ୍ରକୁ କରୁଣାର ଯମୁନାକୂଳଅଳୁ,
ଗୀତ ନଟ ଲମ୍ପଟକୁ ପୀତଦୁକୂଳଅଳୁ ।୩।

ବଲ୍ଲବେନ୍ଦ୍ର ନନ୍ଦନକୁ ପଲ୍ଲବମାଳଅଳୁ,
ଭଜେ କବିବର ତାହାଙ୍କର ପାଦତଳଅଳୁ ।୪।

———

( ୧୦୬ )

ରାଗ— ତୋଡ଼ି ।— ରୂପକ ।

ନେନ-ଗନ୍ଧବହ ବହିଲା ରେ । ପଦ ।

କିଂଶୁକ ସୂନଚୟ ଜ୍ୱଳିତ ଧନଞ୍ଜୟ
ବିରହିଯୋଗୀ ହୃଦୟ ଦହିଲା ରେ ।୧।

ଚୂତ ମୁକୁଳତତି-ଜନରେ ତର୍ଜି ମ୍ମର
କାହାର ଭୟଙ୍କର ନୋହିଲା ରେ ।୨।

ଭ୍ରମରକୁଳ କଳ କଳ କରି କବଳ
କରିବାକି କୋକିଳ କହିଲା ରେ ।୩।

ନବମାଳିମଞ୍ଜରୀ ନବ ପ୍ରସୂନ ଶିରି
ମିତ, ତୋ ସ୍ମିତପର ମୋହିଲା ରେ ।୪।

ହୁଙ୍କାର ମାଦକେ ଦାବ ଦେଇ ମଦରେ ଲମ୍ବ
ଛୋ ସ୍ନେହୁ ମୋ ଗରବ ସବଳ୍କ ରେ ।୫।
ଅଷ୍ଟଦୁର୍ଗେଶ ଭୃତ୍ୟେ ଶ୍ୟାମବାଣୀ ବିଳାସେ
ହସି ରସିଲେ ବ୍ରଜମହିଳା ରେ ।୬।

---

( ୧୦୭ )

ରାଗ—ସାରଙ୍ଗ—ଆଦିତାଳ ।

ଚନ୍ଦନବାସି କୁନ୍ଦବରହାସି ରେ । ପଦ ।

କରୁଣାମୟ ବରୁଣାଲୟହୃଦୟା ଘନକେଶି ରେ,
ପଦ୍ମପତ୍ର ତୁ ମତେ, ଦେଖି ପଦ୍ମ ନୀରତେ,
ହରସିଦ୍ଧି ଭଜନରୁ କାଶୀ ରେ ।୧।

ଶରଣାଙ୍କିତ ଅରୁଣାମ୍ବୁଜ ଚରଣା ମୃଦୁଭାଷି ରେ,
ଧରି-ତରୁଣୀ ଶିର,— ହୀରା-ରତନ ମତେ
କରି ଆଜ ତୋ ନିଜ ଦାସୀ ରେ ।୨।

ମଦନେଷୁକନ୍ଦନେ ନିରତ ସଖି ଚଳି ଭାସି ରେ,
ତରି ଘର ଅଙ୍କରେ, କର ନିବଡ଼ତରେ,
ପଦ୍ମବନ୍ଧରେ ରଖ ଆସି ରେ ।୩।

ଲଳନାବର ତୁଳନା ପରକଳନା ଗୁଣରାଶି ରେ,
ଅନା ଅନା ଚପଳା, ନୟନାନ୍ତରେ ତୁ ରେ
ମଦନାହବକୁ ଫରମାସି ରେ ।୪।

କର ବନ୍ଦନ ହରଚନ୍ଦନ କହେ କୁଞ୍ଜବିଳାସି ରେ,
ରୁଷା ବରଜ ମୃଗଦୃଶା ପଡ଼ିଲେ
ମୃଦୁ ମସାରନିଭ ଭୁଜପାଶୀ ରେ ।୫।

---

( ୧୦୮ )

## ରାଗ—ସାରଙ୍ଗ

ଚନ୍ଦ୍ରବଦନା ସ୍ନେହେ କହ ରେ କାହାର ହାର ମଣି ତୁ । ପଦ ।

ତୋର ଚରଣ ନଖର ଗଣ,
ଶରଦୁଦିତ ତାରା କିରଣ
ପରମ୍ପରା ସୁସମନ୍ତୁ କଣ,
ବରବାମା ବୃନ୍ଦେ ନାହିଁ ଏ ବ୍ରଜ ସହରେ ।୧।

ବଳାହକନ୍ତୁ କବରୀ କଳା,
କଳାକର-ବିମ୍ବ ମୁଖ ତୁଳା
କଳା ମାନ ନାହିଁ ରେ ଅବଳା,
ବଳା ବଳୟ କି ଛନ୍ତୁ ଭୂଷାନିବହ ରେ ।୨।

ତନୁବର୍ଣ୍ଣ ବଳନ୍ତି କୁନ୍ଦନୁ,
ତନୁ-କଟିଟି କି ଯିବ ମନୁ
ଅନୁମିତ ହୁଏ ମଣିସାନୁ,
ସ୍ତନୁ ଉଣା ହୋଇବ, ଏ ତନ୍ତୁଁ ଦୁର୍ବହ ରେ ।୩।

ଯଉବନମଦ ଗୃଲ୍ ଲବ,
କେଉଁ ବନ ମଦଗଜେ ଥିବ
କଜତ୍ରୁକର ତୁ ତ ଅର୍ଣ୍ଣବ,
ନତ-ବନ୍ଧୁ କି ତୁ ସ୍ମର ସିନ୍ଧୁ ପ୍ରବାହ ରେ ।୪।
ପଠାଟୋପେ ଲୋକେ ନିରଭ୍ରମ,
ଛଠା କଠାକ୍ଷରୁ କି ବିଷମ
କଟିଟିନୁଠାକି ହେବ ସମ,
ସଠାବଠା ନ କର ରେପେ ମୋ ଅଗ୍ରହରେ ।୫।

ଧନ ହୁଅ ଯାହାର ତାହାର,
ମୁଁ ତୋ ଗୁଣରୁଁ ନୁହେଁ ବାହାର
ମୁଖ ପଙ୍କଜ ମଜିଲା ହାର,
[illegible]ଚୁଟିକି ମୋତେ, ମଜାଅ ଦେହରେ ।୬।

ବସୁଦୁର୍ଗ ପୁରନ୍ଦର ଭୂପେ,
ଶ୍ୟାମସୁନ୍ଦର ବାଣୀ ବିଳାସେ
ଲାଜେ ମଳିବାର ମହୀ ବାସେ,
ହସି ପଳାଇଲେ ମହା-ମଦନ ମୋହରେ ।୭।

---

( ୨୦୯ )

ରାଗ—ଶାବେରୀ—ଝୁଲ

ଚନ୍ଦ୍ରବଦନା ରେ ଲେଉଟି ପଛକୁ ଅନା । ପଦ ।

ଅଣ୍ଟା ତୋର ସରୁ, କୁଚ ମହା ମେରୁ, ତାହା ସହୁଛୁ ଅବଳା ।
ସେ ସରୁ କଟିରେ ନୀରକୁମ୍ଭ ଧରି ଅସୁଥାଏ କର ହେଳା ।୧।

ସେ ଯେଉଁ ଗୃହାଣୀ ହୃଦ ହୁଏ ହାଣି ଦେଖେ କପାଁ ଅଖିଠାର,
ପାଷାଣ ହୋଇଲେ ତରଳ ପଡ଼ିବ ପୁରୁଷ କେତେ ମାତର ।୨।

ମତ୍ତଗଜ ଗତ ହୋଇଣ ସୁମତ କରୁଥାଏ ସେ ସୁମନା,
ବସନ୍ତ ଋତୁରେ ଡାଳ ଝିପିଝିପି ଖେଳିବେଲେ ପାଣିଅଣା ।୩।

ଦେଖି ତୋର ଭଙ୍ଗୀ ଯୋଗୀ ଯୋଗ ଭାଙ୍ଗିଯିବ ପଙ୍କଜ ଅନନା,
ବୋଲେ କବିରତ୍ନ ତୋହର ଯେ ଛବି ଗୃହିଁଲେ ବଢ଼େ ବେଦନା ।୪।

---

( ୨୧୦ )

ରାଗ—ପୂର୍ବୀ—ଅଠତାଳି

ଚନ୍ଦ୍ରମୁଖି ରେ, ଏକା ଭାଗ୍ୟବନ୍ତ ପଣେ ତାକୁ ଲେଖି ରେ । ପଦ ।

କୁସୁମବନେ ବହରୁଥିବ,
ବଦ୍ୟାରସେ କାଳ ହରୁଥିବ
ଜାମା ଦେଣ୍ଡ ତୋର ପାନ ପିକଦାନୀ
ଧରି ନଉକରୀ କରୁଥିବ ।୧।

ଅଖଣ୍ଡ ମଣ୍ଡଳେ ଆଳା ଥିବ,
ଉରେ ଦିବ୍ୟ ମୋତିମାଳା ଥିବ
ଅଙ୍କରେ ଶଙ୍କର-ଧଇର୍ଯ୍ୟ-ଧ୍ୱଂଶିନୀ
ପଙ୍କଜ-ନୟନା ବାଳା ଥିବ ।୨।

ଦନ୍ତବାସ ସୁଧା ପିଉଥିବ,
ଇଙ୍ଗିତ ଭଙ୍ଗିକି ଜାଣୁଥିବ,
ରତିଯାଙ୍କ ହାଟାକୁମ୍ଭ ଉରଜାକୁ
ଗ୍ଲାନିରେ ଲଗାଇ ଭିଡୁଥିବ ।୩।

ସଙ୍ଗୀତ ବିଦ୍ୟା କୁଶଳା ଥିବ,
ପ୍ରଭୁ ଅଧିକାର ଚଳୁଥିବ,
ପଶାଖେଳ ରସାଳସା ଭୁଲେ ଗେଲେ
ବିପରୀତ ହୁଡ଼େ ଜିଣୁଥିବ ।୪।

ଅନର୍ଗଳ ଅଧିକାର ଥିବ,
ଉଚ୍ଚ ଅଟ୍ଟାଳିକା ଘର ଥିବ,
ନୂତନ-ଛଇଲା ଅବତାର ମାର-
ବାଣ ମାରଣ ମନ୍ତ୍ର ଥିବ ।୫।

ଅକଳଙ୍କ ଯଶ କାନ୍ତି ଥିବ,
କପିଳାଶ ତୁଲ୍ୟ ହାତୀ ଥିବ,
ମହେନ୍ଦ୍ର ଦମ୍ଭିତ ତୁଚ୍ଛ ମଣି ରତି—
ଉତ୍ସବରେ ନିତ ମାତିଥିବ ।୬।

ଅଙ୍ଗେ କର୍ପୂର ଚନ୍ଦନ ଥିବ,
ସବୁ ଦିନେ ଯଉବନ ଥିବ,
ଅନଙ୍ଗ-ଭଙ୍ଗରେ ବାଳା ସଙ୍ଗେ
ପଡ଼ି, ଗଡ଼ି ଲଢ଼ିଯିବା ମନ ଥିବ ।୭।

ରାମଚନ୍ଦ୍ର ଶ୍ଳୋକରାସ୍ତୁ ଭବ,
ଏଙ୍କା ପ୍ରିୟା ଭୟ ନାହିଁ ଲବ,
ଥିବାରୁ ସରସେ ମୋର
ଉରଦେଶେ ଶାସନ ସମ୍ପଦ ତା ଗୌରବ ।୮।

---

( ୨୨୧ )

ରାଗ—ଅଶାବରୀ—ଅଠତାଳି ।

ଚନ୍ଦ୍ରନଶାରେ,
ହେଲ ସୁନ୍ଦରମଣି ମହେନ୍ଦ୍ରଭୁକ୍ତ ମୋରେ ।ପଦ।

ଫୁଲବନେ କେଳିସର କୂଳେ,
ନବ ସଙ୍କେତ କଙ୍କେଳି ମୂଳେ,
ଶେଯ ସାଜ ନାନା ପୁଷ୍ପଦଳେ,
ବସିଥିଲି ସେ ରମ୍ଭୋରୁ ସମ୍ଭୋଗ ଅଶାରେ ।୧।

ଏ ସମୟେ ମୋ ଜୀବନ ଧନ,
ଘେନି ଘନ ସର୍ବାଙ୍ଗ ଚନ୍ଦନ,
ଚେଇ ବାଜିବା ମଣ୍ଡନମାନ,
ବଜେ କଳ ମଞ୍ଜୀରଶ୍ରୀ ଭୂଷିତ ଘୋଷାରେ ।୨।

ଶଙ୍ଖ-କଣ୍ଠୀକି ମୁଁ ଦେଖିକରି,
ରଙ୍ଗ ରଭସ ଲଭିଲି ପରି,
ଅଙ୍କପର୍ଯ୍ୟଙ୍କେ ବସନ୍ତେ ଧରି,
ଗଲି ଅଙ୍ଗ ଅନଙ୍ଗ ମର୍ଦ୍ଦିବା ଦୁର୍ଦ୍ଦଶାରେ ।୩।

କରେ କମାଇ ଉରୋଜ କୁମ୍ଭ,
କରୁ କରୁ ଗାଢ଼େ ପରିରମ୍ଭ,
କଲି ସହସ୍ର ଚୁମ୍ବ ଆରମ୍ଭ,
ମନ ବଳିଲା ନାହିଁ ପୀୟୂଷ-ପ୍ରଶଂସାରେ ।୪।

ଫେଡ଼ୁଫେଡ଼ୁ ବାଳାବର ନୀବି,
ଯେତେ ଭାବ ତା କି ବରନିବି,
ବିବସନ କାଳେ ଯେଉଁ ଛବି,
ଆଖି ଦେଖିଲି କେଉଁ ଭାଗ୍ୟରୁ ଏ ରସାରେ ।୫।

ଝୁମିଝୁମି କାମ ମଦ ଭରେ,
ଝୁଲୁଝୁଲୁ ନାସାଭୂଷା ଲୋଲେ,
ଝଲଝଲ ଝଟିକାଳବେଳେ,
ଝିଙ୍କିନେଲି ସ୍ୱର୍ଗସୁଖ ମାର୍ଗକୁ ସୁସାରେ ।୬।

କହେ ଅଷ୍ଟାଦୁର୍ଗ ହରହସ୍ତ,
ପରସ୍ପର ପ୍ରେମ ରସମୟ,
ଜାତ ହେଲା ଯାହା ସେ ସମୟ,
ଝରଝର ଅପ୍ରରବ ରସ ବରଷାରେ ।୭।

———

( ୧୧୬ )

ରାଗ—କାମୋଦୀ,—ଏକତାଳି

ଚରଣାସୁଧ ବୃନ୍ଦ ରଚିଲା ରେ ଅରବିନ୍ଦ ହିଁ ବନ୍ଧୁ ଫୁଟିଲା ରେ,
କର କରୁଣା ବୋଲି ଯେତେ ଗୃହୁଁ ରଚିଲି
ଗୁମାନ ଗଣ୍ଠି ନ ଫିଟିଲା ରେ ॥ ଘୋଷା ॥

ଖଟବଟ-ମୁଦଗର, ପ୍ରହାର କେଁଟି ମୋର,
ମୋଦ ପୀୟୂଷ ଘଟି ପିଟିଲା ରେ;
ପିଶାଚ ସ୍ମର ଅସି, ଦେବାକୁ ମୋତେ ଗ୍ରାସି,
ନାଶା ଚରମ ଦଶା ଘଟିଲା ରେ । ୧ ।

ଗ୍ରାତ ତମିର ତତ ଗଲେ ଯେ ପ୍ରୀତ ପ୍ରତ-
ବନ୍ଧକ ଅନ୍ଧକାର ଘଟିଲା ରେ;
ନ ବୁଝିଲ୍ଲ ଗୁହାର, ତୋ ତୃଷା ଯେ ମୋହର
ପରାଣ ଲୁଟିବାକୁ ହଟିଲା ରେ ।୨।

ଲୋଚନରେ ଲୋଚନ, ସଙ୍ଗମେ ଯୋଜିଁ ଧନ
ରଚଇ ଅନ୍ତରାୟ ଜଟିଳା ରେ,
ନୁହି ହେଲେ ବରଷୁଁ ଏବେ ମୋର କା ଦୋଷୁଁ
କୁଟିଳାକ୍ଷି ତୋ ସ୍ନେହ ତୁଟିଲା ରେ ।୩।

ଭରମ ରମ୍ୟ ଦେହା, ଚରମ ଭଲ୍ଲ ଯାହା
ଜାଣିଲି ମୋ କରମ ଫାଟିଲା ରେ;
ସକାମ କର ମାର, ପକାଲୁ ସୁକୁମାରୀ
ନ କାଟନ୍ତା ଏ ଯେଡ଼େ କାଟିଲା ରେ ।୪।

ଢଶୋଗ୍ରିଙ୍କର ମନ, ମୀନକୁ ଏ ବଚନ-
ମିଷ୍ଟ ବଢ଼ଶୀଲଟି ଘୁଷିଲା ରେ;
ଅଷ୍ଟକୁର୍ଗ ଭୂପତ, ମିଳନ୍ଦ ସେ ଦମ୍ପତ,
ପଦାବ୍ଜ ମକରନ୍ଦ ଗୃଷିଲା ରେ ।୫।

— ——

( ୧୧୩ )

ରାଗ—ତୋଡ଼ିପରଜ—ଆଡ଼ତାଳି

ଚଳି ହେଲୁକି ବଳି ଶୋଭନୀରେ ॥ ପଦ ॥

ପାଳିଥିଲା ମୋ ପିତ ଧନେ ମୋ ପାଇଁ ବ୍ରତ
ଧରି ଯେ ଚୁମ୍ବିଲି ଥରେ ତନି ଗୋ ॥ ୧ ॥

ତୋଙ୍କ ଆଗେ ବସାଇ ଗେଲେ ନୀବ ଖସାଇ
ଦେଲି ଯା ଅଛନ୍ତି ମନେ ଘେନି ଗୋ ॥ ୨ ॥

ଅନୁପ୍ରବାସ କଥା, ଘୁଡ଼, ଛୁଅଁ ମୋ ମଥା
ବୋଇଲି ସେ ମୁଁ ହେଲି ଯା ତୃନି ଗୋ । ୩ ॥

ଋତୁ ସମୟ ବୋଲି ଜାଣି ଜାଣି ଧଇଲି
ମନା କରୁଥିଲି ଗଲି ବନି ଗୋ ॥ ୪ ॥

ସବାରେ ଗଲି ଧନେ, ଧନ ମନ ଗହନେ
ଯା ଲାଗିଲି ସ୍ୱର ଯୋଗିଧୁନି ଗୋ ॥ ୫ ॥

ସଭୟ ନିରନ୍ତର ହୁଏ ମୋ ହୃଦନ୍ତର
ସେ ଯେ ମୋର ସୁଖର ଖଣି ଗୋ ॥ ୬ ॥

ଏପରି ଶ୍ୟାମଗିରେ ହସି ସଖୀ କୁହାରେ
କହେ ଅଷ୍ଟକୁର୍ଗ ମହୀଯାନି ଗୋ ॥ ୭ ॥

———

( ୧୧୪ )

ରାଗ—କେଦାର

ଚନ୍ଦ୍ରସୁନ୍ଦରମୁଖି ରେ,
ବୃନ୍ଦ ବୃନ୍ଦ କନ୍ଦର୍ପଶରମପ୍ରସର୍ପ ନ ଦିଏ ମୋ ଦର୍ପ ରଖି ରେ ।ପଦ।
ରସାଇ ସାରସଦୃଶା ଲସାଂ ମୋ ଦୁର୍ଦ୍ଦଶାରେ,
ଦଶାରେ ଛୋ ଲଭି ମୋ ଭରସା ରସାଳସା ରେ ।

ନିଶାରମଣୀଙ୍କର, ବିଶାଳ ମଦହର,
ହସା ବିଭବଭର, ମିଶା ମଧୁରତର,
ପ୍ରସାଦ ପରିହର, ତୁଷାତୁର ନ କର,
ତୃଷା ମୋହର ହର, କୃଶାନୁବର ରେ ।୧।

ବଳାହକବଳଜିତ୍କୁନ୍ତଳା ଲୀଳାବତୀ ରେ
ଝଳାଅ କୁଞ୍ଜରକୁମ୍ଭସ୍ଥଳାକୃତ ସ୍ତନରେ,
ଗଳା ନବରତନ, କଳାପ ଅନୁଦିନ,
ଚଳାଚଳ ନୟନ ଢଳା ରସକୁ ମନ
ବଳାଅ ରେ ମଦନ, କଳାନିଧି ବଦନ,
ବଳାପହକଦନ, ପଳାଉ ଧନ ରେ ।୨।

ଚରାଚର ବିଭୂଷଣା ଧରାଧରସ୍ତନା ରେ,
ପରାଣ ଅଛୁ ତୁ ଦେବା କରାଅଛୁ ସିନା ରେ,
ଧରାତଳେ ମୋ ଗତି, ପରା ତୁ ଗଜଗତି
ହରାହଣରେ ନିତି, ମରାଇ ଅକୀରତି,—
ପରାଗରେ ଜଗତି, କରାଉଛୁ ଭରତି,
ଈରାଳ ଭୂଲୁଣ୍ଠିତ, ଝରା ସୁଦତି ରେ ।୩।

କହେ ଅଷ୍ଟହୂର୍ଗନାଥ ସ୍ନେହେ ତୁ ଅଧୀନା ରେ,
ଅହେତୁକ ରୋଷ ଛାଡ଼ ମହେଶମୋହନା ରେ,
ବହେ ଅନବରତ, ଦହେ ମୃଦୁ ମରୁତ,
ସହେମ ମରକତ, ଗୃହେ ହୋଇ ମିଳିତ,
ତୁ ହେବୁ ରସ ରତ ଦୁହେଁ ହେବା ସଙ୍ଗତ,
ମୁଁ ହେବ ମନ୍ଥାଗତ, ମହେନ୍ଦ୍ର ବନ୍ଧ ରେ ।୪।

———

( ୧୧୫ )

ରାଗ—ଝଂଝୋଟୀ—ଏକତାଳି

ସୁହାଁରେ, ମଧୁବନକେଳିକୁଶଳାକୁ । ପଦ ।
କୋମଳପାଦ-ସରୋରୁହ-ଯାବକ-ଚନ୍ଦ୍ରଶଲାକାଧରକୁ,
ତୋ ମଧୁରାଧର ଲାଲ-ଜବା-ମକରନ୍ଦଫୁଲ୍ଲ ଭ୍ରମରୀକୁ ।୧।
ନିର୍ଜିତ ଶୋଣସରୋଜକରେ କରୁ ଯା ସଜଡ଼ା ବଢ଼ିଆକୁ,
ହୀରକ-କେଳିରଙ୍କ-କାନ୍ତ-ସୁଧାକର-ହାସ ବିଳାସିନୀ ତାକୁ ।୨।
ସୁରୁ ସୁନୀଳ ଚଳାଚଳ ଲୋଚନ-ଦ୍ରୋଣ ନିବେଶକରୀକୁ,
ସୁମର ବାତଭରେ ରତି-କୌତୁକ-ସମ୍ଭବ-ଖେଦହରୀକୁ ।୩।
ଶୈଳସହୋଦର ପୀନପୟୋଧର ଚନ୍ଦନ ଭୋଗଦଆକୁ,
ମଞ୍ଜୁଳମାଚଳ କକ୍ଷତଳେ ନଖକେଳିକଳା ହଟିଆକୁ ।୪।
ବାନ୍ଧବ, ଯଦ୍ୟପି ମାନସରେ ଅଛୁ ଲେଶ କୃପା କରିବାକୁ,
ରାଜ-ଜଦମ୍ବ-କଣ୍ଠ କଳନ୍ତରନାଥ ମହାମନ୍ଧବାକୁ ।୫।

———

( ୧୧୬ )

ରାଗ—ପୂର୍ବୀ—ଝୁଲା ।

ସୁହିଁ ଜାଣେଇଁ ଟୋ, ନାହିଁ ନାହିଁ ଶ୍ୟାମ ସର
ସଦ୍ଧ, ତା ନୟନ-ଅୟନ-ଅମୀୟ ରସ ଢାଳିଦେଲା ପର ।ପଦ।
ପ୍ରଫୁଲ୍ଲ ପଙ୍କଜ ଅଙ୍କରୁ ପାଟଳୀ କୁସୁମ ପାଶେ ବିହରି
ବିକାଶ ନବ ଇନ୍ଦୀବର ଯୁଗଳେ ଅଳି ଚଳୁଥିଲା ପର ।୧।
ଗଜରାଜଗତି ଜଗତ ଯୁବତୀରାଜ ବିନୟ ବସ୍ତୁର
ଭୁରୁ ସ୍ତୂପେ ଶୂନ୍ୟ ନାଗର ମଦନରାଜ ସାଜିଥିଲା ପର ।୨।
କମନୀୟ କଳାବତୀଙ୍କ ଉରଜ କୁମ୍ଭଯୁଗ ଲକ୍ଷ୍ୟକର
ହୀରକ ଟଙ୍କମକରୁ ମରକତ ଗୁଳି ବାହାରିବା ପରି । ୩ ।
ସୁନ୍ଦର ବନ୍ଧୁଜ ଅଧରେ ମଧୁର କୁନ୍ଦମନ୍ଦହାସ ଧରି
ରସବତୀ ଗଣେ ଗରଳ ପୀୟୁଷ ରସ ବୋଳିଦେଲା ପର ।୪।

ହଜାଇଣି ଜାତି କୁଳ ସତୀଗୀତ ବିବେକ, ମତି, ଗୁରୁଭୟ
ପରିଣତ ବିମ୍ବ-ଅଧରଙ୍କ ଦମ୍ଭ ଭରୁ ଛେଦିଦେଲି ପର ।୫।
ଶ୍ରୀହରିଚନ୍ଦନ କହଇ ନବୀନ ରସାଳସା ନେସେ ହରି
ଅଳପ ଯତନେ ପୀରତି ରଚନେ କିଣି ଗଢ଼ାଇଲି ପର ।୬।

---

( ୧୧୭ )

ରାଗ—ତୋଡ଼ି—ଅଡ଼ତାଳି

ଗୁହିଁ ଯା ନୟନାନ୍ତେ ଅଳପ ରେ । ପଦ ।
ଝାଳଦେବି ମୁଁ ଦୁଃଖ—ପାଳି, ଫେରାଇ ମୁଖ
ଗାଳରେ ହେଲେ ଯଦେ ଜଳପ ରେ ।୧।
ଖଣ୍ଡ-ମଧୁର ବାଣୀ—ମନ୍ତ୍ର ସ୍ମରନେ ମୋ ପାଣି
ଦଣ୍ଡ ହେଲଟି କୋଟି କଳପ ରେ ।୨।
ନର ବିମ୍ବାଧରୀବର—ସେବି ନିଶାବାସର
ହେବି ମୁଁ ତୋ କିଙ୍କର କଳପ ରେ ।୩।
ଗଜପତିଙ୍କ ସ୍ନେହେ— ଶ୍ରୀ ଜଗଦେବ କହେ
ପଣ୍ଡିତା ମଣ୍ଡ କେଳି ତଳପରେ ।୪।

---

( ୧୧୮ )

ରାଗ—କାମୋଦୀ—ଆଠତାଳି

ଗୁହିଁଲି ରେ, ମନ ମୋହିଲି ରେ । ପଦ ।
ଜଳଖେଳା-ଶଫରୀ—ନୟନା ସୁନାଗୋରୀ
ସତେ ମହେନ୍ଦ୍ର ଶୀର—ମୋତେ ଯାଚଲି ପର ।୧।
ଆଜ କି ତପବଳେ-ଜଳବାହୁଡ଼ା ବେଳେ
ଛିନ୍ନ ସଖୀଙ୍କ ମେଳେ—ବିରାଜ କି ଚପଳେ ।୨।

ପଲ୍ଲବ ସମୁଦ୍ଧତ—ଶଙ୍ଖ ମୟୂଖଜ୍ଜିତ—
ମୁଖେ କି ମନ୍ଦସ୍ମିତ—ମଣ୍ଡି ମୋ ପ୍ରାଣମିତ ।୩।

ମଦନ ମୁଖେ କାଳ—ଦେବାକୁ କିବା ଭାଳ
ମୋଗଲା ମଣିମାଳ—କୃପା ଅପାଙ୍ଗ ଢାଳ ।୪।

ବାରଥିଲେ ଶ୍ରୀହର—ଚନ୍ଦନ ଶ୍ରୀକିଶୋର
ବ୍ରଜନବରେ ହର—ହୟନ୍ତି ଫେର ଫେର ।୫।

———

( ୧୧୯ )

ରାଗ—କାମୋଦୀ—ଜିପଟା

ଗୃହିଁରୁ ଯେବେ ଶ୍ୟାମ ଦୂତିକା ରେ,
ଜାହିଁ ହଜାଇ ଦେବୁ ମତିକା ରେ,
ନାହିଁ ବୋଲିବା କଥା ଜାଣିବୁ କି ସର୍ବଥା,
ଅଜ କି ସମ୍ଭାଳିବୁ ଧୃତିକା ରେ । ପଦ ।

ଏ ନଗରେ ଏଣିକି ତୁମେ ଚୁମ୍ବିବ କାକ,
'ସତୀ' ଏ ବୁଲିବର୍ଣ୍ଣ ଶ୍ରୁତିକା ରେ,
ସତେ ପ୍ରାଣମିତ ରେ ତା ସେବାରୁ ଇତରେ
ଯୁବତୀ ଜନମକୁ ଗତିକା ରେ ।୧।

ଯେବେ ସେ ହେବ କୋଳେ କଳାବତୀ ମଣ୍ଡଳେ
ନ ଠେକିବୁ କି ଶ୍ୱେତ ଛତିକା ରେ,
ଚୁମ୍ବିଲେ ତା ବଦନ- କଞ୍ଜଟି ଗୃହୁଜନ-
ଗଞ୍ଜନ ଲଭିଲେ ହେଁ କ୍ଷତିକା ରେ ।୨।

ଭବନ ମଣି ବପ ସେ ନବଯୁବା ପାଣ
ରବିନନ୍ଦନାତୀର ଝିଙ୍କିକା ରେ,
କି ସୁଖ ଇନ୍ଦ୍ର ଅଙ୍କେ ନନ୍ଦନରେ କାଃଶଙ୍କେ,
ଅଗ୍ରେହିଲେ ଅଭ୍ରମୂପତିକା ରେ ।୩।

ଅବା ତା ପଥେ ଯିବା— ଲାଗି ଝଲପି ଥିବା
ତା ପଛେ ଯେତେ ପରଭୂତଙ୍କ ରେ,
ମୋହନ ସ୍ମିତ ଅବ- ଲୋକେ ଯାଶୋର ଯିବ
ନ ଅଚରବ କ ବନତଙ୍କ ରେ ।୪।

ଶୁଣି ଶ୍ରୀଠାକୁରାଣୀ ଚିତ୍ତ ମଣିଲେ ଜାଣି,—
ନଥିଲା ପର ହରପ୍ରୀତଙ୍କ ରେ
ସେକାଳେ ଦୁଇ ସଖୀ କୃପା କଲେ ସୁମୁଖୀ
ମୁକୁନ୍ଦ ଦେବ ଗଜପତିଙ୍କ ରେ ।୫।

---

( ୧୬୦ )

ରାଗ—ମୋହନା—ଅଠତାଳ ।

ଚୁହିଁ କି ନାହିଁ କେହୁ ମୋହନ ହାସ ଗୋ, କେହି ତା ମନ୍ଦହାସ,
କାହିଁକି ଏବା ମୋତେ ଏ ପରହାସ ।ପଦ।

କେଉଁ ସଖୀ ସେ ପୁଟେ,
ଭେଦନେ ଅଛୁ ନଟେ—
ବର ସ୍ନେହୁଁ କପଟ ହୋଇ କରାଶ ।୧।

ଡାକ ଛ ସେ ଯୋଷାକୁ,
କହୁ କାହା ନାସାକୁ
ବାଜନାହିଁ ସେ ବନମାଳଙ୍କ ବାସ ।୨।

ଲୋଡ଼ି ଶ୍ୟାମ ପ୍ରୀତଙ୍କ,
ଘଟେକ ଯୁବତୀଙ୍କ
କେ କହୁ ନାହିଁ ଧର ଦଶନେ ଘାସ ।୩।

ତୋ ସ୍ନେହୁଁ କଣୀଥରେ,
ବନଦୁର୍ଗପଥରେ
ଗତାଗତରୁ ଥିବ ପଦେ ପହାସ ।୪।

ଡ଼ାକୁ ଯାହା ମୁରଲୀ,
ସ୍ୱାମୀଙ୍କ ପେଲ ଠେଲ
ଧାବନବଶେ ଖସେ ନିତମ୍ବ ବାସ ।୫।

ଶ୍ରୀ ଜଗଦ୍ଦେବ ଭଣେ
ରାଧାବାଣୀ ଶ୍ରବଣେ,
ଅଳାଏ ହସି ଦେଲେ ଅଙ୍କ ନିବାସ ।୬।

---

( ୧୬୧ )

ରାଗ—ତୋଡ଼ି—ଅଠତାଳି

ରହିଁଛି ମାନ ଶିଖଣ୍ଡରେ, ସଖି ମୁଁ,
ଛୁଞ୍ଚା ଅପବାଦେ ଚମକି ପଡ଼ୁଛି ଏ ବ୍ରଜ ବଚାର ଦାଣ୍ଡରେ ।
ଚିକ୍କଣ ଶ୍ୟାମଳଚନ୍ଦ୍ର ନିକଟକୁ ଗଲି ନାହିଁଟି ପହଣ୍ଡରେ, ସଖି ମୁଁ ।ପଦ।

ଚପରାସିଚୟ ପେଷି କଂସରାୟ
ନିର୍ଦ୍ଦୋଷେ ନେବ କି ଦଣ୍ଡରେ ।୧।

ଚନ୍ଦୁଆ ଯେ ବଡ଼ ମୋହର ଗଉଡ଼
ଶୁଣିଲେ ହେବ ପ୍ରଚଣ୍ଡରେ ।୨।

ସଖୀ ଥିଲେ ମୋର ପରଶନ୍ତେ ନୀର
ତାଙ୍କ ଯୋଗୁ ଲଣ୍ଡଭଣ୍ଡରେ ।୩।

ଗେହ ଯେବେ କହିଥିଲି ମୁଁ ତାଙ୍କର
ଚୁମ୍ବିଛି କି ଗୃହ ଗଣ୍ଡରେ ।୪।

ଅଗ୍ରଦୂର୍ଗ ଭଣି ଶୁଣ ଠାକୁରାଣୀ
ଶ୍ୟାମ ପଦ କଞ୍ଜେ ମଣ୍ଡରେ ।୫।

---

( ୧୨୨ )

ରାଗ—ଶାବରୀ—ଏକତାଳି

ଗୃହାଁ ନିକୁଞ୍ଜ ବିଳାସୀକି ରେ
ନିରତ ଲୀଳାଭିଳାଷୀକି
ବ୍ରଜ ବାଳବୃନ୍ଦ ନୟନାନନ୍ଦ ହୃଦୟ-ସ୍ଥଳ ନିବାସୀକି ରେ ।ପଦ।

ପଦ ପଙ୍କରୁହଯୁଗ ଖେଳକୁ—ଅଖଣ୍ଡ ଶିଖଣ୍ଡ ଶିଖୀ ଚୂଳକୁ
ଧୃତ କରତନ ଦ୍ୟୁତ ନରତନ ବିଲ୍ୱେକ ମାଳା ତୁଳସୀକି ରେ ।୧।

ଅତି ଦୂରେ ଥାଉ ଏହାଙ୍କ ସେବା—ତେତେ ସୁକୃତ କେ କରିଛୁ ଅବା
ଦେବେନ୍ଦ୍ର ଯୁବତୀ ହେବେ ଭାଗ୍ୟବତୀ ଭଜିଲେ ଏହାଙ୍କ ଦାସୀକି ରେ ।୨।

ଚୁମ୍ବି ଏ ଶ୍ୟାମ ସୁନ୍ଦର ଅଧରେ—ଲଦି ଏ ମୃଦୁ ପୀନ ପୟୋଧରେ
ଧନ ହରିବା ର ହେବ ଶତବାର ଗଙ୍ଗାରେ ନ ଥିଲେ ଝାସିକି ରେ ।୩।

ମିଳିଲେ ଚିର ସ୍ଥିରକରି ଦେଖ—ଜିତ ଶତ ଶୀତ ମୟୂଖ ମୁଖ
ହେଲେ ସ୍ମିତ ସିତସୂନସମ ଚିତ୍ତ ନଯିବ ବିକେବ ଭସିକି ରେ ।୪।

ଅମୋଘାସ୍ତ୍ର କରି ଏହାଙ୍କୁ ପାଇ—ମକର-ଚରମ ଚଢ଼ା ସିପାହୀ
ବିଶ୍ୱ ବଶ୍ୟ କଲେ କରି ନ ପାରିଲେ ସେ ହୋଇଯିବ ସନ୍ୟାସୀ କି ରେ ।୫।

ରଚେ ବସୁଦୁର୍ଗ ବସୁଧାପତି—ଅଳଙ୍କି କେଉଁ ଗୁଅଳ କହନ୍ତି
ସତେ ଅଛି ପୁଣ୍ୟ ବୋଲେ ଏ ଲବଣ୍ୟନିଧି ବିଳସିବେ ଅସିକି ରେ ।୬।

---

( ୧୨୩ )

ଶଙ୍କରା ଭରଣ—ଅଠତାଳି

ଶତ୍ରୁକୁ ଯେବେ ପାଇଲ କର, ଦୂତକୁ ସିନା କହୁଛ ଗୁହର ।୦।
ତନୁ ଚୀନ ଚେଳ ଯାହା ସମାନ, ଅନୁଚିତ ତାହାଠାରେ ଗୁମାନ ।୧।
ଖଳ କୁଟିଳ ଗଉରବେ ରସି, ଛଳକୁ ହୋଇବାର ମୁଖଶଶୀ ।୨।
ତାହାଁ କି ଶୁଣି କସ ଅଭିଷିଲ୍ଲ, ତାହିଁକି ଏତେ କଥା ଅସଲ୍ଲ ।୩।

ଖଞ୍ଜନ ମଞ୍ଜୁଳ ନେତ୍ରୁ ନିବାର, ଅଞ୍ଜନ ମିଶା ଅଶ୍ରୁ ବହିବାର ।୪।
ନ ଧରରେ ରସ କଳପଲତା, ଅଧର ପାନ ଦାନ କୃପଣତା ।୫।
ଶ୍ରୀହରି ବନପ୍ରେ କିଶୋର ତୋଷେ, ବିହରିଲେ ହରିଚନ୍ଦନ ଭାଷେ ।୬।

---

( ୧୬୪ )

ରାଗ—ମୋହନା—ଜାଃସାରିତାଳ

ଗୁଡ଼ଲାଣି ଶିଶୁଭାବ ମୋ ଧନ
ଚୁଇଁଲାଣି ଯଉବନ ଗୁମାନ ।ପଦ।
ସର-ବୟସୀ ସଖୀ ପରିହାସେ
ଅଧର ମଣ୍ଡିଲାଣି ଦନ୍ତହାସେ ।୧।
ଧ୍ୱଂସିଲାଣି ଧୃତ, କଟାକ୍ଷେ ତୃହିଁ
ପଢ଼ାଇବାକୁ ବାକୀ କିଛି ନାହିଁ ।୨।
ପୂରୁଷ ବାସନା ବାଳିଲାଷଣି
ଚଞ୍ଚଳ ହୋଇଲାଣି ସୁଲକ୍ଷଣୀ ।୩।
କବିରବି ଏହି ଗୀତରେ କହେ
ନାଗର ମାନଙ୍କ ଚିତ୍ତକୁ ମୋହେ ।୪।

---

( ୧୬୫ )

ରାଗ—ସୁରଠ—ଏକତାଳି

ଛି ଛି ପର ପୀରତି କିଛି ନ ରଖଇ ମତି ମା ।ପଦ।
ଦାଜ ଘେନିଣ ତା ଗୁରୁଜନଙ୍କର ଯାଉପଛେ ଜାତିରୀତି ମା
ସ୍ନେହରେ ଶ୍ରୀମୁଖ ଦେଖିଦେଲା ଯାଏ ଦେହରେ କି ଥାଏ ଗତି ମା ।୧।
କଜ ହୋଇ ଯାଏ ତା ବନୁ ଉନୁଟି ବାଜ ବରହାଗ୍ନି ଛାତି ମା
ରାଜ ନ ଥାଏ କି ତା ସଙ୍ଗ ସୁଖରେ ଲାଜ ମିତ, ହୁଏ ଖ୍ୟାତି ମା ।୨।

କହଇ ଅବଶ୍ୟ ଅସିବି ବୋଲି ମୁଁ ରହଇ ଇତରେ ମାତ୍ର ମା
ଦାସୀ ପରି ଅନୁସରି ବସୁ ଅସି ପାହିଯାଏ ସିନା ରାତ୍ର ମା ।୩।

ମନୁ ତେଜ ଦନୁ ଦନୁ ବଳବାର ଆନ ନାହିଁଟି ସୁମତ ମା
ଅଖିରକୁ ଫଳ ମଦନ ଶରକୁ ଲକ୍ଷ କରିବାର ଛାତ୍ର ମା ।୪।

ବସଇ ବସୁଧା ତଳ ତେଜ ଗଜଦନ୍ତ ପଲଙ୍କ ସୁପାତ୍ର ମା
ଦଶା ହୋଇଯାଏ ଅତି ବିପରୀତ ମଶା ହୋଇଯାଏ ହାତ୍ରୀ ମା ।୫।

ଏ କାହାକୁ ଜଣା ଟେକାଏ ମାରଣା ମନ୍ତ୍ରେ ହୋଇବ ଖ୍ୟାତ ମା
ସହି ତୁ ଅଇଲୁ ପଦେ ନ କହିଲୁ ବୋଲେ ବସୁ ଦୁର୍ଗପତ୍ର ମା ।୬।

———

( ୧୨୭ )

ରାଗ—ଖମ୍ବାଜ—ଝୁଲ୍ଲ

ଜଗତ କରତା ନାଥ ମିଛେ ହରି ବୋଲାଇଛ
ଅନ୍ତରେ କପଟ ରଖି ଖିତରେ ଦାତା ହୋଇଛ । ପଦ ।

ଦେଲ୍ ଯାହା ନେଲ୍ ତାହା — ନ ଜାଣିକି ଚଉବାହା ।
ଏଥକୁ ସ୍ୱର୍ଗବାନାହା, ପତାକା ଯା ଉଡ଼ାଇଛ । ୧ ।

ବଳୀରଜା ଦାନକାଳେ—ତାକୁ ରୁପିଲ୍ ପାତାଳେ
ଗୋପେ ସୁଦାମାକୁ ବଳେ ଅଇଶ୍ୱର୍ଯ୍ୟ ଦଅଇଛ ।୨।

ଗୋପୀଙ୍କ ବସ୍ତ୍ର ଗୋକୁଳେ—ଗ୍ରୈହଇଲ ଅବହେଳେ
ଦ୍ରୌପଦୀ ଅତଙ୍କ କାଳେ, କୋଟି ବସ୍ତ୍ର ଦଅଇଛ ।୩।

ସୁନ୍ଦ ମନ୍ତ୍ରୀ ନେବେ କୃଷ—ମାରି ଲଭିବାର ଯଶ
ଧୂଳିଖେଳେ ପୀତବାସ, ଅନ୍ଧେ ଲୋଚନ ଦେଇଛ ।୪।

କଂସର ଯେ କୁବଳୟ—ତା'ଠାରେ କରୁଣ ମାୟା
ଗଜକୁ କରୁଣ ଦୟା, ଚକ୍ରେ କୁମ୍ଭୀର ହାଣିଛ ।୫।

ହୃଦୟ ବଡ଼ କଠିନ—କମଠ ପୃଷ୍ଠରୁ ଟାଣ
ବଳଦେବକୁ କଷଣ, ଭୁଜତଳେ ରୁହାଇଛ ।୬।

———

( ୧୬୭ )

ରାଗ—କାମୋଦୀ, ଆଦିତାଳ ।

ଜଣା ତ ଅଛୁ ମାନ ଏତିକି ରେ,
ଗଣା ନ ଯିବା ଗୁଣବତୀଙ୍କ ରେ ।ପଦ।

ଉତ୍ତମ ଅଙ୍କଚ୍ଛେଦ ଅନୁରାଗ ବିଚ୍ଛେଦ
ଦୁହିଙ୍କି ନେଲ ଯେ ନକିତିକି ରେ,
ଟେକିଗଲ ପ୍ରଥମ, ଯହିଁ ତୁଟିବା ପ୍ରେମ,
ଦ୍ୱିତୀୟ ଚୁମ୍ବ ଦେଲ ଛିତିକି ରେ ।୧।

ବଳ ପାଉଛୁ ମୋର ସହି ପାରିବ ଘୋର—
ଜଳପାତ୍ରର ଖରି ତାତିକି ରେ,
ମଧୁରାଧରି ପ୍ରୀତି ଅଧୁରି ହେବା ଜାତି
ସୁହାଇ ଜାଣିନାହିଁ ଛାତିକି ରେ ।୨।

ଅବଳାମଣି ଅବ- ଧାନଆ ପଣେ ଯୁବା-
ଚନ୍ଦ୍ରେ ଟେକାଇଥିବ ଛାତିକି ରେ
ଖର ବଚନ ଶୁଣି ଧନ, ବଦନ ମ୍ଳାନ,
ସମୟେ ଥାଇ ଅଜ ଗତି କି ରେ ।୩।

ସୁରଙ୍କ ଅଗେ ସଙ୍ଗ, କହିବାର ଲୋସଙ୍ଗ
ଲୁଚଇ ନାହିଁ ମୋର ମତିକି ରେ
ଲୁଚକ ପୟୋଧରି ତୁ ଚତୁରୀଙ୍କ ଧୀରି
ବିରୁହ ପାଳିବୁ ମୋ ପ୍ରୀତିକିରେ ।୪।

ସେବାରେ ତପୀବତି ହେବାର ଯେବେ ସତି
ବାଣୀ କେ ଶୁଣାଇବ ଶ୍ରୁତିକିରେ
ଭବମିହିର ଗୀତେ ବୋଲେ ପରଖି ମୋତେ
ସମର୍ପି ଦେବୁ ରତିପତିକି ରେ ।୫।

---

( ୧୨୮ )

( ଜୌନପୁର ତୋଡ଼ି—ଅଠତାଳି )

ଜଣାପଡ଼ିଲା ରେ, ବଣା-ମୃଗାକ୍ଷୀ ତୋ ଗୁଣ;
ଅଣାଇଁ କପଟେ ବଣାଇବ ବାଟେ ଖଣାକୁ ଦେବାର ପେଲ । ଘୋଷା ।
ଚରମ କରବାସଣେ ଜନମାଉ ମୋର ମନେ ଘୋର ବ୍ୟଥା,
ପରମ ଦୟାଳୁ ପତାକା ଟେକାଇ ଧରମ ନାଁକ ଏ କଥା । ୧ ।
ସତୁର ସଂଖ୍ୟା ଦ୍ୱିଗୁଣ ଘେନି ହେଉ ସତୁରଖୋରଙ୍କ ସାହା,
ଚତୁର ହୋଇ ବିଶ୍ୱାସୀ ଜନ-କଣ୍ଠେ କତୁରୀ ଚଳାଉ ଯାହା । ୨ ।
ଶିଷ୍ଟପଦେହା ଯା ବକ୍ଷରେ ବହୁଛୁ ଗରସମ ଶୋଭି ସ୍ତନ,
ଗୁରୁ ସଦୃଶ ସେ ଶିଖାଇଛୁ ପର ପୁରୁଷମାରଣ କମ । ୩ ।
ରଖାଇ ଅନେକ ଦିନ ଉପବାସେ ଦେଖାଇ ସୁଧା କଳସ
ନ ଖାଇଲେ ମଲ୍‌ମଲ୍ ବୋଲୁଥାଉ ଚଖାଇ ନଦେଉ ଲେଶ ।୪।
ହସନ୍ତୁ ଭଗାର ବୋଲି କିପାଁ ମୋର ଅସନ୍ତୁଷ୍ଟ କରୁ ରାଜ,
ବସନ୍ତୁ ଉଷୁଙ୍ଗେ ମୋର ଥରେ ଭଲ କଷନ୍ତୁ ସିନା ମରଜା । ୫ ।
ଝରଇ ପୀୟୂଷ ଯେଉଁ ବଚନରୁ ହରାଇ ପ୍ରାଣ ସେ ଗେଲେ;
କରଇ ମୁଁ ଶଙ୍କା ଏଣୁ କୃଷ୍ଣଚନ୍ଦ୍ର ନରଇନ୍ଦ୍ର ଦେବ ବୋଲେ । ୬ ।

———

( ୧୨୯ )

( ରେଗୁପ୍ତ—ଅଠତାଳି )

ଜଣାଥିଲା କି ମୋତେ ଏ ସ୍ୱିତ ଗୋ,
ଛଣାସୁଧା ସରପଣାରୁ ମଧୁର ଲାଗୁଥିଲା ଶ୍ୟାମପ୍ରୀତି ଗୋ । ଘୋଷା ।
ଲୁଣି ମଣିଲିଣି ମଧୁଝରକୁ
ଶୁଣି ତା ବିଷମ ବଂଶୀସ୍ୱରକୁ
କି ବାଇ ହୋଇଲି ନିଭାଇବି ବୋଲି ସ୍ୱର-ଧନଞ୍ଜୟ-ହେତି ଗୋ । ୧ ।
ନହୀତଳେ ଯେତେ ଧୂର୍ତ୍ତ ପୁରୁଷେ,
ସହି, ସବୁର ପରମଗୁରୁ ସେ,
ହରୁ ସେ ସ୍ନେହକୁ ଜହ୍ଲାର ମୁଁହାର
ରହିଅଛି ଲଭି ସ୍ମୃତି ଗୋ । ୨ ।

ତାରତମ୍ୟ ସେ ନ ଜାଣେ ନିପଟ,
ତାର ତନୁଗୋଟାଯାକ କପଟ,
କଳାବତୀକୁଳ ମାରଣେ କେବଳ
କରଅଛୁ ପରଶଚ ଗୋ । ୩ ।
ଅସିବ ମୁଁ ବୋଲ ଦେଇ ଭ୍ରଷାକୁ,
ବାସି କଲ ଯେ ମୋ ଫୁଲଭୂଷାକୁ,
ତୁ ହେଲେ ପଡ଼ିଲୁ ଥରେ ନ କହିଲୁ
ସେ କାତବର ଅମୀତ ଗୋ । ୪ ।
ନିଚ୍ଚୋଳରେ ହେଲନ ମୋ ଅରୁଣ,
ପୀତପଟ ସେ କାହିଁକି ଧରୁଛୁ,
ତାହାର ସଦୃଶ ପିନ୍ଧିଥାଉ ବାସ
ଯା ତୁଲେ ମାତୁଛୁ ନୀତ ଗୋ । ୫ ।
ଶୁଣି ଏପରି ସନ୍ତୋଷ ଗିରକୁ,
ନିଜ ନୟନେ ଥକାଇ ନୀରକୁ,
ଅଳ ପ୍ରବୋଧିଲେ କଣୋଷ୍କ ବୋଲେ
ଅଷ୍ଟଦୁର୍ଗ ଧରିପତ ଗୋ ।୬।

---

( ୧୩୦ )

( କାମୋଦୀ—ଏକତାଳି )

କଣାଉଛୁ ମୁଁ ପାନ୍ଥ ଏତକି ରେ, ଗଣା ନ ଯିବା ଗୁଣବତୀକ ରେ ।
ବଣାହୋଇ କପଟ, ଅପଥେ ନ ରଚିବୁ ଗତକି ରେ । ଘୋଷା ।
ଉତ୍ତମ ଅଙ୍ଗଚ୍ଛେଦ, ଅନୁରାଗ ବାଚ୍ଛେଦ
ଦୁହିଁଙ୍କି ତୁଳିଲ ନକାତ ଜ ରେ
ଟେକିଗଲ ପ୍ରଥମ, ଯହିଁ ତୁଟିଲ ପ୍ରେମ
ଦ୍ୱିତୀୟ ଚୁମ୍ବିଦେଲ ଷିତକି ରେ । ୧ ।
ବଳ ପାଉଛୁ ମୋର ସହିପାରିବ ଘୋର—
କଳପାନ୍ତର ଝରି ତାତକି ରେ
ମଧୁରାଧରି ପ୍ରୀତ-ଅଧରି ହେବା ଜାତ
ସୁହାଇ ଜାଣିନାହିଁ ଘାତକି ରେ । ୨ ।

ଅବଳାମଣି ଅଟା ଧନୀ ଅଟେ ସେ ଯୁବା—
ଚଟକେ ଚେକାଇଥିଲ୍ ଛତକା ରେ—
ଖର ବଚନ ଘେନ ଧନ ବଦନ ମ୍ଲାନୀ—
ସମୟେ ଥାଇ ଅଜ୍ଞ ଗତକା ରେ ।୩।
ସୂଚକ ଅଟେ ସଢ଼ି ଭଦ୍ରବାର ଲେସଢ଼ି
ରୁଚଇ ନାହିଁ ମୋର ମତକା ରେ
ରୁଚକ ପୟୋଧରା ତୁ ଚତୁରୀଙ୍କ ଝଁସ
ବସ୍ତ୍ରୁର ପାଳବୁ ମୋ ପ୍ରୀତକା ରେ ।୪।
ସେବାରେ ଛପାଇ ତ ହେବାର ଯେବେ ସତ—
ଗିର କେ ପିଅଇଛୁ ଶ୍ରୁତକା ରେ
ଭବମିହିର ଗୀତେ ବୋଲେ ପରଖି ମୋଚତ
ସମର୍ପି ଦେବୁ ରତ୍ନପତ୍ରିକା ରେ ।୫।

———

( ୧୩୧ )

( ପୂରବୀ—ଏକତାଳି )

ଜଣାଗଲା ତୋ ମରଜି ଜାଣା ଜଣା-ବାଣୀ ରେ ।ଘୋଷା।
ସଙ୍ଗିନୀଙ୍କ ସଙ୍ଗେ ସ୍ନେହ ଫିଙ୍ଗିଦେଇ ପାଣିରେ
ଛନାଦ୍ଧ ନକ୍ଷକେ ଅଚରିଲୁ ଯା ପଲ୍ଲଣି ରେ ।୧।
କେତେ କଲେଣି ଧାତା ତୋତେ ଅଷ୍ଟୁଟି ନାମିଣି ରେ
ଲେଖା ତୁ ସୁରେଖା ଏକା ରସିକା ସିହାଣୀରେ ।୨।
ପାଉଁଜି-ମଞ୍ଜିର ପଦାଙ୍ଗନ ରବ ଠାଣିରେ
ବଜାଇଲୁ ଯା ବ୍ରଜଯୁବତୀପ୍ରେମ ଜଣାଣି ରେ ।୩।
ମହିଳା ମହେନ୍ଦ୍ରଭୁକ୍ତ ଦେଲୁ ମୋର ହାଣି ରେ
ସରସ ସ୍ମର-ସମର ସମର୍ଥ ଗୃହାଣୀ ରେ ।୪।
ବୋଲେ ହରଚନ୍ଦନ ଭୂ-ପୁରନ୍ଦରମଣି ରେ
ଯଦୁମଣି ବାଣୀ ବଶ ହେଲେ ଠାକୁରାଣୀ ରେ ।୫।

———

( ୧୩୨ )

ଜବାଧର୍ମ୍ମ, ଯିବା ଅସ ତାଙ୍କ ଅନୁସର । ଘୋଷା ।
ଜପୁଥିବା ବେଳେ ଶିବନାମ ବସି
ଜୀବ ଯିବାଭଳ ହେଲଣି ତ ବସି
ଜଳପିବା ବଳ ନାହିଁ ଜଳଭୂଷୀ ଯାଉ ପଛେ ମାନ ସର ରେ । ୧ ।
ଜାଣି ଜାଣି ଶ୍ୟାମପ୍ରେମ-ଜଳଧିରେ
ଯେବେ ଉପଗୁର ହେଲେହେଁ ସର୍ଧାରେ
ଜାଣୁ ଜାଣୁ ଅବଗାହନ ଶଧିରେ ଯିବ ବେଦନା ଜପର ରେ । ୨ ।
ଜଳ ସିଞ୍ଚି ତଳେ ପଲ୍ଲବ ତଳପ
ଜାଣିଦେଲେ ଦେଖି ପଦ୍ମୁଡ଼ିଲେ ଅପେ
ଜାଣୁର ତା ଜୀବ ଯିବାର ଜରୂପେ ଜମୁନଦଷାବ ଗୋସ୍ୱ ରେ । ୩ ।
ଜାଉ ଜଟେ ସ୍ୱଚ୍ଛ କର୍ପୂର ଚନ୍ଦନ
ଜଳଜ-ଜଳକୁ ପକାଇବା ଅଣି
ଜନମିବ ତହୁଁ ରସ ଜଳଷଣ ବଳବ ଦେଖ ଜପର ରେ । ୪ ।
ଜୀବ ଥିଲେ ସିନା ଜରବ ଗୁମାନ
ଯାଉଛୁ ତ ସବ ହୋଇ ମ୍ଳାନମାନ
ଯାହା ଦସିଲଣି ଚନ୍ଦ୍ରମାବଦନ ଜାଣେ ଦରପଣ ଧର ରେ । ୫ ।
ଜଳଜ-ବାନ୍ଧବ-ନନ୍ଦନା ତଟରେ
ଜମ୍ବାଳ ନୀଳ ନବଗ୍ଳଳ ଖଟରେ
ଜମିଅସେ ଯେହୁ ବ୍ରତ ପ୍ରକଟରେ ଜଗଦେବ ବୋଲି ଜର ରେ । ୬ ।

---

( ୧୩୩ )

( ସାରଙ୍ଗ—ଝୁଲ )

ଜଗତଜରତା । ନାଥ ମିଛେ ହର ବୋଲାଇଛ
ଅନ୍ତରେ କପଟ ରଖି, ଛିଡରେ ଦାତା ହୋଇଛ । ଘୋଷା ।
ଦେଲ ଯାହା ନେଲ ତାହା—ନ ଜାଣ କ ଉଜ୍ୱାହା
ଏଥକୁ ଭର୍ଗବାନାହା, ପତାକା ଯା ଉଡ଼ାଇଛ । ୧ ।

ବଳୀରାଜା ଦାନକାଳେ—ତାଙ୍କୁ ରୁପିଲ ପାତାଳେ
ଗୋପେ ସୁଦାମାକୁ ଦେଲେ ଅଇଶ୍ୱର୍ଯ୍ୟ ଦଅଇଛ । ୨ ।
ଗୋପୀଙ୍କ ବସ୍ତ୍ର ଗୋକୁଳେ—ଚୌର କଲ ଅବହେଳେ
ଦ୍ରୌପଦୀ ଆତଙ୍କ କାଳେ କୋଟି ବସ୍ତ୍ର ଦଅଇଛ । ୩ ।
ରୁକ୍ମିଣୀ ନେଲେ କିଣି—ମାର ଲଭିବାର ଯଶ
ଧୂଳିଖେଳେ ପୀତବାସ ଅଙ୍ଗେ ଲେପନ ଦେଇଛ । ୪ ।
କଂସର ଯେ କୁବଳୟା—ତା'ଠାରେ କରୁଣା ମାୟା
ଗଜକୁ କରୁଣା ଦୟା ଚକ୍ରେ କୁମ୍ଭୀର ହାଣିଛ । ୫ ।
ହୃଦୟ ବଡ଼ କଠିନ—କମଠ ପୃଷ୍ଠରୁ ଠାଣି
ବଳଦେବଙ୍କୁ କପଣି ଭୁଜଙ୍ଗେ ଲୁହାଇଛ । ୬ ।

———

( ୧୩୪ )

( କୋଳାହଳ—ଆଠତାଳି )

ଜାଣିନାହିଁ କି ମୁଁ ଶ୍ୟାମ-ସ୍ନେହ ଗୋ ॥ ଘୋଷା ॥

ଅଜ୍ କି ଜଣାଥିଲେ — କହ ଶୁଣିବ ଭଲେ
ତା' ଚରିତ ମୋ ଆଗେ ନ କହ ଗୋ । ୧ ।
ଏଥର ମିଶି ସହ ! — ନ'ଥର ସହ ସହ
ପଥର କରିଛି ମୁଁ ଏ ଦେହ ଗୋ । ୨ ।
ମୁକୁ ଗିରେ ମଣାଇଁ — ବଳଆଇ ଜଣାଇଁ
କୋଧାନଳେ ମୋ ହୃଦ ନ ଦହ ଗୋ । ୩ ।
ରଚୁଥିଲେ ତା' ପ୍ରୀତି — ସେ ସୁଖ, ସେ ବିପତ୍ତି
ତୁହ ଭୋଗକର, ତୁହ ସହ ଗୋ । ୪ ।
କେତେ ଯତନ କର — କଦନ-ନଦୀ ତର
ଅଛି ମୁଁ ବରଜ ମହାମୋହ ଗୋ । ୫ ।
ଅଛୁ କି ତାହା ଦତ୍ତ — ନଖକ୍ଷତ ରହିତ
ଏ ନଗରେ ନାଗରୀ ନିବହ ଗୋ । ୬ ।

କଲା କିଶୋର ପ୍ରେମ          ହମାଳାଠାରୁ ହେମ
ପ୍ରଳୟାନଳରୁ ତପ୍ତ ତପ୍ତ ଗୋ । ୭ ।
ଅନ୍ତଦୁର୍ଗେଶ ଭୂପେ          ଶୁଣି ଲଳିତା ହସେ
କହିଲେ ମୋ ସଖୀ ଦୁଃଖୀ ନୁହ ଗୋ । ୮ ।

---

( ୧୩୪ )

ପୂରବୀ—ଏକତାଳ

ଜାଣିଲି ପଟ୍ଟଅଣି ଗୃହାଣୀରୁ ଧନକୁ । ଘୋଷା ।
ପରବସୁଧା-ମୟୂଖ          ଗରବ ଦଳଇ ମୁଖ
ତାର ତନୁ ବଳଇ ହଜାର ପୁଟ କନକୁଁ । ୧ ।
ଭଲ ମନୋହାସ୍ୟ ଏଣ—          ଲଲମମଣ୍ଡନା ପଣ୍ୟ
ସଲମ କରବ ସାନୁମଣି ତାର ସ୍ତନକୁ । ୨ ।
ମୁନିମନ-ମୋହନାର          ସୁଶୀଳ କବରୀଭାର
ମୁଁ ନିରେଖି ତୁଚ୍ଛ ମଣେ ଅଭିନବ ଘନକୁ । ୩ ।
ଅରସିକା ଏ ତା'ଠାରେ          ଜନ ସିଂ ନ କହିବାରେ
ସନ୍ତପଧା ସ୍ମିରୁ ତ ଆଚରୁନାହିଁ ମନକୁ । ୪ ।
କବରେନ୍ଦ୍ର ଗୀତେ ଭଣେ          ଅବିରତ ସଙ୍ଗୀ ଜଣେ
କରପଢ଼ାଇଥାନ୍ତା ମୋପର ପରିଜନକୁ । ୫ ।

---

( ୧୩୬ )

( ଖମାଚ—ଏକତାଳ )

ଜାଣିଲି ଠିକ ପିକବାଣୀ ରେ । ତୋ ବିବେକଠାଣି
ଏ ଗୃହାଣୀରୁ ଆଜ ରେ । ଘୋଷା ।
ଦେଖି ତଲେ ମୋ ନେତ୍ର ହୋଇଯାଉ ପବିତ୍ର
ଅନା ନବୀନା ବନା ଲଜରେ । ୧ ।
ଧନ ରେ । ଧନ୍ୟ ଧନ୍ୟ ତୋ ଶ୍ରୀମୁଖ-ଲାବଣ୍ୟ
ନାହିଁ ଶାରଦ ଦ୍ୱିଜରାଜରେ । ୨ ।

ମୋତେ ଅବଲୋକନ  ଦେବାକୁ ଏ ବିଧାନ
ନିକୁଞ୍ଜ ଆଗମନ ବ୍ୟାଜରେ । ୩ ।
ଭେଟ ତ ମୁଁ ହେଲିଣି ଅଙ୍ଗ ହୃତୀଙ୍କ ଘେନି
କି ଫଳ ଅପେ ତୁ ନିଅଜ ରେ । ୪ ।
ମୁଁ କରିବା ସେବାରେ ସମ୍ମତ କରିବାରେ
ମାର ବାରଣ ବେଣ ସାଜ ରେ । ୫ ।
ଏ ଅଷ୍ଟଦୁର୍ଗନାଥ ସୁଚିତ୍ତ ମନୋରଥ
ଭର ଦୁଷ୍ଟ ଦଶାକୁ ମାଜ ରେ । ୬ ।

———

## ( ୧୩୭ )

( ଭୋଳାହଲା—ଅଠତାଳି )

ଜୀବବାନ୍ଧବୀ ରେ,  ପ୍ରାଣବାନ୍ଧବୀ ରେ
ତୋ ବିନା ମୋତେ ନ ଦିଶେ ଆନ । ଘୋଷା ।

ଜଗତେ ନାରୀମାନଙ୍କ ମାଧୁରୀ କରୁଥାଏ ମୁଁ ଯେ ଅନୁମାନ,
ଗୋଟିଏ ଗୁଣରେ ତୋ ନଖକୋଣରେ ତୁଳିବାକୁ ନବଳଇ ମନ ।୧।
ପୂର୍ବ ତପବଳେ କରିବ ଯେ ବଳେ ତୋ ମଧୁର ରଦଚ୍ଛଦ ପାନ,
ସୁଧା ନିର୍ଝରୀଙ୍କ ମଧୁର କରି କି ଲେଖିବ ନଧରି ଅଭିମାନ । ୨ ।
ତରୁଣୀ ତୋ ବାଣୀ ମୃଦୁ ମୃଦୁ ଠାଣି ଶୁଣିଥିବ ପୁଣି ଯାହା କାନ,
ସେ କି ଗଉରବଯୋଗ୍ୟ ବିଚାରିବ ଶୁକ ପିକ ବେଣୁ ବୀଣା ଗାନ ।୩।
ଥରେ ଯାହା ଉର କରିଥିବ ତୋର ଘନ ପୀନସ୍ତନ ଆଲିଙ୍ଗନ,
କୁମ୍ଭି-କୁମ୍ଭସ୍ଥଳ ଯୁଗଳକୁ ସ୍ଥୂଳ ମଣିବ କି ନବାଗ୍ରୁର ନ୍ୟୂନ । ୪ ।
ମଧ୍ୟେ ଥିଲେ ସିନା ତୋର ସୁଦଶନା ଘଟନା କରନ୍ତି ଜପମାନ,
ହରିକଟି ତାକି ବେଦ ମଧ୍ୟେ କି କୃତାର୍ଥ କରନ୍ତେ ରୂପମାନ । ୫ ।
ହେଲେ ଯେ ମନ୍ଦରସ୍ତନା ତୋ ସୁନ୍ଦର ଗତିରେ କରିବ ଦୃଷ୍ଟିଦାନ,
ଯେବେ ଥିବ ଲାଜ ଚିତ୍ତବ କି ରାଜହଂସ ଗଜରାଜ ଲୀଳାମାନ । ୬ ।
ଜଣାଇବ କିସ ଶେଷମୁଖେ ଶେଷ ହେବାର ଆୟାସ ଯେ ବିଧାନ,
କହେ କାଳନ୍ତର ମହୀପୁରନ୍ଦର ଥିବ ମାନ କିଛି ଅବଧାନ । ୮ ।

———

( ୧୩୮ )

( ପୂରବୀ—ଅଠତାଳ )

ଜୀବସଙ୍ଗିନୀ ରେ ଯହିଁ ରୂପୁ ଫୁଲ୍ଲଗୃପ—
ନାହାର ବାହାର ବାହାରେ କାହାର ଯତନୁ ଏ ତନୁତାପ । ପଦ ।
ଚୁମ୍ବାଇ ବଦନେ ପ୍ରତିଚୁମ୍ବଦାନେ ନ ଚୁମ୍ବି ପ୍ରିୟୁ ଶ୍ରୀମୁଖ
ଗଲାନି ଭଲ ନିତମ୍ବିନୀ ମଣିରେ କହନ୍ତ ତାହାର ଦୁଃଖ । ୧ ।
ଜାଣୁ ତ ବଣାମୃଗାକ୍ଷୀ ଏ ବପୁଟେ ସାକ୍ଷୀ ଏ ମନକୁ ମନ
ରତିବନ୍ଧୁ ବିନା ବଞ୍ଚିବ ନବୀନା କିରୂପେ ଯାମିନୀ ଦିନ । ୨ ।
ଚନ୍ଦ୍ରିକା ଚନ୍ଦନ ଚନ୍ଦ୍ରପରାଗରୁ ଜାଣି ଯାହାର ଅଭେଦ
ସେ ରମଣ ଗ୍ଲାନି ଶୀଳ ସୁପାତ୍ରର ବିନା କି ଲାଗଇ ନିଦ । ୩ ।
ଯାହା ଚାହିଁ ଚୁମ୍ବି ଦେଉଥିଲେ ଲୁଚି ଯାଉଥାଏ ଶଶୀ ଶିର
ତହିଁମାନେ ହସି ତାହିଁକି ଗଲାଟି ବସୁଧା ଚରମଶର । ୪ ।
ଗଣ୍ଡ ଲଦ୍ଧ ସ୍ତନ ତକିଅରେ ଘନଶ୍ୟାମ ପହୁଡ଼ିବେ ନାହିଁ
ବରଜଣି ତାଙ୍କୁ ଆମ୍ଭ ଜୀଇବାକୁ ଉପାୟ ଅଛି କି ନାହିଁ । ୫ ।
ଚାଲୁଁ କେଳି ନିକୁଞ୍ଜକୁ ଶ୍ରୀମତୀଙ୍କି ସଖି କହିବାର ସ୍ନେହେ
ବାଲ୍ୟବେଶ ରଣରଣି ଅଷ୍ଟଦୁର୍ଗ ଭୁନାଥ ପ୍ରିୟୁକୁ କହେ । ୬ ।

———

( ୧୩୯ )

( ବେହାଗଡ଼ା—ଅଦତାଳ )

ଝଲବରନା ରେ । କଲାବୁଝି ମନେ ମନେ
ଲଳିତ ଚନ୍ଦ୍ରମୁଖୀ ବୋଲଣି ଡାକୁଥାନ୍ତି ତୋହ ସଖୀମାନେ । ପଦ ।
ଶଶପ୍ରାଣ ଖାଇ ଶଶାଙ୍କ ବୋଲାଇ ଆକାଶେ ବହୁବ ମରେ
ସଲିଳ ମଣ୍ଡୁକ ପରିଯେ ମାନବ କିରଣଗୁଡ଼ାଏ ଧରେ । ୧ ।
ଯାହା କହୁଛନ୍ତି ଜନେ ତ ଶୁଣୁଛି ତାହାଠାରୁ କସ ଅଣି
ଲାଗୁଅ ତରଲ ବଡ଼ ହୋଇବାରୁ ଅଗୁଳା ହୋଇଛି ପୁଣି । ୨ ।
ନାନା କପଟରେ ଟେଲାଇ ଭୁଲାଇ ଗୁରୁପ୍ରିୟାକୁ ହରଲ
କଳାଗଣ୍ଡେ ମଣ୍ଡି ଅଖଣ୍ଡଳଦେବ କୁଳ ବିଟାଳିଅ କଲ । ୩ ।

କେଉଁ ଗୁଣ ତାର ଭଲ ଦେଖି ଅବା ତୋତେ ତାକୁ ସମକର
ଗେଲାଇ ହୋଇ ଯା ଭାକୁ ମରୁଥାନ୍ତ ଚନ୍ଦ୍ରମୁଖୀ ନାମ ଧର । ୪ ।
କେଉଁ ସଜନୀଟ' ଅଜହୁଁ ସେ ନାମ ତୁଣ୍ଡେ ଆଣି ବସାଇବ
ଜଳନ୍ତର ସ୍ୱର୍ଗବଳ ବିପକ୍ଷଙ୍କ ସୁଧରମା ମନା ହେବ । ୫ ।

---

( ୧୪୦ )

ରାଗ—ବଙ୍ଗଳାଶ୍ରୀ

ଟମକ ବାଜଇ ଜଗତଯାକେ ତ ତୁ ନଜାଣୁ ବୋଲି କପଟ,
ଟିଗ୍ରି ପୀନସ୍ତନା ସେ ଗୁଣକୁ ମନା କରଦେଲୁ କା ନିପଟ । ୧ ।
ଟଳିଗଲା ଅନୁରାଗ ଯେ ତୋ ମନୁ କା ଦୋଷୁ କର ପ୍ରକଟ,
ଟପଟପ ନୀର ବରଷୁଅଛି ଯେ ତୋ ନୟନ ଖଞ୍ଜରୀଟ । ୨ ।
ଟଙ୍କ କର ତୋର ରୁଷା ଅଜଗର ଗଳାଲା ସୁଖସମ୍ପୁଟ,
ଟାଣି ପଛେ ପଦେ ବୋଲନ୍ତୁ କାହିଁକି ମନ କଲୁ ସ୍ନେହ ତୁଟ । ୩
ଟସର ମିଶାଇ ଦେଲେ କି ଆଉ ପସନ୍ଦ ହୁଅଇ ପାଟ,
ଟଣାଙ୍କ ପଣ କରୁଛି ଦେଲୁ କହେ ଅଭିମନ୍ୟୁ ଧରାରାଟ ।୪।

---

( ୧୪୧ )

( ବଳାହାର—ଆଠତାଳ )

ଠକଙ୍କ ରୀତ କି ଯଡ଼ ହେ ଶଠ,
ଠକରାଇଲୁଁ ତୁମ୍ଭ ପଢ଼ା ପାଠ । ୧ ।
ଠାରେ ଦେଖାଇ ଯମୁନା ତଟ
ଠକି ତ ରହିଲନି ଥର ଆଠ । ୨ ।
ଠ-ବରତୁଲ ଚନ୍ଦ୍ରାନନ ଓଠ
ଠଣ ନ ଲାଗିଲାନି ବଡ଼ ମିଠ । ୩ ।
ଠ-ନେକ ହୋଇଥିବାରୁ ଗରଷ୍ଟ
ଠକାଇଲେ ଜଗଦେବ ସପଟ । ୪ ।

---

( ୧୪୨ )

କେଦାର—ଏକତାଳି )

ତମାଲନୀଲକେଶୀ ଗୁମାନେ ବହନା ରେ । ଘୋଷା ।
ପରବସୁଧା-କଳାକରବଦନ ବାଳା,
ନବ-ପଲ୍ଲବ କରେ ବହନା ରେ । ୧ ।
ତୁ ମୋତେ ଦେବା ଶିଶୁ ଦେଖି ସହି ନ ପାରୁ
କେ କସ କହିଲଟି ମୋହ ନାଁ' ରେ । ୨ ।
ଯେତେ ଶୃଶ୍ରୁଷ-ହୀନ ହୋଇଲେ ହେଲେ ଜନ
ଜୀବନେ କରଇ କି କୁହନା ରେ । ୩ ।
ଦଲେ ଅଧରବିମ୍ବ-ଫଳେ ଯା ଦେଲି ଚୁମ୍ବ
ଏହି ଦୋଷକୁ ରୋଷ ବହନାରେ । ୪ ।
ଅଦ୍ଭୁତ ମାର ଦାଉ ସହି ନ ପାରେ ଅଉ
ଗଲା କଥା ତ ଗଲା ତୁ ଅନାଁ ରେ । ୫ ।
ଭଣିଲେ ଜଗଦେବ କହନ୍ତି ଶ୍ରୀକେଶବ
ନୋହିବା ପର ଗୋପୀ କହନା ରେ । ୬ ।

---

( ୧୪୩ )

( କାମୋଦ—ଅଠତାଳି )

ତାକୁ ହୁଏ କି ଉପି, ତମସ୍ତମାଳ ସ୍ତୋମ ସୁକେଶୀ ରେ । ଘୋଷା ।
ତଳକ ତୁଲେ ତୁଳନା ଥାଇନାହିଁ ମୃଗତ ଯାହା ସଦୃଶିରେ
ତନୁ ଗୋହିଭଯାଇ ଜଲ୍ପ ଏ ପୂଲକ କୁଳ ନାଶନ ଯା' ବଂଶୀରେ ।୧।
ତପନ ଶିଶୁମଣ୍ଡଳୀ ପର ଯାଉଁ ଯା ଶିଖଣ୍ଡ ଚୂଡ଼ା ଦଶି ରେ
ତରୁଣୀଙ୍କ ଶାଢ଼ୀ ଗଣ୍ଠି ପଦପାଢ଼ୀ ଭିଡ଼ୁ ଭିଡ଼ୁ ପଡ଼େ ଖସି ରେ ।୨।
ତଟେ ଭାନୁଜାର ଶୋଭମୃତ ଯା'ର ବରଷନ୍ତେ ଲସି ଲସି ରେ
ତହିଁରେ ତରୁଣୀ ଶ୍ରେଣୀ ମନ ପୁଣି ନଯାଇ ରହେ କି ମିଶି ରେ ।୩।
ତରଳ ମଞ୍ଜୁଳ ଚକ୍ଷ ନେତ୍ରାଞ୍ଚଳ ଅଳପ ଗଲେ ବୁଲଯି ରେ
ତକ୍ଷଣରେ ବାକି ନୋହିବ ବିବେକୀ ହୋଇ କି ଚେଡ଼େ ସାହସୀ ରେ ।

ଉର୍ବିବ ତାହାର ଧୃତପଣୁ ହାର ହେଲେ ତା ଭଙ୍ଗୀ ସାରସୀରେ
ତାଳୁଯାଏ ମଜ୍ଜିଯାଇ ନ ସମର୍ଥେ କେ ମାଣୀ ହେବ ଉରସି ରେ ।୫।
କଥା କହୁଥିବ ଶ୍ୟାମ, ପୁଣି ଥିବ ମଥାପୋତ ଯୋଷା ବସି ରେ
ଗୃହୁଁ ଗୃହୁଁ ତାହା କମ କହୁଥାଉ କାହୁଁ କି ଗୁଡ଼ାଏ ଅସି ରେ ।
ତରଣୀକା ତୀରେ ତରୁଣୀ ଜାତରେ ନୋହୁବ କେ ତାହା ଦାସୀ ରେ
ବସୁଦୁର୍ଗ ମହ୍ଲିନାଥ କହେ ସହ୍ୟହୋଇ ଏ ବ୍ରଜନବାସୀ ରେ ।୬।

---

( ୧୪୪ )

( କାଫି—ଏକତାଳି )

ତା ମରଜ ଭରଜ ତୁ ତ ହେଉ ବଣା ରେ
ସେ କି କରବ ହୃତୀକ ଜଣାମଣା ରେ । ଘୋଷା ।
ତହୁଁ ଦପତରୁହାରେ ପଞ୍ଚଶ୍ରୋପ ତରୁ ହାରେ
ଗଲେ ପଛେ ଯିବ ଉତ୍ତମାଙ୍ଗ ହଣା ରେ । ୧ ।
ଯିବ ବୋଲି ସେ ପଥରେ ଶତ ଶପଥରେ ଥରେ
ପିଇଲୁ ନାକ ତା ଗିର-ସବପଣା ରେ । ୨ ।
ଥିଲେହେଁ ପୂରତ ରସ ମୋ ସଖୀ ପୀୟୂଷରସ
ଛୁଇଁବ କି ଛ'ଥର ନୋହିଲେ ଛ[illegible]ା ରେ । ୩ ।
ତୁମ୍ଭେମାନେ ସିନା ଜାଣୀ ଅଭିସାର-ରସେ ରସି
କରେ ଛନ୍ଦିଯାରେ ଦ୍ୱିପଧର ଫଣାରେ । ୪ ।
ବାଳା ଅଭିମାନ-ମନା ନୁହେ କାହାର ଅଧୀନା
ଲଘବ ମୁଣ୍ଡରେ ଫରମାସେ ଠଣା ରେ । ୫ ।
ଘୁଡ଼ି ସବୁ କପଟକୁ ବଟ ମଣି ମୁକୁଟକୁ
ବାଳା ପଦଜଳଜ ଭଲକୁ ଅଣା ରେ । ୬ ।
ବସୁ ଦୁର୍ଗ ନାଥ ବୋଲେ ଘନଶ୍ୟାମ ମନଥିଲେ
ଅସିଗ ଲବଣ୍ୟଧନେ କେଉଁ କିଣା ରେ । ୭ ।

---

( ୧୪୫ )

( କଳହଂସ କେଦାର—ଏକତାଳି )

ଛାର ଗିରେ କି ବିଶ୍ୱାସ, ତା'ର ସ୍ନେହେ କି ବିଶ୍ୱାସ
ଛାର ପରେ କି ବିଶ୍ୱାସ, ଯାର ଜାରବିଳାସ ଗୋ । ଘୋଷା ।

ବୋଲେ ଶତ ଥର ଶପଥରେ ମୋର ଆନେ ନାହିଁ ଅଭିଳାଷ,
ହୋଇଥାଏ ବୋଲି ଚନ୍ଦ୍ରାବଳୀ କେଳି ନିକୁଞ୍ଜ କୁସୁମ ବାସ ଗୋ । ୧ ।
ଦନ୍ତବାସେ ସତୀ ଯୁବତୀଙ୍କ ଜାତି ନେବା ଭଙ୍ଗୀମିଶା ହାସ,
କଥାକୁ ଶାଶୁଙ୍କ ମଥାକୁ ଛୁଆଇଁ ଏପରି ଯାହା ସାହସ ଗୋ । ୨ ।
ପ୍ରତି ରାତି ନାଗରମଣିର ଚରଣଶୋଭିତରେ ବଳାଏ ମୁଁ ଆଶ,
ପାରେର ଡେଇଁବା ଆପଦୁ ଯା' ପଦଜଳଜତଳ ପରଶ ଗୋ । ୩ ।
ହୁଏ କେଡ଼େ ପ୍ରିୟ ଗିରେ ସବିନୟ ପ୍ରକାଶି ମୋହନ ରସ,
ମୁରଲୀ ବଜାଇ ଡାକେ ଯହିଁ ଥାଇ ଆଗରେ ବଡ଼ ନିରାଶ ଗୋ । ୪ ।
ମୁଁ ନଗର ଯୁବରାଜ ବୋଲି ଅବଲେପରେ ବହେ ଉଲ୍ଲାସ,
ଯେ ପୁଣି କପଟେ ଲୁଚି ନଦୀତଟେ ଲୁଟଇ ପାଲଟା ବାସ ଗୋ । ୫ ।
ତେବେ ହେଲେ ଏ କି ଚିନ୍ତ ଧିକ ତାର ଧନ ଜୀବନ ନିବାସ,
ଅଷ୍ଟଦୁର୍ଗ-ପୁରନ୍ଦର ବୋଲେ ଯାର ଗତି ନୁହେ ପୀତବାସ । ୬ ।

———

( ୧୪୬ )

ମୋହନା—ଅଡ଼ତାଳି

ତୁଚ୍ଛା କଥାକୁ ଆନ କାହିଁକି ଏତେ ରେ ବନ୍ଧୁ । କାହିଁକି ଏତେ ?
ମୋ ଘର ସ୍ନେହୁ ସୁଖ ହୋଇ କେତେ । ଘୋଷା ।
ଧନ ହେ, ତୁମ୍ଭ ସ୍ନେହ— ଧନେ କିଣା ଏ ଦେହ
ମୋ ଅଧିକୃତ ଏଥି ନାହିଁ କିଛିତେ । ୧ ।
ବ୍ରତବାସରେ ହେଲେ ଆପଣ ଅଳି କଲେ
ସେବା ହାଜର ହେଉଥାଏ ନିରତେ । ୨ ।
ଅତର, ଫୁଲ, ପାନ, ଅଙ୍ଗରାଗ, ଚନ୍ଦନ
ଏସବୁ ଜାଣ ପ୍ରାଣ ତୁମ୍ଭ ନିମିତ୍ତେ । ୩ ।

ଏତକ ଏକା ହୃଡ଼ ଲାଜ ଲାଗଇ ବଡ଼
ହୋଇ ନ ପାରେ ତୁମ୍ଭ ପରିଚରେ । ୪ ।
ଶୁଣି ଏ ରାଧାଗିର ଚ୍ୟୁମ୍ବିଲେ ଶ୍ରୀକିଶୋର
ଅଷ୍ଟଦୁର୍ଗ ଭୂବର ବଞ୍ଚିଲେ ଗୀତେ । ୫ ।

———

( ୧୪୭ )

( ବେହାଗ—ଏକତାଳ )

ତୁମ୍ଭେ ସିନା ପାର ଗୋ ରଜନୀ-ବିହାର
ମୋର ସେ ନଟକୁଟିଙ୍କୁ ଜୁହାର ଗୋ । ପଦ ।
ପରିଚୟ୍ୟ କରିଛ ଯଶୋଦାସୁତ ସଙ୍ଗରେ
ହରିଛ ଯମୁନାକୂଳେ କାଳ ନାନାରଙ୍ଗରେ । ୧ ।
ଘର-ଜନ ପରଜନ ପରିଭବ ସହିବ
ବରଜ ନଗରଜନ ବଦନ ନ ଚାହିଁବ । ୨ ।
ନୀରଜଙ୍କୁ ନିରଜଙ୍କୁ ଜଳୁ ମୁଁ ପ୍ରତିଦିନେ
ସୁରଜଙ୍କୁ ସରିଯାଉଥିବ ନିତି ନିତି ଦିନେ । ୩ ।
ଆସିବେ ସେ ବୋଲି ଭୁଲି ଭାସି ଆଶା-ସାଗରେ
ବାସି ବେଶ ହେବାଯାଏ ବସିବାର ଜାଗରେ । ୪ ।
ବନ୍ଦେ ଛରଳତା ଗାଡ଼ି ମନ୍ଦେତର ଆଦରେ
ବସୁଦୁର୍ଗ ବସୁନ୍ଧରାଧୀଶ ରାଧାପଦରେ । ୫ ।

———

( ୧୪୮ )

( କାଫି—ଅଡ଼ତାଳ )

ତୁ ମୋ ପରାଣ ପୂର୍ଣ୍ଣଚନ୍ଦ୍ରମୁଖୀ ରେ । ଘୋଷା ।
କେତେ ତପ କରିଥିଲି ପୂର୍ବରେ ମୋ ଆଖି ରେ
ହେଲି ଧନ୍ୟ ଏ ଲାବଣ୍ୟ ଦେଖି ରେ । ୧ ।
କାହାର ରସନା ଯିବ ପୀୟୂଷକୁ ଚାଖି ରେ
ଥରେ ତୋ ଅଧରେ ଥିଲେ ଲାଖି ରେ । ୨ ।

କେ ବମ୍ଭାର ସମ୍ଭୋଗକୁ ନ ଦେବ ଉପେକ୍ଷି ରେ
ତୋ ରସକୁ ପାରିଲେ ପରଖି ରେ । ୩ ।
ମୁଁ ସ୍ୱଣ ପଙ୍କାନ୍ତେ ମୋ ପର ରେ ମନେରଖି
ହସି ସଖି ବୋଲୁ ନଖି ନଖି ରେ । ୪ ।
ମିଛେ ବୋଲୁ ନାହିଁ ମା ଦେଖିବେ ମୋର ସଖି
ପୃଷ୍ଠେ 'ହେଜ' ବୋଲି ଦେଇ ଲେଖି ରେ । ୫ ।
ଅଷ୍ଟବୁର୍ଗନାଥ କହେ କେତେ ଭଙ୍ଗୀ ଶିଖି ରେ
ସରୁମଧ୍ୟା କରୁ ମୋତେ ସୁଖୀ ରେ । ୬ ।

---

(୧୪୯)

( ପୂର୍ବୀ—ଅଠତାଳ )

ତୁହି ପରା, ମୋ ହୃଦୟମଣିମୟହାର ରେ । ଘୋଷା ।
ସହି ତୁ ମୋହର ସକଳ ସମ୍ପଦ,
ମଦନ-ଫଣି-ରଦନ-ବିଷଗଦ,
ଅଖିଳ ବିଭବ ଅଖଣ୍ଡଳ ପଦ,
ଅବେହଣ ପରମ୍ପର ରେ । ୧ ।
ରସିକରାଜ ମସ୍ତକ ଅଳଙ୍କାର,
ବିଦ୍ରୁମ ମନପଲ୍ଲବ ଗର୍ବହର,
ତୋ ପୟର ଲକ୍ଷା-ରଞ୍ଜକ ଦାସ ମୁଁ
ବିରହ-ଦୁଃଖ-ପାସୋର ରେ । ୨ ।
କହୁଥିବେ ସହ୍ମୀ ଜାଣି ବା ନଜାଣି,
ମଣିଲୁ କି ସତ ଶୁଣି ତାଙ୍କ ବାଣୀ,
ଧରିଛୁ ବିରସ ବିବେକୀମାଶ୍ରେଣୀ-
ମସ୍ତକ-ମଣ୍ଡନ ହରା ରେ । ୩ ।
ନମଣ୍ଡିରୁ ସିନା ମୋର ବକ୍ଷସ୍ଥଳ,
ହୃଦୟସ୍ଥ ଥିବୁ କର କେଉଁ କଳ,
ମୋ ମନ ଗଗନ ତଟ ସମୁଜ୍ଜ୍ୱଳ
ଉଦୟ ନିର୍ମଳ ତାରା ରେ । ୪ ।

ସଜନି ଗୋ, ନବ ସୁରତି-ବିଭବ,
ପାସୋରିଯିବ କି ମନୁ, ଥିଲେ ଜୀବ,
ଧୀନ କବିରବି ଗୃହଟିର ନବ—
ଘନରସ ଜଳଧାରି ରେ । ୫ ।

———

( ୧୪୦ )

( କାମୋଦୀ—ଏକତାଳୀ )

ତେଣ୍ଟାରେ ଜାଣି ଜାଣି ପଡ଼ିଲି ରେ,
ଘଣ୍ଟାରବ ପଥ ମୁଁ ଛାଡ଼ିଲି ରେ,

ବଣ୍ଟା-ନିରୁଦ୍ଧ ଘାଟୀ, ସଂସାର କ୍ଳେଶ-ଧାଟୀ,
ବଣ୍ଟା ନେବ ମୁଁ ବୋଲି ଅଡ଼ିଲି ରେ । ଘୋଷା ।
ମସ୍ଜିତ ଘନସାର, ଉପଳ କ୍ଷୀରସର,
ବିନା ଛ ପିଚୁ ମଦ୍ଧ ଲେଉଡ଼ିଲି ରେ,
ହଛକୁଛି ମ ମୂର୍ଦ୍ଧସ୍ଥଳ-ଖେଳ-ସଂଶ୍ରଦ୍ଧ,
ନୋହୁ ଦୁର୍ଗନ୍ଧ ଗର୍ଭେ ବୁଡ଼ିଲି ରେ । ୧ ।
ଦେବ ପ୍ରାସାଦ ମତ ଜନମିକାରୁ ନିତ,
ବାଲୁଙ୍କ ଦେଖି କର ଯୋଡ଼ିଲି ରେ;
କର୍ମଠ ଧର୍ମଦକ୍ଷ ସାକ୍ଷର ବପ୍ରମୁଖ୍ୟ
ନିତ୍ୟନିବାସ ବେଶ ପୋଡ଼ିଲି ରେ । ୨ ।
କମ୍ଭାନ୍ଦ୍ରି କି ପ୍ରେରିତ ଦମ୍ଭୋଳି ଦୃଢ଼ାଘାତ
ବଞ୍ଚାଇବାକୁ ଛତ ଆଡ଼ିଲି ରେ,
ସମ୍ଭାଳିବାକୁ ବଳ ନୋହିବାରୁ କେବଳ
କାଟେ ଚାଟିଲି କପାଳ ତାଡ଼ିଲି ରେ । ୩ ।
ହଂସୁଲି ତୂଳିତଳ୍ପ ପାସୋରି ଦେଇ ଅଳ୍ପ—
ଲୋକଙ୍କ ପରି ତଳେ ଗଡ଼ିଲି ରେ,
ସାଧାରଣ ମୀ ଘନଶ୍ୟାମ ବୋଲିବା ଜନ
ଦେଖି ସଙ୍କୋଚେ ଦନ୍ତ ଭିଡ଼ିଲି ରେ । ୪ ।

ସମ୍ଭାଷଣ ନ ଜଲ ରମ୍ଭାସଦୃଶ ବଲ୍ଲୀ—
ଦେହାକୁ ଛୁଇଁ ଦେଖ ଢଳିଲ ରେ,
ଗୃହୁଁଗିରେ ଅଷ୍ଟାପୀ କରନ୍ତ ବହୁଦାସୀ-
ମାନଙ୍କ ଅଙ୍କସ୍ଥଳେ ଜଳିଲ ରେ । ୫ ।
ବନ୍ଧୁ କ୍ଷମାସାରସୀ ହୋଇ ଅନ୍ୟାଭିଳାଷୀ
ଅରଣ୍ୟରେ ପଶି ମୁଁ ରହିଲ ରେ,
ଭଦ୍ରେ ଭବ-ଅର୍ଯ୍ୟମା ମୁଁ ଦୋଷ କଲେ କ୍ଷମା
ହେବ ନାହିଁ କି ବୋଲି ବାହିଲ ରେ । ୬ ।

---

( ୧୫୧ )

( ପୂରକଲ୍ୟାଣ—ଅଦଡାଳ )

ଥରେ ଅନାଁରେ ମୋହନା ଚତୁର ମାନ । ୦ ।

ଧନ ମୁଁ ସ୍ନେହରେ ଜନମୁଁ ଦେହରେ
ଭଜନାହିଁଟି ତୋହରଠାରୁ ଆନ । ୧ ।
ସୁଧାଗତ ରସ, ମୁଁ ଧାଡା ଭରସ-
ମଣି ଲୋଡ଼େ ମୁଁ ତୋ ଦନ୍ତବାସ ପାନ ।୨।
ସରୁ ମଧ୍ୟା ମତେ, ନ ରୁଚେ କର୍ଣ୍ଣତେ
ତୋ ବଚନ ବିନା ବେଣୁ ବୀଣା ଗାନ ।୩।
ଗୃହିଁଲେ ତୋ ଗତ, କାହିଁ ବୋଲେ ପ୍ରୀତ
ନ ଗୃହେଁ ମୁଁ ଲୀଳାଳସ-ହଂସଯାନ ।୪।
ପୀକଭାଷୀ ହସ, ନା କର ନିରାଶ
ମୋହର ଅଛୁଟି କୋଟି କୋଟି ଆନ ।୫।
ଶ୍ୟାମ ଗୃହୁଁଗୀରେ, ଭାମବଶେ ଧୀରେ
ହସି ରସେ ରାଧା ହେଲେ ସାବଧାନ ।୬।
ଅଷ୍ଟଦୁର୍ଗେଶ୍ୱର, କଷ୍ଟ ପରହର
ଭଲେ ଶ୍ରୀ କିଶୋର ବନ୍ଧ ଟସ ବତାନ ।୭।

---

( ୨୪୨ )

ରାଗ—ମୁଖାରୀ—ଏକତାଳି

ଦୟାବନ୍ତୀଙ୍କ, କର ଧର ମୁଁ ମାଗୁଛି ଏତକ
ବେଗେ ନେଇ ତୋର ପାଖରେ ହାଜର-
କର ମୋତେ ଆଜ ସ୍ୱତକ । ଘୋଷା ।
ନଦେଖି ଦୁଃଖିତ ମୋ ନେତ୍ର-ଚକୋର
ତୋ ଶ୍ରୀମୁଖ-ନିଶାପତକ
ପଞ୍ଚଦଶ ତଥି ଏକାବେଳେ ଥିଲ
ହେବାକୁ କି ନିନ୍ଦନାତକ ? । ୧ ।
ବସ୍ତୁରେ ହେମବରନାର ରତନେ
ନିର୍ମିତ ଥାଇ ମୁରତକ
କୃପଣ ହେବାକୁ ମୁଁ ମାର୍ଗଣ ନୁହେଁ
ଦେଖାକୁ ନରଖ ସ୍ୱତକ । ୨ ।
ମୋ ଘର ଜାନ୍ଦାକୁ ବସ୍ତୁର କି ତୋର
ଜାଣିଲେ କନେ ଏ ସ୍ୱତକ
କି ବୋଲିବେ କହ ଦାମୀବର ବୋଲି
ଠେକାଇଅଛୁ ଯେ ଛତକ । ୩ ।
ହରକୁ ଚନ୍ଦ୍ରମା ଧରିଲା ପସ୍ରସ୍ୱେ
ବ୍ୟାକୁଳ କରୁଛ ମତକ
ଏଥୁ ଯେନ ସିନା ଜଣାକରୁଅଛୁ
ଅଷ୍ଟବର୍ଗ ନବପତକ । ୪ ।

———

( ୨୪୩ )

ରାଗ—କାମୋଦୀ—ଏକତାଳି

ଦମ୍ଭେ ବା ସତେ ସହି କହିଲୁ ରେ,
ଦମ୍ଭୋଳିଗଢ଼ା ଛାତି ବହିଲୁ ରେ,
ମାନସରସ-ମଧୁ ପାନ ସମସ୍ତ ନୋହୁ
ବିଚ୍ଛେଦ କେହୁ ସହୁ ସହିଲୁ ରେ । ପଦ ।

ଜାତଘାତୀ ସେ ପ୍ରେମ ଏମ ବଡ଼ ବିଷମ
ନୋହିଲେ ନୋହିଥିବ ପଡ଼ିଲି ରେ,
ହୋଇ ନୋହିବା ପରି ହେଲେ ଧବଳ ଧର
କରୂପେ ରହ ଦେଖି ରହିଲି ରେ । ୧ ।
ଛୁଟିଲେ ହେଲେ ସ୍ନେହ ଠକିବାକୁ ଦେହ—
ରକ୍ଷା ତୁ ତୋର ଅବା ବହିଲି ରେ,
ଏ ଯେବେ ନୋହେ ସତ ହୋଇ ମୋ ପ୍ରାଣମିତ
ମୋପରି କାହିଁକି ତୁ ନୋହିଲି ରେ । ୨ ।
ସୁଖସିନ୍ଧୁ ସରିକି ଯିବା ମନ-ତରଙ୍ଗକି
ପ୍ରତିକୂଳରେ ପୁଣି ବାହିଲି ରେ,
ଯୁଗ ନୋହିଲି କ୍ଷଣ ସଂସାର ବିଲକ୍ଷଣ
ରସେ ତୁ ଅବା ଅବଗାହିଲି ରେ । ୩ ।
ସମନ୍ତି ନାହିଁ ତ ମୁଁ କିଯୋଗେ ତୁ ପ୍ରଥମୁ
କି ଭଙ୍ଗୀ ଅପାଙ୍ଗରେ ଗ୍ରହିଲି ରେ
ଗାଢ଼ ପ୍ରୀତି ବିନା ସେ ବଞ୍ଚୁ ଯା ଅନାୟାସେ
ପୂର୍ବେ ବା କେଉଁ ତପେ ଦାହିଲି ରେ । ୪ ।
ସରସ ହାଣି ତୃଣ ବିଶେଷ ବଜ୍ରବାଣ
ପ୍ରୟୋଗ କରି କେହି ଦହିଲି ରେ,
ବିଲକ୍ଷକୁ ସେ ସଯ୍ୟନେବା ହୃଦେ ହୃଦୟ
ଟାଳି ନଜାଣି ତୁ କି ସହିଲି ରେ । ୫ ।
ମଣିମ ସେ ତୋ ଗ୍ରହି ନୋହେ ତ ଧେନୁ ବୋଲି
ବଳିବର୍ଦ୍ଧକୁ କାକ ବୁହିଁଲି ରେ,
ଭଣିଲେ ଅଷ୍ଟବର୍ଗ ଧରିବଳୟ ସ୍ୱର୍ଗ
ଛଳେ କି ବଳେ ମୋତେ ମୋହିଲି ରେ । ୬ ।

—————

( ୧୫୪ )

( ପରମାଦ ବଡ଼ ଭୁଞ୍ଜି ଗୋ—ପ୍ରଭ )

ଦଅ ପଛେ ଗାଳି ରେ, ଦୁଃଖୀସଙ୍ଗାଳି । ୦ ।

ଅନେକ ଦିନରୁ ଆଶା ଅଛି ସମୁଲ୍ଲାସ
କନକଗଞ୍ଜିଗ୍ଧି ତୋର ସ୍ୱାଦୁ ରଦବାସ
ପୀୟୂଷ-ପାନରୁ କରିବାକୁ ତୃଷା ନାଶ
ପୂରି ଚିର ଅଭିଳାଷ ରେ । ୧ ।
ମନମଥ ଅମଳରେ ଘୂମାଇ ଘୂମାଇ
ସ୍ତନଘଟ ଯୁଗଳ ମୋ ଛାତିରେ ଜମାଇ
ଘନକୁନ୍ତଳା ତୋ କୃପାଧରକୁ କମ୍ପାଇ
ମହାସୁଖ ଜନମାଇ ରେ । ୨ ।
ସହି ସହିପାରୁନାହିଁ ମୁଁ ମାର ବଢ଼ାଇ
ପ୍ରସରୁଛି ଯା ପ୍ରତାପ ପତାକା ଉଡ଼ାଇ
ରଣ ଧରଣୀରେ ତାକୁ ତା'କରୁ ଛଡ଼ାଇ
ଅଜ ଦେବା ଘଉଡ଼ାଇ ରେ । ୩ ।
ମୋ ସପତଟି ରେ ମନମୋହନ ମୂରତି
ରସବତୀ ଅଙ୍ଗେ କର ମୋ ଅଙ୍କ ଭରତି
ଥିଲେ ଏବେ ସମ୍ଭାଳିବା ପୀଡ଼ାରୁ ବିରତି
କରି ସିନା ପୁଣି ରତି ରେ । ୪ ।
ମଦନମୋହନ ବାଣୀ ଶୁଣି ସବିଳାସେ
ବଦନ ନୁଆଁଇ ଲାଜ-ମିଶାମିଶି ହାସେ
ରହିଲେ କିଶୋରୀ ସେ ସମସ୍ତ ତାପନାଶେ
ଅଷ୍ଟଦୁର୍ଗନାଥ ଭାଷେ ରେ । ୫ ।

———

( ୧୫୫ )

ରାଗ—ଦେଶାଖ—ତିପୁଟା

ଦନେ ଦନେ କାହିଁକି ରୁଷେ,
ଧନ ! ମନ ତେଜେ ନାହିଁକି ରସେ । ଘୋଷା ।
ଅଭିନବ ଏ ଯଉବନ ଦେହଛବି କୁସୁମ-ବନ
ଗୁଣଗଣମୟ ବଦନ ଏଥିରେ ତ ଛିଷା ଯଣେ ବରଷେ । ୧ ।

ଘେନାଛୁ ମୁଁ ମାନସେ ଏହା ନୁହେଁ ନାସ୍ତି ସେ ମୃତ୍ୟୁଦେହା
ସେ ପରଶମଣି ମୁଁ ଲୁହା ମୁଁ ସୁନା ବନାଛୁ ତାଙ୍କ ରମ୍ୟରସେ ।୨।
କାମମଦ ପ୍ରବାହେ ପଡ଼ି ଦନ୍ତେ ଦନ୍ତ ହୁଲୁଳେ ଭିଡ଼ି
ଦେଇଥିବ ରଦନ ପୀଡ଼ ବସିଲା ଦଶିଲା କା ଆଦରଣେ ।୩।
ପ୍ରିୟସଖୀ ଅଗେ ଏ ଗିର କହେ ଅଷ୍ଟଦୁର୍ଗ ଭୂବର
ରମାସ୍ୱିତ ବର୍ତ୍ତ୍ଵର ମୋର ମେରୁତୁଲ୍ୟ ଧୃତ ହୁଏ କା ରସେ ।୪।

---

( ୧୪୬ )

ରାଗ—କେଦାର—ଅଦ୍ଧତାଳ

ଦୂର୍ବାଦଳ ଶ୍ୟାମ ହେ,
ଦୁର୍ବାଦ ଲଭିବାକୁ କା ଏସବୁ ଉଦ୍ୟମ ହେ । ୦ ।
ଜଗାଇ ରଖିଲ ନିଶୀଥିନୀ ତିନି ଯାମ ହେ
ଭଗାଇ ହସାଇ ଦେଲ ତୁମ୍ଭେ କା ଉଦ୍ଧାମ ହେ । ୧ ।
ବେଶହାସୀ ବେଦୋସୀ କରାଇବା କ୍ଷମ ହେ
ଯା ହେତୁରୁ ପ୍ରବଳଇ ଯୁବା କା ସେ ଯମ ହେ । ୨ ।
ନୋହିଥାନ୍ତ ଏକା ଯେବେ ଜଗଦଭିରାମ ହେ
ମଣ୍ଡିରେ ମହିଳା କେ ସ୍ମରନ୍ତା ତୁମ୍ଭ ନାମ ହେ । ୩ ।
ମାର ମାର କର ବିଭ୍ରବଣି ଅବିରାମ ହେ
ଭ୍ରମି-ଯଜ୍ଞବନାକୁ ଯେ ସାରିଦେଲା କାମ ହେ । ୪ ।
ନିଃଶ୍ୱାସୁଁ ସହାସ ହେଲେ ନ କଲ ମରମ ହେ
ବିଶ୍ୱାସଘାତୀ ଗୁଣରେ ତୁମ୍ଭେ ନିରୁପମ ହେ । ୫ ।
ଫୁଲେଁ ମଦେ ଘେନି ହୃଦେ ତୁମ୍ଭ ଦମ୍ଭ ପ୍ରେମ ହେ
ଏବେ କହିବ ମୋ ସଖୀ କାହା ଅଗେ ତମ ହେ । ୬ ।
ଶୁଣି ହସିଦେଲେ ରସିକଙ୍କ ସାର୍ବଭୌମ ହେ
ବାଲିକେଶ ଦେବ ବୋଲେ ମଣ୍ଡିନାଥୋତ୍ତମ ହେ । ୭ ।

---

( ୧୫୭ )

### ରାଗ—ମୁଖାରୀ—ଝୁଲା

ହୂଡ଼ି ଚଳ ରେ, ଭୂତଦାୟିନୀ ବିନା କେ ବଳ ରେ ।
ସୁତୀକ୍ଷ୍ଣ କଟାକ୍ଷ କକ୍ଷା କର ରକ୍ଷା କରିବାରେ ଭାଳ ରେ । ଘୋଷା ।
ଚରମାଚଳଚୂଳ ରବି ମଣ୍ଡଳି ଛଳ କରିବାକୁ ଗୋଳ ରେ
କିଂଶୁକରୁଚି·ଅଂଶୁକ ପାଗ ବାମ ଥୋଇଲାଟି ଅନୁକୂଳ ରେ ।୧।
ସାକ୍ଷାତରେ ଦେଖା ହୋଇଛୁ ପ୍ରତ୍ୟକ୍ଷ ବିଖ୍ୟାତ ଯା ମତ ଦଳ ରେ
ବକ୍ଷ ଲକ୍ଷକୁ ତୀକ୍ଷ୍ଣ ମୁଖ ଶିଳ୍ମୁଖ କଳ୍ପିଛୁ ଯା ବାଣ ଫଳ ରେ ।୨।
ସାରିଦେଲଣି ମଙ୍ଗଳ ଦେବାର୍ଚ୍ଚନ ବିଜୟ ଅଳସ କାଳରେ
ପୂର୍ଣ୍ଣମୃଗାଙ୍କ ରଜତ ଥାଳି ଅଙ୍କ ନିର୍ବାପନ ଧୂମଜାଳ ରେ ।୩।
କହିବୁ ସୁଦୟା ଥିଲେ ସହୃଦୟା ଅଷ୍ଟଦୁର୍ଗ ମହୀପାଳରେ
ଉରଜ ଉଲଟ ଘଟ ବେଣୀ ଫଣୀ ଦେଖାଇ ତା କୁଭେ ଟାଳରେ ।୪।

———

( ୧୫୮ )

### ରାଗ—କେଦାର—ଆଠତାଳି

ଦେଖ ଦେଖ ସଙ୍ଗାତ, ନନ୍ଦନନ୍ଦନ ଚନ୍ଦନଯାତ ଲୋ । ପଦ ।
କି ମାନୁଛୁ ଦିବ୍ୟମୋତି ଝାଲରିଆ ବିମାନମାନଙ୍କେ ରହୁ ଲୋ
ପଞ୍ଚ ମହାଜନେ ମଞ୍ଚମଣ୍ଡଳରେ ପାଦ ଦେଉଛନ୍ତି ଦହୁ ଲୋ । ୧ ।
ଚାହିଁ ଏ ମଦନମୋହନ ବଦନ ଚନ୍ଦ୍ରଶୋଭାସୁଧା ଚାଖି ଲୋ
କୁଣ୍ଡଳୀମଣ୍ଡଳ ପ୍ରଭୁ ଅଖଣ୍ଡଳ ଲୋଡ଼ୁଛନ୍ତି ଲକ୍ଷ ଆଖି ଲୋ । ୨ ।
ଅହିନାଥଙ୍କ ସହିତେ ଅସିଛନ୍ତି ବହୁ ବିଷଧରଚୟ ଲୋ
କେ ସେ ଫଣାମଣି କେ ମଶାଲଶ୍ରେଣୀ ହେଉନାହିଁ ପରିଚୟ ଲୋ ।୩।
ଗଜଦ ନବାଧୂ ବୋଲି ଶ୍ରୀଅଙ୍ଗକୁ ଚଢ଼ିଦଳେଙ୍କ ସହିତେ ଲୋ
ଅମରଙ୍କ ଶ୍ରେଣୀ ଚାମର ଆଶ୍ରେଣୀ ଅଲଟ ଖଟନ୍ତି କେତେ ଲୋ । ୪ ।
ମାପ ଅଛି କି ଏ ସୁଷମା ରମାର ଯା'ପରି ନୁହଇ ତଳେ ଲୋ
ଯା' ପାଦକଞ୍ଜ କଞ୍ଜସୁତ ବନ୍ଦେ ସେ ଗୁପରେ ଖେଳୁଛନ୍ତି ଜଳେ ଲୋ ।୫।
ନେବେ ମନ୍ଦରକୁ ଏବେ ସୁନ୍ଦରକୁ ସହି ସଙ୍ଗତେ ବୁଲାଇ ଲୋ
ଅଳ୍ପ ଯେବେ ହସିଦେବେ କେ ସୁକେଶୀ ରହିବ ସତୀ ବୋଲାଇ ଲୋ ।୬।

ବାଜାଉଛନ୍ତି ତୁଳେ ବାଦ କର ଗେଲେ ଗଉଜେ ସିନ୍ଧୁ ଅମନ୍ଦେ ଲେ
ଅଷ୍ଟବର୍ଗପଣ୍ଡିତ କର ଯୋଡ଼ିଛନ୍ତି ଭଲେ କି ସୁନ୍ଦର ବନ୍ଦେ ଲୋ । ୭ ।

———

( ୧୬୯ )

ରାଗ—ତୋଡ଼ି—ଏକତାଳି

ଦେଖା ରେ ମୁଖ ବାରେ ସୁଖସଦନା । ଘୋଷା ।
ମାନ କି ମାନଇଁ ବାନ୍ଧବୀ ତୋହର ପାଲଟ ପାଟ ରଖାରେ
ଏଣୀବିଲୋକନୀ ଏଣିକି କେଣିକି ଘୂର୍ଣ୍ଣୁ ନୃତ୍ୟ ଶିଖା ରେ । ୧ ।
କେଶବ ତୋ ସର ମଧ୍ୟ ତୁଳାକରି ହେବ କି ଚନ୍ଦ୍ରଲେଖାରେ
ତୋଷ ବହ ନିଜ ଦାସର ଦୋଷକୁ ମୁଞ୍ଚ ତୁ ନୃତ୍ୟ ଶିଖାରେ । ୨ ।
ହର ମନୋହର ସାର ପୟୋଧର ଚନ୍ଦ୍ର-ବଦନ ଲେଖାରେ
ଯାବକରଞ୍ଜିତ ପାଦତଳଗତ ତୋ ଅନୁରାଗ ଶିଖା ରେ । ୩ ।
ଛାମଜଲେ କବି-ଭୂପ୍ପର ଭୂଷଣ ଟୋ କୁଚକୁମ୍ଭ ଦେଖା ରେ
କୋଳକର ରସଭୋଳ ହେବ ତୋଷ ଦୌଲତ ବନ୍ଦ ଶିଖା ରେ । ୪ ।

———

( ୧୭୦ )

ରାଗ—କାମୋଦୀ—ଏକତାଳି

ଦେବ ମୁଁ ପରାଣକୁ ବରଜି ଗୋ,
ବୁଝ ତୁ ଥରେ ଶ୍ୟାମ ମରଜି ଗୋ । ଘୋଷା ।
ପିଇ ଜୀଇବ ବୋଲି, କେତେ କଷ୍ଟରେ ଥିଲି
ପୀୟୂଷ ବଧପାନ ସରଜି ଗୋ,
ସହି, ମୋତେ ନ ସହି- ପାରଚି ତହିଁ ନେଇ
ଦେ ଦେଲା କାଳକୂଟ ପରଜି ଗୋ । ୧ ।
ଧନ-ଜୀବନରଖ୍ୟ, ପ୍ରିୟ ବାନ୍ଧବ ଭୟ,
ଜାତି, ମହତ ଆଶା ବରଜି ଗୋ,
ସଜନୀ କୋଟିକାମ, ବଗ୍ରହଜଣା ଶ୍ୟାମ-
ସଙ୍ଗତେ ଥିଲି ପ୍ରେମ ଅରଜି ଗୋ । ୨ ।

ମୋ ତନୁଁ ରୂପବତୀ, କେଉଁ ବ୍ରଜଯୁବତୀ,
ଧନ୍ୟ ତା ପ୍ରୀତିରେ ସେ ଭରଜା ଗୋ,
ଫିଟାଇ ନେଲ୍ଲ ମନ, ମୋହଠାରୁ ମୋହନ,
ସିଇଁବାଠାରେ ସ୍ମର ଦରଜା ଗୋ । ୩ ।
ଚଞ୍ଚଳ ବବ୍ରୁୟଲେଖା, ସହୃଦେ ଦେଇ ଦେଖା,
ବରସ୍ତ୍ରୀ ସମ୍ପ୍ରଦାୟ ତରଜା ଗୋ;
ଶ୍ରୀଜଗଦ୍ଦେବ ଦୁଃଖୀ, ଭଙ୍ଗେ ସଜନୀ ଦେଖି,
ଘୋଟିଅଛନ୍ତି ଘନ ଗରଜା ଗୋ । ୪ ।

---

( ୧୭୧ )

ରାଗ—କଲ୍ୟାଣ—ଆଠତାଳି

ଦୋଷ ବିନା ମୋ ନବୀନା ରୋଷ କିପାଇଁ ବହିଲ୍ଲ ରେ । ଘୋଷା ।
ଗୋଲ୍ଲଇ ନାଗରୀମେଳେ, ଗଜଗ୍ରାଜଗତି ଗଲ୍ଲବେଳେ,
ମୋଆଡ଼କୁ ଫେରି ଥରେ,- ହେଲେ ମୋତେ ନ ଗୃହିଲ୍ଲ ରେ । ୧ ।
ମନୋହର ବେଶ ପାଇଁ, ସୁମନସ ଖୋଜି ଦେଲି ନେଇ,
ତା ନ ଘେନି ଜୀବଧନୀ, ମଥା ପୋତିରହିଲ୍ଲ ରେ । ୨ ।
ବନେ ବସି ସଖୀ ସଙ୍ଗେ, ହରୁଥିଲ୍ଲ କାଳ ନାନାରଙ୍ଗେ,
ସେ ସମୟେ ମୋତେ ଦେଖି ହସି ଭ୍ରୂ ତ ନୋହିଲ୍ଲ ରେ । ୩ ।
ତା ପ୍ରୀତି ଲଭିବା ବନୁ, ଲବେ ନ ମାନଇ ଫୁଲଧନୁ,
ସେ କପଟ ସହ ବୋଲି ବାଧ୍ୟ ଏହା କି ଲହିଲ୍ଲ ରେ । ୪ ।
ନସହୁ ମୋର ତ ଶିଖି, କି ବଶ୍ଚିବ ସେ ତ ଦୋପ କରି,
ମୋଦେ ପଞ୍ଚଶରେ ରତି ତାକୁ କି ଅବା କହିଲ୍ଲ ରେ । ୫ ।
ବୋଲେ ଅଷ୍ଟଦୁର୍ଗନାଥ, କି କରିବି ନନ୍ଦଶଇ ପଥ,
ଗୃହୁଁ ଗୃହୁଁ ଦଣ୍ଡଦଣ୍ଡ କାମ ଅନ୍ଧାର ପିହିଲ୍ଲ ଟେ । ୬ ।

---

## ( ୧୭୨ )

### ରାଗ—ବରାଡ଼ୀ—ଏକତାଳି ।

ଧନରେ, ଅବଶ୍ୟଟି ମୁଁ ବନରେ କରିବି ସ୍ଥାନ
ମନରେ କି ଘେନ ପରିଜନରେ କରିଛୁ ମାନ । ଘୋଷା ।
ମୁହିଁ ନଅନାଇଁ ମୋର ନୁହ ଲଜ୍ଜାଙ୍ଗୀ ବିଶେଷରେ
ଲକ୍ଷ ନ ବୁଝାଇ ସରୋରୁହ ନୟନରୁ ହସ ରେ । ୧ ।
ବଦନ ପୋତି ଯା ଚାଲି ନଖପଦ-ନଖକୁ ଧରାରେ
ରଦନେ ଚେଲ କାମୁଡ଼ି ମଦନ ମୋ ଜରେ ମରି ରେ । ୨ ।
ନ ଧର ବେଶ ମୋ ଅଙ୍ଗକୁ ଧର ତୁ ଉତ୍କଳଶମ୍ପା ରେ
ବଧର ବଗୁରେ ମୋର ନ ଧର ବିମ୍ବ ନ କମ୍ପା ରେ । ୩ ।
ହରଷ-ବିହ୍ୱଳ କ୍ଷଣି ବରଷ ହୁଏଟି ଜାଣ ରେ
ନରସ କୋଧେ ଦୂରିଅ ତରସ ମୋର ତୁ ପ୍ରାଣ ରେ । ୪ ।
ଛବି ରମଣୀମଣ୍ଡନା ଅବିରତ ରତିମନା ରେ
ଅବିରସ ନେନେ ଅନା ଜଗଦ୍ଦେବଙ୍କ ନବୀନା ରେ । ୫ ।

———

## ( ୧୭୩ )

### ରାଗ—ପୂର୍ବୀ—ଅଠତାଳି

ଧନ ଜାଣନ୍ତି ତୋ ମନର ଭିତର ଚାଲି,
ଅନଳସ ଚନ୍ଦ୍ରାନନ କେଡ଼େ ସୁଖ ଜନମାଇ ଦେଲେ ଭାଲି । ଘୋଷା ।
ଜଣାଗଲା କୋ ବଣାମୃଗାକ୍ଷୀଙ୍କି ବ୍ରଜବନ୍ଧୁ ପରିମାଣ
ରଖିଥିବା ପ୍ରିୟସଖୀ ତାଙ୍କୁ ସୁଖ ଦେବାପାଇଁ ଏକା ପ୍ରାଣ । ୧ ।
ହଜୁଥିବା ଦନ ନିଶା କରି ଘନଶ୍ୟାମ ସେବାକୁ ଅଜୀବ
ଚୁମ୍ବୁଥିବା ମହାପ୍ରମୋଦରେ ତାହାଙ୍କର ଚରଣ ରାଜୀବ । ୨ ।
ଗୁରୁଜନ ଉରଜନରୁ ନଡ଼ର ସ୍ୱରୂପବର୍ତ୍ତିଏ ଆଜ
କୁଳରୁ ଅନ୍ତର କରିଦେଲେ ଡର ମୂଳରୁ ଉପୁଡ଼ି ଯାଉ । ୩ ।
କେ କର କା'ତୁଣ୍ଡେ ଦେଉଥାଏ ଦାଣ୍ଡେ ରାଣ୍ଡେ କରୁଥାନ୍ତୁ ନିନ୍ଦା
ବାଉଜକେଶବର ପରିବାଦ ବରନାରୀଜନମର ଫନ୍ଦା । ୪ ।

ଠେକ କ ବୋଲ ଘୋଷେ ପାଶୋର ନୁହେଁ ସେ କେକାଙ୍କାଲରଅ ତୂଳ
କିଛି ନୁହେଁ ବଡ଼ ବାନ୍ଧବୀ ଜୀବନ ଶ୍ୟାମପ୍ରେମ ଏକା ମୂଳ । ୫ ।
ଅପବାଦ ଭୟ କିଶୋର ପ୍ରଣୟ ବୁଝେଁ ଭୁଜଙ୍ଗ ନକୁଳ
ଅଷ୍ଟବୁର୍ଗ ହରହୃଦ୍ୟଙ୍କର ହର ଚରଣାମ୍ବୁଜ ସକଳ । ୬ ।

---

( ୧୭୪ )

ରାଗ—କାମୋଦୀ—ଏକତାଳି

ଧନ ଘନରସ ବରଷିଲ ରେ, ଚଞ୍ଚଳା ଜ୍ୟୋତ ପ୍ରକାଶି,
ଭୁବନେ ଜଳଣ ସରତ ବଢ଼ିଲ ଦମ୍ଭ-ଦ୍ରୁମ ଗଲ ଭାସି । ଘୋଷା ।

ପୁଲକ କଦମ୍ବ ପ୍ରଫୁଲ୍ଲ ହୋଇଲ
ନାଚଲ ବେଣୀ-ମୟୁର,
ଛୁଡ଼ ମୋତିମାଳ ଦଶେ କି ଚଞ୍ଚଳ
କି ସେ ବକପନ୍ତି ପର । ୧ ।
ଖରଶ୍ବାସ ଝଞ୍ଜା ପବନ ପ୍ରସରେ
ଜନ୍ମାଏ ବଚନେ ମଲ,
ଅଙ୍ଗ-ଅମୋଦ ମାଳତୀ ବିକାଶର
କି ପ୍ରସନ୍ନ ରସବଲ୍ଲୀ । ୨ ।
ନଖକ୍ଷତ ରକ୍ତ ଇନ୍ଦ୍ରଗୋପ ବ୍ୟକ୍ତ
ଦିଶିଲ ଅତ୍ୟନ୍ତ ରୁଚିର,
ସ୍ୱେଦବିନ୍ଦୁଛଳେ କରକା ନିପାତ
ବୃଷ୍ଟି ଜଳଧାର ପର । ୩ ।
କଟିଘଣ୍ଟି-ଭେକ ପ୍ରକଟି ରଟିଲେ
ଚଳେ ପୀନ ପୟୋଧର,
ଭୂଷଣ ରତନକିରଣେ କି ଜ୍ୟୋତ-
ରିଙ୍ଗଣଗଣ ପ୍ରଚୁର । ୪ ।
ହୀରକକରଙ୍କ ଛାଠଙ୍କ ଅଠକ
ନ ରହ କଣ୍ଠରୁ ଗଲ,

ଅବନ୍ତରେ ପଡ଼ି ଶିଲୀନ୍ଧ୍ରକୁସୁମ
ଫୁଟିଲା ପର୍ବ୍ବତ ତଳେ । ୫ ।
ନୀଳ ପୀତ ରକ୍ତ ମଣ୍ଡିତ କୁସୁମ—
ପ୍ରାୟ ନଷ୍ଟେ ଇନ୍ଦ୍ରଧନୁ,
ବୋଲେ ବନ୍ଧୁସୂର୍ଯ୍ୟ ଅନଙ୍ଗ ଅନଳ
ଲଭିଲା ହୃଦବନୁ । ୬ ।

———

( ୧୭୪ )

ରାଗ—ପଞ୍ଚମ ବରାଡ଼ି—ତ୍ରିପୁଟ।

ଧନ୍ୟ ହେ ନବକିଶୋର, ହସ୍ତୀ-ମତ୍ତ-ଧୃତ ଶ୍ରେଷ୍ଠର,
ନିଖିଳ ନାଗର ଶିରୋମଣି,
ତୁମ୍ଭ ସଦୟ ମାନସ, କୁଳଶତ୍ରୁ କରକଣ—
ବୋଲି ନଥିବାରୁ ଅମ୍ଭେ ଜାଣି ହେ ଶ୍ୟାମବନ୍ଧୁ,
ଅମ୍ଭ ସଖି ଲଭିଲା କି ଦଶା
ଦମ୍ଭେ ଜଣ୍ଣହେବା ନାହିଁ ଆଶା,
ଦେଲେ ତରୁଣ କେଶରୀ, ତୋଳେ କୁରଙ୍ଗୀ କିଶୋରୀ,
ଧଶଇ କି ବଞ୍ଚିବା ଭରସା ହେ । ୧ ।
ତୂଳି ତଳପ ଶେଯାଇ, ଦେବାର କୋମଳ ଜାଇ-
ଦଳ ଯାହା ଅଙ୍ଗେ ବସେ ଗୁଡ଼ି,
ମରକତ ଅଚଳ, ବଳିଷ୍ଠ ବାହୁଯୁଗଳ
ଲଗାଇ କେଡ଼େ ନିବଡ଼େ ଭିଡ଼ି ହେ ଶ୍ୟାମବନ୍ଧୁ,
କି ଚଞ୍ଚଳ ଭାବ ଥିଲା ଭାଲି
ବାଜି ତୁମ୍ଭ ଅଙ୍ଗ-ସଙ୍ଗଭାଲି ।
ଉନ୍ମତ୍ତ ମନମଥ- ବିଜୟୀ ମଙ୍ଗଳ ରଥ—
ତେଶ୍ଚିତ ଶ୍ରେଷ୍ଠରଙ୍କୁ ଗୁଲି ହେ ।୨।
ଯେଉଁ ଅଧର ପଲ୍ଲବେ, ଲେଖାଇ ନଖରେ ଲବେ,
ମୃଗମଦ ପଙ୍କେ ଲୀଳାଭଙ୍ଗୀ,

ତୁମ୍ଭ ମହମାରୁ ଅଙ୍ଗୀ-　　　　ଢାଳ କରନ୍ତୁ ସୁଭଙ୍ଗୀ,
ତହିଁ ସୁଅଙ୍ଗିଆ ବସ୍ତ୍ର ଭଙ୍ଗୀ ହେ ଶ୍ୟାମବନ୍ଧୁ,
କଶୋଗ୍ରୀକ କର ଢଲଢଲ,
ତୁମ୍ଭ ସୁଖ ତୁମ୍ଭେ ଖେଡ଼ା କଲ,
ହେମ ନବନୀତ ବଲ୍ଲୀ,　　　　କେହ୍ନ ସନ୍ଧବଟି ବୋଲି
ହୃଦୟରେ ଦୟା ନବହିଲ ହେ ।୩।
ମହା ମହୀଧର ଧର,　　　　କଲ ଅତପନ ପର,
ଯେଉଁ କର ସେ ମୃଦୁ ବୟସେ,
ସେ କରରେ ଯେବେ ଘନ-　　　　କେଶା ସମର୍ପିଲ ସ୍ତନ,
କ ବଚନ ଦଳାଦଳ ରସେ ହେ ଶ୍ୟାମବନ୍ଧ,
ଫିଟି ତୁଟିଯାଇଛୁ କାଞ୍ଚଲ,
ସଞ୍ଚାଶର ଚଞ୍ଚୁପୁଟ ଗଲ,
ଲୁଟିଯିବା ଚକ୍ରବାକ-　　　　ମିଥୁନ ମାଧୁର୍ଯ୍ୟାକ,
ବାଳା ପୟୋଧରେ କରେ କେଳ ହେ ।୪।
ଅନ୍ୟାୟୁ ତମିର ହଂସ,　　　　ଭୋଜବଂଶ ଅବତଂସ,
କଂସ ଶାସୁଅଛୁ ବସୁମତୀ
ତୁମ୍ଭେ ଧନବନ୍ତ ଘବ-　　　　କୁମର ହୋଇ, ତୁମ୍ଭର
ମାନସେ ନୋହିଲ ଲବେ ଭ୍ରାନ୍ତି ହେ ଶ୍ୟାମବନ୍ଧୁ,
କଶୋଗ୍ରୀକ କର ବଟାବଟି,
ଅସମ୍ଭବ ଭାବେ ହଟାହଟି,
ଫିଟାଇ ନାତମ୍ବ-ପେଟି,　　　　ନିବଡ଼ ନୀବାକବାଟି,
ମଦନ ମନ୍ଦର କଲ ଲୁଟି ହେ ।୫।
ଥରକେ ତ ଜଣାଗଲ,　　　　ଏଣିକ କରୁପେ ଭଲ,
ପାଇବ ମୋ ପ୍ରିୟସଖୀ ପାଶ,
ବୁଝିବା ତୁମ୍ଭର ବଂଶୀ,　　　　କପଟ ବିବେକଧ୍ୱଂସୀ,
କେମନ୍ତ ମୋହନ ମନ୍ଦହାସ ହେ ଶ୍ୟାମବନ୍ଧୁ,
କେଡ଼େ ତୁମ୍ଭ ବଚକ୍ଷଣ ଭାବ,
ସବୁ ତ ଏଥର ଜଣାଯିବ,
ବୋଲେ ମହୀପତିଶ୍ରେଣୀ—　　　　ମୁକୁଟ ମସ୍ତକ-ମଣି,
ଗଜପତି ଶ୍ରୀମୁକୁନ୍ଦଦେବ ହେ ।୬।

( ୧୭୭ )

ରାଗ—ଚୋଖି ଜଙ୍ଗଲା—ଏକତାଳି

ଧନ ହେ, ଘନଶ୍ୟାମ ଗୋରି
ନୂଆ ନାଟ ଟିଏ ଦେଖିବା ପରି ହେ । ଘୋଷା ।
ତାଳି ବଜାଇବେ ବଲ୍ଲଭ ବାମା
ବଜେ ଭରିଛନ୍ତି ଦେଖିବେ ମାମା ହେ ।୧।
ଅମ୍ବ ଭଦନ ରମ୍ଭା ପରଶୁଛି
କାହିଁ ଲଜକୁଜନୁଆଁ ହସୁଛି ହେ ।୨।
ମୋ ଭର ଧରାଧର ଧରଧର
ଦେଵଛି ଖଣ୍ଡ ସର ସରସର ହେ ।୩।
ଜଳଜ ପାଖେ ଭଲ ହଂସରୁତ
ହେଉ ମଞ୍ଜୁଳ ମଞ୍ଜିର ସିଞ୍ଜିତ ହେ ।୪।
କି ରମ୍ୟ ଭଙ୍ଗୀ ନାଚଯାଉ କି ନା
ତା ତା ଥେଇ ତା ଧିନା ଧିନା ହେ ।୫।
ଶ୍ରୀକୃଷ୍ଣଚନ୍ଦ୍ର ଏପରି ନାଚଲେ
ଅଷ୍ଟବୁର୍ଗ-ପୁରନ୍ଦର ବଶଲେ ହେ ।୬।

———

( ୧୭୭ )

ରାଗ—ଅଶାବରୀ—ଅଡ଼ତାଳି

ଧନ, କେମନ୍ତେ ମୂର୍ଚ୍ଛିବ ରେ ମନରୁ ନଗଲୁ କ୍ଷଣେ ।
ଶୟନେ ସ୍ୱପନେ ବସିଲୁ ନୟନେ ଜଡ଼ିଲୁ ତୁ ଅନୁକ୍ଷଣେ । ଘୋଷା ।
ତୋ ରୂପ ପଟରେ ଲେଖି ଉରପରେ ନରଖିଲେ ନିଦ୍ରା ନୋହେ
ଲଭିବାରୁ ଅନ ଅରେ ଜୀବଧନ, ନଯାଇ ଏ ଦେହ ସହେ ।୧।
ବାସଦେବ ଯାଇ ଗଙ୍ଗାସାଗରରେ ଏ ଜନ୍ମେ ଭେଟ ନୋହିଲେ
ଦାସ ହୋଇଲେ ତ ବାସବ ପଣକୁ ବାଞ୍ଛା ନାହିଁ ମୋର ଛଳେ ।୨।
ବସିଲେ ବସିବ ଅପବାଦ ହାଟ ହସିଲେ ହସିବେ ଲୋକେ
ନାଶିଲେ ନାଶିବେ ସକଳ ସମ୍ପତ୍ତି ଭାସିଲେ ଭାସିବି ଶୋକେ ।୩।

ହେବ ଶିରଚ୍ଛେଦ ନୋହିବ ବିଚ୍ଛେଦ ଏହି ଚିନ୍ତା ଅନୁକ୍ଷଣ
କ୍ଷୋଭ ହେଉଥିଲେ ଲୋଭ ବଢ଼ୁଥାଇ ଗୃହୁଁ ଗୃହୁଁ ଶତଗୁଣ ।୪।
ବାମ ହେଲେ ହେବ ଗୁରୁ ଗୁରୁଜନ ମୂର୍ଚ୍ଛିବା ପଦାର୍ଥ ନୋହୁ
ବୋଲେ ଜଗଦ୍ଦେବ ଶ୍ରୀ ହରିଚନ୍ଦନ କି ଦୁଃଖ ଦେବ ସେ ଦେଉ ।୫।

---

( ୧୬୮ )

ରାଗ—କାମୋଦୀ—ଝୂଲ

ଧରାଶିର ଚମ୍ପାଙ୍ଗସ୍ୱ ରେ, ଧନ ମୁଁ ତୋ କିଣାଜନ ପସ୍ୱ ରେ । ଘୋଷା ।
ତୁ ରୁଷିଲେ କାହିଁ ମୋ ସୁଖ, ବନ୍ଧୁ ତୋର ଏକା ଶ୍ରୀମୁଖ
ଅଗଣର ସୁଧା ମୟୂଖ; ସୁରନାରୀଙ୍କ ମୁଁ ମଣେ ତୋର ରେ ।୧।
ରଚି ସ୍ମିତ ସୁଧା ବରଷ, ଖର ବଚନରେ ନରସ
ଅଚଳ ମୋ କୁହାରେ ରସ, କ୍ଷୁଣ୍ଣିଲଟି ତୋ ଗୁମାନ ଖରରେ ।୨।
ମସ୍ମି ଗୃହଁ ହୋଇ ବିରସ, କହୁ ନୋହେ ମୋହିବା ବେଶ
ବହିବାକୁ ମୋରେ ବିବଶ, ମାନିଲି କି ପିକଦାମୀ-ଧରରେ ।୩।
ମସ୍ମି ଜଡପତି ଯିତକି, ଜଣାଉଛୁ ନିତନିତକି
ତୋର ମୋର ପ୍ରୀତିରୀତକି ସାକ୍ଷୀ ସିନା ଏକା ଅଖିଠରେ ।୪।
ଅସ୍ତୁଦୁର୍ଗ ଭୂପତି ଭଣି, ବିନତି ଶ୍ରୀ ଶ୍ରୀମତୀ ଶୁଣି
ଧରି ଶ୍ୟାମ ମହେନ୍ଦ୍ର ପାଣି ମିଶାଇଲି ଜରେ ଭୁଷାହାରରେ ।୫।

---

( ୧୬୯ )

ରାଗ—କାମୋଦୀ—ଅଠତାଳି

ନ କରିବୁ ଊଣା ପ୍ରୀତି ଗୃହରେ
ତୋତେ ସିନା ଜଣା ପ୍ରୀତିଗୃହ ରେ ॥ ପଦ ॥
ସ୍ୱାମବାଲୁକା ଥାଉ ଥାଉ, ତୁହିଁ ନଯାଉ ଲୋଉଡ଼ୁ ମୋର କଠାଉ—
ଉଲ ଝଡ଼ା ବାଲିରେ ॥୧॥

ଘୁଡ଼ ରଖି ନିରତେ ଜଣାଇବାକୁ ମୋତେ
ପଞ୍ଚ ବାହୁ ସେ ଶତ୍ରେ ଚଦାରଙ୍ଗ ପାଲ୍‌ରେ ॥୨॥
ଅରମ୍ଭ ପରିରମ୍ଭ, ସ୍ତନ କନକ କୁମ୍ଭ
ହାରାବଳୀ ନ ରଖି କରିଥାଉ ଖାଲରେ ॥୩॥
ନଦେଉ କେଉଁ ତୋଷ, ହୋଇ ସମନ୍ଦ ହାସ
ଗୃହୁଁ ଯା ଅଭଳସ ଯବନିକା କାଲ୍ ରେ ॥୪॥
ଶ୍ରୀ ଜଗଦ୍ଦେବ ଭାଷେ ଅଜ ଯାଉ ଏ ରସେ
ଧନ ରେ ମୁଁ ତୋ ବଶେ ଅସିବଟି କାଲ୍ ରେ ॥୫॥

---

## ( ୧୭୦ )

ରାଗ—କାମୋଦୀ—ଏକତାଳି

ନବନୀରଦ ନୀଳଦେହ ମୁଖେ ଚୁମ୍ବନ ଦିଅ ମାଧୋଇ । ଘୋଷା ।
ତୋର ସୁଧାଧର ପାନ ନ କରିଣ ନ ରୁଚଇ ମୋତେ ଏ ଚନ୍ଦ୍ରଚନ୍ଦନ
ନିରୁପମାନ ସୁଧାକରାନନ ମନ୍ଦମନ୍ଦହାସ ଶୋଭନ
ଧରଣୀଧର ଧର ମୁରଲୀ ମୋହନ ପ୍ରାଣଧନ ତୁ ତୋଷମନ ॥୧॥
ଦେଖ ଏ ବସନ୍ତକାଳ, ମନ୍ଦମନ୍ଦ ଏ ମଳୟାନିଳ
ଏ ପଞ୍ଚବାଣ ଚଳ ଚଣ୍ଡକାଣ୍ଡ, ଖଣ୍ଡ ଖଣ୍ଡ କରି କାଟୁଛି ପିଣ୍ଡ
ଗୋପିକା ଜନ ଦୁଃଖ ହାରଣ, ମନ୍ଦଗତି ଜିତ ମତ୍ତବାରଣ
ମନ୍ଦଭନୁଜସ୍ପ ଭଭସ୍ପ ଧାରଣ ନାଥ ମୋହର ବିରହ କାରଣ ॥ ୨ ॥
ପ୍ରାଣନାଥ ଏ ତୋ ରୀତି, ମୁଁ ଯେ ନ ଜାଣି କଲି ପୀରତି
ଏ ଚନ୍ଦ୍ର କିରଣ ଅନଳ ସମାନ, ଛାଡ଼ ପ୍ରାଣନାଥ ଏ ତୋ ମାନ
ଶୁଣ ନାଗରବର ଏ ମୋର ଉତ୍ତର
ତୋ ବିରସ ଅଭିମାନ ହରିକର
ନିତ୍ୟକରୁଣା କର ହେମନସାଗର
ମୋ ବିନସ୍ତ ଘେନଘେନ ରସିକାବର
ଶୁଣି ସନ୍ତୋଷ ମୁରଲୀପାଣି ରାଧେ କହନ୍ତି ମଧୁର ବାଣୀ
ଅଷ୍ଟଦୁର୍ଗ ନୃପ ଜଗଦ୍ଦେବ ଭଣି
ରକ୍ଷାକର ମୋତେ ପ୍ରଭୁ ଚକ୍ରପାଣି ॥

---

( ୨୭୮ )

ରାଗ—କାନଡ଼ା—ଝୁଲା

ନସୃଜିଲା ଯାହା ସେ, ଭ୍ରୂଯୁଗ ଚପଳ-ଚମ୍ପକବର୍ଣ୍ଣା । ଘୋଷା ।
ମୋ ଧଇର୍ଯ୍ୟ ମୃଗକୁ ପାଞ୍ଚି, ନୟନାନ୍ତ ବରଛି ଅଞ୍ଚି,
ବନ୍ଧୁଅ ବନ୍ଧୁକ ବନ୍ଧୁ ଅଧରରେ ବନ୍ଦ କରି କୁନ୍ଦପସନ୍ଦ ହସ ।୧।
ମୁନିଜନମାନସ ଭୁଲା, ଭଲା ମୋତି ଝଲକ ଝୁଲା,
ବାସବ-ରତନ ନଥ ନରତନ ବସିକା ନାସିକା ପୁଷ୍ପଉଲ୍ଲସା ।୨।
ଧନ୍ୟ କାମ ଅମୋଘ ଶରେ, ମନ-କାରୁଭଙ୍ଗୀ ତାହାର,
କନକାଚଳ ତ ଛନକା ହୋଇବ ସ୍ତନକାନ୍ତି ଦେଖି ତାହା ଭରସା ।୩।
ଅଳଂକୃତ ନିତମ୍ବ ଫର, ଶୋଭା ଲେବେ ଅଳପ ଫେର,
ଅନାଇଲାବେଳେ ବିବେକ ଦଳିଲା କି ବେକତଳିଆ ଲହସା ଖୋସା ।୪।
ଛଣାସୁଧା ବାଣୀ ବିଭ୍ରମ, ଜଣାକଲା ସେ ସବୁ କମ,
ଏଣିକି ଚରମେ ବେଣୀକି ଫଣୀକି ପର ଖେଳାଇବ ବରବରସା ।୫।
ଅଷ୍ଟଦୁର୍ଗ ମହେନ୍ଦ୍ର ଭଣେ, କିଶୋରୀଙ୍କ ଶୋଭା ବାଖଣେ
ଅଖଣ୍ଡ ଶିଖଣ୍ଡମଣ୍ଡନ ମଦନମଦନଦେ ଭାସି କଲେ ପ୍ରଶଂସା ।୬।

———

( ୨୭୯ )

ରାଗ—କାମୋଦୀ—ତ୍ରିପୁଟା

ନବୀନା ସେ ଯାହା ନ ବିନାଣେ ॥
ନ କହୁ ମୋ ହୃଦୟ କେଉଁ ଅସହୃଦୟ
· ଜନ ଜଣାଏଁ ଚିନ୍ତ ମୋ ଲାଘବ,
ରଖି ତା'ଠାରେ ଦୁଃଖ, ପଲ୍ଲବାଏ ମୋ ସୁଖ ॥୧॥
କାହିଁ ମୁଁ ଅପରାଧ, କଲେ ହେଲେ ସଙ୍କୋଚ,—
ହୃଦୟା ନୋହେ ସତେ ଦୟାଳୁ
ସେ ଦିନ କରେ ମୋହଠାରେ ଦ୍ୱିଗୁଣ ସ୍ନେହ ॥୨॥
କ୍ରୂର ନିୟମ ସାରି, ଦିନରେ ଅସି ଧାରି—

ସମ ଅଗ୍ରେ ହନ୍ତୁଥାଏ ଢାଳ,
ନ ଦଣ୍ଡେ ମୋତେ ପ୍ରାଣେଶ୍ବରୀ ଲୁସୁମ ବାଣେ ।୩।
ଅନବସର ଜାଣି, ସେ ବୀଣାକ୍ବଣାବାଣୀ
ପାଶକୁ ନ ଯାଏଁ ମୁଁ ଯେଉଁଦିନ
କେତେ ସରସଭାଷା, ଲେଖି ପୂରେ ମୋ ଆଶା ।୪।
ଶିଷ୍ଟ ପର୍ବ ଭୂଷାର, ଶିଷ୍ଟ ମୁଁ ଗୁଣସାର,
ଅଷ୍ଟବର୍ଗ ରସାର ନାଥ ଭବେ
ଯୋହୁ ମୋହର ମତ, ସେହୁ ଜାଣେ ସେ ପ୍ରୀତ ।୫।

---

( ୧୭୩ )

ରାଗ—କଳହଂସ କେଦାର—ଝୁଲା

ନାଗେନ୍ଦ୍ର ଗତି ଅହା ଘନଜଘନା
ନାରିକେଳକୁ ଗୃହ୍ଣ ପୃଥୁଳ ସ୍ତନା । ଘୋଷା ।
ନାଟ ମଞ୍ଜୁଳ ଖଞ୍ଜରୀଟ ନୟନା
ନାକ ନାରୀଙ୍କ ରୂପେ ଯାହାଙ୍କ ବାନା ।୧।
ନାସେ ମଣ୍ଡିତ ନାସାତିଳ ପ୍ରସୂନା
ନାରିନବହ ରୀତ ବଶ୍ଯଛ ସୁନା ।୨।
ନାୟିକା ଶିରୋମଣି ବରବରନା
ନାହିଁ ତା ଅଙ୍ଗତୁଲ୍ୟ ମୃଦୁ ସୁମନା ।୩।
ନାଥ ନ ଥିଲେ ଯଥା ଦରଅଙ୍ଗନା
ନାଗରୀନ୍ଦ୍ର ମୋ ତଥା ହେଲୁ ଦଶନା ।୪।
ନାଲିକ ଦଳେ କର ଚଳନ୍ତ କଳନା
ନାନା ଉପାୟ ଅଳ କରବେ ସିନା ।୫।
ନାଡ଼ ଓଦର ହୋଇ ଜୀବନ କ୍ଷୀଣା
ନାଦ ପିକର ଯହିଁ ଜୀବନଧେନା ।୬।
ନାସ୍ତିକ ସ୍ବର ମୋର ଅଶ୍ଲେଷ ବିନା
ନାଶ ନ ଯିବ ନାକି ସତେ ନବୀନା ।୭।

ନାଗରିଚ ମାର ହରବାକୁ ଚେତନା
ନାସାପୁଟକୁ ଗୃହିଁଥିବେ ଲଳନା ।୮।
ନାହକ ଅନୁଭବ କଲ ନୂତନା
ନାଗରୀ ଦଶା ହେତୁ ଦୁଃଖ ବେଦନା ।୯।
ନାପୂସି ଭୁଲେ ହୁଏ ବୋଲି ବଚନା
ନାଦାର ହୁଏ ଜଗଦ୍ଧେବ ଚେତନା ।୧୦।

---

( ୨୭୪ )

ରାଗ—କାମୋଦୀ—ଅଠତାଳି

ନବଛଇଳୀ, ଯାଉଛୁ ବିଦେଶ ମୁଁ କାଲି । ଘୋଷା ।
ତୋ ପାଖୁଁ ମୁଁ ଅନ୍ତର ହେବ,—ବୋଲି ଚିତ୍ତରେ ନଥିଲି ପ୍ରାଣବାନ୍ଧବୀ ।
ବିଧାତା ବିଧାନ କଥା, କେ କରିପାରେ ଅନ୍ୟଥା
ଥିବ ମାନ ତୋର ଦିବ୍ୟଚିତ୍ତେ ଅନବରତେ ।୧।
ଯେତେ ଦୂରେ ଥିଲେ ମୁଁ ତୋର, ଜାଣ ଗୃହର ମନେ ତୁ ନକରିବୁ ପର
କରିକରଦନା କର ଧରି ମାଗୁଛୁ ନିକର
ହସି ତୁ ମୋତେ କହ ଗିର ମେଲାଣି କର ।୨।
ଏ ବଡ଼ ଶଙ୍କା ହୁଏ ଏକା, ମୋର ବିହୁନେ କିପରି ବଞ୍ଚିବୁ ରସିକା
ଥିବୁ ସର୍ବସ୍ୱେ ତୁହି, ଲେଉଟି ଭେଟିବି ମୁହିଁ
ଈଶ୍ୱର କରିବେ କି ସତେ ନାହିଁ ପରତେ ।୩।
ନୃପକୁଳଶେଖର ଚନ୍ଦ୍ର, କିଶୋରଚନ୍ଦ୍ର ଶ୍ଳେଟିରାୟ ବଚନେ ଚନ୍ଦ -
ବଦନ ବିରସ ଜାଣି ଧରି ପ୍ରିୟା ବେନିପାଣି
ବୋଲି କରେ ପ୍ରାଣବାନ୍ଧବୀ ନିଶ୍ଚେ ଅସିବି ।୪।

---

( ୨୭୫ )

ରାଗ-ପୂରବୀ—ଝୂଲ

ନାହିଁ ଗ୍ରସିଲା ଯେ କମାଇ ଶ୍ରୀମୁଖ-ଶଶୀ
ନବ ବିଦ୍ରୁମ ବିଡ଼ମ୍ବ ତ ଅଟରେ ଦରହାସ ଥିଲା ମିଶି । ଘୋଷା ।
ଚନ୍ଦ୍ର ଖଣ୍ଡ ଗଣ୍ଡେ ଚୁମ୍ବ ଦେଇ ଦନେ ବୋଇଲି ରାମାମଣିକି
ନବସପତଦ୍ୱୟସୀ ମୋ ଶପଥ ନଗ୍ତୁ ତୋ ନାସାମଣିକି ।୧।

ସ୍ୱକେ ରତିଅଙ୍କେ ବସାଇ ପୂରତେ ବସାଇ ଚୁମ୍ବନମିଶା—
ଦନ୍ତକ୍ଷତ ଦଣ୍ଡ କର ମୁଁ ଅଧରେ ଦିଅ ବୋଲି ମୋତେ ରସା ।୨।
ଦିନେ ପୁଷ୍ପଭେଦେ ରତିରସମୋଦେ ମାଗନ୍ତେ ମୁଁ ମଧୁବନ
କେଶୁଁ କରବୀର କୁସୁମ ପକାଇ କ୍ଷତକୁ କଲି ଲେପନ ।୩।
ଦ୍ୱିରଦ-ଦଶନ ପଲଙ୍କ ଉପରେ କର ଯେ ଥିଲି ଶୟନ
ଫିଟାନ୍ତେ ନୀବିକି ଚୁହିଁ ସ୍ୱାଭାବିକ ଲୁଚି ନଳିନୀନୟନ ।୪।
ଅଷ୍ଟଦୁର୍ଗାଧିପ ବାଲ୍ମିକେଶ ନୃପ ଜଗଦେବ ରସେ ଭଣି
ଧନ, ତୁ ମନରେ ମାନ ନ କରବୁ ବୋଲି ଧରନ୍ତି ତା' ପାଣି ।୫।

---

## ( ୧୭୭ )

### ରାଗ—ବରାଡ଼ି—ଅଧତାଳ

ନାହିଁ କରିନାହିଁ ତ ମୁଁ କାହିଁକି ଗୋ ରୁଷା । ଘୋଷା ।
ତାଙ୍କ ସୁଖ ପାଇଁ ମିନା ଶଙ୍କରଙ୍କ ଉପାସନା
ଏ ଦେହ, ଏ ଭୋଗ, ଏ ପରାଣ ।୧।
ଶ୍ୟାମ ମୋର ଉନ୍ମାଦକ ଶ୍ୟାମ ମୋ ଗଳାପଦକ
ଶ୍ୟାମ ତ ମୋ ହୃଦ-ପଞ୍ଚବାଣ ।୨।
ବ୍ରଜବନ୍ଧୁ ମୋ ରତନ ମୋ ସେବାର ବରତନ
ସେହୁ ତ ମୋ ବରତ ବଖାଣ ।୩।
ମନ ଜାଣି ଅଛୁ ଭଜ ଜାଣି ଜାଣି ମୋ ମରଜ
ଧନ ମୋର କେଡ଼େ ଅବୁଝାଣ ।୪।
ଦୁଃଖ ଥିବ ପର ମନେ ତାଙ୍କ ପଦକଞ୍ଜ ସ୍ତନେ—
ଲଗାଇ ଚୁମ୍ବାଇ ଦିଅ ଆଣ ।୫।
ନୃପ ଜଗଦେବ ଭଣେ ମୋ ବେଶ ସେ, ମୋ ଶୋଭା ସେ
ତାହା ବାହାରେ କେ ପରମାଣ ।୬।

---

( ୨୭୭ )

ରାଗ—ତୋଡ଼ି—ପଦ୍ମପଞ୍ଚ

ନାହିଁ କରୁ କାହିଁକି ମୋ ଗଳାମୋତିମାଳ ରେ । ଘୋଷା ।
ପୀଡ଼ିବ ନାହ ଦନ୍ତରେ, ଲଲି ଦନ୍ତବାସ ଧୀରେ
ରସନାକୁ ଦେବ ସିନା ଶୂଳ ରେ ।୧।
ଅପ୍ରେହ ଅଙ୍କ ତଲପ, ପୂରୁ ମୋର ସଙ୍କଳପ
ଦେବାକୁ ମଦନ ମୁଖେ କାଳ ରେ ।୨।
ଡରୁ କରଜଲାଞ୍ଛନ, ହେବାରୁ କଠିନ ସ୍ତନ
ହେଲେ ହେବ ଦେବୁ ପଛେ ଗାଳ ରେ ।୩।
ଅରେ କାମ-କଳାନିଧି, ହେବ ଯେବେ ଅପରାଧୀ
ନୟନାନ୍ତେ ଧୃତ ଦେବୁ ଚାଳ ରେ ।୪।
ଶ୍ରୀ ମୁକୁନ୍ଦଦେବ କହେ, ହେମକୁମ୍ଭ ସ୍ତନ ସ୍ନେହେ
ଉର ସ୍ଥଳେ ଦିଅ ମୋର ଢାଳ ରେ ।୫।

———

( ୨୭୮ )

ବଂଶୋଟୀ—ଅଦ୍ଧତାଳ

ନାରୀବରମଣି ନିବାର ସୁନୟନ ବାରବୁହରୁ ତ ବାର ରେ ।୦।
ରସନିଧି ନବୀନା, ତୋ ଦନ୍ତବାସ ବିନା
ସୁଧାକୁ ଗଣଇଁ ଖାର ରେ ।୧।
କି ଦୋଷୁଁ ମୁଖପୋତ ମଣ୍ଡୁଛୁ ରେ ସୁଦନ୍ତି
ଧରାକୁ ନଖଶିଖ ଗାର ରେ ।୨।
କି ମୋ ଭାରକୁ ବହ ନ ପାରୁ ପ୍ରାଣସହ
କୁଚ୍ଚଚଳରୁ କି ସେ ଭାରି ରେ ।୩।
ଦିଅ ଶ୍ରୀମୁଖଶଶୀ ଟେକି ଅଳପ ହସି
ମୋ ଅଙ୍କ-ଜଗତୀ-ବିହାରୀ ରେ ।୪।
ଉଗ୍ର ନିସର୍ଗ ମାର ନିଗ୍ରହ ଜାଣି ତୋର
ଦେଲୁଣି ଶରସାରେ ସାର ରେ ।୫।

କଳାବତୀ-ଲଲାମ ଚରଣାରେ ମୋ ନାମ
ଲେଖାଇ ଦଅ ପରଗୃଷ୍ଣ ରେ ।୭।
ଛ ଭୁଇ ଦୁର୍ଗପତି କହେ ଶ୍ୟାମ ମିନତି
ଘେନ ରସିକା ମନୋହାସ୍ୟ ରେ ।୮।

———

( ୧୭୯ )

ନାହିଁ ସୁଷମା ପର ତୋ ଶୋଭାର ରେ ।୦।
ମଜ୍ଜାରୁ ମୋ ସଙ୍ଗମରେ ଲଜ୍ଜାକୁ ନିବାର ସୁନାଗୋଷ୍ଠୀ ମୁଁ ତୋ
ପରଗୃହ ରେ ।୧।
ନିଶୀ ଦବା ମିଶିଥିବା ନୋଦ୍ଧରୁ ବାହାର ରେ
ତୁ ରମଣୀ ମୋର ମଣିହାର ରେ ।୨।
ସଜନୀ ନିରେଖି ତୋ ମୁଖ ରଜନୀ ନାହାର ରେ
ସହୁ ଧୃତ ରହୁବ କାହାର ରେ ।୩।
ଷିତରଶ୍ମି କଳା ମୃଦୁ ଉଦର ବାହାର ରେ
ଜଡ଼ ହୁଏ ସ୍ମିତରୁ ନିହାର ରେ ।୪।
ବାଣୀ ବୀଣାପାଣି ଟେକି କରବେ ଜୁହାର ରେ
ରଚନୁ ତୋ ବଚନକୁ ହାତରେ ।୫।
ଶ୍ୟାମ ଭଣି ପ୍ରେମବାଣୀ ସେ ବରଗ୍ରେହାତ ରେ
ଅଙ୍କ କଲେ ସଙ୍ଗତ ବାହାର ରେ ।୬।
ଏ ସମୟେ ବସୁଦୁର୍ଗ ଧରବ-ଙ୍ଗହାର ରେ
ନାଥ ହୃଦେ ବହିଲେ ବହାର ରେ ।୭।

———

( ୧୮୦ )

ରାଗ—ପୂରବକଲ୍ୟାଣ—ଆଠତାଳ

ନିଶୀଥରେ ମିଶି ଥବେ ଧନ, ଖେଳିବାଟି ଅଜ ରେ । ଘୋଷା ।
ଅଗ୍ରେହ୍ନ ଦୁହଙ୍କ ମନୋରଥ, ମାତୁଛି ଯେ ମଦେ ମନମଥ
ତେ ପାରବ କେ ହାରବ ହେବ ସେ ନ୍ୟାୟ୍ୟ ନିଅଜ ରେ ।୧।

ତୋ କୁଚ ତ ଅତି କଠକଣ, ତହିଁ ଖେଳାଇ ମୋ କର କଞ୍ଜ
ଯା’କୁ ଜିଣିବାକୁ ମଣିଷାନୁ ନବଳାଏ ଓଜ ରେ ।୨।
ସମଝାଇ ରସ ପରପାକ, ଚୁମ୍ବିବ ଯେ ଶ୍ରୀଅମୃତିପାକ
କଦାଚତେ ଦିବ୍ୟଚତୋ ଧନ, ନ ସହିବୁ ଲଜ ରେ ।୩।
ମୁକୁରେ ମୋ ଦନ୍ତବ୍ରଣ ଗୃହି, ରସିକାରାଜ ଲୁଷିବୁ ନାହିଁ
ପ୍ରେମରସେ ଅମରଷେ ମନେ ରଖିବୁ ବ୍ୟାଜ ରେ ।୪।
ଜଗଦ୍ଦେବ କହେ ଶ୍ୟାମବାଣୀ, ରସିକା ଶ୍ରୀମନ୍ତମଣି ଗୁଣି
ଦରହାସ ପରକାଶ କଲେ ମୁଖ ଦ୍ୱିଜରାଜରେ ।୫।

---

( ୧୮୧ )

ରାଗ—କାଫି—ଅଡ଼ତାଳ

ନାହାରହାସୀ ତୁ ହି ମୋର ସଙ୍ଖାଳ ରେ । ଘୋଷା ।
ମୁଁ ପୂର୍ବେ କେତେ ବ୍ରତ ଥିଲି ପରପାଳ
ଗୁନ୍ଥିଛୁ ଯା ତୋତେ ଗଳାମାଳ ରେ ।୧।
ଚଉଦ ଭୁବନେ ବାଳସିବା ଦ୍ୟୁତି ପାଳ
ତୋ ଚରଣତଳ ନିଜସ୍ଥଳ ରେ ।୨।
ନ ଥିଲେ ତୁ ମୋଠାରେ କଟାକ୍ଷସୁଧା ଢାଳ,
ତାପାନଳ ଧିଅନ୍ତାନି ଜାଳ ରେ ।୩।
ତୋ ଭରସାରୁ ମୁଁ କରତାଳ ଧରି ଗୃଳ,
ଦେଉଛୁ ମଦନମୁଖେ କାଳ ରେ ।୪।
କି ସ୍ନେହେ ତନୁରେ ତନୁ ଦେଇ ଧନୀ ଝାଳ
ମୋ ଶିରମଣ୍ଡନ ତୋର ଭାଳ ରେ ।୫।
ଶ୍ୟାମଗିର ଶୁଣି ସଙ୍କୁଚିଲେ ବ୍ରଜବାଳୀ
ବସୁବର୍ଗ ନାଥ ଭଣେ ଭାଳ ରେ ।୬।

---

( ୨୮୨ )

ରାଗ—ସୁରଟ—ଏକତାଳ

ନିତନିତ ନୂତନା ସେ ନାଗରୀମଣି
ତାକୁ ନିକି ମଣ୍ଡି-ମଣ୍ଡଳାରେ ଗଣି । ଘୋଷା ।
କେବେ କି ଭଙ୍ଗୀରେ ଉଭା, କେବେ ଝରା କେବେ ଗଭା
କି ଜୁଡ଼ା ସେ, କି ଖୋସା ସେ, ସେ କି ବେଣୀ ରେ ।୧।
ଜିତ ଶୀତ ମୟୂଖରୁ ସୁନ୍ଦର ତା' ଶ୍ରୀମୁଖରୁ
କେତେବେଳେ କି ରସରେ ଗିର ଶୁଣି ରେ ।୨।
ମୋ ସଙ୍ଗେ ମିଳି ଶରଧା ଲଗେ ମୋତେ ସେ ବସୁଧା-
ମଣ୍ଡନା ଅଧରୁ ସୁଧା-ସାର ଲୁଣୀ ରେ ।୩।
ନ ସରେ ବାସର ଗଣ ଅସର ରସ ନିପୁଣ
ଗୃତ୍ତୁର୍ଣ୍ଣ ନିଧିର ଗୁଣ ଗୁଣିଗୁଣି ରେ ।୪।
ସରଜେ ମୋ ଜୀବସଙ୍ଗୀ ନବନୀତ ମୃଦୁଳାଙ୍ଗୀ
କେତେବେଳେ କେଉଁ ଭଙ୍ଗୀ ଅନାକ୍ରଣି ରେ ।୫।
ହରିଚନ୍ଦନ ରଚିଲେ, ହରି ବାଦେଶ ପାଞ୍ଚିଲେ
ପାଇବ କି ହେବ ଶିବକୃପା ପୁଣି ରେ ।୬।

———

( ୨୮୩ )

ରାଗ—କାମୋଦୀ, ତାଳ—ଏକତାଳ

ନିବଡେ ମୁଁ ଅଟକୁ ଅଟକୁ ଗୋ,
ଗିର ନଦେଇ ଶ୍ରୁତିତଟକୁ ଗୋ,
କି ରସ ଲେବେ ଇନ୍ଦବରନେତ୍ରୀ କାଳିନ୍ଦୀତଟକୁ ଧାଇଁଥାଏ ହଟକୁ ଗୋ ।
ଛଇଳାକୁ ପୃଚ୍ଛ ତ, ଆପଣେ ପରା ଶଠ-
ପୁଟ ହାଟକୁ ବଳି ଝଟକୁ ଗୋ
କି ଦଶିଲଣି ତନୁ ନମାନି ଗଲ୍ବଦନୁଁ
ବଂଶୀବଟ ନିକଟ ଭେଟକୁ ଗୋ ।୧।

କେ କହୁଅଛୁ ଧାଇଁ ବୁଢ଼ିଅସ ତ ଯାଇଁ
ଗୋପ ମଥୁରା ବେନି ହାଟକୁ ଗୋ,
କେଉଁ କିଶୋରୀ ଭଲ ହେଲାନି ଗୃହେଁ ଝଲମଲ-
ଚନ୍ଦ୍ରକସ୍ତୁରୁ-ନାଟକୁ ଗୋ ।୨।
କପଟେ କଳ କରୁଥାଏ ଏ କରଯୋରୁ
ଶ୍ୟାମଗୁଣ କହିବା ଘାଟକୁ ଗୋ,
ଭଜୁଥାଏ ତା ଦେହସଙ୍ଗୀ ସମୀର ସ୍ନେହ-
ବଶରୁ ବାଡାସୂନ ତଟକୁ ଗୋ ।୩।
ଲଜ୍ଜା ନକଲ ରାଜ-ହଂସକୁଲତୁଲ ଶେଯ-
ବଛଣୀପଡ଼ା ଦନ୍ତଖଟକୁ ଗୋ,
ରୂପରେ ଫରମାସୀ ଅଣାଇଛୁ ସୁକେଶୀ,
କମଳ କୋଣଲସୁ କୁଟକୁ ଗୋ ।୪।
ଏବେ ହେଲେ ଏ ସ୍ୱାଚ୍ଛ ନ ନବଗିଲେ କଚ୍ଛ-
ସୁମ୍ଭେ ବନ୍ଧାଇ ପୀତପଟକୁ ଗୋ,
ହେଉ ଅଶୁଭ ଧ୍ୱଂସ ଦେଖାଇଦେବା କଂସ-
କଟକୁ ଅସିବାର ଘାଟକୁ ଗୋ ।୫।
ଏହା ଚରଣକଞ୍ଜ ଚୁମ୍ବି ଜାଣିଛୁ କୁଞ୍ଜ-
ମନ୍ଦରେ ସେ ବଟମୂଳକୁ ଗୋ,
ଲଗାଇ ଦେଇଥିବ ଏଣିକି ତ ମୁଁ କବି-
ତପନ ମନାସ୍ଥୂଲଟକୁ ଗୋ ।୬।

---

( ୮୮୪ )

ରାଗ—ସିନ୍ଧୁ କାମୋଦୀ—ରୂପକ

ନିରନ୍ତର ମୁଁ ମନେ ମଣୁଛି ରେ ପ୍ରମୋଦ ଗଜଗତି,
ଦେହ ବହି ମଞ୍ଚପୁରେ ସଞ୍ଚରୁଛୁ ତୁ ସରସ କାବ୍ୟଗ୍ରନ୍ଥ । ଘୋଷା ।
ଝରେ କଲବେଳେ ମଣ୍ଡନ ସିଞ୍ଚିତ ଲମ୍ବ ଅଡ଼ମ୍ବର ବହି
ଘଉଡ଼ି ଦେଉ ଯା କଣ୍ଠି ମନ ଦୁଃଖ ଲଜ୍ଜିତ ଦେନି ତୁହି ।୧।

ଚରଣ ଅତ ଅବସୃତ ବିନ୍ୟାସ ଲଳିତ ବିଳାସୁଁ ଜାଣି
ବଇଦର୍ଭୀ ନବ କେତକୀ ଗର୍ଭକ ଗର୍ବ ଗଞ୍ଜଇ ସୁବେଣୀ ।୨।
ମୋ ଅଙ୍କବିଳାସେ କଳକଣ୍ଠିଠକୁ ତିଳକୀକୃତ ତୋ ଭଙ୍ଗୀ
ଅଜି କେ ପାଞ୍ଚାଳୀ ବୋଲାଇବ ଭାଳି କହ ତ ମୋ ପ୍ରାଣସଙ୍ଗୀ ।୩।
ବୀଣା-ବେଣୁକ୍ୱଣା ମୃଦୁମୃଦୁ ବାଣୀ ମୋ ବନ୍ଧୁ ଭ୍ରଷ୍ଟ ଯାହାଟି
ନୀଳ ଶାଢୀଟି ମଣ୍ଡନାରେ ମଣେ ଅତୁଳାଟି କି ତୁ ଲଭିଟି ।୪।
ରସ ତୋ ଜୀବନ ଅଧାପୃକ ବନବୁହାକ୍ଷୀ ମୋତେ ଗୋଚର
ପ୍ରବନ୍ଧ ରଚନା କଲେ ହେବ ସିନା ମୁଁ ଅଳଙ୍କାରିକ ତୋର ।୫।
ସୁଭଙ୍ଗୀ ଏ ଭଙ୍ଗୀ ଗିର ହରିମୁଖୁଁ ଶୁଣି ହସି ସଙ୍କୁଚିଲେ
ଅଷ୍ଟଦୁର୍ଗ ନିପିଣ୍ଡପୁର ପୁରନ୍ଦର ଏ ଗୀତ ରଚିଲେ ।୬।

---

( ୧୮୪ )

ରାଗ—ଅସାବୀ—ଏକତାଳି

ନିନ୍ଦା ନଳିନ ସଖୀ ରେ, ମନ୍ଦାର ଅଧରୀ ଧୀରୀ ଅଳକ୍ନସୁଖୀ ରେ
କୁନ୍ଦସୂନ ଶରବିନ୍ଦୁ କିରଣଗଣେ ସୁନ୍ଦର ହସବୃଚବୃନ୍ଦ ଲଳିତମୁଖୀ ରେ ।
ଚିରକାଳକୁ ମୁଁ ତୋର, କୁଞ୍ଜ ମନ୍ଦର—
ମଣ୍ଡନପ୍ରିୟ କିଙ୍କର,
ବେଷାବେଶେ ନିର୍ଭର,
ଦୋଷା ମନେ ନ ଧର,
ଯୋଷାମଣି ମସାର,—
କେଶାସାର ନ ସାର,
ଭାଷ, ଅତନୁ ବିଳାସ- ନିଧି ପରକାଶ,
ତୁଚର ବିକାଶ, ମଦହରହାସ,
ନବନବ କାଶ- ସ୍ମିତ ରଦହାସ-
ବଟୀ ନିଜ ଦାସ ସଦୃଶ ଜନେ ।୧।
ମଥା ନୁଆଇଁ ନ ବସ,
ଦୁଃଖେ ନ ମଜ୍ଜି,
ନ ଯାଅ ନିଶାଦବସ,

ଅଲିଙ୍ଗନରେ ରସ,
ନାଳିକନିଭ ବାସ,
ଅଙ୍ଗମୀ ନ ପ୍ରକାଶ,
ବାସନାଶ ଅଯଶ,
ବାବହୁର ପରହାସ୍ୟ- ନୟନରୁ, ଗୁରୁ ପ୍ରଦରେ
ଯେ ଭାର ଜନମୁନ୍ତୁ, ନାସ୍ୱମଣିକି ବଗୁର,
ସବୁ ସୁଖ ସାର ଥାଉ ହେବ ମୁଁ କେହ୍ନ ।୨।
ଢେଢେ ପୀରତି ପାସୋର, କିଶୋସ୍ୱବର,
ଶହ୍ନାଲ୍ଲ ଯା ଏଠେ ସବ,
ଘେନିଲ୍ଲ ପରପର
ପାସ୍ୱନ୍ଦ୍ରମଧ୍ୟା ଗୋସ୍ୱା,
ନାସ୍ୱନ୍ଦ୍ର ଧବସ୍ୱିସ୍ୱା,
ଶସ୍ୱିଷ ସୁକୁମାସ୍ୱି,
ଢାଳ ପୃଥୁଳ ବଶାଳ ହୁଡ ହରତାଳ
ସୁଘଟିତ ତାଳସ୍ତନୀ ରେ,
କଠୋଳ ନ କରଣ୍ଡି କାଳ ପୁରୁଷ କସ୍ୱଳ-
ସୁରଙ୍କରବାଳ ବଦନେ ଦେଇ ।୩।
ଶୁଣି ଶ୍ରୀମତୀ ହସିଲେ, ଜଗଦେବ ଧରଣୀନାଥ ଭାଷିଲେ,
ଦେହେ ଦୁହେଁ ମିଶିଲେ, ଆନନ୍ଦ ବରଷିଲେ,
ମାବକୁ ଭରସିଲେ, ଢାବ ଶରେ ବସିଲେ,
ଶମ୍ବଧରମଣି ଜମ୍ବୁନଦ ବଧୂବମ୍ବ, ଯୁଗ ଘନ ଚୁମ୍ବ-
ବଭବରୁ ଶମ୍ବରପର କଳମ୍ବ ସମୁଦାୟ ଡମ୍ବର
ଦଳିଲେ ଲମ୍ବ ଶକୁରବତୀ ।୪।

———

( ୧୮୭ )

ରାଗ—ପୂରବୀ—ଝୁଲା

ନୂଆ ରସିକା ରେ, ଗୁଆଁର ମୋ ସମ କାହିଁ ?
ତୁ ଅବଳୁଥାଇ ଗୁମାନ ବୋଲ୍ ଯା ମୁଁ ଅରମୁଥାଏ ତାହିଁ । ଘୋଷା ।

ନବଲତା ଲୋଳ ଶାଖେ ନାଚୁଥିଲେ
ଲଭି ସମୀରଣ ସଙ୍ଗ,
ମକରନ୍ଦ ପାନ ଉତ୍ସବରେ ମନ
ନ କରଇ ଲକ୍ଷ ଭୃଙ୍ଗ ।୧।
ରସବତୀ, ଘେନ ତେଜିଲେ ଜୀବନ,
ପୁଷ୍ପ ବରଷିବ କେହୁ,
ମଣି କରକଣ ବୋଲି ବରଜିବା—
ବଣିକର ଭାଗ୍ୟ କାହିଁ ।୨।
ଅଗତିକ ମୁହିଁ ବୋଲି ତ ଜାଣିଲ
ଜଗତୀତଳେ ତୋ ବିନା,
ଚରଣକଞ୍ଜେ ତୁ ପେଲିଦେଲେ ହେଲେ
ଶରଣ ବୋଲିବି କିନା ।୩।
ଯାହା ପାଦେ ଲାକ୍ଷା ଲେଖିଥିଲେ
ଶଚୀନାହା ପଦ ତୁଚ୍ଛ କରି,
ତାହା ପରି ରମ୍ୟ ପଦାର୍ଥକୁ ଯାହା
ପର ପରିଭବ ସରି ।୪।
ଅଷ୍ଟବର୍ଗନାଥ ବୋଲେ ଜାଣୁ ଜାଣୁ
କଷ୍ଟଦ କାମଚରିତ,
ଜନ୍ମାନ୍ତ ଲଗିଲା ବୋଲି ବରଜିଲ
ବିମ୍ବାଧରା ମରକତ ।୫।

---

( ୪୮୭ )

ରାଗ—ଶ୍ୟାମ-କଲ୍ୟାଣ—ଅଡ଼ତାଳି

ନୂଆ ଛଇଳା, ଥରେ ବସେ ରସାଇବି ରେ
ବଦନକୁ ମୋ ଧନ ଲସାଇବି ରେ ।୦।
ସକରୁଣ ସ୍ମିତେ ଅଙ୍ଗୀ- କାର କର ଶିରସାଙ୍ଗୀ
ତନୁ ତୋଳି କୋଳରେ ବସାଇବି ରେ ।୧।

ଚୁମ୍ବି ଚୁମ୍ବାଇ ଅଧର ଭରେ ଦେଇ ପୟୋଧର
ଗଣ୍ଡେ ଗଣ୍ଡସ୍ଥଳକୁ ଘଷାଇବ ରେ ।୨।
ମୋ ସ୍ମିତ ଚନ୍ଦ୍ରପରାଗୁ କଣ୍ଠ ତୋ ଲୁଗ୍ଧରେ ଲଗୁ
ମଦନର ଭଗାର ହସାଇବ ରେ ।୩।
ତୋ ଲ୍ଭକେ ମଣ୍ଡି ମୋ ଗଳ ବୁହିଁଙ୍କ ମନଯୁଗଳ
ରସାନନ୍ଦ ପ୍ରବାହେ ଭସାଇବ ରେ ।୪।
ଭବେ ଅଷ୍ଟଦୁର୍ଗନାଥ ପୂର ଦୁଇ ମନୋରଥ
ପାପତାପଯାକୁ ଖସାଇବରେ ।୫।

---

( ୯୮ )

ରାଗ—କାମୋଦୀ—ଅଠତାଳି

ପଙ୍କଜ-ଲୋଚନା, ମୁଁ ତୋ ଦାସ ରେ
ଅଙ୍କ ଜଗତୀକ ଥରେ ଅସ ରେ । ଘୋଷା ।
ସହ ମଦନାଳସା, ମଣ୍ଡି-ମଣ୍ଡଳ ଭୂଷା
ବହ ମନରେ ରଷା ରହ କ ବରସ ରେ ।୧।
ବାରଣ-ଗତି ମୋର, ସାର ବଜ୍ରପଞ୍ଜର
ମାର ଫୁଲ ପ୍ରହାର ସ୍ମରକୁ ଏ ନାସ ରେ ।୨।
ମାନବେଣ କଞ୍ଚିତେ, ମାନୁନାହିଁଟି ତୋତେ
ଅନଙ୍ଗ ମୋର ଶତ୍ରେ ମାନ ରସରାସ ରେ ।୩।
ପୂର କାମନା ମୋର, ଚୂର ଦେବା କର୍ପୂର—
ପର ସିନ୍ଦୁରଧର ଗୋପ୍ତ ଦନ୍ତବାସ ରେ ।୪।
ହରଚନ୍ଦନ ଭ୍ରମେ, ହର ଗୃହୁ ବିଳାସେ
ହରଣନେନା ତୋଷେ ବରଚଲେ ହାସ ରେ ।୫।

---

( ୧୮୯ )

ରାଗ—ତୋଡ଼ି; ତାଳ—ଝମ୍ପା

ପର-ପୀରତିରୁ ଲଭି ଏତିକି ଗୋ
ଘୃତ ପାତିବାର ହେତିକି ଗୋ
ବନବନ ବୁଲି ସ୍ନେହ ମୋହେ, ଅନଥନ କରି ନେବାକୁ ହେ
ଛନଛନ ହୋଇ ପାଇବାର ଭ୍ରାନ୍ତିକି ଗୋ । ଘୋଷା ।
ଅଳପ ଲୋକଙ୍କରୁ ଲଭି ବଡ଼ ଭୟ, ଚଳପକୁ ନ ଅଣ୍ଟେ ପଲ୍ଲବଚୟ
ଜଳପି ବାତୁଳପରି, କଳପିବାର ପାସୋରି
ଜଳ ପିଅଇ ନୟନୁ ଝିଞ୍ଚିକି ଗୋ ।୧।
କାହାର ଗିରରେ ନୁହଇ ବିଶ୍ୱାସ, ଅହାର ବିହାର ହାର ହୁଏ ବିଷ
ଅହା ରବ ତୁଲେ ଶ୍ୱାସ, କାହାର ହୁଏ ବିଶେଷ
ପ୍ରହାରେ ପଞ୍ଚମ ଧ୍ୱନି ଶ୍ରୁତିକି ଗୋ ।୨।
କାଣୀ କାଦ ବୋଲି ନ ଜାଣଇ ଆଖି, ବସିକାଦଳ ଚଳପ ତହିଁ ସାକ୍ଷୀ
ମିଶି କାରବଧି ଗିରେ ଇସି କାରନ୍ତ ଇଚ୍ଛାରେ
ଶଣୀକାନ୍ଦାରେ ପୂହାଇ ରାତିକି ଗୋ ।୩।
ମନ୍ତ୍ରର କି ନଜାଣଇ ସେହୁ ଜନ, ଅନ୍ତର ବାହାନ୍ତେ ଦଶେ ତା ବଦନ
ଦନ୍ତବାସ ରୁକ୍ଷ ମନ୍ଦ, ଜଡ଼ାଇ ଅଙ୍ଗେ ସନ୍ତତ
ରୋମାଞ୍ଚିତ ହର୍ଷ ବେଳ ଗତିକି ଗୋ ।୪।
ସଳଖ ମାର୍ଗ ତ୍ୟାଗରୁ ପଡ଼େ ଦୂର, ବଳଖଣ୍ଡନ ହୁଅଇ ଝୁରି ଝୁରି
ପଳ ଛ'ଚନା ଗଞ୍ଜଣା, ଫଳରେ ଲଭି ଏ ଜଣା
ଅଷ୍ଟବୁର୍ଗବିସୁମତୀପତିକି ଗୋ ।୫।

———

( ୧୯୦ )

ରାଗ—କଲ୍ୟାଣ—ଅଡ଼ତାଳ

ପର ମଣି ତ ରମଣୀ ଦେଲି କରମଣି ଘୃଡ଼ ରେ । ଘୋଷା ।
ମୋ ଜୀବନ କାହିଁ ହଜାଇଲି,
ଖୋଜି ଅଣିଦଅ ଅଳି ବୋଲି,
ଜଳପୁଚ୍ଛୁ, ଥଳପୁଚ୍ଛୁ, ଏବେ ଉରେ କର ତାଡ଼ ରେ ।୧।

ଜାଣି ତୋହର ମାନସବ୍ୟଥା,
ଅଣିଥିଲି ଭଲ କେତେ କଥା,
ଘନପ୍ରଭା, ସୁନଗଭା, ଅତି ଯତନେ ସଜାଡ଼ି ରେ ।୨।
ବିମ୍ବରଦନାମ୍ବରି ରେ ଧନ,
କାମ୍ବଦାଳ ଦ୍ରବେ ଦେଇ ମନ,
ସୁଧା ଧରି-ତଳେ ଦେଲୁ ତ ଅଜାଡ଼ି ରେ ।୩।
ଗୋପ ଯୁବରାଜ ଶିରୋମଣି,
ତୋ ପଦକଞ୍ଜ ଚୁମ୍ବିଲା ପୁଣି,
ଭୁଜେ ଧରି, ତୁ ଯେ ହରିଣାକ୍ଷୀ ନରଖିଲୁ ଭଡ଼ି ରେ ।୪।
ଯାହା ପାଇଁ ଶିବ ପୂଜୁଥାଇ
ତାହାଙ୍କ ପ୍ରିୟାଙ୍କୁ ଭଜଥାଇ,
ତାଙ୍କ ଦୁଃଖ କରି ସୁଖ, ମୂଳ ଦେଲୁ ତ ଉପାଡ଼ି ରେ ।୫।
ବୋଧି କହେ ଅସ୍ମଦୁର୍ଗନାହା
ବୁଦ୍ଧି ହୁଡ଼ିଲୁ ତ ହେଲା ଏହା,
ଏବେ ଗଲୁ, ନନ୍ଦଲାଲ, ମନୁ ମାନ ଦେବା ଝାଡ଼ି ରେ ।୬।

---

( ୧୯୧ )

ରାଗ—ସାରଙ୍ଗ—ଝୁଲା

ପରବ ଚନ୍ଦ୍ରମାମୁହିଁ, ପର-ବଶ ମତେ ନ କର ତୁହି ରେ,
ପରବଶ ରତେ ସହି, ମୋ ଧନ ରେ ।୧।
ମଧୁବନ ବିଚକ୍ଷଣା, ବଧୁର କିପାଇଁ ହେଉ ସୁମନା ରେ,
ମଧୁର ବଚନ ଶୁଣା, ମୋ ଧନ ରେ ।୨।
ବରସାରସ ଗମନେ, ନରସାଇ ରସେ ମନ କି ମନେ ରେ,
ଭରସା ତୁ ତ ଭୁବନେ, ମୋ ଧନ ରେ ।୩।
ସନକ ମନମୋହନା, କନକ ତନୁକୁ ମ୍ଳାନ କରନା ରେ,
ଧନ କରୁଛି ଯାତନା, ମୋ ଧନ ରେ ।୪।
ମଦନ ଦର୍ପଣମୁଖୀ, ବଦନ ତୋହର ଲୁଚିଲା ଦେଖି ରେ,
କଦନ ଲଭଇ ଅଖି, ମୋ ଧନ ରେ ।୫।

ପରମ ଦୟାଳୁ ହୋଇ, ପର ମଣି ମୋତେ ନଗୃହ୍ଣୁଁ ସହି ରେ,
ମରମକୁ ବାଧେ ଏହି, ମୋ ଧନ ରେ ।୬।
ହରଶକ୍ର ବନ୍ଦେ ଶର, ହରଷେ ଅପାଙ୍ଗେ ଅନାଇଁ ମୋର ରେ,
ହର ସବୁ ଦୁଃଖଭାର, ମୋ ଧନ ରେ ।୭।
ଶରମରେ ଲଭିଥିଲ, ନରମଅଙ୍ଗୀ ନ ଗୃହ୍ଣିଲୁ ବୋଲି ରେ,
ଭରମକୁ ଅଦରିଲୁ, ମୋ ଧନ ରେ ।୮।
କୁରଙ୍ଗ ଗୃହ୍ଣ ଲୋଚନା, ସୁରଙ୍ଗ ଅଧରେ ମାଧୁରୀସେନା ତ ରେ,
ତୁ ରଙ୍ଗରେ ବାରେ ଅନା, ମୋ ଧନ ରେ ।୯।
ହୀରକରଦନୀ ଧନ, ଧୀର କରି କର ତୁ ଆଲିଙ୍ଗନ ରେ,
ଗିର କରି ପଦେ ଦାନ, ମୋ ଧନ ରେ ।୧୦।
ଛଇଲୀ ଥିବ କି ମନେ, ଧଇଲି କର ନ ଘେନିଲୁ ହନେ ରେ,
ରହିଲି ମୁଁ ଅଭିମାନେ ମୋ ଧନ ରେ ।୧୧।
ରସିକା ସେବନ ଜାଣି, ରସି କାମେ ମୋର ମନକୁ ତୋଷି ରେ,
ହସି ଏକା ଗଲୁ ମିଶି, ମୋ ଧନ ରେ ।୧୨।
ଗତ ରସକଥା ମାନ, ଗତରସ କିପାଁ କରୁଛୁ ଘେନ ରେ,
ସତରବୟସୀ ଧନ, ମୋ ଧନ ରେ ।୧୩।
ହରିଚନ୍ଦନ ବୋଲନ୍ତି, ହରିଚନ୍ଦନୁ ତ ଶୀତଳ ଅତି ରେ,
କରୁଛୁ କଠୋର ମତି, ମୋ ଧନ ରେ ।୧୪।

---

( ୨୯୨ )

ରାଗ—କେଦାର—ଏକତାଳି

ପଗ୍ର କେ ଅଣିଛୁ ଗଜଗତିଙ୍କି ସେ ମୋ ଏ ଜଗତୀଙ୍କ । ଘୋଷା ।
କି ସୁନ୍ଦର ଦରହସିତ, ଶୀତ କରକର ଲଳିତ
ଦଶନ ବସନ ନବ ଜବାସୁନ ଉପରେ କେ ରଖିଦେଲା ମୋତିଙ୍କ ।୧।
ଅହା ତାର ଗୃହାଣୀ ଠାଣି, ବଣାମୃଗ ନପାରେ ଅଣି,
ମଳିନ ନୋହିବା ନଳିନଯୁଗଳେ ଅଳି କରୁଥିଲା ଚଳି ରତିଙ୍କ ।୨।
ସ୍ପୁଟ ତିଳକୁସୁମ ନାସା,- ପୁଟ ଫୁଲ୍ଲ ସରସ ଭାଷା,
ଅଳକ ଅଳାପି ଗୃଳିଦେଉଥିଲା ଫୁଲପଦରେ ଢେଳତପତିଙ୍କ ।୩।

ହେମରମ୍ଭା ତନ୍ତ୍ର ଉନ୍ନତ୍ତ୍ର, ପ୍ରେମରଙ୍ଗ ନଟ ଭୁଚ୍ଛନ୍ତୁ,
ଚ୍ଛଟକ ଚ୍ଛଟର କୁଚକଳଶନ୍ତୁ ଗୃହିଁ ହଜାଇବେ ଯତ ମଣକ ।୪।
ଇଷ୍ଟତମା ସଖୀଙ୍କି ରସେ, ଅଷ୍ଟବର୍ଗ ମହେନ୍ଦ୍ର ଭୂପେ,
ମୋଦେ କୋଳେ ବସି ପଦେ କହୁ ହସି ମୋ ସବତଟି ସେ ରସବତୀକ ॥

---

( ୧୯୩ )

ରାଗ—ତୋଡ଼ି ପରଜ, ତାଳ—ଏକତାଳି

ପରାଣ ଘର କି ଲୋଡ଼ା ରେ ସଙ୍ଗାତ,
ପରାଣ ଘର କି ଲୋଡ଼ା ? ଘୋଷା ।
ପ୍ରିୟଜନ-ପ୍ରୀତି ପୀଯୂଷ-ପ୍ରବାହ ହୁଅଇ ଯେବେ ଖଦଡ଼ା ରେ ।୦।
ପାସୋରେ ହୃଦୟ ଭିତରୁ ସଦସ୍ୟପଣ ପରମ ମୁହାଁସ,
ପେଟଯାକ ପୂରିଥିବ ଯେବେ କଷ୍ଟ ମୁଖେ ଥିବ ମନ୍ଦହାସ ରେ ।୧।
ଛଳପୂର୍ଣ୍ଣ କରି ମୃଦୁ ବାଣୀ ଙ୍ଗ ବିରସ୍ତ ହୃଦେ ଢାଳିବା,
ନିଦାଘେ ତାପିତ ବନଲତା ହତ ହାଉଟୋକା ଜଳ ଦେବା ରେ ।୨।
ପ୍ରଣୟ ପରଖି କରି ଲକ୍ଷ ଲକ୍ଷ ସବୁ ବୁଝି ଅନୁଭବେ,
ପ୍ରୀତିଠାରୁ ବଡ଼ କେହି ନାହିଁ ବୋଲି ବିବେଚନା ନାହିଁ ଯେବେ ରେ ।୩।
କବି-ଦନକର ଗିଯୁଗୁଚ୍ଛ ବୋଲେ ଏବେ ସବୁ ଜଣାଗଲା,
ପଢାଇ ପବାଙ୍କ ସ୍ଥଳେ ସୁଲଗାନ ପରମ ପଦକୁ ଚଲା ରେ ।୪।

---

( ୧୯୪ )

ରାଗ—ଝୁଲି

ପର ପ୍ରେମ ପୋଡ଼ୁ ଗୋ, କାହିଁକି ତା ଲୋଡ଼ୁ ଗୋ
ମାଗୁଛି ଏତେ ତା ମୋ ଶ୍ରବଣେ ନ ପଡ଼ୁ ଗୋ ।୦।
ପ୍ରଳୟ ବହ୍ନିରୁ ବଳେ ମଳୟଜ ମରୁତ
ନାଗର ବଇରୀ ଯୁବର୍ଣ୍ଣିକରବ ବିଭୂତ ।୧।
ବାଧୁର ହୁଅଇ ତନୁ ବାଧୁର କରଟେକେ
ନୀମି ନାଦ ନ ଲାଗଇ ବିସିନିଦଳ ଖଣ୍ଡେ ।୨।

ଦଶନେ ଦଶ୍ୟ ତୃଣ ଅଶନେ ତ ଅରୁଚି
ରୂପକାନ୍ତ ହରେ ଏହୁ ଜପକାର କରୁଚି ।୩।
ଭ୍ରମର ଗର୍ଜନ ମିଶେ ଯମର ତର୍ଜନରେ
ରଜନୀ କୁଃଖି ତ ଥିବ ସଜନୀ ତୋ ମନରେ ।୪।
ସବୁ ଏକା କରକୁନ୍ତୁ ପର ଧରଥିବାର
କେ ସହିବ ଏ ସମୟେ ଦେଶ ବାସି ହେବାର ।୫।
ଅଳି କହେ ହେବ ଏହୁ ପାଳକ ତୁ ସହିଲେ
ଅଷ୍ଟବର୍ଗ-ମଣ୍ଡଳାଖଣ୍ଡଳ ରସେ କହିଲେ ।୬।

---

( ୧୯୫ )

ରାଗ—ମୁଖାବରୀ—ଆଠତାଳି

ପାରବୁ କି, ରସେ ହାରବୁ ରେ । ଘୋଷା ।
ନବଖଣ୍ଡ ମେଦିନୀ-ମଣ୍ଡନା ଜୀବଧନୀ
ଋଷିମନମୋହିନୀ ଶ୍ରୀମୁଖେ ଚୁମ୍ବ ଘେନି ।୧।
ତୁ ତ ନଜାଣୁ ରତି, ମତ୍ତ ବାରଣଗତି
କପର ଅଜ ସ୍ୱତ ପତି ସଙ୍ଗତେ ମାତି ।୨।
ଗେଲ୍ଲଇ ନାହିଁ ନାହିଁ, ଭ୍ରୁକ୍ଷେପେ ଚନ୍ଦ୍ରମାମୁହିଁ
କେଳିତଳପେ ରହି କରଜ ଦାଉ ସହି ।୩।
ଭଲ ତା' ନାସାମଣି, ମୋ ମନ ନେଲା କିଣି
ରତି-ସମରେ ଜିଣି, ତାହାକୁ କିଣିଅଣି ।୪।
ଚକ କର ନୋଥକୁ, ମାର ମନମଥକୁ
ପୂର୍ଣ୍ଣ ମନୋରଥକୁ ଜଳନ୍ତର ନାଥକୁ ।୫।

---

( ୧୯୬ )

ରାଗ—ମଲ୍ଲଅ—ଝୁଲା

ପୋଡ଼ୁ ପର ଅନୁରାଗ—ଚହୁଁ ଭଲ ତନୁତ୍ୟାଗ ଗୋ । ଘୋଷା ।
ଜଗାଇ ମାରଇ ଗ୍ରହଯୋଗ କେଳି-ଅଗାରେ ଲଗାଇ ବାଗ ଗୋ
ଦଗା ଦେଇ ମୋତେ ଭଗାଇ ହସାଇ ଲଗାଇ କଳଙ୍କ ଦାଗ ଗୋ ।୧।

ସବୁ ବାସ ମେଘୁଗବୁ ହୋଇଯାଏ ନ ଲୁଟେ ଅଧାର ଅଗ ଗୋ
ବସି ଶୃଙ୍ଗେଁ ଶୃଙ୍ଗେଁ ନୀପ ଉପରକୁ ଖସି ପଡ଼େ ଫୁଲ୍ ପାଗ ଗୋ ।୨।
ଓଷ୍ଠାଧରଲେ ହେଲେ ଗୁରୁଜନଙ୍କର ଉରଜନମସ୍ତୁ ଭାଗ ଗୋ
ମନମଥ-ଶର ଘନଶ୍ୟାମଳର ହୋଇଯାଏ ଲାଗଲାଗ ଗୋ ।୩।
ଜଳନ୍ତର ପଡ ବୋଲେ ଅଗୋ ଦୂତୀ ଶ୍ୟାମରେ ନୁହ ବସ୍ୱାଗ ଗୋ
ଭାଙ୍କୁ ଭଜବାକୁ ମରମରେ ମାଛୁପଛେ ମନମଥ ନାଗ ଗୋ ।୪।

---

( ୧୯୭ )

ରାଗ—ମାଲବ—ଝିପୁଟା ।

ପାହ୍ନପାହ୍ନଅ ।

ପାହ୍ନ ବ୍ରଜପୁର ଯୁବପୁରନ୍ଦର,
ପାହ୍ନ କରଧୃତ ମନ୍ଦର,        ପାହ୍ନ କୃତ ଅଭିସାର କନ୍ଦର,
ପାହ୍ନ ନବଘନ ସୁନ୍ଦର ।୧।

ମତ୍ତ ବାରଣ-ଗର୍ବନାଶ-        ଗମନ ଜନମନରଞ୍ଜନ,
ମୀନକେତନ ଝଂପନକେତନ        ଯାମାଳାର୍ଜ୍ଜୁନ ଭଞ୍ଜନ ।୨।
ନନ୍ଦନନ୍ଦନ ଜଗତବନ୍ଦନ        ମୁରଳୀଧର ବ୍ରଜନାଗର,
କମଳଲୋଚନ, ଶୋକନାଶନ,        ସକଳ ଗୁଣଗଣ ସାଗର ।୩।
କୋଟୀଶାରଦ-ଚନ୍ଦ୍ରମାମୃଦ,        ବନଜହୁଚ ମୁଖଶ୍ୟାମଳ,
ଗଣ୍ଡସୁଶୋଭିତ ରତନସୁଜଡ଼ିତ,        ମକର ସୁରୁଚିର କୁଣ୍ଡଳ ।୪।
ନାଗରୀଜନ, ଚିତ୍ତମୋହନ,        ବସନରୁଚିଜିତ କୁନ୍ଦନ,
ନିତ୍ୟ ନଭିନ ଶରଣ ତବ,        ଦୀନବନ୍ଧୁ ରାଜ ହରିଚନ୍ଦନ ।୫।

---

( ୧୯୮ )

ରାଗ-ଖମ୍ବାଜ—ଝୁଲା ।

ପୀରତି ଲଗାଇ ଶ୍ୟାମ, ଦୂରଦେଶ ତୁ ନ ଯା'ରେ । ଘୋଷା ।
ମୁହିଁ କର ନାହିଁ ଦୋଷ, ଅକାରଣେ ତୁ ନ ରୁଷ
ପୀଯୁଷ ବଚନ ଭାଷ, ତୋଷକର ମଜ୍ଜକ ରେ ।୧।

ଏ ମୋ ନବ ଯଉବନ, ମାନସ୍ଥାନ କଲେ ଧନ
ଏ ଯୁବା ବୟସେ କାନ୍ତ ନ ରସ ଝିଙ୍କା ରେ ।୨।
ବାଲ୍ ଯେ ଉବଣ ପାଇ, ଲୋଡ଼ିଲେ ବୃଷର ଗ୍ରାଇ
ଅହା ବୋଲିବାକୁ ସାହା ନଥିବଟି କେହୁ କା ରେ ।୩।
ଅପେ ରେପିବା ବୃଷର, ଶ୍ରୀହସ୍ତେ କାଟିଲେ ରେର
ଦାଣ୍ଡେ ହେବ ଅସୁନ୍ଦର ତୋ ମନକୁ ତୁ ବୁଝାରେ ।୪।
ସୂର୍ଯ୍ୟର କାରଣ ଲାଗି, ହେଉଥିବ ଦୁଃଖଭୋଗୀ
ଦାସୀଗଣମାନେ ଜଗି, ବୋଲୁଥିବେ ଚନ୍ଦନରେ ।୫।
କହେ କବିସୂର୍ଯ୍ୟ ଦାସ, ବାଲ୍ୟକାଳୁ ତୋନେ ଅଣ
ପିରତି ପାଣୋଗ୍ର ମନ୍ତ୍ର ମୋତେ ତୁ ତ ଦେଇଯା'ରେ ।୬।

---

( ୧୯୯ )

ରାଗ—କାଫି—ଅଡ଼ତାଳ

ପୁଚ୍ଛ ତ ସେ ରସଭୋଗୀକି ଗୋ, କାହୁଁ ହେଲା ଶିଖା ସଖୀକି ଗୋ
ସଂସାରେ ସଂସାର ଗୁରୁ କେଳିକାଳେ ସଖୀ ଙ୍କ ପାଖରେ ରଖିକି ଗୋ ।
ନବନୀଗଢ ମଧୁ ମଧୁରସା, କ୍ଷୀର ସର ସାର କର୍ପୂର ମିଶା
ଖଣ୍ଡକୁ ପରି ଭଣ୍ଡକୁ କରିବାର ସହଇ ଅଜନ୍ମ ସୁଖୀକି ଗୋ ।୧।
ଯହିଁ ସମର୍ପି ପରାଣେ ପରାଣ, ଯା ନିର୍ବାହକୁ ଲକ୍ଷ ଲକ୍ଷ ରଣ
ନଜାଣି ସେ ବାଧି ବନ ଅପରାଧୀ ପୁଣି ହୋଇ ଦୁଃଖୀ ଦୁଃଖୀକି ଗୋ ।୨।
ଦୃଷ୍ଟି ଦେଇ ଅଜ ବାଳା ବଦନେ, ଅନୁମାନ କଲି ମୁଁ ମନେମନେ
ଶମ୍ବରାବରଣ-ଡ଼ମ୍ବର ସମ୍ଭାର, ନୁହଇ ସେ ମୁଖାମୁଖୀକି ଗୋ ।୩।
ହେଲେ ହେଲେ ପିଉଁ ପୀୟୂଷରସ, ଘଣ୍ଟାଘଣ୍ଟି କରି ପିଜ ସରସ
ତହିଁରୁ ଓହରି ଅଙ୍ଗୀକାର କରି, ରୁଖାରୁଖି ସୁଖାସୁଖୀକି ଗୋ ।୪।
ଚନ୍ଦନ ମର୍ଦ୍ଦନ ବେଳେ ମୋ ଅଖି, ସୁନ୍ଦରୀ କଣ୍ଠ ଶୋଭା ଦେଲା ଦେଖି
ଚିତ୍ତେ ହେଲା ମୋର ଚନ୍ଦ୍ର ଗୃହଳିବାର, ନୋହେ ତ ସେ ନଖାନଖିକି ଗୋ ।
ହନ୍ଦରବତ ସୁଧା ପୂରି ଅସେ, ହରିଚନ୍ଦନ ଜଗଦ୍ଦେବ ଭାଷେ
ହରିଚନ୍ଦ୍ରାନନା ଅବୁର ଧନ ସେ କାହିଁ କଲା ରଖାରଖିକି ଗୋ ।୬।

---

( ୨୦୦ )

ରାଗ—ତୋଡ଼ି, ତାଳ—ରୂପକ

ପ୍ରମଦକୁଞ୍ଜର-ରାଜଗତି ରେ, ତୁ ମୋ ଓଜଗଣ ଏ ଜଗତୀରେ
ମୋଠାରେ କରୁଣାଅଚରିଲେ ଉଣା ବୋଲାଇବୁ ନାହିଁଟି ଏ କ୍ଷିତିରେ ॥
ରତିପଣ୍ଡିତା, ମୁଁ ଚଣ୍ଡୀପଦରେ—ଚଢ଼ାଇ ଚମ୍ପକ ଶୁଦ୍ଧମତିରେ
ତୋ ଚରଣ ଦାସ ବୋଲାଇବା ଯଶ-କୁସୁମେ କରିଛୁ ପରମ୍ପରୀ ରେ ॥୧॥
ଅମ୍ଭୀର ନଗରୀ ଶୋଭା ଭୂତରେ, ଗମ୍ଭୀର ହୃଦୟା ଦୟାବତୀ ରେ
ବ୍ରଜେ ଥିବା ଅଜ ମିଳିବ ଯେ କାହୁଁ ତୋହପରି ପ୍ରଭୁ ବସୁମତୀରେ ॥୨॥
ବଣାମୃଗନେତ୍ରା ଅଗେ ଭ୍ରାନ୍ତିରେ—କଣାଇଁ ନ କାଣେ ସବନତରେ
କରିଛି ମୁଁ ଅନୁମାନରେ ସୁତନୁ ପରସନ ନୋହୁ ଅତ ସୁତିରେ ॥୩॥
ନିପଟ କପଟଶୂନ୍ୟ ପ୍ରୀତିରେ—କରିବାରୁ ତୁମ୍ଭ ଅଙ୍ଗୀକୃତରେ
ଟେକାଇଛୁ ସୁଖ ଦାୟିନୀରେ ଦେଖ ସରସେନ୍ଦ୍ର ପଦ ଶ୍ୱେତଛତ୍ରୀ ରେ ॥୪॥
ଶ୍ୟାମବାଣୀ ଖଳସନ୍ତେ ଶ୍ରୁତରେ, କାଣୋଇ କମିଲେ ଲୋକେ ଗ୍ଲାନିରେ
କଣୋର କାଣୋଇ କର କୃପାଭର ଅଷ୍ଟବର୍ଗ ବସୁମତୀ ପତିରେ ॥୫॥

---

( ୨୦୧ )

ରାଗ—କେଦାର—ଅଦତାଳ

ପ୍ରାଣନାଥ ବଜେ ବେଳ ବଳିଲା ରେ । ଘୋଷା ।

ସଖି, ହେଲା କି ପାପ  ଦେଖ ଏ ଚନ୍ଦ୍ରାତପ—
ବନ୍ଧା କୁସୁମ ଥୋପ ଅସି ଲୁଳିଲା ରେ ।୧।

ତୁଟିଗଲା ମୋ ହୃଦ-  ପୂର୍ବେ ଥିଲା ପ୍ରମୋଦ
ମଥାପରୁ କୁମୁଦବନ୍ଧୁ ଟଳିଲା ରେ ।୨।

ଦେଲା ଅହା କି ଫଳ  ଭଲା ତ ମୋ କପାଳ,
ଲଗାଇଲେ ରସାଳ ନିମ୍ବ ଫଳିଲା ରେ ।୩।

ମଣ୍ଡାଇଲି ନିବାସ,  କିପାଁ ହେଲି ଏ ବେଶ,
ଅନେ ତେବେ ଜୀବେଶ ମନ ବଳିଲା ରେ ।୪।

ଶ୍ଲେଷରସ୍ୱ ନୃପତି, ବଙ୍କେ କଲେ ଏ ରୀତି,
କାଣ ସବୁ ସମ୍ପତ୍ତି ମୋତେ ମିଳିଲା ରେ ।୫।

———

( ୨୦୨ )

ରାଗ—ସିନ୍ଧୁକାମୋଦୀ

ପ୍ରାଣବନ୍ଧୁ, କର ଗରବ କାହିଁକି ରେ;
ପରବ ଚନ୍ଦ୍ରମା ଶତେ, କଳାଙ୍କିନୀ କି ତୋ ତୁଳ
ଲବଣ୍ୟାଦି ଗୁଣଗୁଣରୁ କହୁଁଛି ।ଘୋଷା।
ଜଳଧର ପଙ୍କ, କି ଅବା କଳଙ୍କ
ଖଣ୍ଡେ ଶିରୀଷର ଫୁଲେ,
ନାହିଁ କି ନଜର, ରସାଳସା ତୋର
ନେତ୍ର ଇନ୍ଦୀବର ଫୁଲେ ।୧।
ମୋ ସୁଧାଙ୍କୁଳରେ, ବସୁଧା ତଳରେ
କେ ଅଛି ବୋଲି ଯା ଭାବେ,
କର୍ଣ୍ଣେ ନାହିଁ ଶୁଣି, ତୋ ମୃଦୁଳ ବାଣୀ
କଳାସକୁ ପରି ଲଭେ ।୨।
କରିଛି କି ମନେ, ଏ ତିନି ଭୁବନେ
ମୁଁ ଏକା ରଜନୀକର,
ଫୁଲ ଶେଜରତେ, ତୋ ଚରଣେ କେତେ
ଲୋଟିଲ ରଜ ନାକର ।୩।
ଜଗତୀରେ ଏକା, ମୋହନ ଚନ୍ଦ୍ରିକା
କୁଟିଲ ବୋଲି ଯେ ବୋଲେ,
କୁନ୍ଦ ବିକାଶକୁ, ନନ୍ଦକା ହାସକୁ
ଖେଳାଇ ହେଉଛି ଗେଲେ ।୪।
ଭାବୁଅଛି ଶତେ, ଭଜିଛନ୍ତି ମୋତେ,
ଅନେକ ନକ୍ଷତ୍ରମାନେ,
ଶ୍ରୀହସ୍ତ ଚରଣ-କଞ୍ଜ ନଖଗଣ
ଶୋଭା ଗୁହଁ ନାହିଁ ଦନେ ।୫।

ଟେକିଦଅ ମୁଖ, ଏ ଶୀତ ମୟୂଖ-
ଜିତ ହୋଇ ମରୁ ଚଳି
ନାଚ ମଧୁବନେ, ଅନେକ ବିଧାନେ
ଢେଟେ ଚନ୍ଦ୍ର ଥାଉ ଚଳି ।୬।
ଚକୋର ଏହାର, ବଢ଼ ପରସ୍ପର
ତୁ ସେବା ଦେଉଛୁ ମୋତେ,
ଅଷ୍ଟବର୍ଗ ଧରାମଣ୍ଡଳୀ ଅମରାବତୀ-
ପତ ବୋଲେ ଗୀତେ ।୭।

---

( ୨୦୩ )

ରାଗ—କଲ୍ୟାଣ—ଏକତାଳି

ପ୍ରାଣସଜନୀ, ଘେନ ସଣିକୁ ଗୋ
ଅଣ ଯାଇ କିଶୋର—ସଣିକୁ ଗୋ ।
ଶାଣ ଦେଇ ମଦନ, ବାଣଗଣରେ ପୁଣ,
ଛାଣ ନେବଟି ଅଜ ପ୍ରାଣକୁ ଗୋ ।
ଅକଳଙ୍କ ଶରଦ, ପରବ-ବିଧୁ ମଦ-
ଦଳନ ମୁଖ-ଦରପଣକୁ ଗୋ
ଦେଖାଇ ଥରେ ମୋତେ, ଅଧରୁ ମଧୁ ଯେତେ,
ଚଖାଇ କର ପରିତ୍ରାଣକୁ ଗୋ ।୧।
ତାହାର ଦନ୍ତାବଳି, ମଣିମୟ ମଞ୍ଜୁଳ –
ସ୍ତମ୍ଭ ଭୁଜ ପରିରମ୍ଭଣକୁ ଗୋ
ଝାଳ ରହୁଛି ମନ, ଜାଳିଣ ଅପଘନ,
କରିବି ଚୁମ୍ବ ବରଷଣକୁ ଗୋ ।୨।
ଦ୍ରାକ୍ଷା ମଧୁ ମଧୁର, ସାକ୍ଷାତେ ଗୂଢ଼ ଗିର,
ବଖ୍ୟାତ କର ମୋ ଶ୍ରବଣକୁ ଗୋ
ଭିକ୍ଷାକରେ ସୁରତ, ଲକ୍ଷ ବିଧି ସବତ,
ଇକ୍ଷା କି ହେବ ସତୀ ପଣକୁ ଗୋ ।୩।

ମଦନ ଅମଳରେ, ରଦନକ କ୍ଷତରେ,
ବଦନ ଯେତେ ଦେଇ ଝାଶକୁ ଗୋ
ଭାଙ୍ଗିବା ଯାଏ ସହୁ, ଇଙ୍ଗିତେ ଦେବନାହିଁ,
'ନାହିଁ' ଭଙ୍ଗୀର ଅଚରଣକୁ ଗୋ ।୩।
ଅଭିନବ ମୁଦର, ଶୋଭାକୁ ତ ନଜର,
ଗମ୍ଭୀର ସେ ହଂସର ସ୍ନାନକୁ ଗୋ
ଭରବା ଭାଳେ ଲଜ୍ଜା, ବରଜ ଦେଇ ମଜା,
ହେଲଣିତ ମଚ୍ଛିବା ଭଣକୁ ଗୋ ।୪।
ଗୃହୁ ଚନ୍ଦ୍ରକ ଚୁଳ, ଶୋଭା ନେତ୍ର ଯୁଗଳ,
ଗୃହିଁ କଲି ଭଣ୍ଡୀବରଣକୁ ଗୋ
ଅନୁକମ୍ପା କି ହେବ, ନାହିଁ କି ଜଗଦେବ,
ପିତଲର ଗୁଣାର ଶୁଣାକୁ ଗୋ ।୫।

---

( ୨୦୪ )

ରାଗ—ଝିଂଝୋଟି—ଏକତାଲି

ପ୍ରାଣବନ୍ଧୁଅରେ ତୋ ଶୋଭାକୁ ଗୃହିଁ
ପୁରନ୍ଦର ସମ୍ପଦ ମୋ ନେତ୍ର ଲୋଡ଼ୁନାହିଁ । ଘୋଷା ।
ଫୁଲ୍ଲ ପଙ୍କଜ ଚନ୍ଦ୍ର ଦର୍ପଣ ସୁନ୍ଦରାନନୀ ମୋ ଧନୀ
ହେମ ଚମ୍ପକ କେତକୀ ତନୁ ଶମ୍ଭୁ—ଦମ୍ଭ ବିନାଶିନୀ
ତାର ହୀରକ କୁନ୍ଦ ମୌକ୍ତିକ ଭାଣହାସୀ ବିଳାସିନୀ
ଧରା ଧନ୍ୟ ହେଉଛି ତୋ ପାଦ ସଙ୍ଗ ଘେନି ।୧।
ନୀଳଉତ୍ପଳ ଖେଳ ଚଞ୍ଚଳ ମୀନ ଖଞ୍ଜନ ଲୋଚନୀ
ବୀର ମନ୍ମଥ ବାଣ ସମ୍ଭବଟି ଦୁଃଖ ବିମୋଚନୀ
ଲୋଳ ଲୋଚନ କଞ୍ଜରଞ୍ଜନ କୁଞ୍ଜରାଧୀପ ଗାମିନୀ
ଅନଙ୍ଗ ମଙ୍ଗଳ-ରମା ତୁ ମନମୋହିନୀ ।୨।
ମଞ୍ଜୁଳାଞ୍ଜନ-ପୁଞ୍ଜଗଞ୍ଜନ ନୀଳକୁନ୍ତଳପାଶିନୀ
ଭକ୍ଷିତାନଳ ଯୋଗୀମଣ୍ଡଳ ଯୋଗଖଣ୍ଡନ ବେଣିନୀ
ସାନ୍ଦ୍ର ଚନ୍ଦ୍ର ପରାଗ ସଙ୍ଗତ ଗନ୍ଧସାର ସୁବାସିନୀ
କୃତାର୍ଥ ହୋଇଲା ଯଦୁବନ ତୋହ ଘେନି ।୩।

ବର୍ଣ୍ଣ କୋମଳ ବାଣୀ ବର୍ତ୍ତୁଳ ଚନ୍ଦ୍ରମୁଖ ନିତମ୍ବିନୀ
ଶଙ୍ଖ ବାରଣ କୁମ୍ଭ ଭୂଧର ଚକ୍ରବାକ ଘନସ୍ତନୀ
ଲଲ ପଲ୍ଲବ ବିଦ୍ରୁମ ଭ୍ରମ କରକାଧରୀ ଭାବିନୀ
ରାମଚନ୍ଦ୍ର ଦେବେ କେବେ ନୋହିବୁ ଗୁମାନୀ ।୪।

---

( ୨୦୫ )

ରାଗ—ଆନନ୍ଦଭୈରବୀ—ତ୍ରିପଟ।

ପ୍ରାଣବନ୍ଧୁଅ, ଆଜ ତୋ ଆନାଉଣି ନୂଆ ରେ । ଘୋଷା ।
ସ୍ମିତ କାନ୍ତି ପ୍ରସନ୍ନ, ସନ୍ଧ୍ୟାମଧ୍ୟରେ ଭିନ୍ନ,
ବସୁଧା ସୁଧାରେ ଗାଧୁଅ ରେ ।୧।
ହସ୍ତାରେ ଭଲ ମୋର, ସୁଆଦ ରଦାମ୍ବର,
ପିଅଇ ଧନଡ ମାତେ ଜିଅ ରେ ।୨।
ନାଶ ମରକୁ ଅଛି, କା ସମଜ୍ଜୁ ଛିଛି ଛି,
ବିଷମ ବିଶିଖ-ମଦୁଅ ରେ ।୩।
ଅମଳ ମୃଦୁ ଦେହା, ଶ୍ୟାମଳ ଜରେ ରୁହା,
ଯାମଳ ପୀୟୂଷ-ମାଟିଅ ରେ ।୪।
ଶ୍ରୀ ଜଗଦେବ ଭାଷେ, ଦେବୀ ସବ୍ୟାଙ୍ଗ ହାସେ,
ଆଶିପାଦ ସୁଖିକୁ ଦଅରେ ।୫।

---

( ୨୦୬ )

ରାଗ—ଭୈରବ—ଅଠତାଳି

ପ୍ରିୟସହି, ଏତେବେଳୁ ଥାଅ ମୋତେ ଭିହି ରେ,
ତହିଁରେ ମୁଁ ନାହିଁ ଅବଗାହିବେ । ଘୋ ।ଷା ।
ପ୍ରଥମ ପ୍ରବେଶ କାଳେ, ଅଚ୍ଛାଦି ଅଙ୍ଗ ହୁକୁଳେ,
ଭଲ ହେବ ସିନା ତଳେ, କେଳି ତଳପକୁ ବଳେ,
ଘେନିଯିବେ, ସେହି ସ୍ନେହବହି ରେ । ।

ମାର ମନେ ଖେଳୁଥିବ,　　ପ୍ରଦୀପ ଯେ ଜଳୁଥିବ,
ବିବେକ ତ ଟଳୁଥିବ,　　ଲଜ ତ ପ୍ରବଳୁଥିବ,
ତାଙ୍କମୁଖ, ଅନାଇବି କେହ୍ନ ରେ ।୨।
ମଦନ-ମଦ ଅମଳେ,　　ଚେତା ନ ଥିବାରୁ ଭଲେ,
ଲୋଭ ବଶୁଁ ଅବା ଗେଲେ,　　ପୁନଃ ପୁନଃ ଚୁମ୍ବ ଦେଲେ,
ସ୍ଥିର ହୋଇ, ରହି କି ନରହି ରେ ।୩।
ବୋଲୁ ଯେ ଅଛୁ ବିଧାନ,　　ବାଜି କରନ୍ତି ମୁନ,
ଦେହରେ ନରଖି ସ୍ଥାନ,　　ପୁଣି ଗାଢ଼େ ଆଲିଙ୍ଗନ,
ଏତେ ଦାଉ, ପାରିବି କି ସହି ରେ ।୪।
ବିନତ ହୋଇ କହିଲେ,　　ଏତେ ଅବା ହେବ ହେଲେ,
କି କରିବ ମାଗି ଭୁଲେ,　　ହଟକୁ ପ୍ରିୟ ରଚିଲେ,
ସହିବାର, ପଡ଼ିଲି କି ତାହି ରେ ।୫।
ଅଷ୍ଟବର୍ଗ ନାଥ ଭଣେ,　　ତୋଷ ଗୋ ସଖି ଜଣାଣେ,
ମଣ୍ଡି ମଣି ଅଭରଣେ,　　ବନ୍ଦିବା ଶିବା ଚରଣେ,
ଆସିଲେ ମୁଁ, ଲୋକହସା ହୋଇ ରେ ।୬।

---

( ୨୦୭ )

ରାଗ—କୁମ୍ଭକାମୋଦୀ,-ଅଦ ତାଳ

ପ୍ରିୟସଖି ! କରିବି କି ବୁଦ୍ଧି ଗୋ, ଗଲିନି ମୁଁ ଲାଜେ ସଢ଼ି ।
କେଉଁ ଗୁଣେ ରସି ନିକୁଞ୍ଜ ବିଳାସୀ ମୋ ସ୍ନେହେ ଅଛନ୍ତି ବୁଡ଼ି । ଘୋଷା ।
ମୁଁ ତ ଯଉବନ ଗୁମାନେ ମଦନ ମନ୍ତ୍ରର ଗୂଢ଼ ନଜାଣେ,
ମୋତେ ଜଳକେଳି-ଅଳସୀ ମରାଳୀ-ଗମନା ବୋଲନ୍ତି କେଣେ ।୧।
ବ୍ରଜେ କେତେ ବାମା ନାହାନ୍ତି ସୁଷମା ସମ୍ଭାରେ ରମ୍ଭାରୁ ବଳି,
ସେ ଶିଖଣ୍ଡଚୂଳ ନୟନ ଅଞ୍ଚଳ ଅନେ ତ ନଢାଳି କେଳି ।୨।
ମୁଁ ଗୃହିଁ ନ ଜାଣେ, ଲବେ ନେଇ କୋଣେ ନଚୁଇ ଭୁରୁକୁ ଗେଲେ
ତେବେ ପୀତପଟ ନଟଖଞ୍ଜରୀଟ-ନୟନା ମୋ ନାମ ଦେଲେ ।୩।
ମନ ଜାଣିବାକୁ ଯେଉଁ ଦିନ ଭଲେ ନ ମଜାଇ କଣ୍ଠଭୂଷା,
ବିଗୁଣ ନ ଘେନି ଦ୍ୱିଗୁଣ ସେ ଦିନ କରନ୍ତି ଶୋଭା ପ୍ରଶଂସା ।୪।

ଏଥୁଁ ଅବା ଖେଦ ହେଉଛି କି ମୋଦ ନ ଜାଣନ୍ତି ଅନ ସଖୀ,
କ୍ଷିତପତି-ବୃନ୍ଦ-ମୁକୁଟ ମୁକୁନ୍ଦଦେବ କେବଳ ମୋ ସାକ୍ଷୀ ।୫।

———

( ୨୦୮ )

ରାଗ—କାମୋଦୀ—ଏକତାଳି

ଫୁଲ୍ଲ ମଲ୍ଲୀହାସି ରେ, ସତେ ତୁ କି ସାହସୀ । ଘୋଷା ।
ଶୁଣିଥିବୁ ନୂତନା ଗରସ୍ତନା ପୂତନା
ଲଭିଲା ଅବସ୍ଥାରେ ସୁଖ ଯେତେ;
ତାକୁ ସୁଧା ମଧୁର ଗୁଣବନ୍ତ ଅଧର,
ପିଆଇବାକୁ କିପାଁ ବାଞ୍ଛା ଏତେ ।୧।
ସାତ ବରଷୁଁ ଯାର, ଅଣ୍ଟିଲା ନାହିଁ ଭର,
—କମଳ କନିଷ୍ଠକୁ ଗୋବର୍ଦ୍ଧନ;
ପଡ଼ିଛୁ ତା ହାତୁଡ଼େ, ପୁଣି କାହିଁକି ଏଡ଼େ,
କଳିତ କୁଚୂର୍ପଣେ ଅଭିମାନ ।୨।
ଶରବଗ୍ରହ ପେଟ, ହେବାକାଳେ ଶକଟ,
ହେଲାଟି ଯାହା ସେ ବାଳକ ମୃଦୁ,
ନଥିଲା କିଛି ଜଣା, ଏବେ ଯାଉଛି ଶୁଣା,
ତୁ ପୁଣି ଚୁମ୍ବି ତହିଁ ସ୍ତନେ ଲଦୁ ।୩।
ତମରୁନେହା ଶଢ଼, ଚେଲ ଚୋରର ପଣ୍ଡିତ,—
ବୋଲି ପ୍ରସିଦ୍ଧ ଅଛି ଯାହା ନାମ,
ଏକାକିନୀ ଅବଳା,—ଚେଲ ହରଣ ଲୀଳା,
କି ଚଣ୍ଡ ଚାଳିଲେ ସେ ଘନଶ୍ୟାମ ।୪।
ହରିଣାକ୍ଷିରେ ନାନା ହବ ଗନ୍ଧକୁ ଯା'ନା,
ବୋଲି ଯେ କହୁଥାଉଁ ବାରବାର,
ତନୁ ମଧ୍ୟ କଶୋଷ୍ଠା, ମନୁ ଦେଇ ପାଶୋର,
ସେ ସ୍ନେହ ଘମାଉଛୁ ହାରହାର ।୫।

କହୁଲେ ବସୁଦୁର୍ଗ, ବସୁଧାରନ୍ଦ୍ର ସ୍ୱର୍ଗ,—
ମହେନ୍ଦ୍ର ସଖୀମୁଖଁ ଶୁଣି ଏହା;
ରଚି ସର୍ବାଙ୍ଗ ହାସ, ଶ୍ରବଣ ଅବତଂସ,
ଭଙ୍ଗିର ଜଣାଇଲେ ରମ୍ଭାଦେହା ।୭।

———

( ୮୯ )

ରାଗ—ଭାଟିଆରୀ—ଏକତାଳି ।

ବଦନର ଗୁହିଁ ଛବିଛଟା, ରଦନରେ ଧରୁନାହିଁ କୁଠା
ଗରବରେ ତୁଚ୍ଛା ହରବର ହେଲ ପର୍ବ ରଜନୀ ରସିକୁଠା
ଅଗୋ ପ୍ରିୟସଖି !
ପ୍ରାଣ ପ୍ରିୟଙ୍କୁ ପାରିଲଟିକି ଦେଖି ? ।୧।
ବହୁ ନବ ଯୌବନ ମେରୁ,    ସହୁ କେ ରହୁ ପାରିବ ଶିରୁ
ସେ ମହୁଲା ମନ ମହାନଦୀ ମୀନ-ବାହାଣିଆ ଭଙ୍ଗୀ ଗୁହାଁଣୀରୁ ।୨
ଠୁଳ ହୋଇ ଅଶା ରହେ ଲଖି, ମୂଳରୁ ଟଳିବ ଯେବେ ସଖୀ
ଚୂଳବତୀ ମଣିମଣ୍ଡିତ ମୁକୁଟେ କୁଳବତୀ ଯେବେ ଦେବ ଆଖି ।୩।
ଥାଏ ମୋର ମଦ ମୁଁ ବିବେକୀ,—ପ୍ରାଣତୁଲେ ହୋଇଗଲି ବାକି
ଜାଲିଟି ନିକଟେ ଅନାଇଁ ଦେଲି ମୁଁ କାଳି ଟିକିଏ ସେ ଗୁଲଟିକି ।୪।
ଜଗତେ ବିଜୟୀ ରତିସ୍ୱର, କରିବେ କାମ ମୂରତି ସ୍ୱର
ଇଷ୍ଟକଥା ମାନ ସ୍ପଷ୍ଟ କରିବେ ସେ ଅଷ୍ଟଦୁର୍ଗ ବସୁମତୀ-ସ୍ୱର ।୫।

———

( ୯୦ )

ରାଗ—କାମ୍ବୋଜୀ—ଏକତାଳି

ବରଜି ନ ପାରେଁ ଘନଶ୍ୟାମ ପ୍ରୀତି ଗୋ । ଘୋଷା ।
ସରସିଜମୁଖୀ ଗୁହୁଁ, ବରସିଜ ମୁଖେ କହୁ,
ମରକା ହୁଅଇ, ଯାଉ ପଛେ ଜାତି ଗୋ ।୧।
ଗେଲେ ଗୁଣ୍ଠୁ କହୁବାର, ମଲେ ନ ଯିବ ପାଶୋର
ହେଲେ ହେଉ ଏ ବଚ'ରେ ଅପଖ୍ୟାତି ଗୋ ।୨।

ଗୁରୁଜନ ତର୍ଜନା, କରୁଥିବେ କି ଶୋଚନା
ସବୁ ଦିନ କେବଳ ତା ରସେ ମାତି ଗୋ ।୩।
ନିନ୍ଦିଲେ ନିନ୍ଦିବେ ଜନେ, ଇନ୍ଦିବର ନେତ୍ରମୁନେ
ବନ୍ଧିଦେଲେ ସମ୍ଭାଳି ପାରେ କି ଚିତ୍ତ ଗୋ ।୪।
ପରଜନ ବୋଲେ ପଢ଼ି, ମରମରୁ ଦେଲେ ଛାଡ଼ି
ଦରିଜାଅ କରିଦେବ ରତିପତି ଗୋ ।୫।
ପତି ଅଷ୍ଟଦୁର୍ଗ ଭଜେ, ନିତି ତାର ପଦରଜେ
ପତି ସିନା ଉଗ୍ରସେନା ନୃପତି ନାତି ଗୋ ।୬।

---

( ୬୧୧ )

ରାଗ—ଗୁର୍ଜ୍ଜରୀ—ଏକତାଳି

ବନ୍ଧୁ ଅପୋଷେ, ରସ ନା ପୋଷେ, ଧରୁଛନ୍ତି ପଙ୍କଜ ପାଣି । ଘୋଷା ।
ଜନମରୁ ବୀଣାବଦନୀ ମୁଁ ଜଣା,—ଜନ କି ନ ଜାଣୁ ତାହା ରେ,
ସ୍ୱର-ଶର ଧାରେ, ସବୁଲିଟି ବାରେ, ଧନ ତୁ ନ ବୋଲୁ ଅହା ରେ ।୧।
କରିଥିଲୁ ପଣ, ମୋତେ ଜୀବାଧାର, ଜଣେ ତୋ ଚରଣ ଦାସୀ ରେ,
ଝିଙ୍କିଏ ବାକଳା, ହେଲନାହୁଁ କଳାକୁନ୍ତଳା ନୂଆ ବୟସୀ ରେ ।୨।
ଅରଜନ୍ତି ତୋତେ, ବନ୍ଧୁ କେତେକେତେ,—ଜନେ ତପକର କାଶୀରେ;
ତୁ ଚିତ୍ତ ପଥର, କଲେ ତ ଏଥର, ଭଗାରିଏ ଦେବେ ହସି ରେ ।୩।
ସଖୀବନ୍ଧା ବେଣୀ, ଫେଡ଼ି କୋଳେ ଅଣି, ନଦେଲେ ମୁଁ ଖୋସାଖୋସିରେ;
କୃପା ଥାଉଁ ଚିତ୍ତେ, ତୁହି ପଣ ମୋତେ, ଗେଲେ ବସୁଥାଉ ରୁଷିରେ ।୪।
ତେତେ ବଡ଼ ସ୍ନେହ, କି ଦୋଷରୁ କହ, ତୋ ମନୁ ଯାଉଛନ୍ତି ଖସି ରେ,
ଜଗଦେବ ବୋଲେ, ଶ୍ୟାମ ଜଣାଇଲେ, ପଡ଼ି ଦୁଃଖ ଜଳଧି ରେ ।୫।

---

( ୬୧୨ )

ରାଗ—ସାରଙ୍ଗ-ଏକତାଳି

ବନ୍ଧୁ, ତୁ ମୋ ମଣିହାର ରେ । ଘୋଷା ।
ନାରଦ ନିରତେ ବସୁମତୀ ବାସେ ଝର ମୋ ଜରେ ବିହାର ରେ ।୧।

ଶିସ୍ତିଣ ଅସ୍ତ ଗିର ସମ ଜାଣ ତୁ ନିଶା ସମସ୍ତ ନିହାର ରେ ।୨।
ମନମଥ ଦାବେ ମୋର ଶିବ ଲଟିବେ ତୋ ପୟୋଧରକୁ ଜୁହାରେ ।୩।
ବନ୍ଧୁତ ଗୁମାନେ ବଣ ତୁ ସମାନେ ବାଡ଼ିଅ ଛବଳ ବୁହାରେ ।୪।
ତୋର ସେ ମୃଗାକ୍ଷି ମୋ ଭୁଜଙ୍କ ସାକ୍ଷୀ ହର ମୋ ହୃଦ ଗୁହାର ରେ ।୫।
ଜଗଦ୍ଦେବ ଭଣେ ରସ ସୁବିଳାସେ ରଚନା ମୋ ପରିହାର ରେ ।୬।

---

( ୨୧୩ )

ରାଗ-କାଫି—ଝୁଲ

ବନ୍ଧୁଅ ରେ ବାରେ ଅନାଁ ରେ । ଘୋଷା ।
ବଦନବାସ ସଦରହାସ, କର କର ମାନକୁ ମନା ରେ ।୧।
ଗଜେନ୍ଦ୍ରଗତି, ଗତି ଜଗତୀତଳେ ନାହିଁଟି ତୋହ ବିନା ରେ ।୨।
ନସହି ମୋତେ, କହୁ କେ କେତେ, ଧନ ମୁଁତୋ ଅଧୀନ ସିନା ରେ ।୩।
ମୁଁ ତୋର ବୋଲି, ନ ଜାଣେ ଗୃଲି, ଅହା କିସ୍ମ କରୁଛୁ ଚୂନା ରେ ।୦।
ଗୃନ୍ଥ ଶ୍ରୀମୁଖ, ସୁଧାମୟୂଖ, ଟେକି କରୁଣା କରୁ କି ନା ରେ ।୫।
କବିବୃନ୍ଦମଣି, ଗିରେ ତରୁଣୀ, ହେଲ ଅଶ୍ଳେଷ ସୁଖ ଘେନା ରେ ।୬।

---

( ୨୧୪ )

ରାଗ-ଅନନ୍ଦ ଭୈରବୀ—ରୂପକତାଳ

ବନ୍ଧୁଅ ତୁ ମୋ ସବୁ ଭରସା,
ନ କର ଦରପଣୀକାଭ ରସା । ଘୋଷା ।
ଭୃଙ୍ଗ ମଣ୍ଡେ ମୂନେ କରଗୁହର,
ଏ ଗୁମାନ ପରିହରରୁ ହର ।୧।
ଶ୍ରୀମୁଖ ପରବ-ତୁହିନକର,
ଅରୁଣ ଭାବକୁ ତୁହି ନ କର ।୨।
ବିଅର୍ଥ ଏ ଚନ୍ଦ୍ର କ୍ଷଣଦା ସରେ,
ଖେଳା ଚଞ୍ଚଳ ଲକ୍ଷଣ ଦାସ ରେ ।୩।

ମୁ ସାଧ ନୋହୁଲେ ତଥରଣରେ,
ମାର ମଦନ ହଟିଅ ରଣରେ ।୪।
ସବଲ୍ଟ ଅଷ୍ଟବୁର୍ଗନାଥ ରେ,
ଅନାଁ ଅନାଁ ସୁନାବରନା ଥରେ ।୫।

---

( ୨୧୫ )

ରାଗ—କାମୋଦୀ—ଏକତାଳ ।

ବନ୍ଧୁ, ଭଲ କି ବୁଝିଲୁ ଏ ପୁରୁ ଆଙ୍କି ଖାରକୁ ରେ ।
ଅକ୍ଷରେ ନ ଜାଣିବା ମୂରୁଖ ପରି ନିଜ ବକ୍ଷରେ ଲକ୍ଷ୍ୟକଲ ଶରକୁ ରେ ।।
ସମ୍ବାଦ ଗୁଞ୍ଜ ଆଣି, ମୁଁ ଫିଙ୍ଗିଦେଲି ପାଣି—
ବନ୍ଧ୍ୟ ବଣ୍ଡୁଲ ମୋତି ହାରକୁ ରେ,
ଚଢ଼ାଇ ଦେଲି ଗୃହ-ତର ଚନ୍ଦନ ତରୁ-
ମୂଳେ କର୍କଟୀଲଟୀ ଥରକୁ ରେ । ୧ ।
ଶ୍ୱପଚ ଗ୍ରାମ ମହିଁ, କୂପରେ ବୁହିଁ ବୁହିଁ,
କଲି ସ୍ନାନାଦି ବ୍ୟବହାରକୁ ରେ,
ନକଲି ମନୋରଥ ପଥରେ ଭଗୀରଥ—
ନୃପନନ୍ଦନା ନୀରଧାରକୁ ରେ । ୨ ।
ଚେକି ଠୁକିଲି ଲୋଷ୍ଟ୍ର, ସର୍ବ ସୁପର୍ବ ଶ୍ରେଷ୍ଟ,
ଚନ୍ଦ୍ରଚୂଳ ଦେଉଳ ଦ୍ୱାରକୁ ରେ,
ଯବନ-ଜାତି-ଶବ— ଭବନ ହେବା ଗ୍ରାମ-
କୁଠକୁ କଲି ନମସ୍କାରକୁ ରେ ।୩।
ଅତି ଭାଗ୍ୟ ଅର୍ଜିତ, ଉର୍ବଶୀ ଉପାର୍ଜିତ,
ଆଶ୍ଳେଷ ଘୃଣି ଅଙ୍ଗୀକାରକୁ ରେ,
ବାନରୀ ନେତ୍ରପ୍ରାନ୍ତ ବଢ଼ାଇବା ସଂକେତ—
ସ୍ଥଳକୁ କଲି ଅଭିସାରକୁ ରେ । ୪ ।
ଶିଳାଶଯ୍ୟନୁ ଡର ନ ଥିବା ଗଜଡ଼ର
ନିମନ୍ତେ ବର୍ଣ୍ଣି ତୁଳ ସାରକୁ ରେ,
ଶିରୀଷ ସୁକୁମାର, ମହାରାଜ କୁମାର—
କନ୍ଧରେ ବୁହାଇଲି ଭାରକୁ ରେ । ୫ ।

ଶର ଅଭ୍ୟନ୍ତ ଶସ୍ତ୍ର,        ସଂସ୍କୃତ କର ଅସ୍ତ୍ର,
ବସି ଘୋଷିଲ୍ ଶଣୀଠାରକୁ ରେ,
ନନ୍ଦଜ ଚକ୍ରାଯୁଧ        ତରବ ବୋଲି ଶଧ—
କଲ୍ ସଂସାର ଅକୂପାରକୁ ରେ । ୬ ।
କବିସିନ୍ଧୁର ବୋଲେ        ଏପର ହେଲେ ହେଲେ
କ୍ଷମା ଜଗତ ପରଗୁରୁକୁ ରେ,
ଦୋଷ ମୁଁ କରିଅଛି        ଲଙ୍ଘିଲି ଯେବେ କିଛି,
ତୋତେ ପଣ୍ଡିତା ଅଗ୍ରଗାରକୁ ରେ । ୭ ।

———

( ୨୧୭ )

ରାଗ-ଏମନ କଲ୍ୟାଣ—ଅଦ୍ଧତାଳ

ବନ୍ଧୁ ମୋ ଲାବଣ୍ୟସିନ୍ଧୁ କେବଳ ଧନ୍ୟ ସିନ୍ଦୁର ଗନ୍ଧ ଗଣନାରେ । ଘୋଷା
ଜମ୍ବୁ ଦଳନ-ଗଜ କୁମ୍ଭଛୁ ତା ଜରଜ
ଉଣା କି ଗୋଟିଏ ଶନାରେ । ୧ ।
ମନ୍ଦ ମଧୁର ହାସେ ଚନ୍ଦ୍ରିକାକୁ ଯାହା ସେ
ଛନ୍ଦଇ କୁନ୍ଦ ଦଶନା ରେ । ୨ ।
ଇନ୍ଦୁ କୁ ନିନ୍ଦାନନେ ନିନ୍ଦୁଛି ପ୍ରଭବନେ
ସିନ୍ଦୁରାଧର ନବୀନା ରେ । ୩ ।
ପଞ୍ଚ ନାରାଚ କୁନ୍ତ ଚଞ୍ଚଳ ତା ନେତ୍ରାନ୍ତ—
ମୂନରୁ ହୋଇବ ଖୂନା ରେ । ୪ ।
କୁନ୍ଦନବଡ଼ା ଗୃହ୍ଣ କୁନ୍ଦନ ପ୍ରଭମାରୁ
ସୁନ୍ଦର ମୋ ଧନ ସିନା ରେ । ୫ ।
ବର କାଶୋସି ମୋତେ ତରଙ୍ଗ ମୃଦୁଶବ୍ଦେ
ସୁନାରେ କରଇ ମିନା ରେ । ୬ ।
ଅଷ୍ଟଦୁର୍ଗେଶ ଭାଷେ ଶ୍ୟାମ ଏହା ମାନସେ
ଛିନ୍ନିଲେ ଯମୁନା କିନାରେ । ୭ ।

———

( ୨୧୭ )

ରାଗ—ବେଗଡ଼ା—ଏକତାଳି

ବନ୍ଧୁଜୀବାଧର ଭୁଲିବି କିଂର ଆରେ । ଘୋଷା ।
ସୁନ୍ଦର ସରସସ୍ମିତ— ଅଧରେ କରି ସଞ୍ଚିତ
ପ୍ରସରାଇ ଦେ' ସୁଧାକୁ ବସୁଧାରେ । ୧ ।
ଲଭିଛି ତୋ ଗହଣେ ସୁଖ, ମାଗିବାର ସିନା ଏସୁଖ
ଅନାଇଁ ମୁଁ ନାହିଁ ବାନା କରୁଣାରେ । ୨ ।
ଦେଖି ମୋ ବିନୟ ଆଜ ରାଜିବାକ୍ଷୀ କର ରାଜ
ରଣରଣ ଧରଣୀ ଖେଳକୁ ବାରେ । ୩ ।
ଅବଲମ୍ବ ତୋଟେ କର ଭବାବ୍ଧି ପୂରୁ ନ ଡ଼ର
ମୋହନାରେ ଠକୁରନ୍ତୁ ତୋହ ନାଁ ରେ । ୪ ।
ନିଖିଳ ସୁଖ ସମାଜ ନାଶନରୁ ମାନ ଲାଜ
କର ରୁମର କେଶା କି ପରିଗ୍ରହରେ । ୫ ।
ହରି ଗିରେ ଶ୍ରୀବଲ୍ଲଭ ହରଷେ ଗଲେ ପଲ୍ଲବି
ନୃପ ଜଗଦ୍ଦେବ ଭଣେ ଶରଧାରେ । ୬ ।

—o—

( ୨୧୮ )

ରାଗ-କରୁଣା ଶ୍ରୀ—ଝୁଲ

ବନ୍ଧୁ ଲୁଚିଲା, ଅନ୍ଧୁଦର ପରି ପୁଣି ଦିଶିଲା,
ରାମା ଲୁଚିଲା, କାମାନଳମୟ ସବୁ ଦିଶିଲା,
ବାଲା ଲୁଚିଲା, ହଳାହଳ ଜ୍ୱାଳାମୟ ଦିଶିଲା । ଘୋଷା ।
କି କଲୁ ଅହ୍ଵା ସୁଶ୍ରୋଣି, ମୋ ପରମ ସୁଖଶ୍ରେଣୀ,
ସ୍ୱର୍ଗ ବଢ଼ନ୍ତି ନିଃଶ୍ରେଣୀ ଖସିଲା ରେ । ୧ ।
ଅନଙ୍ଗ ବାଣ ବରଷା, ସଙ୍ଗେ ତ କୁରଙ୍ଗ ଦୃଶା,
ସବେଷ ଅପାଙ୍ଗଭୂଷା ମିଶିଲା ରେ । ୨ ।
ତାର ନିରନ୍ତୁ ମୁଁ ପର— ବାରକୁ ଡରି ଜୁହାର
—ବାର ନୀରସ ଭଙ୍ଗାର ହସିଲା ରେ । ୩ ।

ଦେଖି ନଥାଇ ଏ ଭୂତ,          ଶିଖାଇ ବୁଝାଁନ୍ତ ନାଥ,
ଭେଙ୍କି ପିଶୁନ ମୋ ଧୂର୍ତ୍ତ ଭଣିଲ ରେ । ୪ ।
ସନ୍ତାପ-ସିନ୍ଧୁ କୁ ନବ,—          ବାଳାସିଣୀ ସିନା ପ୍ଳବ,
ଶ୍ରୀ ବାଲୁକେଶ୍ୱର ଦେବ ଭାଷିଲରେ । ୫ ।

———

( ୨୧୯ )

ରାଗ-ପୂରବୀ—ଅଠତାଳି ।

ବଂଶୀଧାରୀ, ସରସିବନାହିଁ ଜୀବନେ କିଶୋରୀ ହେ । ଘୋଷା ।
ବିରହରେ ସଖୀ ହୋଇଛନ୍ତି କାତର, ସବୁ ସରିଲାଣି ସରୋଜ ପତର,
ଦେଖିଲି ସଖୀର କଣ୍ଠରେ ମାତର, ଜୀବନକୁ ଅଛି ଧରି ହେ । ୧ ।
ଲଭୁ ନଥିଲ ମୋ କରକୁ ନାଟିକା, ସଜନୀମାନେ ଦେଖି ହେଲେ ତାଟକା
ଧାଇଁ ଅଇଲି ନ ସହୁ ତାଙ୍କ ଡ଼କା, ଥିବ କି ଯିବନି ସରି ହେ ।୨।
ନାସାଗ୍ରତେ ତୁଳା ଦେଲେ ତତପର, ନଚଳିଲ ପର ଦଶିଲ ନାଗର
ସଜନୀମାନେ ବସିଣ ସେହି ପୁର, ହା ରବରେ ଥିଲେ ପୂରି ହେ ।୩।
ତୁମ୍ଭ ଭଳି ଯେବେ ନୋହିଲ ପାତର, ପଚାରୁଛନ୍ତି ଶ୍ୟାମ ନନ୍ଦଅ ଉତ୍ତର,
ଅନ୍ତର୍ଗତେ ଯେବେ ଥିଲାଟି ଅନ୍ତର, ଚତ୍ତ୍ କିପାଁ ଭଲି ଗୈରି ହେ ।୪।
ଲାଗିଥିଲେ ଜବାଧରୀର ସେବାରେ, ଅସ ହେ ରାଜୀବନେନ୍ଦ ଯିବା ବାରେ,
ହଟି ବସିଅଛି ପରାଣ ନେବାରେ, ପାପୀ କାମ ଯମ ସରି ହେ ।୫।
ଦୀନବନ୍ଧୁ ଥାଉଁ ବିରହ-ତୁଷାର, ନାଶିକଲେ ପଦ୍ମିନୀକି ଏ ଅସାର,
ବୋଲେ ଭବରବି ସାର କି ଅସାର, ହସିବେ ସିନା ଭଗାରି ହେ ।୬।

———

( ୨୨୦ )

ରାଗ—ହୁସେନୀ—ଅଦଡ଼ାଳ ।

ବରନାରି । ଗୁମାନ ମନେ ଧରି ନା ରେ । ଘୋଷା ।
ଅମ୍ବୁଜ-ନେତ୍ର ସାଞ୍ଜନ          ଅମ୍ବୁ ନବରଷ ଧନ,
ଭମ୍ବୁ ଭଣ୍ଟି ଜାମ୍ବୁନନ୍ଦ ବରନା ରେ ।୧।

ନଖେଳ ମୋ କୋଳେ ରସେ,　　　ସଖେଦେ ମାନସରୋଷେ,
　　ନଖେ ଧରି ଶରବାର କରନା ରେ ।୨।
କର ବଦନେ ପ୍ରକାଶ,　　　ପରବ ଚନ୍ଦ୍ରକା ହାସ,
　　ଗରବ ଗିରକୁ ମୋର ଚୂରନା ରେ ।୩।
କାରାଧିପଭାଷୀ ଆସ,　　　ବିପିନ କୁଞ୍ଜନିବାସ,
　　ଧୀରି ମୋରେ ନାରୀଶ ଅଚରନା ରେ ।୪।
ଅନ୍ତର ରଖି ଭିଡ଼ିବ,　　　ଜନ୍ତର ହୋଇ ଜଡ଼ିବ,
　　ଦନ୍ତର ବ୍ରଣ ନୋହିବ ଡ଼ରନା ରେ ।୫।
ଗାଲ ପଛେ ଦିଅ ପଦେ,　　　ମାଳ ହୁଅ ତୁ ମୋ ହୃଦେ,
　　କାଳିନ୍ଦୀରେ ପଡ଼ିବାର କରନା ରେ ।୬।
ରାଧାକୃଷ୍ଣ ପଦ ଭାବି,　　　ବିରଚିଲେ କବିରବି
　　ନରନାଥ ଜଗଦ୍ଦେବଙ୍କର ନାଁ' ରେ ।୭।

---

( ୨୨୧ )

ରାଗ—କନଡ଼ଗୌଡ଼—ଅଠ ତାଳ ।

ବରନାଗରୀ, ଅଜ ଥରେ ହେଲୁ ମୋ ପରି ରେ ॥ ୦
ଦୀପ ଥିଲେ କି ପରୁଅ ରେ ପ୍ରାଣବନ୍ଧୁଅ ।
　　ଯେବେ ତୁ ମୁଁ ତୋର କି ପରୁଅ ରେ ? । ୧ ।
ବିବସନ ବେଶୁଁ କି ଲଜ, ରେ ରସିକାରାଜ ।
　　ଦିବସ କାଳ ତ ନୁହେଁ ଅଜ ରେ । ୨ ।
ରହୁ କଳାପ କିଙ୍କିଣି, ରେ ତରୁଣୀମଣି ।
　　କେ ଆସିପାରେ କି ତାହା ଶୁଣି ରେ । ୩ ।
ବୁଜିଥିବି ମୁଁ ମୋ ଆଖି, ରେ ବଣା ମୃଗାକ୍ଷୀ ।
　　ଗୁହିଁଲେ ମୋ ଅଙ୍ଗେ ଯିବୁ ଲାଖି ରେ । ୪ ।
ଦେଖାଇବି ଦରପଣ ରେ ତୁ ରଣରଣ
　　ରଣେ କର ବାହାଦୁର ପଣ ରେ । ୫ ।
ଶ୍ୟାମ ଗିରେ ବାଳା ବସେ, ବ୍ରୀଡ଼ା ବିଳାସେ
　　ବସୁଦୁର୍ଗ ପୁରନ୍ଦର ଭାଷେ ରେ । ୬ ।

---

( ୨୨୨ )

ରାଗ—ରଣବାଡ଼େ—ଅଧତାଳ

ବାଳା ନା ସ୍ନେହ କଲାନାଗରେ, ସବୁଯିବୁଟି ରଜନୀ ଜାଗରେ । ଘୋଷା ।
ଦେଖୁଛୁ ତ ଗର୍ବ କୁଟିଳ ଗୂଳ,
ଭୁଜଙ୍ଗ ପୁଙ୍ଗବ ମୁଁ ସିନା ବୋଲ, । ୧ ।
ତାହାର ଅତି ପ୍ରୀତି କଲାପିରେ,
ତହୁଁ ବହଇ ତା କଲାପ ଶିରେ । ୨ ।
ମୁରଲୀଧ୍ୱନି ଦମ୍ଭ ଗରଜନ,
କେ ସହୁବ ନୋହୁ ମୋହିତ ମନ ।୩।
କଲେ ତା ଭୋଗେ ଅଭିଳାଷ ଲବ,
ଅଣ୍ଟିବ ନାହିଁଟି ବନପଲ୍ଲବ ।୪।
ଯାଉ ହୋଇ ସବୁଯିବୁ ସଦନେ,
ବଂଶୀଦେବ ଯେବେ ବଂଶୀବଦନେ ।୫।
କବିମାର୍ତ୍ତଣ୍ଡ ଗୋପୀଗୁରୁ କହେ,
ଗଜ ଚରମେ କାହା ସ୍ନେହ ନୋହେ ।୬।

---

( ୨୨୩ )

ରାଗ—କେଦାର—ଅଡ଼ତାଳ ।

ବନ୍ଧୁ, ଅଛୁ କା ଲୋଡ଼ା, ନୂଆ ନଅଳୀ ନିର୍ମିତ ଚୂଡ଼ା ରେ । ଘୋଷା ।
ପରମାର୍ଥିକାରେ ଫଇମାସୁଥିବୁ ମୋଠାରୁ ବରଜୀ ଗ୍ରୀଡ଼ା ରେ,
ମନ ଥାଇ ଲାଜଭର ବଶୁଁ ବ୍ୟାଜଛନ୍ଦ କଲେ ବଡ଼ ପୀଡ଼ା ରେ ।୧।
ନପାଇବା ସୁଖ ମୋ ଅଟେ ଶ୍ରୀମୁଖ ନୋହିଲେ ସଂକୋଚ ଛଡ଼ା ରେ,
ଚଉଁ ଥାଉ ମୁଁ ତୋ ସଙ୍ଗୀ ତ ଜଗତବାହୁଡ଼ା ବଜେ ପାହାଡ଼ାରେ ।୨।
ଇଚ୍ଛାମାପିକେ ତୋ ବିଚକ୍ଷଣା ବନାଇ ଦଅଇବ ହୋଇ ଛୁଡ଼ା ରେ,
ଅଣାଅଛୁ ତ ବହୁତ ବାସନ୍ତିକ ବାସ କୁସୁମ ପାଖୁଡ଼ା ରେ ।୩।
ସଇବନ୍ଧୁ କାଳୁ ସହ କହୁ ଥା ତୁ ଅଜ ହୋଇବ ନିବଡ଼ା ରେ,
ହଂସ ଅବତଂସ ଲହସା ଖୋସାକି କ ବେଣୀ ଲୋଟଣୀ ଜୁଡ଼ା ରେ ।୪।

ଅଳପକେ ଯେ ହେଉଥାଏ ତରୁଣ ତରୁଣୀଙ୍କ ଘରବୁଡ଼ା ରେ,
ଧନ ଶକ୍ତିରେ ଆମ୍ଭର ବଶଂବଦ ହେବ ସେ ସ୍ମର ବାପୁଡ଼ା ରେ ।୫।
ନମାନିବ ଯେବେ ଦଣ୍ଡକେ ମହତ୍ତ୍ୱ ବନାଇ ଦେବା ଦକଡ଼ା ରେ,
ଜଗଦେବ ଗୀତେ ବୋଲେ କର ମୋତେ ଅଳପ ତଳପଗଡ଼ାରେ ।୬

---

( ୨୨୪ )

ରାଗ—କାଫି—ଏକତାଳ ।

ବନ୍ଧୁ, ବାରନ୍ତେକ ମୋତେ ଗୋ । ଘୋଷା ।
ଦୁଃଖସମାଜ ହଜାଇ ଆଜଦନ କି ସୁପ୍ରଭାତ ସତେ ଗୋ ।୧।
ମୁଁ ଜାଣିନାହିଁ ଦେଲେ କି ଗୁହିଁ ଖେଳ ଅଞ୍ଚଳ ନୟନାନ୍ତେ ଗୋ ।୨।
ମୁରଲୀଧର ରମ୍ୟଅଧର ମନ୍ଦେ କି ମଣ୍ଡିଥିଲେ ସ୍ମିତେ ଗୋ ।୩।
ମୁଁ ଅଙ୍ଗଯତ ଥିଲି ଯେ ମିତ କିସ ବିଗୁରିଥିବେ ଶତେ ଗୋ ।୪।
ମୁଁ କି କରନ୍ତି ରେ କୁନ୍ଦଦନ୍ତୀ ଯେବେ ସେ ଦେଖନ୍ତେ ଏକାନ୍ତେ ଗୋ ।୫।
ଥରେ ମଧୁର ତାଙ୍କ ଅଧରପାନ ଦଅଇବୁ କି ମୋତେ ଗୋ ।୬।
ପୂତ ନିଃସର୍ଗରୁ ଦୁଇଦୁର୍ଗ ମହୀ-ମହେନ୍ଦ୍ର ବୋଲେ ଗୀତେ ଗୋ ।୭।

---

( ୨୨୫ )

ରାଗ—ତୋଡ଼ି—ଆଠତାଳ ।

ବାଜିବା-ଭୂଷା ପଦରାଜୀବ ଯୁଗଳରେ
ଅଜି ବରବରନା ଭରନା ରେ । ଘୋଷା ।
ଛଣା ମଧୁବଚନା ଝଣାଣ ବୋଲି ସିନା
ଜଣାଇ ଦେବେ ସେ ତୋହର ନାଁ ରେ
ଦଳା କସ୍ତୁରୀ ଘନେ ବୋଳାଅ ଅଙ୍ଗଘନେ
ଧଳା-କଳାପ ମନେ ଧରନା ରେ । ୧ ।
ନିକୁଞ୍ଜକୁ ସଜନୀ ଆଜ ଯିବା ରଜନୀ
ମୁଁ ଆଗେ ଅଛୁ ପଛେ ଡ଼ରନା ରେ । ୩ ।

କହେ ଶ୍ରୀ ଜଗଦ୍ଦେବ ନନ୍ଦା ସଫଳ ହେବ
ବ୍ରଜେ ତୋ ନାମେ ବଂଶୀଧର ନାଁ ରେ । ୨ ।

—୦—

( ୨୨୭ )

ରାଗ—ଦେଶାକ୍ଷ—ଏକତାଳି ।

ବାମ-ନେତ୍ରା, କୋଣେ ମାନ ଥରେ ମୋତେ ଚାହାଁ ରେ । ଘୋଷା ।
କାହ୍ନୁଁ କି ରେ ଜୀବଧନ, ମୋଠାରେ କରୁ ତୁ ମାନ
ଦିନକୁ ତ ଦିନ ଅନ କଲୁ ଜାନକୁହାରେ । ୧ ।
ଦୟା ଅଛି ହୃଦେ ପୂର, ନବନୀତ ସୁକୁମାରି
ହେଲାପର ସୁନାଗୋରି ଭରମ ତ ଲୁହାରେ । ୨ ।
ସହି ନ ପାରଇ ଅଜ, ଏ ମଦନଶର ଦାଜ
ଅତ ଅଣା ଥାଉ ଥାଉ ଟେକି ରଖ ବାହା ରେ । ୩ ।
ଜଳନ୍ଧର ନାଥ ଭଣି, ଯୁବରାଜ ଯୁଗ ଶ୍ରେଣୀ
ହେନ ତୁ ମୋହର ବାଣୀ କହୁବୁଝି ଏହାରେ । ୪ ।

—୦—

( ୨୨୭ )

ରାଗ-ଶାବେରୀ—ଏକତାଳି ।

ବାରବାର ତୁ ପଦଗୃର ଜନକୁ ଗୋରି ନ ମାର ସ୍ମର-ଶର ଧାରରେ ॥
ଭ୍ରମ ବଶେ ହେଲେ—ମୋର ଦୋଷ ଦଶିଲେ
କରନ୍ତୁ ସିନା ପ୍ରତିକାର ରେ । ୧ ।
ଅମ୍ଭୋଜନେତ୍ରା ଜାଣ—ଦମ୍ଭୋଳିର କଷଣ,
ଯୋଗ୍ୟ କି କଣଳସ୍ଥ ଗ୍ଲର ରେ । ୨ ।
ଅଗାଧ ନୋହୁ ମାନ—ଲଙ୍ଘା ମୋ ଉରେ ସ୍ତନ
ଅଗାର ନ ପୁରାଇ ଗାର ରେ । ୩ ।
ଘେନ ଧନ ମାନସେ—ଯେ ନଳିନୀକୁ ହସେ
ସେ ନୟନୁ କି ଅଶ୍ରୁଧାର ରେ । ୪ ।

ସଲିଳ ଗତି ଭଙ୍ଗୀ—ବଳ୍ଳୀ କମନୀୟାଙ୍ଗୀ
ମଲ୍ଲିଛି ମଦନ ବେକାର ରେ । ୫ ।
ଶ୍ରୀ ଜଗଦ୍ଦେବ ଭୂପେ—ଶ୍ୟାମ ବନସ୍ତୁ ଛୋପେ
କଣୋସ୍ତି କଲେ ଅଙ୍ଗୀକାର ରେ । ୬ ।

——

( ୨୨୮ )

ରାଗ—ଇମନ କଲ୍ୟାଣ—ଏକତାଳି ।

ବାଣି ବୀଣାବାଣୀ ଠାଣି ଜାଣିଲି ରେ । ଘୋଷା ।
ଅଳଙ୍କର ପ୍ରୀତି ପାଳିବାର ରୀତି
ଟାଳିବାର ଧୃତି କେଉଁକୋଣ ଠାରେ ।୧।
ଗଜଗତି ଉଚ ସଜରେ କରୁଚ
ନଜର ନ କରେ ଅବିବେକ ସ୍ଥରେ ।୨।
ପଲ୍ଲବକୁ ହର ହଲ୍ଲକର ଶୀର
ସ୍ମଲ୍ଲେ ନାଗରୀ ଅଙ୍ଗ ମୋର ନାଁ ରେ ।୩।
ଏହୁ ଯଉବନ ବହୁ ଜାତୁ ଧନ
ସହିଲେ ତା' ପୁନ ହେବ ଭାରୀ ଭରେ ।୪।
ଅଳସ ନଜର ଚଳ ସହଚରୀ,
କଳଶ ପୀନସ୍ତନାକୁ ଘେନ ଅ ରେ ।୫।
ଅବୁଦୁର୍ଗେଶ୍ୱର କଷ୍ଟ ହେଲା ଦୂର
ଇଷ୍ଟଦେବ ତାର ଅନୁକୋଶ ସାରେ ।୬।

——

( ୨୨୯ )

ରାଗ—ଝିଁଝୋଟି—ଅଠତାଳି ।

ବାରିଜାକ୍ଷି, ମନରୁ ମାନ ବାରଦେ'ରେ,
ଦେଖ କାଳ ହେଲେ କଳା ବାରଦେ ରେ । ଘୋଷା ।
ଦାସ ନାଶରେ ମାନସ, ବଢୁଛୁ ଯେବେ ନାରୀଣ,
କରଜ ନାରାଚ ମାର ଶରେ ଦେ' ରେ ।୧।

ତୋ ଚରଣ ସେବାଭଳି, ନୋହିଲି ଯେବେ ରେ ଅଳି,
ଗାଳି ଦିଅଇ ମହତ ସାର ଦେ' ରେ ।୨।
ଏବେ ବନ୍ଧୁ ଅନାଥରେ, ଦୟାଥିଲେ ଅନାଁ ଥରେ,
କରୁଣା-କଟାକ୍ଷ ନେଳେ ଠାର ଦେ' ରେ ।୩।
ମହିଳାମଣି ଜଗତେ, ତୋ ବିନା ସାହା କେ ମୋତେ,
ମାର ମୁଖୁ ବଞ୍ଚାଇବ ଭାର ଦେ'ରେ ।୪।
ଦ୍ୱିଜ କବିରବି ବାଣୀ, ଶୁଣି ସେ ରମଣୀମଣି,
ସ୍ନେହେ ଦ୍ରବ ବହିଗଲା ବାର ଦେରେ ।୫।

---

( ୧୩୦ )

ରାଗ—ମୁଖାବରୀ—ଅଠତାଳି ।

ବାଳାବର ରେ,
ଙ୍ଗେଷ୍ଟକର୍ଣ୍ଣୀ ତୁ ସଙ୍ଗୀଳି ମୋର ରେ ।
ନଥାଇ ତୁ ତୋଳେ କି ଦମ୍ଭତ୍ରବଳେ ଇନ୍ଦ୍ର ହୋଇଲେ ସୁରେଶ୍ୱର ରେ । ଘୋଷା।
ଚନ୍ଦ୍ରମା ଚନ୍ଦନ କଳକଣ୍ଠ ସ୍ୱନ ମିଳନ୍ଦବୃନ୍ଦ ଝଙ୍କାର ରେ ।
ଏବେ ମୁଁ କଟାକ୍ଷ ଫିଙ୍ଗୁନାହିଁ ପକ୍ଷ ହେବାରୁ ତୁ ଅହଙ୍କାରରେ ।୧।
ସୁରଭୂରୁ ତା ମହତ ମରୁ ତ ଜାତ ତ ସେ ମୋ କିଙ୍କର ରେ,
ତରୁଣୀ ତୋତେ ମୋ ଧନ କଲେ ଯହୁଁ କରୁଣାନିଧି ଶଙ୍କର ରେ ।୨।
ଅସୁର ସୁରଙ୍କ ରମ୍ୟଦ୍ରବ୍ୟ ରଙ୍କପଣ ଶୁଣି ସିନ୍ଧୁଜ୍ୱର ରେ ।
ମୋ ପାଇଁ ତୁ ଲୁଚ ଯତନେଥିଲୁ କି ଲାବଣ୍ୟ-ପୀୟୁଷପୂର ରେ ।୩।
ସୁଲକ୍ଷଣ ବଧୂମାନଙ୍କର ମଧୁଥାଏ ଜାଣି ରଦାମ୍ବର ରେ,
ପୂରଅଛୁ ତୋର ପଦପଦ୍ମୁଁ ଚକୁରପାଶଯାଏ ସୁଧାଙ୍କର ରେ ।୪।
ଫୁଲ୍ଲ ମନମଥ ଗୁଲ୍ମମନ୍ତ୍ର ମୋର ଏଣିକି ଅଙ୍ଗ କି ଭର ରେ,
ଝୁଲ୍ଲ ମଞ୍ଜୁଳ-ତୋ ଲଲାମ ଛବି କି ସଲାମ ସହସ୍ରେ ଥର ରେ ।୫।
ଏପରି ପ୍ରଶଂସାମୃତ ସ୍ମୃତ ହୁ କଂସାହିତ ମୁଖଶଶଧର ରେ,
ଅଷ୍ଟଦୁର୍ଗପତି ରଚିଲେ ଶ୍ରୀମତୀ ସଙ୍କୁଚିଲେ ଲଜ୍ଜାଭରରେ ।୬।

---

( ୨୩୮ )

ରାଗ—ବିହାଗ—ଏକତାଳି ।

ବାଳାରେ, ତୁ ମୋ ଗଳାମାଳା,
ସହିବ କେହ୍ନେ ଦୁଃସହ ବିରହଜ୍ୱାଳା । ଘୋଷା ।
ଏକେ ତ ଅତି ସୁକୁମାରୀ, ରାଜକୁମାରୀ
ତହିଁ ପୁଣି ନବ କିଶୋରୀ ଗୋରୀ,
ଅଭିନବ ବଦନ, ଥାଉ ଶଠ ମଦନ, ଦାଉ ସହି ଜୀବନ
ଅଉ କି ରଖିବ ବାଳା ।୧।
ଚାହିଁଚାହିଁ ମୋ ଆଗମନ, ହେବଣି ଶମନ
ନିଦ୍ରା ବିହୁନରେ ତା'ର ନୟନ,
ଆହାର ହେବ ଦୂର, ହାର ପରିଘେ ନୀରଧାର ପଡ଼ିବ ଝର,
ସାରି ପଞ୍ଜର ସୁର କାରି ତୁ ମଣିବୁ ବାଳା ।୨।
ବେଢ଼ି ବସି ସଖୀ ସକଳ, ହେବେ କି ବିକଳ,
କେତେ କରୁଥିବେ ଶୀତଳ
ଆହାର ହେବ ଦୂର, ଆହାର ଲାଗି ଘୋର, ଅହା ରବରେ ଘର,—
ବାହାର ପୂରିବ ବାଳା ।୩।
ଅଙ୍ଗ କୃଶ ତ ଭଜିବ, ଶୋଭା ତେଜିବ, ବେଶଭୂଷଣ କାହିଁ ଯିବ ।
ହା ବରକଣ୍ଠୀ ମୋର, ଅହାଦର କରିବ, ହା ବର କରି ପର
ପାଦରେ ଲୁଟିବ ବାଳା ।୪।
ହରିଚନ୍ଦନ ଜଗଦ୍ଦେବ, କହଇ ଦେବ-ଦେବ କରୁଣା ଯେବେ ହେବ,
ମନ୍ଥାଇ ଶରତେ ସେ, ଘୁଞ୍ଚିପରି ତା' ପାଶେ, ଥାଇ ପାଦ ସାରସେ
ପାଇବ ମୋକ୍ଷକୁ ବାଳା ।୫।

---

( ୨୩୯ )

ରାଗ— ସାବେରୀ—ଏକତାଳି ।

ବିଧାତାରେ, କି କାଳେ କି ଦଣ୍ଡ ଦେଲୁ ଆଣି,
ମୁଁ ଯିବି ବୋଲି ବିଦେଶ    ବନ୍ଧୁ ଘୁମୁରୁ ନିଦେଶ—
ନେବାକୁ କହିବି କେହ୍ନେ ବାଣୀ । ଘୋଷା ।
ଯେବେ ମୁଁ ପ୍ରବଳ ଦୁଃଖୀ,—    ଉଚରୁ ଶୁଖାଇ ମୁଖ,
ମାନଧ ଯୋଡ଼ିବ ଜାଣି ପାଣି,

ପଲ୍ଟେ ଜୀବନ ଧର    ପାରିବ କି ସେ କିଶୋରୀ—
ସୀମନ୍ତମଣିଙ୍କ ସାମନ୍ତାଣୀ ।୧।
ପ୍ରଳୟ ସମୟ ଭୟ,    କମ୍ପାଇ ଦେବ ହୃଦୟ,
କି ବଞ୍ଚିବ ଟେକେ ମୃଦୁପ୍ରାଣୀ,
ସେକ୍ଷଣି ଯିବ ଭାଜି,    ବୈଦର୍ଭୀରମଣ ରାଜି,
ରାଜୀବାକ୍ଷୀ କ୍ଷଣା ମୁଖଠାଣି ।୨।
ଥରାଇ ଓଷ୍ଠପଲ୍ଲବ,    ଚରଣ ନଖେ ଶରବ,
ଧରଣୀ ବରଷେ ନେତ୍ରୁଁ ପାଣି,
ମାନସ ସରରୁ ତାର,    ସନ୍ତାପ-ଧୀବର ବର—
ଧୈର୍ଯ୍ୟ ହଂସକୁ ନେବ ଘେନି ।୩।
ଅତରୁ ଏହା ଯା ମନ୍ଦ,    ଏଥିରୁ ବଡ଼ ପସନ୍ଦ,
କରେ ଧର କୃପାଣକୁ ଶାଣି,
ନଥାଉ ଥାଉ ବା ଦୋଷ,    ଲଭ ବା ଯଶ ଅଯଶ,
ଦେବାର ଶିରକୁ ମୋର ହାଣି ।୪।
ପରାର୍ଦ୍ଧାଧିକ ମୋହର,    ଠାରୁ ତ ବଳେ ମୋହର,
ପ୍ରାଣପ୍ରିୟା ବୋଲି ଜାଣିଜାଣି,
ଦେଲେ ପ୍ରାଣ ବହୁ ବହୁ,    ତା ଘେନୁ ଘେନିବ କେହୁ,
କହେ ଜଗଦ୍ଦେବ ଭୂପମଣି ।୫।

———

( ୨୦୩ )

ରାଗ—କେଦାର —ଅଠତାଳ ।

ବିପରୀତ ରତେ ଗୋ,
କିପରି ତରୁଣୀଜନେ ପ୍ରବଳନ୍ତି ସତେ ଗୋ । ଘୋଷା ।
ଏବା ପ୍ରଦୀପରୁ ଭୟ ଜନମି ଅମିତେ ଗୋ,
ଠକ୍ୱର ଯେ ନୋହେ ପ୍ରାଣ ପ୍ରଣୟି-ପ୍ରୀତେ ଗୋ ।୧।
ତଳପକୁ ଧରି ନେବାବେଳେ ଅସମ୍ମତେ ଗୋ,
ହରି ହରିଣୀକି ନେଲା ହୁଅଇ ପରତେ ଗୋ ।୨।

ସମ୍ଭାଳି ନୋହିଲେହେଁ ବିକାର ଜଦାଚରେ ଗୋ,
ଚୁମ୍ବାଇ ନୁହଇ ମୁଖ ଚୁମ୍ବନ୍ତି କେମନ୍ତେ ଗୋ ।୩।
ମୁଁ ହେଲେ ରହିଲି ପରି ନୁହଇ ଜୀବତେ ଗୋ,
ଦୁକୁଳାଡ଼ମ୍ବର କାହୁଁ ମୁକୁଳା ହୁଅନ୍ତେ ଗୋ ।୪।
କଳାପ କିଙ୍କିଣୀ ସୁର ଉଣ୍ଡିମ ବିରତେ ଗୋ,
ପଳାଏ କେ ଲଜେ କହେ ଜଗଦେବ ଗୀତେ ଗୋ ।୫।

---

( ୨୩୪ )

ରାଗ—କାନନ ଗୌଡ଼ା—ଝିପୁଟା ।

ବିଧାତା କି ନ କରଇ ଗୋ,
ଏବେ ନବୀନ ପ୍ରୀତି, ତହିଁ ବିଦେଶେ ପତି,
ଏ ତ ଘୋର ବିପତ୍ତି, ଏଥି ମୋର କି ଗତି । ଘୋଷା ।
ମନେଥିଲି ଯାହା ତାହା ନୋହିଲି ଗୋ,
ଯାହା ନଥିଲି ତା ମନେ ହେଲି ଗୋ;
ଏବେ ପିକ ବଚନ, ମନ୍ଦ ମଧପବନ,
ମଧୁର ଭୃଙ୍ଗସ୍ୱନ ଦହୁଛନ୍ତି ଜୀବନ ।୧।
ଅଲିଙ୍ଗନେ ମୋର ଅନ୍ତର ଉରେ ଗୋ,
ପ୍ରିୟ ନ ରଖନ୍ତି ତ ହାର ଜରେ ଗୋ;
ଏବେ ମଧୁରେ ପୂର, ରହିଲି ବନଗିରି,
ଅହା ମୋତେ ପାସୋରି ରହିଲେ ମଧୁପୁରୀ ।୨।
ପ୍ରିୟଥିଲେ ଏ ମଧୁ ରଜନୀ ଗୋ,
କେଉଁ ସୁଖ ନହଏ ସଜନୀ ଗୋ,
କହୁ ମୋତେ ଚରନ କରନ୍ତେ ସେ ଗମନ,
ତାଙ୍କ ପଛେ ବହନ ନ ଗଲା ଏ ଜୀବନ ।୩।
ଯେବେ ହେଲେ ଏ ଜୀବନ ଯାଉ ରେ,
ପ୍ରୀତିଭଙ୍ଗ କଲଙ୍କ ନ ଥାଉ ରେ,
ଛନ୍ତି ଏବେ ସେ ସ୍ଥିତି ଫାଟି ଯାଉଛୁ ଛାତି,
ନଅରେ ଦବାଗ୍ନି ପ୍ରୀତି ହେଲା ବିପତ୍ତି ।୪।

ଏହା କରମରେ ମୋର ଥିଲା ଗୋ,
ପ୍ରୀତ ଏତେ ସରିକି ତ ଗଲା ଗୋ,
ଏସନେ ସଖୀ ଶୁଣି, ଦୁଃଖେ କହନ୍ତି ବାଣୀ,
ଆସିବେ ବେନୁପାଣି, ହରିଚନ୍ଦନ ଭଣି ।୫।

---

( ୬୩୪ )

ରାଗ—ମୁଖାରୀ—ଆଠତାଳି ।

ବିମ୍ବାଧରି ରେ, ବିଶ୍ୱମୂରି ଦେବୀ ଚମ୍ପାଙ୍ଗୀ ରେ ।
ବନ୍ଧୁ, ତୁ ମୋ ଚିତ୍ତ ବିଭୂଷଣ ମୋତେସୋରି କି ଦୁଃଖପାସୋରି ରେ ।ପଦ।
ବଳାରିତ ବଇଜୟନ୍ତ-ପ୍ରାସାଦ-ବିଳାସିନୀମାନେ ଛାରି ରେ,
ବେଶସୁରସିକା ତୁ ଶରଦରାକା-ରଜନୀ ଚନ୍ଦ୍ରମା ପରିରେ ।୧।
ବିଲୋକି ଯା ମୋତେ ଜଟି ଲାଜ ସ୍ମିତେ ହେଜ ରମ୍ୟରଦାମ୍ବରି ରେ,
ବିଶେଷରେ ପୂତ କରୁଛିରେ ମିତ ମୋ ମାର୍ଗକୁ ସୁଧାଙ୍ଗୀ ରେ ।୨।
ବିଧିରେ ଗିରିଜାରମଣଙ୍କ ପୂଜା କରି ଚମ୍ପା ପରମ୍ପରାରେ,
ବୋଲଏ ମୁଁ ବରବରନା ପ୍ରବର ତୋ କରପଇଠଧରି ରେ ।୩।
ବୀଣା-ବାଦନ-ପ୍ରବୀଣା ପଣରେ ତୋ ଗଣନା ପ୍ରଥମ ଗିରିରେ,
ବିଶ୍ୱବିମୋହନ ଗୁଣେ ତୁ ମୋ ଧନ, ଧୀରିଙ୍କ ଲଲାମ-ହୀରାରେ ।୪।
ବୋଲେ ଜଗଦେବ ସଙ୍କୋଚନ୍ତେ ବାଳା କିଶୋରିଙ୍କର ପଚାରିରେ,
ବିଜେ ହେଜ ବଲ୍ଲୀମନ୍ଦିରକୁ ବୋଲ୍ ଅଳ କହେ ଅଖିଠାରିରେ ।୫।

---

( ୬୩୭ )

ରାଗ—ତୋଡ଼ି ପୁନ୍ନାଗ—ଝୁଲା

ବିଳାସିନୀ ଶିରମଣି,
ବେଦେବେନା ହେଲେ ବସୁଧାମଣ୍ଡଳେ ବିଶ୍ୱଦେଇଥାଇ ଶୋଭା ॥ ଘୋଷା ॥
ବୋଲନ୍ତି ଯେ ଇନ୍ଦୁ ଇନ୍ଦୁ,
ବଦନ ସୁଷମା ସମ ସେ କି ହେବ ସ୍ମିତେ ତା ବୃନ୍ଦକୁ ନିନ୍ଦ ॥୧॥

ଦେଶାଦ କି ନୀଳୋତ୍ପଳ
ବିଷ୍ଣୁକେତୁ ବାଣାବଳୀରୁ ବଳେ ତୋ ବଙ୍କେ ନୟନାନ୍ତ ଖେଳ ॥୨॥
ବାସବ-ମଣି କିରଣ,
ବାସହୀନ କେଶତୁଲ୍ୟକୁ କିଣ୍ଟର ପାମର ଭ୍ରମରଗଣ ॥୩॥
ବକ୍ଷୋଜ କୁମ୍ଭ ଯୁଗଳ,
ବଡ଼ ବଡ଼ ଗିରି ବଡ଼ାଇକି ଜୁରି ପକାଉଅଛୁ ପ୍ରବଳ ॥୪॥
ବନ୍ଧୁକ-ବନ୍ଧୁ ଅଧର
ବର୍ଣ୍ଣନ୍ତି ଜଦର ଟିକିଏ ହେଲେ ସେ ତୋହଠାରେ ନାହିଁ ପର ॥୫॥
ବସ୍ତ୍ରରତ୍ର ନିତମ୍ବ
ବନବ ଅବନୀ ଗୁମୀକର ଯେବେ ହେବ ବାଣ ଅନୁବମ୍ବ ॥୬॥
ବଡ଼ ମୃଦୁ ପାଣି, ପାଦ,
ବିଭ୍ରତର ସଜ ଲୀଲ କି ଲୀଲଜବ୍ରଜତୁଲେ କରେ ବାଦ ॥୭॥
ବଲ୍ଲୀଗୃହ ସାମନ୍ତ୍ରାଣୀ
ବାଣୀବକ୍ରଠାଣି ନ ପାରନ୍ତି ଜାଣି ତୋର ବାଣୀ ଠାକୁରାଣୀ ॥୮॥
ବସିଥିଲେ ମାଙ୍କ କୋଳେ
ବନ୍ଧୁବଳପର ବୁଇପଦ ମୋର ପଡ଼ିଥାଏ ପଦତଳେ । ୯ ।
ବ୍ରଜେନ୍ଦ୍ର ନନ୍ଦନ ଗେଲେ
ବ୍ରୀଡ଼ାରସେ ପଡ଼ି ରାଧା ଗଲେ ବୁଡ଼ି ନୃପ ଜଗଦେବ ବୋଲେ ।୧୦।

---

( ୨୩୭ )

ରାଗ—କାମୋଦୀ—ଅଡ଼ତାଳ ।

ବୀଣାବାଣି ଏ କାରେ, ଜଣାଇଲୁ କେ କି ରେ
ଢେନ ବସିଛୁ ମୁଖଚନ୍ଦ୍ର ନ ଟେକି ରେ । ଘୋଷା ।
ଖୋଲ ଶୁଖିଲାଟି ଦେଖି ବଳ ଅଛୁ ଅଡ଼କି
ଦଳ କଦଳୀର ସହେ କଲମ୍ବର ଦାଉକି । ୧ ।
ଲେଶେ ହେଲେ ଦୋଷ ଏକଦେଶେ ନାହିଁ ମୋହର
କେ ସେ କି କହିଲା ଚିତ୍ତରେ ବେଶେ ହେଲା ଓହର ।୨।

ପାନ କରନାହିଁ ନେନେ ଆନ ମୁଖ-ଶୀରକି
ସ୍ୱାନ ଲୋକ ଜାଣିଶୁଣି ମାନକୁ ଅଚରକି । ୩ ।
ସ୍ୱ ଗୃହକରକୁ ମଦନୁ ବଞ୍ଚାଇବୁ ନାହିଁକି
ନଗ୍ରର ଭୁଜକୁ ଅଙ୍ଗ ନ ଗୃହିଲି କାହିଁକି । ୪ ।
ବାସପର ବଭାବସ୍ତୀ ବାସବେ ତ ରହୁଛି
ରସରସିକାର ତ ମୁଁ ଦାସ ବୋଲି କହୁଛି । ୫ ।
ଦଣ୍ଡେ ପଛେ ମତେ କରି ଖଣ୍ଡ ଖଣ୍ଡ କରକେ,
ମଣ୍ଡନା ଭୁଜଣ୍ଡନା, ତୁ ଗଣ୍ଡ କର-ନୀରଜେ । ୬ ।
ଅଗଣିଭସ୍ତୁନା ଶୁଣି ମନୁ ମାନ ନାଶିଲେ
ଜଗଦ୍ଦେବ ଶ୍ରୀ ହରିଚନ୍ଦନ ନୃପ ଭାଷିଲେ । ୭ ।

---

( ୨୩୮ )

ରାଗ—ସାବେରୀ—ଏକତାଳି ।

ଗୁଡ଼ ପ୍ରୀତିରେ,
ହୁଡ଼ି ପଡ଼ିଗଲି ପରମାଦେ ଅତି । ଘୋଷା ।
ମନ ଛନଛନ ନିରନ୍ତରେ
ନ ରହିଲା ଆନ ବିଷୟରେ,
ପୂର୍ଣ୍ଣ ବେଦନେର ନୀରଭରେ,
କ୍ଷୀଣ ହୋଇଗଲା ଅତି ତନୁ ନିତନିତି । ୧ ।
ନ ପାଇଲି ମୁଁ ସୁଖକୁ ଲେଶେ,
ଅନୁଭବ ଦୁଃଖ ତ ବିଶେଷେ,
ନିମିଷକ ତ ହେଲା ବରଷେ,
ଶୁଣି ରହିଲିଣି ଲୋକେ ପୁଣି ଅପଖ୍ୟାତି । ୨ ।
ଦଗ୍ଧ ହେଲା କାମାନଳେ ଦେହ,
ସହୁ ନୁହେ କି କରିବି କହ,
ଦଣ୍ଡ ଦଣ୍ଡକେ ହେଉଛି ମୋହ,
କହୁନାହିଁ କେତେରୂପେ ବୋଧ କଲେ ଧୃତି । ୩ ।

ହେଲ ଜୀବନରେ ମୁଁ ନିରୁଣ,
ଦେଲ ଇତରଙ୍କ ମୁଖେ ହାସ,
ନେଲ ଅନ୍ଧାରଣେ ଏ ବୟସ,
ହାର ବିଳାସ ବେଶରେ ରହୁ ନାହିଁ ମତି । ୪ ।
ବସ୍ତୁଦୁର୍ଗ ଭୂପ ଭେସେ ଭଣି,
ଏହା ହୃଦରେ ଗୋପରମଣୀ,
ଅହା, ବନ୍ଧୁ କି ବନ୍ଧୁ ଅଣି,
ଜାଣି ନ ପାରଲ ବେନୁପାଣୀ କୂଟ-ରୀତି । ୫ ।

---

( ୨୩୯ )

ରାଗ—କାଫି—ଏକତାଳି ।

ଭସିଲଟି ଆସି ଦରହାସି, ଥରେ ରଙ୍ଗ ରେ । ଘୋଷା ।
ମଧୁବନ ବିଚକ୍ଷଣା, ଜାଣି ତୋ କରୁଣା ଜଣା,
ମାର ଶରାଗାର ମୋତେ ସାରଦେଲ ଦେଖ ରେ ।୧।
ଶରଣ ତୁହଟି ବୋଲ, ଚରଣ-କଞ୍ଜ ଧରିଲ,
ଗୃହିଲ ଯା ନାହିଁ ଧନ କାହିଁକି ଏ ଦୁଃଖ ରେ ।୨।
ନଶୁଣି ମୋ ଗୃହୁବାଣୀ, ଗଣ୍ଡଦେଶେ ମଣ୍ଡି ପାଣି,
ସ୍ୱାନ୍ତ, କି ମତନ୍ତ ମହା ଶଦ୍ଧ ଅଛୁ ନଖରେ ।୩।
ଧରୁଛ ପଲ୍ଲବ-କର, ଏବେ କୃପାଲବ କର,
ହାସ ସମୁଲ୍ଲାସ ପରକାଶ ବିଧୁମୁଖରେ ।୪।
ଅରେ ନବୀନ-ବନିତା, ଲଗାଇଣ ପ୍ରୀତିଲତା,
ଛାଡିପକାନ୍ତି କି ସେ ଏକାଠେ ସବୁ ସୁଖ ରେ ।୫।
ଅସ୍ତ୍ରଦୁର୍ଗ ନାଥ ଶରେ, କଷ୍ଟନାଶି ହସି ଦରେ,
ଧରଣିରହୀବ ଆସି ବସିଲା ପାଶରେ ।୬।

---

( ୨୪୦ )

ରାଗ—ଭୈରବୀ—ଅଡ଼ତାଳ ।

ମଦନ ମୁକୁରଜୀତ ବଦନ ଭଲ୍ଲ ରେ । ଘୋଷା ।

ମୋ ଧନର ହୀରାଧର, ପଦନଖର ମାଧୁରୀ
ରଦନରେ କୁନ୍ଦଶ୍ରୀର ମଦନ ଭଲ୍ଲ ରେ ।୧।

ଜଘ କମଳାସ୍ପୃ ଗର, ସୂଚକ ପୀବର ଭାରୀ
କୁଚ କଳଶରୁ ହାର ଲୁଚକ ଗଲ୍ଲରେ ।୨।

ଖ ଲୋକରେ ଅଜ କାହିଁ, ପଲକ ପଡ଼ିଲ୍ଲ ନାହିଁ
ଭଲ କର ଦେଲେ ଗୁହିଁ ଝଲକ ଝୁଲରେ ।୩।

ହସାର ସାକ୍ଷୀ ପୀୟୂଷ, ଅଶାର ସାରସଦୃଶ
ଭାଷା ବସାରମ୍ଭେ ହସ ନାସିକା ଫୁଲରେ ।୪।

ଅଷ୍ଟବର୍ଗ ନାଥ ଭାଷେ, ଇଷ୍ଟଦେବଙ୍କ ସନ୍ତୋଷେ
ଦୁଷ୍ଟତର ମୋହର ସେ କଷ୍ଟ ସବୁଲ୍ଲ ରେ ।୫।

---

( ୨୪୧ )

ରାଗ—ଥୋଡ଼ି ପରଜ—ଅଦଢ଼ାତାଳ ।

ମଦନ ଗୁମାନ କେତେ ଦେଖାଉ ?
ଅମାନବତୀ ତ, ହେଲଣି ମୋ ମିତ, ନ ମାନଇଁ ତୋତେ ଅଭ । ଘୋଷା ।

ଭୁରୁ ନୀଳସୂନ,—ଶୃପରେ ଅଞ୍ଜନ, ମିଳନ୍ଦମାଳା ସିଞ୍ଜନୀ
ନେତ୍ରଅନ୍ତ ଅରବିନ୍ଦ ମୁଖ ତାର ସାଜିଲ୍ଲ ନିଜେ ମୋ ଧନୀ ।୧।

ରସା ବହୂଷାର, ମୁଖେ ମିଶି ସାର, ପ୍ରସାଦ ଇନ୍ଦିରା ପାଳି
ପରବ ଶର୍ବରୀ-ବର ଗରବ ମୂଳରୁ ଦେଲଣି ଟାଳି ।୨।

ଯଉବନ ଚୋର ଛଡ଼ାଇନେବାକୁ ପଡ଼ିବାରୁ ଅଲୋଚନା
ପିକରବ ପର ପ୍ରିୟ ସହଚରୀଜନଙ୍କର ବାଚ ରଚନା ।୩।

ଗଜବରଦେହା ସଜରଭ ସାର କଳା କୁନ୍ତଳ ଉମାଳେ
କୁସୁମ ସମସ୍ତ ଭେର ସମୁଦାୟ ପ୍ରବେଶ ହେଲଣି ବଳେ ।୪।

ସଖୀଏ ବିଶେଷ ବିରଚନ୍ତେ ବେଶ ଗେଲେ ବୋଲିବାର ଜହୁଁ
　　ମତ୍ତ ଅଷ୍ଟପଦେ ନିରତ୍ନ ନିନାଦ ଶ୍ରବଣେ କି ଶୁଣିନାହୁଁ ।୫।
ବୋଲିଅଛୁ ସିନା ଚନ୍ଦନ ବାସନା ବହିବା ମନ୍ଦ ସମୀରେ
ଭିବରିବି ଭ୍ରଷ୍ଟେ ତୋ ଷମର ଶେଷେ ସହୁ ହେବ ବଶ ମୋରେ ।୬।

---

( ୨୪୨ )

ଫୁଲ୍‌ତୋଳା—ବୃନ୍ଦେ ।

ମଦନ ଅମଳେ ବାଇପରି କେ ଯୁବତୀ,
ଅଚରଇ ପ୍ରଳାପରେ ସ୍ୱୟଂ ହୃତୀ ସ୍ମୃତି ।୧।
କେଉଁ ପଥିକକୁ ପୁଚ୍ଛେ କି ହେ ପାନ୍ଥଯୋଷୀ,
ତୁମ୍ଭ କି ଯୋଗ ଅଜ ମୋ ପନ୍ଥ ପରବାସୀ ।୨।
କର ରମଣୀ ପାଣିରେ ଯାଇଅଛୁ ପଡ଼ି,
ମିଳିବ ପରା ଜୁହିବା ଥରେ ଥାପ ଖଡ଼ି ।୩।
ଚରମ ଅଚଳେ ପରବେଶ ହେଲେ ରବି,
ଯିବା ଢୋଲ ବାହାରେ ମୁଁ ନିକି ବରତିବି ।୪।
ଅଗରେ ଠେକିଛି ପୟୋଧର ବରଷିବ,
ଛାଡ଼ିଯିବ ଯେବେ ଏଥେ ରହିବ କି ଜୀବ ।୫।
ଅନା ଅନା ନେନାଞ୍ଚଳେ ପିଇଦେଲ୍ଲ ପର,
ଅଧର ମଧୁ ପି'ବାରେ ଧରି ପରନାରୀ ।୬।
ଶୁଣିଣି କୁହାର ତୁଲ୍ୟ କଲ୍ଲ ପାନ୍ଥଯୁବା,
କହେ ଅଭିନୁର୍ଗ ସ୍ୱର୍ଗ ନଗରେ ମଘବା ।୭।

---

( ୨୪୩ )

ରାଗ—ଭୈରବୀ—ଅଡ଼ତାଳି ।

ମନ୍ଦହାସେ ସନ୍ଦେହକୁ ରଖ ଏ ମାନସେ ରେ । ଘୋଷା ।
ମୁଁ କୁଳବଧୂ ମୋ ପାଶକୁ ନଆସ, ବୋଇଲେ ସେ ଯାହା ମୁଖେ ଦେଇ ବାସ
ଶରଦଚନ୍ଦ୍ରରୁ ନବ ସୁଧାରସ ଛାଣିଲା ପରି ଅଭ୍ରସେ ରେ ।୧।

କହୁଁର ହେଲଣି ବେଳ ହେ ମୋହନ, ନିରୋଧ ନକର ମୋହର ଗମନ
ବୋଲି ଲୀଳାବତୀ ଖେଳାଇ ନୟନ ଫେରି ଅନାଇବା ବେଶେ ରେ ।୨।
ଯାଅ ଚନ୍ଦ୍ରାବଳୀ ପାଶେ ଘନଶ୍ୟାମ, ବାନ୍ଧୁଛି ତୁମ୍ଭଙ୍କୁ ଯେବେ ଏବେ କାମ
ବୋଲି ସେ ଯେ ନବ ବନ୍ଧୁକ ବିଦ୍ରୁମ କୋକନଦ ରଦବାସେ ରେ ।୩।
ଯାଉଛୁ ହେ ହରି ତୁମ୍ଭର ପାଶରୁ, ନିବରତ ମୋର ସୁରତ ଆଶରୁ
ବୋଲିଣ ବାଣୀ ସଙ୍ଗତେ ଗୃହୁତରୁ ଭଙ୍ଗେ ଅଙ୍ଗୀକାର ବଶେ ରେ ।୪।
କହେ ଜଗଦ୍ଦେବ ଶ୍ୟାମକୁ ରାଜୀବ-ନୟନା ଦେଖାଇ ବାରଯେଣି ଭାବ
କପଟ ପଟକୁ ଅଚ୍ଛାଦିବା ଭାବ ନିର୍ମଳ ସୁଧା ପରଶେ ରେ ।୫।

---

( ୨୪୪ )

ରାଗ—

ମନ୍ଦରାଜି ଚିରଜା କୁନ୍ଦକଳି କରଜା,
ସୁନ୍ଦରୀ ରାଜା ଅନା ଫେରି ଅନା ରେ । ଘୋଷା ।
ସମ୍ପଦ ତୁହି ମୋର ଚମ୍ପକ ମଦଭର,
ସମ୍ପାକ ଅଙ୍ଗ ସଙ୍ଗ ଦେଉ କି ନା ରେ ।୧।
ଶଙ୍କର ପରତୀପ କଙ୍କ ପତ୍ରକୁ ଲକ୍ଷ୍ୟ
ପଙ୍କଜାକ୍ଷି ମୋ ବକ୍ଷ ହେବକି ନା ରେ ।୨।
ବିମ୍ବ ବିଜୟୀରଦନାମ୍ବରରେ ସେ ମୋଦ
ଚୁମ୍ବକୁ ମୋ ଭରସା ଦେଉ କି ନା ରେ ।୩।
ମୋତେ ଅନ୍ତର କରୁ ଅରେ ହେମ ରମ୍ଭୋରୁ,
ଅନ୍ତରଙ୍ଗ କେ ଅଛୁ ତୋହ ବିନା ରେ ।୪।
ଭାଷଇ ଜଳନ୍ଧର-ବାସବ କୃତ୍ତିଗିର
ରାସମଣ୍ଡନା ଶୁଣି ତୋଷମନା ରେ ।୫।

---

( ୨୪୫ )

ରାଗ—ପୂରବୀ—ଅଠତାଳି ।

ମନ୍ଦ ବାରଣଗନ୍ତ ବିଣୋଶ୍ୱରବର,
ପଦବାରିଜେ ମଣ୍ଡ ଲତା ମନ୍ଦର, ଧନରେ ।୦।
ନୀଳ ତନୁରେ ଘନେ ଚପଳା ରଙ୍ଗେ
ମିଳ ତରୁଣୀମଣି ଶ୍ୟାମ ଶ୍ରୀଅଙ୍ଗେ ।୧।
ପଗ୍ନ ରତନେ ମିଶା ପଦ୍ମରମ୍ଭରେ
ନଗ୍ନ ରସିକା, ପୃଥୁ କୁଚକୁମ୍ଭରେ ।୨।
ଅରୁଣାଧରୁ ସୁଧା ପିଅଇ ଦଅ
କରୁଣାନିଧି କିଛି ଦଅଇ ଦଅ ।୩।
ଯଉବନ ସମ୍ପଉ ତୁଲେ ଲାବଣ୍ୟ
ହେଉ ବସୁଧା ଲୋକେ ତୋହର ଧନ୍ୟ ।୪।
ଅକାର-ହୀନ ମାର ଜୟ ପତାକା
ରାକା-ରମଣ ମୁଖୀ ଛଡ଼ାଇପକା ।୫।
ଗୁଲ୍ମି ଭେଣସ୍ୱାମଧା ଧୀରେ ଏ ଗିରେ
ବାଲୁକେଶ୍ୱର ନୃପ ବର୍ଣ୍ଣନା କରେ, ଧନରେ ।୬।

———

( ୨୪୬ )

ରାଗ—ଅହାର—ଅଠତାଳ ।

ମନ୍ଦମଳୟାନିଳ ବହିଲା,
ଚନ୍ଦ୍ରବଦନା ହୃଦେ ରହିଲା ।ଘୋଷା ।
ଶାଇ ନୂଅ ଚୂତ ବକୁଳକୁଳ, କଳକଣ୍ଠ କଟର ଯା କଳକଳ
କର କଳକଳ ପ୍ରବାସୀ ବିକଳ କରବ ବୋଲି ବୋଇଲା ।୧।
ଅଙ୍କଜଗତରେ ପଙ୍କଜ ମୁଖୀ, ପଦ୍ମହୁଲେ ମୋର ହୁଏ ଯେ ସୁଖୀ
ମୃଦୁ ସରସିଜ ଦଳଶୟ୍ୟ ଶେଯ ଧନକୁ ଯୋଗ୍ୟ ହୋଇଲା । ୨ ।
ଆହା ତାହା ସାହା ବାରେ ତ ମୋତେ ବନସ୍ଥ ଚମ୍ପକମାଳା କଣ୍ଠେତେ
ମନମଥ ବଶେ ଏବେ ଯେ ଅବଶେ ଦୁଃସହ ଦୁଃଖ ସହିଲା । ୩ ।

ପଲ୍ଲବକୁ ଦଣ୍ଡଧର ରସନା,              ବଲ୍ମୀକ୍ କଣେଶ୍ୱ ମଣିବ ସିନା
  କିଂଶୁକ ସ୍ତବକ ଅନଳ ଯାବକତୁଲ୍ୟ ତ ଦେହ ଦହୁଲ୍ଲ । ୪ ।
ଭଣିଲେ ଅଷ୍ଟବୁର୍ଗ ପୁଚ୍ଛକୂତ          ଦୁଃଖ ତେଜାଲେ ବ୍ରଜରାଜ ସୁତ,
  ମୃଦୁଲ କଦଳୀ ବନେ ଦେଲେ ଦଳହେବାର ବହୁ ବହୁଲ ।୫।

---

( ୨୪୭ )

ରାଗ—ଭୂପାଳ—ଏକତାଳ ।

ମନ ମୋହନ ମନ୍ତ୍ରର ତୋର ଭଙ୍ଗୀ
  ଅରେ ପ୍ରାଣସଙ୍ଗି । ଘୋଷା ।
କୃପାରେ ମାନସ ରଖାଇଲୁ, ଭୁଜେ ଭୁଜବନ୍ଧା ଶିଖାଇଲୁ,
ଅଳପ ଅଳପ ବଞ୍ଚାଇଣ ବିମ୍ବଅଧରରୁ ମଧୁ ଚଖାଇଲୁ । ୧ ।
ବ୍ରହ୍ମଜ୍ଞାନୀ ଯୋଗୀ ଯୋଗଭୁଲ୍ଲ, ତିଳସୁମନସ ନାସାଫୁଲ୍ଲ,
ପଦ ପଦକରେ ଯାଚ ଦେଉଥାଏ ଶଙ୍ଖପଦ ମଣିନଥ ଝୁଲ୍ଲ । ୨ ।
ସନ୍ତାପ-ସରିତ ଶୁଖାଇଲୁ, କରେ ପୟୋଧର ରଖାଇଲୁ,
ହେମ ପଣାସାର ପଲ୍ଲବପାଲିରେ ପଶୁଇବା ରୀତି ଶିଖାଇଲୁ । ୩ ।
ଅଷ୍ଟବୁର୍ଗପତି ଭାବେ ଭୋଳେ, ଚକ୍ରବର୍ତ୍ତୀ କଲୁ ଯୁବାକୁଳେ,
ଦାସୀହୋଇ ଅଳିମାନୀ ହେଲୁ ଭାନୁପଣନ୍ତେ ପବନ ଯେତେବେଳେ ।୪।

---

( ୨୪୮ )

ରାଗ—ସୁରଟ—ଅଦ୍ଧତାଳ ।

ମନ ଜମି ଯା, ସିନ୍ଧୁଜେମା ପ୍ରାଣଧନେ, ହିତପଙ୍କଜ ନନ୍ଦନେ । ଘୋଷା ।
  ରମ୍ୟଯାନ ପଦକରେ, ମୁନି ହୃଦ ପଦକରେ । ୧ ।
  ଶରଣାଗତ ବନ୍ଧୁରେ, କରୁଣା ସୁଧାସିନ୍ଧୁରେ । ୨ ।
  ଦୀନଜନ ବାନ୍ଧବରେ, ନୀଳାଦ୍ରି କଣ୍ଠୀରବରେ । ୩ ।
  ଦଳିତ କଳୁଷ ପୁଞ୍ଜେ, ଇନ୍ଦ୍ରବନ୍ଦ୍ୟ ପଦକଞ୍ଜେ । ୪ ।
  ନିଗମ କୁଞ୍ଜ କୁଞ୍ଜରେ ଭବଦାମ୍ବୁଜ ପୁଞ୍ଜରେ । ୫ ।
  ଶ୍ରେଷ୍ଠବସୁଦେବ କହେ ଦୁଃଖତମର ବହ୍ନିହେ । ୬ ।

( ୨୪୯ )

ରାଗ—ଅଶାବରୀ—ଅଦ୍ଧତାଳ ।

ମନ ବନା ତ ନବୀନା ଅନ ସ୍ଥଳେ ନ ଖେଳିଲା ରେ । ଘୋଷା ।
ମଞ୍ଜୀର ମଞ୍ଜୁ ଶିଞ୍ଜିତ ତାଳେ—ଥରୁଥିଲା ହଂସୀ କି ଚଞ୍ଚଳେ
ମନମଥ-ରଣରଥପରି ସିନା ସେ ଚଳିଲା ରେ । ୧ ।
ଶ୍ରୁତିମୋଡ଼ି ଝୁମ୍ପା ଲମ୍ବୁଥିଲା—ତାକୁ ନେତ୍ରାଞ୍ଚଳ ଚୁମ୍ବୁଥିଲା
ଧରିଚକି ମୋତେ ଶକ-ରାଜଧାନୀରୁ ବଳିଲାରେ । ୨ ।
ମାନସରେ କି ସଙ୍କଳପିଲା—ହସି ଅଳକା କି ଅଳପିଲା
ମୋ ଅଡ଼କୁ ଚଅଡ଼କୁ ପରି କଟାକ୍ଷ ଗୁଳିଲା ରେ । ୩ ।
ଜଗତ ଯୁବତୀ ଚମ୍ପାଗଭା—ଜନନୟନମଣ୍ଡନ ଶୋଭା
କାଶୋଭା ସେକି ସୋରପେ ହେଲେ ସ୍ମରଣ ଠେଲିଲା ରେ । ୪ ।
ଅଦରଶ ସେ ସୁନ୍ଦରୀଙ୍କର—ତା ଦରଶନ ଲଭିରୁ ମୋର
ମରମରେ, ମାର ମାରେ ତହୁଁ ହୃଦୟ ଜଳିଲା ରେ । ୫ ।
ଜଗଦ୍ଦେବ ବୋଲେ ଶ୍ୟାମଚନ୍ଦ୍ର—ଜାଣି ଜଣାଇଲେ ଭେଦ୍ର ମିତ
ତୁମ କାମ ସରଦ୍ରୁମ କୃତ୍ତ ଅବଶ୍ୟ ଫଳିଲା ରେ । ୬ ।

---

( ୨୫୦ )

ରାଗ—ବଳାହୁର—ଅଦ୍ଧତାଳ ।

ମସାରକେଶା ସୁଦ୍ଦଶା ଗଲ୍, କଳାକୁଶଳା କୋମଳା ଅଳ୍ପ ଗୃହଁ । ରେ
ବଳା ଅବଳା ଭୁଷା ମୋ ସୁଖ ସ୍ପହାରେ । ଘୋଷା ।
ମାଖନତନୁ ହୃଷ୍ଟ ପାଂଟରେ ଭ୍ରସି—ଅଟରେ "କପଟ କଲ ଟେଲ ଅସି
ତା ଟେକୁ କଲ୍ ହୃଦୟ ବଳାସୀ କହିବ କାହାରେ ? । ୧ ।
ଚଞ୍ଚନ ମଦଜ୍ୱର-କଞ୍ଜନ ନେତ୍ରୀ—କଞ୍ଜ ସମୁଦାୟ ସୁବାସିତ ଗାତ୍ରୀ
ଅଞ୍ଜନ ନିଭଚକୁସ ରସଗାତ୍ରୀ ଗଲଟି ଲହା ରେ । ୨ ।
ସାସଫିତ ମଦନବାଣ କଟାକ୍ଷା—ଜାସ ନୁହଟି ଅରୁଣାଣ ସୁଦକ୍ଷା
ଅଣ କରିବ ପରମାଣ ପରୀକ୍ଷା ହିରଣ୍ୟଦେହା ରେ । ୩ ।

ଅମ୍ବର କଟି ସନ୍ଧୁ ଚୁମ୍ବନ ଦାନେ—ବିମ୍ବ ସଦୃଶ ଦଶନାମ୍ବର ପାନେ,
ଶମ୍ବର-ଦଳନ କଳମ୍ବକୁ ଧାନେ ନ ମିଳୁ ସାହା ରେ । ୪ ।
ନନ୍ଦ ତନୟ ପଟ୍ଟୁ ଗୁଣ୍ଠ-ବିଳାସେ   କୁନ୍ଦକୁ ରସନିଧି କଳିଲେ ଟସେ
ବନ୍ଦନ କର ହରିଚନ୍ଦନ ଭାଷେ ଏ ରସେ ଏହାରେ ।୫।

—

( ୨୪୧ )

ରାଗ—କାମୋଦୀ—ଏକତାଳି

ମନା ମୁଁ କରୁଥିଲି ଏହାକୁ ଗୋ,
ଅନାନା ବୋଲି ବନରହାକୁ ଗୋ,
ଅନାଦର ମୋ ଗିରେ,   କଲା ଯେ ଏବେ ସ୍ୱରେ,
ଲଭିଲା ଦୁଃଖ ହେଲା କାହାକୁ ଗୋ । ଘୋଷା ।
କୁଞ୍ଜ-ସଞ୍ଚାରି ଶ୍ୟାମ   ଦେବତା ପରାକ୍ରମ,
ଜାଣେ କଲଇ ରତିନାହାକୁ ଗୋ,
ସାହାସୁଁ ସିନା ସଖୀ,   କି ଯୋଗେ ଦେଲା ଯୋଖି,
ନବନୀତେ ତପତ ଲହାକୁ ଗୋ ।୧।
ଯେବେ ଏ ଗୃହମୁହାଁ,   ଶ୍ରବଣ ଦେଇ ନାହିଁ,
ନାଟୁଆ ଗୁଟୁ ବଂଶୀକୁହାକୁ ଗୋ,
ତେଜ ହଂସୁଲି ଭୂଲି,   କରନ୍ତା କି ସଂଗାଳି,
ସଲିଳସିଞ୍ଚା-ସର୍ବଂସହାକୁ ଗୋ ।୨।
ଗହବ ରମ୍ଭା ଧଣ୍ଡା—   ନିର୍ମିତ ଗଜଶୁଣ୍ଡା—
ଦଣ୍ଡକୁ ନନ୍ଦ ଗୃହିଁ ଯାହାକୁ ଗୋ,
ବଶେଷେ ବାସନାଳ   ଦଶିଲଣି ପୃଥୂଳ,
ଅଜ କାହିଁଛ ସେହ ବାହାକୁ ଗୋ ।୩।
କଳା କେଶରି ବାଳୀ,-   ଦୃଷ୍ଟି-ଦନ୍ତୀକୁ ଦଳି,
ଦେଲଣି ଅସି ମନଗୁହାକୁ ଗୋ,
ଥରକେ ଯେବେ ଲୋକ,   ନୋହିଲା ଜାଗରୂକ,
କହିବା କେତେ ଉହାଉହାକୁ ଗୋ ।୪।

କବିମିହିର ସମ୍ଭୂ— ଗୁରୁ କହଳ ଦମ୍ଭୂ—
ଲଗୁଛୁ ଦେଖି ଶତେ ଏହାକୁ ଗୋ,
ଜାଣିପାରିଲେ କଂସ, ଯେସି କରିବ ଧ୍ୱଂସ,
ଜଟିଳାସୁତ ଘର-ବୁହାକୁ ଗୋ ।୫।

---

( ୨୫୨ )

ରାଗ—ବେଗୁରୁ—ଏକତାଳି ।

ମଣ୍ଡଳମଣ୍ଡଳେ ମୋ ବନ୍ଧୁ ଜଣେ ରେ । ଘୋଷା ।
ତା ମୃଦୁ ପଦପଲ୍ଲବ ଶୋଭା ବିଭବରୁ ଲବ
ନାହିଁ ନାହିଁ କାହିଁ ସମାଗଣେ ରେ ।୧।
ହରମଧ୍ୟା ଦୁଃଖିତ କସ୍ତୁରୀଜ ଗନ୍ଧକ
ସର ଜାକ ରମ୍ଭାପର ପଣେ ରେ ।୨।
ବିଷ ସୁଧା ଶାସ୍ତ୍ରକ ଶକ ସମ୍ପତ୍ତିଯାକ
ସମ୍ବାଦ ରଖିଛୁ ନେତ୍ରକୋଣେ ରେ ।୩।
ପ୍ରଣୟ ସୁରବଲ୍ଲୀ ପ୍ରାଣୁ ଅଧିକ ବୋଲି
ପ୍ରୀତି ସ୍ୱନ୍ତିକ ସେ ଏକା ଜାଣେ ରେ ।୪।
ଯେ'ତି କୋଟି କଳପ ଅଚରିଥିବ ତପ
ଲଭିବ ତା' ସହାସ୍ୟ ଗହଣେ ରେ ।୫।
ଦେଲେ ତା' ଓଷ୍ଠବିମ୍ବ- ଫଳେ ଯେ ଦେବ ଚୁମ୍ବ
ଧନ୍ୟ ଧନ୍ୟ ତା' ଜୀବନ ଜଣେ ରେ ।୬।
ବାଳା ସୁଗୁଣ ଛବି ରସିକାପଣ ଭାବି
ଅଷ୍ଟଦୁର୍ଗ—ପୁରନ୍ଦର ଭଣେ ରେ ।୭।

---

( ୨୪୩ )

ରାଗ—କାମୋଦୀ—ରୂପକ ।

ମହୀରମଣୀଗଣ ! ଧନ୍ୟଧନ୍ୟ ଶୋଭାନିଧି ରେ ତୁହି କି ମୋ ସଙ୍ଗାଳି,
ଗୋରି ପରମାଣୁମଧ୍ୟ ସିନା ଜାଣୁ ପ୍ରୀତି ପଦାର୍ଥକୁ ପରପାଳି । ଘୋଷା
ନାକ ନାଗ ନରଲୋକେ ଅଳଙ୍କାର,
ହୋଇଛନ୍ତି ଯେତେ ଲଳନା ପ୍ରବର,
ମଣୁଛୁ ମୋ ମନ ସେମାନେଟି ଧନ, ତୋ ଚରଣ ତଳେ ନିଜସ୍ଥଳି ।୧।
ହଟି ମୋ କୋଳକୁ ଆସିବା ବେଳକୁ,
ନିନ୍ଦ ଚନ୍ଦ୍ରମିଶା ଚନ୍ଦନବୋଳକୁ,
ଘସିଘସି ସ୍ତନ ହସିହସି ତନୁଲତାକୁ ମୋ ଅଙ୍କେ ଦେଉ ଢାଳି ।୨।
ଅଚେଷ୍ଟ ନିଦକୁ, ଶରୀର ଭେଦକୁ,
ଇତର ଦମ୍ପତି ନିଷ୍ଠୁର ହୃଦକୁ,
ନିମିଷ ଦବାଏ ନିଷେଧ ପ୍ରବାସ ବଧିକି ଦଅଜଥାଉ ଗାଳି ।୩।
ମୁଁ ତୋ ଚରଣର କହୁଁ ଭୂଷାବର-
ବରନା କହି ତୁ ବୋଲୁ ଏହି ଗିର
ଲୁଚେ କର ଛାଡ଼ି ରସନା କାମୋଡ଼ି ଦେଖାଉ କଣ୍ଠରତନମାଳି ।୪।
ସତ୍ୟ କହେ ଶିରି ଜଗଦ୍ଦେବ ହର-
ଚନ୍ଦନ ମହେନ୍ଦ୍ର ନବ କିଶୋର ରେ,
ତୋ ପ୍ରଣୟ ହୃଦେ ଘେନି ମହାମୋଦେ ଦୁଃଖେ ସୁଖେ ମୁଁ ଲଗାଇ କାଳି ।

---

( ୨୪୪ )

ରାଗ—ସୁରଟ—ଝୁଲ୍ଲା ।

ମହୀମଣ୍ଡନା, ତୁ ନ ମାର ମାରରେ । ଘୋଷା ।
ଘେନ ତୋ ଅବଧାନେ, ରସିଲି ମୁଁ କି ଅନେ,
ତୁ ଥାଉଁ ଥାଉଁ ଏ ସଂସାରସାର ରେ ।୧।
ବରକି ମଣିପୁଞ୍ଜ, ଅରଜବାକୁ ଗୁଞ୍ଜ,
ଶିରୀଷଅଙ୍ଗୀ ଅଙ୍ଗୀକାର କା'ର ରେ ।୨।

କାସ ମାନସେ ଭାଳି, କରଜ-କଳୀ ଗୁଳି,
ଭରନ୍ତ କଲ୍ଲଣି ଅଗାର ଗାର ରେ ।୩।
କେଳି କଞ୍ଜଳତର— ନେନ୍ତ ଖଞ୍ଜନୁ ଗାର,
ବହେ କାହିଁକି ଅହ୍ନା ଧାର ଧାର ରେ ।୪।
ଆରେ ରତ-ପ୍ରନ୍ତମା, ଆଚର ଏବେ କ୍ଷମା,
ବହ୍ନବ ତୋ ହୁକୁମ ବାରବାର ରେ ।୫।
ମୋ ଧନ ହୁଅ ସଜ, ମଦନ ବାଣ ବାଜ,
ହେଲଣି ମୋ ହୃଦୟ ଆରପାର ରେ ।୬।
ମୋ ସପତଟି ମଥା,— ଟେକି ଭାଷ ତୁ କଥା,
କହେ ଶ୍ରୀ ଜଗଦ୍ଦେବ ବାରବାର ରେ ।୭।

---

( ୨୫୪ )

ରାଗ—ବଙ୍ଗଳାଶ୍ରୀ ।

ମଧୁର ସମୟ ହେଲା ବନେ ବନେ ବରଷିଲା ମଧୁରସ
ପରବ ସମ୍ପୂର୍ଣ୍ଣ ସୋମବଦନାଏ ହେଲେ ସୋମ ପରବଶ ।୧।
ଧାତୁକମା ଫୁଲ ଦେଖି ନ ଗଲା କାହାର ସୁଖି ଧାତୁକ କା
ନାଅଳୀକ ଗୃହିଁ ଭଲେ କାମିନୀଏ ଦୂତୀ କଲେଣି ଅଳକା ।୨।
ମଦନରଣକୁ କ୍ଷିପ୍ର ସଜହୋଇ ହୋଇଲେ ପ୍ରମଦ ନର
କରକରବଦନା ରଢବେଳେ ବୋଲେ ହେ "ଜୀବନ୍ତ କର କର" ।୩।
ରସମୟ ସବୁ ସ୍ୱାନ୍ତ କରଦେଲାନ୍ତ ବସନ୍ତ ରସମୟ
କାଶଲୟୂର୍ଣ୍ଣଷ୍ଠୀ ଭାଷେ ରତିବନ୍ଧୁ ଥିଲେ ପାଶେ କାଶଲୟ ।୪।
ପରଦାରେ କ୍ଷଣେ କ୍ଷଣେ ରସି ଛପନ୍ତି ତରୁଣେ ପରଦାରେ
ଶରଧାରେ ନେନ୍ତ ପ୍ରେମ କଲେ ମର୍ମ କାଟେ କାମ ଶର ଧାରେ ।୫।
ବକୁଳ କୁଞ୍ଜରେ ରସବତୀ କେ ଅନାଇ ପ୍ରସବ କୁଳକୁ
ମୁକୁଳକୁ ଗୃହ ଚଢେ ବୃନ୍ତ ପାଳିକା କେମନ୍ତେ ମୁକୁଳକୁ ।୬।
ମରମ ବ୍ୟାଜେ କହେ ଅରେ ବିରହୀ ନିବହେ ମରମର
ଭର ମରନ୍ଦ ପରବ ବହୁଛୁ ପ୍ରବାସୀ ଯୁବ ଭ୍ରମର ।୭।
ମନ୍ଥଭର ବୋଲାଇ କେ ପଲ୍ଲବ କମନା ଲୋକେ ମନ୍ଥତନ୍ତୁ
କନ୍ତୁ ତରୁଣୀର ଲୁଷା ଜନୀଜନେ ତରୁଣୀ- ଜିକ ଲୁନ୍ତନ୍ତୁ ।୮।

ଜରଜର ହୋଇ ରସେ କେ ବୋଲେ ଅଣିଲ୍ଲ ଶଉ ଜରଜର
ସରସର କଳେବର ହେଲା ରତ୍ତି ଖେଦ ସ୍ୱେଦ ସରସର ।୯।
ତାତପର ଜଗଦେବ ଦେବ ଭବ ପରଭବ ଜାତ ନୋହୁଁ
ସାନୁଗ୍ରହ ହୁଅ କୃତି ଏ ଭୂପତି ଜଗଦେବ ସୁଖୀହେଉ ।୧୦।

---

( ୨୫୬ )

ରାଗ—ବେଗଡ଼ା—ତ୍ରିପଟା ।

ମନୋହାରୀ ହାର ନ ଯିବା ପର ଅନ୍ତର
ନ ଯିବାରୁ ବାରିଜାକ୍ଷ ହେ କରେଁ ଗୋଚର । ଘୋଷା ।
ମଧୁଗନ୍ଧ ଲୋଭୀ ଭ୍ରମରେ    କୁସୁମ ଚୁମ୍ବିବା କ୍ରମରେ
ଚମ୍ବିବଟି ବିନା ଶ୍ରମରେ, କାମ ସମରେ ।୧।
ସୁକୁମାରୀ ସେ ନ ତରିବ    ଆଶ୍ୱାସୀ ଅଙ୍କରେ ଧରିବ
ସୁରତନୁ ଯେବେ କରିବ, ତେଲ ହରିବ ।୨।
ପଡ଼ି ଅସଙ୍ଗତ କଦନେ    ଧାଇଁ ଯେ ହେଉଛୁ ମଦନେ
ବ୍ରଣ ନୋହିବଟି ବଦନେ, ରଦଛଦନେ ।୩।
ଭୁଜାନ୍ତେ ସେ ଯେବେ ପଡ଼ିବ    ମୃଦୁଳ ସ୍ୱରସେ ଜଡ଼ିବ
କୁସୁମହାର ନ ଛିଡ଼ିବ, ଯେବେ ଭିଡ଼ିବ ।୪।
ଜଗଦେବ ବୋଲେ ଗୀତରେ    ଏପରି ଅଳି ଇଙ୍ଗିତରେ
ଶ୍ୟାମ ସଙ୍କୋଚିଲେ ଚିତ୍ତରେ, ଦରସ୍ମିତରେ ।୫।

---

( ୨୫୭ )

ରାଗ—ଖମ୍ବାଜ—ଝୁଲା ।

ମାନ ସୁମନା, କରି ଦେ ମାନସୁମନା ରେ ।ଘୋଷା।
ଚିତ୍ରସମ ଜାଇ ରେ ରାମା, ଚିତ୍ରସମ ଜାଇ;
ହେଲି ମୁଁ ଆଇଛି ତୋତେ ଚିତ୍ତଣ ମଞ୍ଜାଇ ।୧।

ନାଗରୀଜଗତେ ରେ ଶ୍ୟାମା, ନାଗରୀଜଗତେ;
ମୁଁ ଚୋର ବୋଲି ବାଜୁଛି ନାଗରୀ ଜଗତେ ।୨।
ଚୋର ପରିକର ରେ ଶ୍ୟାମା, ଚୋର ପରିକର;
ଅଜ୍ଞ ସିନା ରଚେ ମୋତେ ଚୋର ପକ୍ଷ କରି ।୩।
ଫୁଟିଲେ ଜାଅଳି ରେ ଶ୍ୟାମା, ଫୁଟିଲେ ନାଅଳି;
ଜଳପି ଜଳପି ଚୋବଉ ଫୁଟିଲେନ ଅଳି ରେ ।୪।
ରମ୍ଭାଉରୁ ବସି ରେ ଶ୍ୟାମା, ରମ୍ଭାଉରୁ ବସି;
ଅଙ୍କେ ଥିଲେ ନ ଗଣେ ମୁଁ ରମ୍ଭା ଉରୁବଶୀରେ ।୫।
ନବସୁରସା ରେ ଶ୍ୟାମା, ନବସୁରସା,
ତୁ ପରି ମୋ ଅଙ୍କ ବିନା ନ ବସୁ ରସାରେ ।୬।
ହରିଚନ୍ଦନକୁ ରେ ଶ୍ୟାମା, ହରିଚନ୍ଦନକୁ,
ଘେନ ଯଥା ବସନ୍ତରେ ହରି ଚନ୍ଦନକୁ ରେ ।୭।

— — —

( ୨୪୮ )

ରାଗ—ଆନନ୍ଦ ଭୈରବୀ—ଅଡ଼ତାଳି

ମାନସରୁ ଗୁମାନ ବରଜ ରେ ବନ୍ଧୁଆ !
ଦାସର ଅଭିଳାଷ ଜର ବିକାଶ ସବୁଜ ରେ । ଘୋଷା ।
ଚୋ ରସ ପରିଚୟ ସୁଭାଗ୍ୟ— ଭୋଗକୁ ଭୋଇବାକୁ ଯୋଗ୍ୟ
ସେବନ୍ତି ହରିଶଙ୍କମୁଖୀ ମୁଁ ଶଙ୍କରଙ୍କ ପଦ-ପଙ୍କଜ ।୧।
କା'ର ଗିରକୁ ସାର କରନ୍ତୁ ରେ ବନ୍ଧୁଆ,
ମାର ମଦ ବିକାରର ଉପକାର କରନ୍ତୁ ରେ
ବାସବ-ମଣି ସଦୃଶ, କେଶ-ପାଶିମା ପରିହରି ସୁବେଶ
ଦାସଜନେ କାରଣ କରନ୍ତୁ, ଏ କି ରେ କିଶୋରୀ ରତନ ।୨।
ଅରତ ବର-ବାରଣ ଗତି ରେ ବନ୍ଧୁଆ,
ଚାରଣ ଗୁଣ ବାରଣ କର ରସବନ୍ତୀ ରେ
ଅନ ଅଣ୍ଟି ବଦନ-ଟେଳ, ପାନ ବିଢ଼ବ ଭରସି ଖେଳ
ଅଚର ପରିହାର ବିଭବ ମୁଞ୍ଚ ଚଞ୍ଚଳାଞ୍ଚଳ ଦୃଶୀ ।୩।

ହାସ ଜନିତ ଭୃଷ ସମୁଦାୟ୍ ବନ୍ଧୁଆ,
କେବଳ ଜଗଦେବ ବିନୟ ସେବ ହୃଦୟରେ
ମନ୍ଦ ବିକଚ କୁଟର କୁନ୍ଦବୃନ୍ଦ ବରଷିଲ ପସନ୍ଦ
ଚନ୍ଦନଶଣୀବାସୀତ ତନୁ ସାର ଦାର ଅର ମୂରତ ।୪।

---

( ୨୬୯ )

ରାଗ—ବଙ୍ଗଳାଶ୍ରୀ—ଝୂଲ

ମାନ ଅବା·ଲଜ, ନଜାଣିଲି ଆଜ, ମୁଖଚନ୍ଦ୍ର ନୁଆଁଇଲି,
ଥନ ପକାଇଲି ଅନେକ ମୋ ଗିର କାନପାଖକୁ ନ ନେଲି ରେ ।୧।
ଦୋଷ ଦେଖି ଯେବେ ନେନେ ତେବେ ସିନା ଶେଷ ଅଙ୍ଗୀକାର କର,
କ ସବାଶଜ୍ଛି ମୋ ସକଳ ଭାଗ୍ୟ ମୋଷ ରଖିଲି ଚତୁର ରେ ।୨।
ପିଅଇ ନଦେଲି ଅଧର, ଜରଜେ ଢଅଇ ନଦେଲି ପାଣି,
ପିଅଇ ବାସ ମଦନ ମୁଖୁଁ ମୋତେ ଜୀଅଇବୁ କେହ୍ନ ପୁଣି ରେ ।୩।
ଛକାର ସନ୍ଧକ ସନ୍ଧରେ ନିବଡ଼େ ଜକାଇ ନଦେଲି ଦେହ,
ଧକାଇଲି ନାହିଁ କେଳରୁ ପଛକୁ ପକାଇ ଦେଲି ମୋ ସ୍ନେହ ରେ ।୪।
ତିଗୁଣ-ପର ଦଣ୍ଡରୁ ରେ କେତକୀଗୋର । ସରଲି ମୁଁ ସିନା,
ଶିଗ୍ରଷ ସବ ଶଗ୍ୟର ଉଡ଼ାଇଲି ପୁରୁଷଘାତକୀବାନା ରେ ।୫।
ମଦନମୋହନ ବଚନେ ଶ୍ରୀମତୀ ସଦୟ ହାସ ବଶଲେ,
ସେ ସମୟ ଛବ ଭାବଭାବ କବ ୨ବ ଗସ୍ୱଗୁର ବୋଲେ ରେ ।୬।

---

( ୨୭୦ )

ରାଗ—ତୋଡ଼ି ପରଜ—ଏକତାଳି ।

ମାନସ ପ୍ରପଞ୍ଚରୁ ବଞ୍ଚି ପଳା,
ଜାଣୁ ତ ଏ ଭବ-ଜତ ଅତ ରଙ୍ଗ ତରଙ୍ଗପର ଚଞ୍ଚଳା ରେ । ଘୋଷା ।
କଳନ୍ଦଜାକୂଳେ ଜଙ୍ଗମ ତମାଳେ ମୋ ନେତ୍ର ଖଞ୍ଜନ ଖେଳା
ସ୍ମର ସ୍ମର ବ୍ରଜବାମା ଜନମନ-ମୋହନ କନକ ଚେଲାରେ ।୧।

ଲବ୍ଧ ମୋହ ଘୋର ଅକୂପାର ପାର ପରମ ସୁନ୍ଦର ବେଳା
ଦେଖିତ ଶରଣ କଂସାରି ଚରଣ ସଂସାର ତାରଣ ଭେଳା ରେ ।୨।
ଲାଲ ପାଲଙ୍କି ମଶାଲ୍ ଶାଲ୍ ହର ସଚୋକ ପୁତ୍ର ଅବଳା
ବିଷୟ ବାସନା ବିଷମ ଏହି'ତ ତହିଁ ତୁ ମତ୍ତ କବଳା ରେ ।୩।
କର ହରିନାମ ସ୍ତୋମ ମତ୍ତ ଦାମ ମନୋହର ମୋର ଗଳା
ପରିହରି କୁଣ୍ଠ ଧରି ଧୀରେ କାଟ ଏ ମୋହ ଲୌହ ଶୃଙ୍ଖଳାରେ ।୪।
ଆନନ୍ଦେ ଗୋବିନ୍ଦପଦ-ଅରବିନ୍ଦ ଭୃତ୍ୟଜନେ କର ମେଳା
କହେ ରାମଚନ୍ଦ୍ର ଶ୍ଳେଷ୍ମରୋଗ୍ୟ ଦେବ ନ କରଟି କେବେ ହେଳା ରେ ।୫।

———

( ୨୭୧ )

ରାଗ—ଗୁଜରୀ—ଏକତାଳି ।

ମାନସରୁ ମାନ ସରୁ ମାନ ସରୁମଧ୍ୟମା ।ଘୋଷା ।
ହର ହର-ଦୁଃଖ ମୋର, ହରିହର ତୁ ନ କର,
ହରିହରରେ ମୁଁ ତୋର ହର, ହର ହରନା ।୧।
ପରିକତ ସୁନା ମୋତେ, ପର ହତ କରୁ କେତେ,
ପରିହରିତ ସୁରତେ, ପରସନେ ସୁମନା ।୨।
ତୁ ମୋ ଜରପଦଙ୍କରେ, ଘେନକଥା ପଦଙ୍କ ରେ
ଧରୁଛି ତୋ ପଦ କରେ, ମୋଦ-କରେ ନବୀନା ।୩।
କବିସୂର୍ଯ୍ୟ ଦୀନବନ୍ଧୁ, ବୋଲି ହେଲି ଦୀନବନ୍ଧୁ,
ରଖିବାରେ ଧନବନ୍ଧୁ-ବନ୍ଧୁଜନଯୂନା ।୪।

———

( ୨୭୨ )

ରାଗ—ତୋଡ଼ି ଜଙ୍ଗଲା—ଏକତାଳି

ମାନିନୀବର ମାନ ମନୁଁ ହରବେ ।। ଘୋଷା ।
ମୃଗମଦ ଲୀଳା ଭଙ୍ଗୀ ନୋହୁଛି ଅଧର ସଙ୍ଗୀ
ନାହିଁ ମୀନନେତ୍ରୀ [ ପୀନ ପୟୋଧରେ ହାର ରେ ।।୧।

ଅରେ ଢାମ ରସସିନ୍ଧୁ                ହେବାକୁ ଭାବନ୍ତି ବନ୍ଧୁ
ତୋ ଅଧର ବନ୍ଧୁଜୀବ ଜୀବ ମଧୁକର ରେ ॥୨॥
ଶରଦ ଚନ୍ଦ୍ରମାମୁଖୀ                ଅଲଙ୍ଗନେ ଜର ସୁଖୀ
ଏ ସମୟେ ଅଭିନବ-ରତି ମନୋହର ରେ ॥୩॥
କାହାଁ ରେ ରମଣୀବର,                ତୋ ନୟନ ଇନ୍ଦୀବର
ସରଜୁଛି ଏବେ ନିରନ୍ତରେ ନୀରଧାର ରେ ॥୪॥
ତୋ ବଦନେ ଅନେ ମନ                କରଞ୍ଜାରେଁ କାରେ ଧନ !
ଅଷ୍ଟଦୁର୍ଗ ବସୁମତୀ ସ୍ୱର୍ଗ ପୁରନ୍ଦର ରେ ॥୫॥

---

( ୨୭୩ )

ରାଗ—ଭୋଢ଼ପରଜ—ଝୁଲ

ମିତ, ତୁନି ହୋ ଲେ ତୁତ ଅନୁଭବୀ ନୋହୁ,
ସ୍ନେହଜାତ ସୁଖ, ତା ବିଚ୍ଛେଦ ଦୁଃଖ ଯେ ଜାଣେ ସେ ଅପି କହୁ ॥ ଘୋଷା ॥
ଅନୁବରତେ ତ ପରଶ ହେଲଣି ବନଜ ପଲ୍ଲବାବଳି
ଘନଶ୍ୟାମ ନାମ ବିନା ଦୁଃଖାନଳେ ମନ ଯାଉଅଛି ଜଳି ॥୧॥
ଲକ୍ଷା ତ ସାକ୍ଷାତ ଲଗିଛି ଭାଲରେ ତା ଖ୍ୟାତ କରିବ କେତେ
ବିଷ ମକରନ୍ଦ ହେଲଣି ବୋଲି ଯା କିସ ସମର୍ପାଉ ମୋତେ ॥୨॥
ଝୋଙ୍କାଟାମାନଙ୍କ ଆଗସରକା ମୁଁ ଝେକା ପାରୁନାହିଁ ମଥା
ଝେକା ଦେଲେ ଭୁଲି ଫୁଲିଯିବ ବୋଲି ଏ କି ସଟାବଟା କଥା ॥୩॥
ଝୁଲା ଝାଲି କେତେ ମରମରେ ମୋର ବଳାଅଛି କହୁଥାଉ
ଖୁଆ-ଦଣ୍ଡିଆ ହେବାପ ଝୀବରେ ସୁଆଦ ଥାଏ କା ଆଉ ॥୪॥
ଝଡ଼ପଡ଼ ସହି ଯାଉଛନ୍ତି କେତେ କୁସୁମ ଚୟନେ ରହି
ଫୁଲ ପାନରଙ୍କ ମନଟା ମୁଁ ତାଙ୍କ ଅଙ୍କକୁ ଅନାଉଁ ନାହିଁ ॥୫॥
ନୀଳାଚଳ ଚୂଳ ପ୍ରସାଦରୁ ହେଲେ ଝେକାଥିଲେ ଭଜାଥାଳି
କବିରବି ସାଧୁଗୁରୁଙ୍କ ପର କେ ପ୍ରୀତ ନ ଜାଣନ୍ତି ପାଳି ॥୬॥

---

( ୨୨୪ )

ରାଗ—କୁମ୍ଭକାମୋଦୀ—ଏକତାଳି ।

ମିତ, ଶତ ଭଙ୍ଗରେ ମୋହର ଗୋ
ଭ୍ରାନ୍ତିରେ ହୋଇଛୁ ପୂର୍ଣ୍ଣ ।
ପିନ୍ଧାଇ ସାଜ ମୋ କବରୀକୁ ହର
ଗଠା ହୋଇଥିବେ ପର୍ଣ୍ଣ ॥ ଘୋଷା ॥
ବାସନ୍ତୀକ ବେଶ ରଚିବା ଅଗ୍ରହେ
ଆସନ୍ତ ଶ୍ୟାମଳ ଯୁବା,
ନାରୀ ତ ମୁଁ ଭରି ନୋହେ ନ ଜାଣିବାରୁ
ଶ୍ରୀହସ୍ତ ଘେନେ ଯା ସେବା ॥୧॥
ବଳୟୁ ପହୁଞ୍ଚି ଗଳଭୂଷା କାଞ୍ଚି
ହେଲେହେଁ ନୋହିଲ ବୋଲେ
ଅଳକର ଯାହା ତୂଳପଙ୍କେ ଉର—
ସ୍ଥଳୀ ଅପସରେ ଗେଲେ ॥୨॥
ଅଙ୍ଗଦ ମଧ୍ୟରେ ବସିନାହିଁ ବୋଲି
ରଙ୍ଗ ଦଳ ଶୋଣମଣି,
ବାସ ହାସ ତା ନ ଦେଇଛୁ ଛିଣ୍ଡାଇ
ଯାହା ସଜାଡ଼ାଏ ପୁଣି ॥୩॥
ଗର୍ବକେ ଦେଖି ମୋ ଅର୍ବକେ ହସିବେ
ବୋଲି ରଚୁ ମିଛ ଛାନ୍ଦ
ତହିଁ ଅଖାଡର ନ କର ଖାତର
ହୁଅନ୍ତୁ ଯା ମାଳଗୁନ୍ଦ ॥୪॥
ଅଷ୍ଟାଦୁର୍ଗେଶ୍ୱର ଜାଣି ମୋ ଦୋଷର
ନାହିଁ ଗଣନା ପ୍ରମାଣ
କ୍ଷମା ନ କରିବେ ତମାଳ ଶ୍ୟାମ କି
ବୋଲି ଘାଣ୍ଟିହୁଏ ପ୍ରାଣ ॥୫॥

———

( ୨୭୫ )

ରାଗ—କୁମ୍ଭକାମୋଦୀ—ଏକତାଳି

ମିତ, ହୃତ ଯେତେ ତୁ କହିଲୁ ଗୋ, ଗତ ତା ନମଣେ ସୁଖ,
ପରମପଦବୀ ଲଭିଲେହେଁ ଯେବେ କରମରେ ଅଛି ଦୁଃଖ । ଘୋଷା ।
ମୋହନ ମନ୍ତ୍ରଟି ଜାଣୁ ତୁ ଅଧୁର ମୋ ମନ କରୁ ବଶ,
ସବୁ ତ ଗଲା ହରଣାକ୍ଷୀବୃନ୍ଦଙ୍କୁ ଶ୍ୟାମ ସଙ୍ଗଭାଗୀ ଯଶ ।୧।
କଷଟରେ ପୀୟୁଷ ବୁଜି କରିବାର ଫଳ ହେଲା ଏତେ ସବୁ,
ପିଶାଚ-ସ୍ବର ବଦନେ ମଡ଼ି ହେଲା କମ୍ବା-ଚକ୍ରବାକୀ ପରୁ ।୨।
ଝଳା ମୋର ମନ୍ଦଜରେ ପୁଣି କେତେ ବଳିଅଛି କହୁଥାଉ,
ଖୁଅଦଣ୍ଡ-ଛୁଆଁ ଖରପ କ୍ଷୀରରେ ସୁଆଦ ଥାଏ କି ଅଉ ।୩।
ଅପ୍ରିୟ ହେଲେ ତାହାର ବୋଲାଇବା ଅଣା ସିନା ପରହାଣି
କହିବାକୁ ଏହା ସହୁ ରହିଥାଏ ନାକି ସେହି ଦ୍ରୋହୀ ପ୍ରାଣି ।୪।
କହେ ଅଷ୍ଟଦୁର୍ଗ ମହୀଦମ୍ଭ ସ୍ବର୍ଗ ମହେନ୍ଦ୍ର ଶ୍ରୀଜଗଦ୍ଦେବ
ଯିବା ସମନପୁରକୁ ଯେବେ ନାକନିବାସଙ୍କୁ କସ ହେବ ।୫।

( ୨୭୭ )

ରାଗ—ତୋଡ଼ିପରଜ—ଏକତାଳି

ମିତ, ଏ କିଏ ସେ ଲୋ ମୋ ମନ ରହିଲା ଲାଗି
ଭାଲୁଣୀ ପରାସ୍ତେ କାଳିଆ ମୁହଁକୁ ଗୃଲୁଣୀ ପରାଜୟେ ଅଖି । ଘୋଷା ।
ପଣ୍ଡା-ରକା ଭାତ ଭକ୍ଷଣକୁ ଯେବେ ଅଖିରେ ଦଅଇ ଦେଖି
ଭଣ୍ଡାର ବହନ୍ତି ବ୍ରାହ୍ମଣେ ନେଇଣ ତାହାକୁ ଦଅନ୍ତି ଗୃଖି ।୧।
ନାରଦେ ପ୍ରବନ୍ଧେ ବସିଛି ଯାହାର ଦ୍ୱିଗୁଣ ଶାଗୁଣପକ୍ଷୀ
ଲୋକମାନେ ତାର ପାଦେ ଖଟିଥାନ୍ତି କେଉଁ ଗୁଣ ସତେ ଦେଖି ।୨।
ଭେଣ୍ଡା ଭେଣ୍ଡା ବୁଲ ଭାଇଙ୍କି ବସାଇ ସିଂହାସନ ଭୁଲପାଖି
ଜଗତଯାକର ମନ ମୋହୁଅଛି ବନହଳଦିଆ ମୁଖୀ ।୩।
କବିରବି ବୋଲେ ଇହ ପରଲୋକ କରିପାରନ୍ତି ସେ ସୁଖୀ
ନାମ ଜପୁଥିଲେ ପାପ ପୁଣି ଯମ କରଣ ନ ପାରେ ଲେଖି ।୪।

( ୨୭୭ )

ରାଗ—କେଦାର—ସରମାନ

ମିତ, ଅମ୍ଭ ଶ୍ୟାମବନ୍ଧୁ ଗଲ୍ କି ରସେ ଗୋ । ଘୋଷା ।

ଅଖଣ୍ଡ ଶୋଭାମଞ୍ଜୁଳ, ଶିଖଣ୍ଡମଣ୍ଡନ ଚୂଳ

ଖଞ୍ଜେ କି ଜନନୟନକୁ ପରଶେ ଗୋ ।୧।

ରସପୀୟୂଷ ଲହରୀ,— ପରି ତା ବାଣୀ ନିର୍ଝରୀ,

ଜଗତୀ ମନୋମଞ୍ଜରୀ କ୍ଷୀର ସେ ଗୋ ।୨।

ନୋହେ କୁସୁମ କମାଣ, ତା ନେତ୍ର-ବାରିଜ କୋଣ

ମାର ମାରଗଣଗଣ ବରଷେ ଗୋ ।୩।

ତା ମୋହନ ସ୍ମିତ-ଶିଖା— ତୁଲେ ସୁର ଚଳ ପରି

କୁଳର ସୁନ୍ଦରପଣ କରଷେ ଗୋ ।୪।

ଶରଦ ରଜନୀଈଶ, ମୋହେ ତା ମୁଖ ନିବାସ,

ସେ ତ ଲକ୍ଷ୍ମୀଅଙ୍କ ନାଶ ଦରଶେ ଗୋ ।୫।

କୃପାମୟ ଅବତାର ରମା ଲକ୍ଷ୍ମୀ ଦେବ ତାର

ହେଲେ ଧନ ନେବ ତା'ର ସ୍ପରଶେ ଗୋ ।୬।

ଲଭି ହେଜ ନୋହୁ ଅବା, ଅବସର ପୁହାଇବା,

ତା ପଦତଳେ ଚୁମ୍ବିବା ତରସେ ଗୋ ।୭।

ତହିଁ କବିତପନ ଯାଉଥିଲେ ତା ଲପନ,

ସ୍ୱର୍ଗସୁଖେ ତ ମୋ ମନ ନରସେ ଗୋ ।୮।

---

( ୨୭୮ )

ତୋଡ଼ି ଜଙ୍ଗଲା—ଅଢ଼ତାଳ

ମିଶିଲ୍ ଯେ ଆଜ କସି ରେ ଶଶୀମୁଖି !

କି ଶିଖିଲ୍ ଶ୍ୟାମଠାରୁ । ଘୋଷା ।

ହୋଇ ମଦମୟ ଘୁଞ୍ଚିଲ୍ କି ଭୟ ଗୁରୁଜନ ଗ-ରହାରୁ,

ବାନ୍ଧି ଅଲିଙ୍ଗନ ଜାଣିଲ୍ କି ଧନ ରାଜ ତେଜ ବରହାରୁ ।୧।

ମୁରଳୀ ନିରତେ ଡାକିଲା କି ତୋତେ ଦ୍ରବାଏ ଯେ ଶିଳାଦାରୁ,
ତେତେ ବିମର୍ଦ୍ଦନ ହେଲା କି କୁନ୍ଦନ ପ୍ରବଳତର ବିକାରୁ ॥ ୨
ଦଳିବାକୁ ମାର ବୀର ଅହଙ୍କାରେ ସେ ପାରନ୍ତି କି ତୁ ପାରୁ,
ଲଘୁ ଅନାଦର ଛଦ ଦନ୍ତକ୍ଷତ ଦଶୁଅଛୁ ସିନା ଗାରୁ ॥ ୩
ଦେବୀ ଦମ୍ଭ ରୋଷେ ଗୃହିଁଲେ ସହାସେ ଅଳୀ ଏପରି ପଗୁରୁଁ
ଏକାଳେ ଛି ଦୁଇ ଦୁର୍ଗନାଥ ଯାଇ ତାଙ୍କ ଚରଣେ ଜୁହାରୁ ॥ ୪

---

( ୨୭୯ )

ରାଗ—ତୋଡ଼ି—ଅଠତାଳି

ମୂନମୋହନା, ତୁନି ହୁଅନା । ଘୋଷା ।

ଅରେ ବିଧୁବଦନେ ବୃଥା ନିରସମନେ
ବାସେ ବନ୍ଦ-ବିଧାନେ ରହନା ରେ ।୧।
ଗୁରୁଜନ-ଜରତ ଜ-ରେ-ଜନସ୍ଥିତ
ଗୃହତୁଲ୍ୟ ଭାରତୀ ସହନା ରେ ।୨।
ମରକତ ମାଧୁରୀ ତନୁ କନକ ଗୋରୀ
ମିଳାଇବା ସୁନାରୀ ମୋହନା ରେ ।୩।
ଅତସୀ ଅଭ୍ରସମ ନବନୀରଦଶ୍ୟାମ
ବନ୍ଧୁଅରେ ତୁ ବାମ ବିହନା ରେ ।୪।
ବରଜ ତା' କୁଞ୍ଜକୁ ଅରଜିଣ ମୁଞ୍ଜକୁ
ଚନ୍ଦ୍ରାବସ ପୁଞ୍ଜକୁ ଦହନା ରେ ।୫।
ପ୍ରୀତିବଲ୍ଲରୀ ବନ୍ଧା ଟାଳିବା କର ଫନ୍ଦା
ନିରସବତୀ ନିନ୍ଦା କହନା ରେ ।୬।
କହେ ଶ୍ରୀ ଜଗଦ୍ଦେବ କଞ୍ଜନୟନେ ଲବ
କରୁଣାର ଅଭାବ ବହନା ରେ ।୭।

---

( ୨୭୦ )

ରାଗ—ମୁଖାରୀ—ଅଠତାଳି

ମୁଁ ହାରିଲି ହେଜ ଏତିକି ଗୋ,
ଜୁହାରିଲି ଶ୍ୟାମ-ପ୍ରୀତିକି ଗୋ;
ଗୁହାରି କରିବି କାହା ଆଗେ କେତେ
ଲୁହାରେ ବନାଇଁ ଗୀତିକି ଗୋ । ଘୋଷା ।

ଦେହକୁ ସମରପି ପ୍ରାଣତୁଲେ,
ସ୍ନେହକୁ ସମ୍ପାଦିବା ସିନା ଭଲେ,
ଏ ହଟହଟାରେ କେ ମରିବ କରି
ସଙ୍ଗାଳି ବିଶ୍ବାସଘାତୀକି ଗୋ ।୧।

ନିୟମ କରି ନ ପାଳଇ ଯାହା,
କି ଅମଳଣିଆ କରଇ ତାହା,
ଦଇ ମୋତେ ଗାଳି ପଛେ ମୁଁ ନ ପାରେଁ
ପରୁଷ ପୁରୁଷ ଜାତିକି ଗୋ ।୨।

ବୁଝିଗଲି ଶାଳୀବନେ କି ରଙ୍ଗ,
ସୁଝିଗ ନ ଥିବା ଜନେ କି ସଙ୍ଗ,
ମୁଁ ଆଗ ବିବେକ ହୁଡ଼ି ହୃଦୟକୁ
ସମର୍ପିଲି କାମ କାତିକି ଗୋ ।୩।

ହଟିଲି ରାଧାର ଏ କଞ୍ଜ-ନେତ୍ର,
ଘଟିଲି ମୋ କର୍ମେ ଏ ଦଶା ମାତ୍ର,
ଜଟିଳା ଜାଣିଲେ ସଂସାରୁ ସରିବି
ପାଇ ଘୋର ଅପଖ୍ୟାତିକି ଗୋ ।୪।

ଶତ ପଦରେ ପଦେ ନାହିଁ ସତ,
ସତପର ହୋଇବାରୁ ପ୍ରତୀତ,
ଅତପଃ-ଶୀଳା ମୁଁ ଅନୁଭବ କଲି
ଏ ତପତି ଜତପତିକି ଗୋ ।୫।

ଶିଖଣ୍ଡଚୂଳଅବ ଗୁଣତୁଲେ,
ଏ ଖଣ୍ଡ ଅଛୁ ବୋଲି ଜାଣିଥିଲେ,
ଅଖଣ୍ଡ ବିଶ୍ୱାସ କରନ୍ତି କି ଭଲେ,
ଜଗଦ୍ଦେବ ଏ ଭାରତୀକି ଗୋ ।୬।

( ୬୭୧ )

ରାଗ—ତୋଡ଼ି ପରଜ—ଏକତାଳି ।

ମୋ ବନ୍ଧୁଟି ବାଇ ହୋଇଯାଏ ସିନା,
ପାଇଯାଏ ଯେବେ ମୋର ଅଚରଣ ପ୍ରଶଂସା ଫୁଲ୍‌ବାସନା । ଘୋଷା ।
ନ ଛୁଇଲା ପରି ବ୍ୟାଜେ କରେ ମୁଖ ସୁରୁଚିର ଶରବାନ୍ଧୁ,
ଚୁମ୍ବିଲେ ଶ୍ରବଣସୀମାକୁ ମୋ ଗୁଣ ପୀୟୂଷରୁ ଏକ ବିନ୍ଦୁ ।୧।
ବଳୟାବଳି ଅଙ୍ଗଦ ମଣିଚୂଡ଼ି ଶବ୍ଦେ ରୁଣ୍ଡି ରହେ ଦେହେ,
ଏପରି ସେ ପରଣତ ବିମ୍ବାଧରା ସଖୀଙ୍କି ଭଡ଼ାଇ ସ୍ନେହେ ।୨।
ଜାଣି ବାରବାର ବାର୍ବନ୍ଦ୍ର କର ଗରବ ଦଳିବା କଛୁ,
ମୃଦୁ ଇଷିଇଷି କହାରେ ପ୍ରେୟସୀ ତରୁଣ ସୁଗୁଣଗୁଚ୍ଛୁ ।୩।
ମୋହର ପ୍ରବେଶ ପ୍ରତୀତରୁ ବେଣ-ରସିକା ପଢ଼େ ଚମକି,
ସେ ସମୟେ ରାକା-ପ୍ରଦୋଷ ଜଳଧି ହେବ ତା ହୃଦ ସମ କି ।୪।
ଚକ୍ଷୁକେ ଚନ୍ଦନ ଶ୍ରବଣେ ଅଞ୍ଜନ କଣ୍ଠେ କରେ ଲକ୍ଷା ବୋଳ,
ବ୍ୟସ୍ତ କରି କମ ଭାସଇ ବିଭ୍ରମ-ସିନ୍ଧୁ କଲ୍ଲୋଳେ କେବଳ ।୫।
ବୋଲେ ଅଷ୍ଟବର୍ଗଧରା ଦମ୍ଭ ସ୍ୱର୍ଗପୁର ପୁରନ୍ଦର ଗୀତେ,
କାଣୋରାଙ୍କ ପ୍ରେମ ଚେଷ୍ଟା ଘନଶ୍ୟାମ ପ୍ରସୁଦିତ ହେଲେ ଚିତ୍ତେ ।୬।

( ୬୭୨ )

ରାଗ—କୋଳାହଳ—ଅଦ୍ଧତାଳ

ମୋତେ ଯା ମହିଳା ମୋହିଲା
ଘଟେ କି ମୋ ଭାଗ୍ୟ ନୋହିଲା । ଘୋଷା ।
ତା ସରସ ଅନାଇଣି ସାରସ ହେବକି ଲଭଣି ।୧।

ଦେଖି ନଥିଲି, ଥିଲି ଶୁଣି   ଲକୁଚ ତ କୁଚର ଜିଣା ॥୨॥
ଅଳକା ଭଳି ଯା ଭାଷିଲି   ମୋ କଥା ପରି ଅଭାସିଲି ॥୩॥
ସତେ କି ସେ ଅଧର ବିମ୍ବ   ଉରନ୍ତି ଚୁରନ୍ତି ମୋ ଚୁମ୍ବ ॥୪॥
ମଧୁରାଧରା ସେ ପ୍ରବୀଣା   ଅଧୁରା ନକଲୁ ମୋ କ୍ଷୀଣା ॥୫॥
ଏହି ଭାବନା ବନମାଳି   ହୃଦୟସ୍ଥଳ କଲେ ମାଳି ॥୬॥
ନୟନେ ରହିଲା ଶୋଭା ସେ   ବସୁଦୁର୍ଗର ନୃପ ଭାଷେ ॥୭॥

---

( ୨୬୩ )

ରାଗ-- ତୋଡ଼ିପରଜ—ଝୁଲ୍ଲ ।

ମୋ ଧନଟି, ଭସାଇ ଦଅଇ ସୁଖେ
ରସାଇ ଜାଣିଲେ ଭୁଜେ ଭିଡ଼ି ଅଙ୍କେ ବସାଇ ଚୁମ୍ବି ଶ୍ରୀମୁଖେ ॥ ଘୋଷା ॥
ସଞ୍ଜବେଳ ନୀଳ-କଞ୍ଜ ପରି କରି ମନ୍ଦାକ୍ଷ ମଞ୍ଜୁଳ ଆଖି
କୁଧର ଭରକେ ଜମାଇ ଭିଡ଼ି ମୋ ଅଧର ଅଳପ ଗୃହି ।୧॥
ନଖ-ରେଖରେ ଖେଳାନ୍ତେ ମୁଁ ପୁଲକ ମାଂସଳ ମୃଦୁଳ ଅଙ୍ଗେ
ରଖରଖ ଇଷି ସରଳଟି ଭାଷି ଚମକୁ ଥାଇ କି ରଙ୍ଗେ ॥୨॥
ଭାଷା ଭଙ୍ଗୀ ରଙ୍ଗେ ଇତର ପ୍ରସଙ୍ଗେ ପ୍ରକାଶଇ କେତେ ଠାଣି
ଆଶ ବାସ ବେଶ ଦରଶନରେ ମୋ ଆଶ ପ୍ରବଳବା ଜାଣି ॥୩॥
ମୋ ପରି ହେବୁକ ବୋଲି ମୁଁ ନିର୍ଲ୍ଲେଖା ଗର୍ବେ ଯାହା ତୁଳା ନାହିଁ
ମୋତେ ସ୍ଥାନଗୋସ୍ୱି କେହି ତୁମ୍ଭପରି ହେବ ବୋଲି ରସି ଗୃହିଁ ॥୪॥
ପଦ-ଭୂଷା ମୁକ୍ତହୋଇ, ବାବଦୁକ କଳାପ ହୋଇବା ବେଳେ
ବୃଡ଼ାଯାଏ ମୋର ବୁଡ଼ାଯାଏ ପରଂ-ବ୍ରହ୍ମାନନ୍ଦ ସୁଖ-ଜଳେ ॥୫॥
ଶିଖଣ୍ଡ ଶେଖର ଭାବ ବୃନ୍ଦକରମାଳ ଜେମାଙ୍କ ଗୃତ୍ରସ୍ୱୀ
ହୋଇବାର ହୃଷ୍ଟ ବଚରଲେ ଅଷ୍ଟଦୁର୍ଗନାଥ ଶତେ ଧରି ॥୬॥

---

( ୨୭୪ )

ରାଗ—କଳିଙ୍ଗଡ଼ା—ଝଃସାସ୍ତ୍ର ତାଳ

ମୋ ଧନ ତ ରଖିଲାପରି ଦଶିଲା ରେ ॥ ଘୋଷା ॥

କରମ ଅବଳ ହେବାରୁ କେବଳରେ
ପୀୟୂଷ ରସରେ ବିଷ ମିଶିଲା ରେ ॥୧॥

ତୁମେ ମୋ ମାନସ ଛୁଇଁଥିଲେ ଦୋଷରେ
ପ୍ରଭୁ ତ ସେ, କାହିଁକି ନ କଷିଲା ରେ ॥୨॥

ଅନ୍ୟ ପ୍ରୀତି ବିନା ନ ଜାଣେ ନବୀନାରେ
ତା ମନେ ଗୁମାନକୁ କେ ପେଷିଲା ରେ ॥୩॥

ରସମୟ ବିନା ମୋ ସଙ୍ଗାତି ସିନା ରେ
ତାକୁ ଦ୍ୱେଷ ନଜରେ କେ ତୋଷିଲା ରେ ॥୪॥

ମୁଁ ଯେବେଟି ଦୋଷୀ ମତେ ତ ନ ଭଷିଲା ରେ
ନଖଚନ୍ଦ୍ରେ ବସୁଧାକୁ ଭୂଷିଲା ରେ ॥୫॥

ଅଷ୍ଟଦୁର୍ଗପତି ଶତେ ଶନ୍ଦ୍ରେ ନିତି ରେ
ହସି ଅନାଇଁବ କେହୁ ସୁଶୀଳା ରେ ॥୬॥

---

( ୨୭୫ )

ରାଗ—ସିନ୍ଧୁ କାମୋଦୀ—ଏକତାଳି

ମୋ ବନ୍ଧୁକୁ ନ ଦେଖି କୋଳରେ ଦେବ ଗିରୀଶାରି ସାର
ବିଷମ କୁସୁମ ସମୁଦୟମୟ ବାଣଗଣେ ମାରମାର ॥ ଘୋଷା ॥
ମୋ ବିଚ୍ଛେଦ ଦନ ଲେଖାରୁ ଭବନ ଦଶିବନ ଖାରି ଖାରି ॥୧
ଘଉଡ଼ କୋକିଳ, ଛପାଅ ବକୁଳ ବୋଲି ନେବେ ଠାରଠାରି
ପ୍ରିୟସଖୀ ତତ ଜଗିଥିବେ ନିତି ପ୍ରହରକେ ଗୁରି ଗୁରି ॥୨
ଅତ ଯତନରେ ହେଜ ନ ଥିବ ତା ନୟନୁ ନିବାରି ବାରି
ବୋଧୁଁ ତହୁକହ ଆଜ କେହ ସଖୀ ରହୁବନ ହାରିହାରି ॥୩

ପାରୁ ନ ଥିବେ କେ କୃଶାଙ୍ଗୀର ଗିର ନିଜ ପରିବାର ବାର
ଗୃପଳ ନ ଥିବ ତନୁରେ ତା ନବ-ଜ୍ୱରଜ ଯେ ଭ୍ରମଭ୍ରମ ।୪
ଏ ଦୁଃଖ ସିନ୍ଧୁରୁ କେବେ କେବେ ପ୍ରଭୁ ପାପତାପ ତାରିତାର
ଜଗଦୀଶ୍ୱର ବୋଲେ ରଖିଲେ ରଖିବେ ଅବା ମଦନାରି ନାମ ।୫।

---

( ୨୬୭ )

ରାଗ—ସିନ୍ଧୁକାମୋଦୀ—ଏକତାଳି

ମୋର ବନ୍ଧୁ ଶର ପ୍ରବାସରୁ ଗୋ କାଲ୍ କଲେ ଅବଧାନ
ଜାଣି ଦାସୀ ମନ ଆଣିଲେ ମଣ୍ଡନ ସହିତେ ଅନେକ ଧନ ॥ ଘୋଷା ॥
ନବୀନ ସୁବେଶ ଛବି ନର୍ମ ହାସ ବିନୟ ସରସ ଭାଷା
ସୁଷମ ସରୋଜରାଜି ଶେଜସଜ କୁସୁମ ସଜାଡ଼ା ଶୋଷା ।୧।
ଅଳଙ୍କର ଭଙ୍ଗୀ ଛଳଙ୍କର ଅଙ୍ଗୀକାର ବାଟିକାରେ ସ୍ନେହ
ଫୁଲମାନଙ୍କର ବାସ ସୁକୁମାରଗୁଣ ଖାଉଁଉ ବିରହ ।୨।
କଳକଣ୍ଠ ସ୍ୱରେ ଭ୍ରମର ଝଙ୍କାରେ ସଙ୍ଗୀତେ ଶ୍ରବଣ ପ୍ରୀତି
ନିବିଡ଼ାଲିଙ୍ଗନ ସରସ ଚୁମ୍ବନ ଅଭିଳାଷ ପରି ରତି ।୩।
ଦର ଦରସ୍ମିତ ସୁଧା ପରିଚିତ ନିରଳସ ଚନ୍ଦ୍ରମୁଖ
ମଦ-ଚନ୍ଦନ ଗନ୍ଧବହ ଲହରୀ ଚନ୍ଦ୍ରିକା ସ୍ମରଣ ସୁଖ ।୪।
ଅଳଙ୍କାର ଧନ ଏଥିରୁ ଯେ ଅନ କଲଙ୍କ ପର ନେଇ ସିନା
ଅଷ୍ଟଦୁର୍ଗ ମହୀନାଥ ମୋର ସହି, କଷ୍ଟ କରିଦେଲେ ଚୂନା ।୫।

---

( ୨୬୮ )

ରାଗ—ମୁଖାରୀ—ଅଦତାଳ

ମୋ ଭାଲେ ଥିଲା କି ଲିହି
କଲି ମଲ୍ଲୀରୋପଣ—ତହୁଁ ଜନ୍ମିଲା ତୃଣ,
ଜ୍ୟୋତି ରତନ ଗଣି, ହେଲା ପାଷାଣ କଣ । ଘୋଷା ।

କୁଚ ଫଳିଲା କି ନାରଙ୍ଗ, କଟିମେଖଳା ହେଲା ଭୁଜଙ୍ଗ
ତଟିନୀ ତଟେ ବାସ କରି ନଗଲା ଶୋଷ
ପିଇବାର ପୀୟୂଷ ପାନରେ ହେଲା ବିଷ
ମଧୁ ଶାକର ହେଲା ଲିମ୍ବ, ରବିପରି ହେଲା ଚନ୍ଦ୍ରବିମ୍ବ
ଚଢ଼ିଲି ମେରୁଚୂଳ, ହୋଇଗଲା ଅତଳ
ଚନ୍ଦ୍ରକାନ୍ତ ପାଟଳ-ହୀରା ହେଲା ଉପଳ ।୨।
ମନ୍ଦାକିନୀ ନୀରେ ମଜ୍ଜିଲି, ନିନ୍ଦା କାହିଁକି ଅର୍ଜିଲି
ଧାତାର କି ବିଡ଼ମ୍ବ, ରଞ୍ଜିତ କିଂଶୁକ
ପଢ଼ାପଣ୍ଡିତ ଶୁକ ହେଲା ମୋ ଦ୍ୱନ୍ଦ୍ୱ-କାକ ।୩।
ଆଜ ନ ରମିବି ନବୀନା, ଜୀବନ ଯିବ ତାଙ୍କ ବିନା
ଏ ଚିନ୍ତାର ମନ୍ଦର, ହେଲେ ଶ୍ୟାମସୁନ୍ଦର
ବଦନ୍ତି ଜଳନ୍ତର ଅବନୀ ପୁରନ୍ଦର ।୪।

---

( ୨୭୯ )

ରାଗ—ମୂଲ୍‌ତାନି—ଆଡ଼ତାଳି

ମୋହନା ରେ, ଗୁମାନ ବହନା ରେ
ମୁଁ ଦେହଧରି ବହନ୍ତୁଅଛି ତୋହ ନାଁ ରେ ॥ ଘୋଷା ॥
ଜରିଲକି ନାହିଁ ତୋର କରିବା ମନାରେ
ମହିଳାମଣି କେ ମିଛ କହିଲା ମୋ ନାଁ ରେ ।୧।
ଛୁଟିଗଲେ ତୋ କରୁଣା ଘୋଟିଏ ଚିନାରେ
କନ୍ଦର୍ପଗତ ମୁଁ ଦୁଃଖେ ସହିବି ସିନାରେ ।୨।
ବର ତୁ ସବୁ ରସିକା ବରବରନାରେ
କର କୃପା ମନ ମାନଭିର ଭରନା ରେ ।୩।
ଜାଣୁ ତ ଯେବେଁ ମୁଁ ତୋତେ ପ୍ରାଣୁ ଅଭିନ୍ନା ରେ
ସତୁମଧ୍ୟା ଲେଖା ନୁହ କରୁଣା ହୀନା ରେ ।୪।
ଭଣେ ଜଗଦେବ ଶୁଣି କଶୋଗ୍ରି ବିନାରେ
ରମା ରସିକଙ୍କ କଲେ ସମାନ ସିନାରେ ।୫।

---

( ୨୮୦ )

ରାଗ—ସାରଙ୍ଗ—ଏକତାଳି ।

**ମୋହନା, ମୋ ଅଙ୍କକୁ ଆସରେ ॥ ଘୋଷା ॥**

କୁଃଖନଦ ଭେଳା, ସ୍ୱଚ୍ଛ ସ୍ନିଗ୍ଧ ଖେଳା
ମଧୁରାରୁଣ ରଦବାସରେ । ୧ ।

ନୟନଚ୍ଛ ବାର, ପ୍ରସର ନିବାର
ଭଙ୍ଗଦେ ଥରେ ଭୁଜ ଫାଶରେ । ୨ ।

ଖଳଜନ ବାଣୀ, ହୃଦୟକୁ ହାଣି
ଚୁଷନା ଧନ ନିଜ ଦାସରେ । ୩ ।

ତୋ ମଣି କଠାଜ, ବହୁ ଧନ ଯାଜ
ନଗ୍ଯଡ଼ୁ ମୋର ଏ ମୁହାଁସ ରେ । ୪ ।

ଗିରିଙ୍କର ଅହା, ସରଳ୍‌ଟି ଗୃହାଁ
ମଦନାନନ୍ଦନିଳ ଶ୍ୱାସ ରେ । ୫ ।

ଚୁମ୍ବନ ବିଧାନେ, ମଧୁରସ ଦାନେ
ହର ମୋ ମରମ ପରାଣ ରେ । ୬ ।

ବସୁକୁର୍ଗ ରଜା, ସୁଖେ କର ତାଜା
ରସିଯା' ଭଳପ ବିଳାସ ରେ । ୭ ।

---

( ୨୮୧ )

ରାଗ—କେଦାର—ଅଠତାଳି ।

ମୋହିଲ ରେ ବରମହିଳା ରେ । ଘୋଷା ।

ନୂଆ ମୃଦୁ ଜଳପ,—
ବଳ୍ଲୀ କ ଫକଳପ,
ବଣି ରସ କଳପ,—
କର ଗୃହୁଁ ଅଳପ ।୧।

କର ଚୁକ୍କ ନଉନ,
ସ୍ନେହମୟ ମୋହନ—
ନ ଗୃହୁଁ ସଖୀଜନ,
ହାସେ ରସେ ମୋ ଧନ ।୨।

ପୂଜୁବେ ମହାବ୍ରତେ,
ସେବଥିଲ୍ କ ସତେ,
ଶିବା ଶିବଙ୍କୁ କେତେ,
କ ସ୍ନେହେ ବାଳା ମୋତେ ।୩।

ଭେଦିଲ ମୋ ବିବେକ — ହବ ନାହିଁ ସେ ପିକ—
ବାଣୀର କଜ୍ଜଳକ — ଜଗତ୍ତି ଗୋଟିଯାକ ।୪।
ସ୍ୱଚ୍ଛ କି ବନ୍ଧୁ ସଞ୍ଚ,— — ବେଳେ ମଣ୍ଡିବ କୁଞ୍ଜ,
ବମ୍ପା ଅବମ୍ପା ଭଞ୍ଜ,— — ନେହାର ଛବିପୁଞ୍ଜ ।୫।
ଅଷ୍ଟଦୁର୍ଗେଶ ଭଣେ, — କିଶୋରଙ୍କ ଶୋଭା ସେ,
କିଶୋରୀ ଦେଖି ତୋଷେ, — ଭାବିଲେ ସଙ୍ଗ ଆଶେ ।୬।

---

( ୨୮୨ )

ରାଗ—ତୋଡ଼ି—ଏକତାଳି ।

ମୃଦୁହାସୀ ଦାସୀ ସିନା ହେ । ଘୋଷା ।

ତୁମ୍ଭ ସ୍ନେହ ନିଜନ — ହେବାରୁ ହେଲି ମ୍ଲାନ
ଏବେ ସେ ଯେବେ ସହ୍ଯ ନା ହେ ।୧।
ବାଧି ଦେଲି ବିଧାନ — ଅବଧି କଲେ ଆନ
ସୁନା ସେ ତୁମ୍ଭେ ତ ମିନା ହେ ।୨।
କେ ଦେଲି ଉପଦେଶ — ନ ଥାଇ ଦୋଷ ଲେଶ
ଯୁବତୀ ଜୀବନ ଘେନା ହେ ।୩।
ସନ୍ତୁଷ୍ଟ ବିରାଗରେ — ଅବମ୍ପା ପରାଗରେ
ଯେ ତୁମ୍ଭଠାରୁ ଅଭିନ୍ନା ହେ ।୪।
ଏ କେଡ଼େ ଲୋକହସା — ତୁମ୍ଭ ଉତ୍ସଙ୍ଗ-ଭୂଷା—
ହେବାର ସ୍ମିତ ବିହୀନା ହେ ।୫।
ଅଷ୍ଟଦୁର୍ଗେଶ ବୋଲେ — ତା' ଭୋଗ ଯୋଗ ଥିଲେ
କର ତା ଗୁମାନ ମନା ହେ ।୬।

---

( ୨୮୩ )

ରାଗ—ଶ୍ରୀରାଗ—ଝୁଲା ।

ଯାଉଛୁ ମା, ଅଉ ନ ପାରେ ତାକୁ ଟାକି । ଘୋଷା ।
ଫବଣେ ନବଶ ଭୋଳନେ, — ଲେଉଡ଼ ମୋତେ ଗୁରୁଜନେ,
ଚଳହେଉଥିବେ ପର ଡାକି ।୧।

ମତ ଧର ଦୂତୀ କର, ଯତନେ ଅରଜବାର,
ଗୌର ପୀରତରେ ଏ କି ଶଙ୍କା ।୨।
ହଜାର ହଜାର ଯା’ର, ପ୍ରଣୟବତୀ ବଜାର,
ତହୁଁ କେହ୍ନ ରଖିଥିବ ଜାକା ।୩।
ବ୍ରଜୁଁ ହୁଅନ୍ତେ ବାହାର, ତା ପଦପଙ୍କଜ ଛା’ର,
ଭୁଲୁଚଲେ ରହିଥିବ ଠାକା ।୪।
ଭୁଲାଇ ତ ଶ୍ୟାମ-ପ୍ରୀତ,— ଲମ୍ପଟା ବୋଲ ମୋ ଖ୍ୟାତ,
ନ ରହିବ ପୁଣି ସିନା ବାକି ।୫।
ଅବଶ୍ୟ ତା ଜୀବ ଯିବ, ନେଲେ ନେବ ମନୋଭବ,
ରଖିଲେ ରଖିବେ ଶ୍ରୀପିନାକୀ ।୬।
ଜଗଦ୍ଦେବ ଭାଷା ଶୁଣି, ଅଳି କହିଲେ ମୁଁ ଅଣି,
ଏବେ ଭେଟାଇଲେ କି ହେଲା କି ।୭।

---

(୨୮୪)

ରାଗ—ଝିଂଝୋଟି—ଏକତାଳି ।

ଯା’ନ ଦେଖିଲି ସେ,
ଗାନ-ରସିକା ଅଜ ପାନ ମୋ କରୁ ଦରହାସେ । ଘୋଷା ।
ତନୁମଧ୍ୟମା ମୋ ସହି, ଅନୁକମ୍ପିଲ ନାହିଁ,
ତନୁ କମ୍ପିଲା ରୂହିଁ ତ୍ରାସେ ।୧।
ସଡ଼ଗଲ୍ ଦେବଳ, ପଡ଼ି ମୁଁ ଚନ୍ଦ୍ରଚୂଳ,—
ପର-ଶର ଅନଳ ଝାଂସେ ।୨।
ତା’ର କଞ୍ଜ ସୁନ୍ଦର,— ଧଣି କ୍ଷଣାକ୍ଷି ମୋର,
କ୍ଷଣ କଲା ବୁସ୍ତର ମାସେ ।୩।
କେଉଁ ଦୁଃଖେ ଅଧର, ଲିଭିଲ ବପୁସୀର,
ମଉଳିଗଲା ଝର ଶ୍ବାସେ ।୪।
ଅକପଟରେ ମୋର, ନ କଲା ତୋଷଭର,
ମକରେ ଚଳ ଫରମାସେ ।୫।
ବଳ କରଣ ପ୍ରୀତ, ଫଳ ହେଲା ଏ ଗତ,
ଜଳନ୍ତର ଭୂନାଥ ଭାଷେ ।୬।

( ୨୮୪ )

ରାଗ—ଢୋଡ଼ି କଙ୍ଗଲ—ଅଡ଼ତାଳି ।

ଯା ଯା ମୋ ପାଶରୁ,

ସେ ଶ୍ୟାମନାଗର— ନଷ୍ଟ ନାମ ନ ଧର

ମୋର ଆଗେ ଲୋ । ଘୋଷା ।

ଯେଣୁ ତୋ ଉପଦେଶ ହେବାରୁ ବୁଦ୍ଧିନାଶ

ପଡ଼ିଥିଲି ଅରେ ତା' ଭ୍ରମେ ଲୋ ।୧।

ନିଜପତିରେ ରତ ନଥିବାର ଯୁବତୀ

ବୁଡ଼ିବ ତାର ଅନୁରାଗେ ଲୋ ।୨।

ସଞ୍ଜବେଳରୁ କଞ୍ଜ ଫୁଟିବା ଯାଏ କୁଞ୍ଜ—

ଗୃହେ ତା ଛୁଇଁଲେ ପଚ୍ଚ ଲାଗେ ଲୋ ।୩।

ସେ ଧୂର୍ତ୍ତ ପୀତପଟ ଯେତେ ଯେତେ କପଟ

ବ୍ୟକ୍ତ ନଥିବ ତେତେ ଲୋକେ ଲୋ ।୪।

ମୋ ପରି ଲାଜହୀନ ନୋହିବା ନାରୀଜନ

ଗର ଗିଳନ୍ତା ସେହି ଲାଗେ ଲୋ ।୫।

ଅଷ୍ଟଦୁର୍ଗ ଭୂପତି ବୋଲେ ହେବ ଭରତି

କି ବୃଥା ଅଙ୍ଗୀରତି ଦାବେ ଲୋ ।୬।

———

( ୨୮୫ )

—ଦ୍ରୌପଦୀ ପ୍ରେମୋଦୟ—

ରାଗ—ଘଣ୍ଟାରବ—ଝୁଲା ।

ଯା'ର ମନ ଯହିଁକି ରସେ,

ତା'ର ବିନା ତାକୁ ଆନ ନ ଦିଶେ । ଘୋଷା ।

ଦୁଷ୍ଟ ଚକ୍ର ନଷ୍ଟାଦ ଥିଲେ,

ନିଦାଘ ତପନ ତାପରେ ମଲେ

ଥିଲେ ହେଲେ ଧୀବର ଜାଲେ

ଦେଖୁ ଦେଖୁ ମୀନ ଜଳକୁ ଭୁଲେ ।୧।

ପାଶେ ଥିଲେ ସୁର-ସରିତ,
ବଳଇ କି ତହିଁ ଗୃତକ ଚିତ୍ତ ?
ହେଲେ ହେଲେ ଅତି ଆରତ
ଘନ ଜଳ ବିନା ତାର ଜୀବିତ ।୨।
ଦେଖ ପତଙ୍ଗକୁ କେମନ୍ତ,
ଅନଳ ପାଶକୁ ଧାଏଁ ନିରତ,
ଗଲେ ହେଲେ ତାର ଜୀବ ତ
ଶୋଚନା ଥାଏକି ତାର କିଞ୍ଚିତ ।୩।
କବିରବି ବୋଲେ ଏ ଭାବ,
ଯେ ଯେତେ କହିଲେ କିସ ହୋଇବ ?
ଯାହାର ଯେମନ୍ତେ ସ୍ୱଭାବ
ପ୍ରାଣ ଗଲେ ହେଲେ ଛାଡ଼େ କି ଭାବ ? ।୪।

---

( ୧୮୭ )

ରାଗ—କେଦାର—ଏକତାଳି

ଯେବେ ନବଘନ— ଶ୍ୟାମ ବଂଶୀସ୍ୱନ,
ଶୁଣିଥରେ ଥରେ ଶୁଣାଯିବ,
ସଖି, ସୁଖେ ବନେ ମୋଦମୟ ମନେ
ବାହୁବଳୁ ଛୋର ଭଣାଯିବ । ଘୋଷା ।
ପ୍ରସରିବ ମନ୍ଦ— ମିଳିନ୍ଦ ସଙ୍ଗୀତ
କଳପିକ କୁତ ମଳୟମରୁତ;
ଚରାଚର ଲୋକ ଧରିବେ ପୁଲକ
ପରାନନ୍ଦ ବୀଜ ବୁଣାଯିବ ।୧।
କଳିନ୍ଦଜାକୂଳ— ବିପିନ ବକୁଳ
ମଞ୍ଜୁଳ ମଞ୍ଜରୀ ନିଳୟ ବଳୟେ,
ସୁରଭି ସୁଷମ ବିବିଧ କୁସୁମ—
ମଧୁ ଚନ୍ଦ୍ରାତପ ଟଣାଯିବ ।୨।

ଅମ୍ଭେମାନେ ଘେର— ଥିବୁଁ ପରଗୃଷ୍ଠ—
ଜନପର ଗୃହ ପାଚ୍ଛଣରେ ଘେର,
ଲଳୁଚକୁଗୃହେ ନୃପ ଭପଗୃହେ
ଏ ପଦ ପଦ୍ଧ୍ୟ ମଣାଯିବ ।୩।

ହେବ ସ୍ୱର ବଳ ଜନ୍ୟ ମହୋଜ୍ଜ୍ୱଳ,
ଶୃଙ୍ଗାର ମଙ୍ଗଳମୟ ବନସ୍ଥଳ,
ଭଳାବତୀ କୁଳ— ବ୍ରତ ତଳୁମୂଳ
ଜଟାଢଟୀଠାରୁ ହଣାଯିବ ।୪।

କିଶୋର ଅରୁଣ ପଙ୍କଜ ଚରଣ
ସ୍ତନେ ଲଗାଇବା ତା ଭୁଲେ ଗାଇବା,
ବ୍ରଜ ବସ୍ତ୍ରରେହା ସମୁଦାୟ ମହା—
ଧନ୍ୟ ମୂର୍ଦ୍ଧନ୍ୟରେ ଗଣାଯିବା ।୫।

ଅସ୍ତୁବୁର୍ଗପତ କହେ ଗୋ ସୁଦାନ୍ତ ।
ବୁଲ ହୃଦ ସ୍ନେହ ପୀଯୁଷପ୍ରବାହ,
ବଇଶାଖ ସ୍ୱଚ୍ଛା— ରଜନୀରେ ଏଚ୍ଛା
ଛଣାଗଲ ପର ଜଣାଯିବ ।୬।

---

( ୬୮୮ )

ରାଗ—ତୋଡ଼ି—ଅଦ୍ଧତାଳ ।

ଯୋଷା, କରଛୁ ଅଜ ଓଷା କ ରେ ॥ ଘୋଷା ॥
ଏ ଘେନ ବେଣୀ ନାହିଁ ଛପି ରହୁଛୁ କାହିଁ
ଅଣାବଢଂସ ହେବା ଖୋଷା କ ରେ ।୧।
କୁଣବେଣ୍ଟିଆ ଜୁଡ଼ା ଉପରେ ଦୁବ ବଡ଼ା
ବସନ୍ତରେ ଅକ୍ଷତ ମିଶା କ ରେ ।୨।
କେଶ ଦାରଣ ମସି ଚନ୍ଦନ ଚୌପି ଶଶୀ
ସିନ୍ଦୂରରଜ ବନ୍ଧୁ ପୂଷା କ ରେ ।୩।

କଣ୍ଠ କଳାଭ ମାଳ କଲା ଅଙ୍ଗ ଶରଳ
ପଟିର ପଙ୍କଲେଖା ଭୂଷା କି ରେ ।୪ ।
ଏହୁ ନୟନେ ରହୁ ରହୁ ମୋ ପ୍ରାଣସଖୀ
ପ୍ରବେଶ ହୋଇଯିବ ନିଶା କି ରେ ।୫।
ଶ୍ରୀ ଜଗଦ୍ଦେବ ବୋଲେ ଏବେ ମୁଁ ଅଳି ଛଲେ
ରମ୍ଭୋରୁ ଅରମ୍ଭୁ ତୁ ତୃଷା କି ରେ ।୬।

---

( ୨୮୯ )

ରାଗ—ଦେଶାଖ୍ୟ—ଏକତାଳି ।

ଯୋଷାକୁ ତୃଷା କେ ଶିଖାଇଲା ରେ । ଘୋଷା ।
ନିର୍ଦ୍ଦୋଷ ନିର୍ମଳ, ସୁଧାରେ ଗରଳ,
ଗୋଳଦେଇ ଖଳ କି ଖାଇଲା ରେ ।୧।
ମୋ ନୟନ ସୁଖ— ବର୍ଦ୍ଧନ ଶ୍ରୀମୁଖ,
ପୀୟୂଷ ମୟୂଖ ଶୁଖାଇଲା ରେ ।୨।
ଇନ୍ଦୀବରୁ ନବ— କମଳ ସମ୍ଭବ,
କମଳସମ୍ଭବ ଦେଖାଇଲା ରେ ।୩।
କି ରହୁବ ଜାବେ, ଚନ୍ଦ୍ରମାକୁ ଯେବେ,
ଅରୁଣ ରାଜୀବେ ରଖାଇଲା ରେ ।୪।
ଦୋଷ ଥିଲେ ମୋର, ଦୟାବନ୍ତୀ ବର,
କାହିଁକି ଅଧର ଚଖାଇଲା ରେ ।୫।
ଏ ଯେଣି ସର୍ବାର୍ଥ, ଅଷ୍ଟବର୍ଗ ନାଥ,
ସୁଖ ମନୋରଥ ଭୋଗାଇଲା ରେ ।୬।

---

( ୨୯୦ )

## ରାଗ—ସୁରଠ—ଏକତାଳୀ ।

ରତାନ୍ତରେ ନିତାନ୍ତ ହେଲେ କେତେ ଅଳ ଲୋଳ ଗୋ । ଘୋଷା ।
ଶିଥିଳ କବରୀ ବାନ୍ଧୁ ବାନ୍ଧୁ, ତରତରେ ଶାଢ଼ୀ ପିନ୍ଧୁ ପିନ୍ଧୁ
କୋଟି ଗୁଣ ବୋଲି ପ୍ରାଣବନ୍ଧୁ ଭିଡ଼ କଲେ କୋଳ ଗୋ ।୧।
ଇସି ମଲି ରଖ ବୋଲୁବୋଲୁ, କର ସରସିଜେ ପେଲୁପେଲୁ
ନଖ-ଶିଖ-ଖେଳ ସୁଖ କରାଇଲେ ପରବଳ ଗୋ ।୨।
ବିବିଧ ବିନୟ କରୁକରୁ, ଚରଣ ପଲ୍ଲବ ଧରୁଧରୁ
ଦନ୍ତକ୍ଷତ ପରତିତ କରିଦେଲେ ଗଣ୍ଡସ୍ଥଳ ଗୋ ।୩।
ନ ପାରଇ ବୋଲି କହୁକହୁ, ମୋ ଦେହ ବଞ୍ଚାଇ ରହୁରହୁ
କାମ ଅମଳରେ ଶ୍ୟାମ ହେଲେ ଅତି ଅସମ୍ଭାଳ ଗୋ ।୪।
କହେ ଅଷ୍ଟଦୁର୍ଗ ଧୀର ନାହା, ଶୁଣି ସଖି ଜଣାଇଲେ ଏହା
ପ୍ରିୟସହ, ତୋର ସେହି ମନୋରଥ ଲଭା ଫଳ ଗୋ ।୫।

---

( ୨୯୧ )

## ରାଗ—ବେଗୁପ୍ର—ରୂପକ ତାଳ

ରତି ମୂରତି ଶ୍ୟାମ ପ୍ରୀତିରେ ନ ଜାଣୁ ପରି ପରମାଣୁମଧ୍ୟା ରେ । ଘୋଷା ।
ଖଣ୍ଡେ ହୁରକୁ ଦଶେ ମଞ୍ଜୁଳ, ଗଣ୍ଡେ କାହାର ତାମ୍ବୁଳ ବୋଳ
ମଣ୍ଡେ କି ଶିଦ୍ଧ ଦନ୍ତ ହୂଲୁଳ, ଦଣ୍ଡେ ବସି ଦେଲୁ କି ରସ ପରଶନ୍ତି ରେ ।୧।
ନୀବି ନିବଦ୍ଧ ନାହିଁ କିଛି, ଲିଭି ଅଛି ମୃଗମଦ ମାଛି
ଘୃତଦେଶ ତୋହର ଶ୍ରୀ-ବସ୍ତି କି ବହିଲେ ବଦ ମଦ-ଦ୍ୱିରଦ ଗତି ରେ ।୨।
ମୁଁ ଟିକାଏ ହେଲେ ଶୁଣିଥାଏଁ, ଲୁଟିଗଲୁ କି ଲଜ୍ଜ ଥୋକାଏ
ଲୁଟିବାରେ ମାର ପୂରଯାଏ ଫୁଟି ଝଡ଼ିଗଲୁ କି ସେଫାଳିକା ରତି ରେ ।୩।
ସୁଖ ଲୋଭରୁ ବନ୍ଧୁକାଧରୀ, ରଖ ବୋଲି ନାହୁଁ ଥରେ ପରି
ନଖ ଯତେ ହେଜା ତନୁପୂରି ଅଖଣ୍ଡିତ କଲୁ କି କାମିତ ସନ୍ତତି ରେ ।୪।
କି ସାହସ କଲୁ ସତେ ଅଳି, ଜଣାଯାଉ ଜଗତରେ ପ୍ରବଳ
କଷା ଦଶୁଛି ନେତ୍ର ଯୁଗଳ ହଷା ଲଗୁଛି ଅଙ୍ଗ ଅନାଇଁ ତୋ ବ୍ୟୁତି ରେ ।୫।

ଝୁଲି ଉଲପ ବରଜ ଫୁଲ୍ ଧୂଳି ସମାଜ କି ଶେଜ ଭଲ୍
ଗୁଳି ବାଜିଲା ପରି ତ ଗଲ୍ ଲୁଳି ଯାଉଛୁ ଅଳକମୋତି ସୀମନ୍ତିରେ ।୬।
ଅସେଚନକ ଅଜ ଏ ଶୀର, ବାସେ ଉତ୍ପଳ ମିଶା କସ୍ତୁରୀ
ନାଶେ ମାନସ ବ୍ୟଥା ବଲ୍ଲରୀ ଭ୍ରମେ ବସ୍ତୁଦୁର୍ଗ ଧରିବଳୟ ପନ୍ତି ରେ ।୭।

———

( ୨୯୬ )

ରାଗ—ଶଙ୍କରାଭରଣ

ରଞ୍ଜ ନୟନ-ଅଞ୍ଚଳ ଘନ ନୀଳ ଦେହରେ
ବଞ୍ଚନ ସମ୍ମଦଞ୍ଚନ ଧନ ସଞ୍ଚୟିନୀ କି ସଞ୍ଚ ଭାବ
ଚଞ୍ଚଳ ଘନ ମୁଞ୍ଚ ଘଞ୍ଚ ମୋହ ରେ । ଘୋଷା ।
ଯାନ ପୁର ବିତାନରୁ ଅଭିମାନ ଛେଦ ରେ
ଆନ ନ କର ସାନ ବଚନ ମାନ ଅଦରେ,
ଜ୍ଞାନ ପଥରେ ଧ୍ୟାନ କର ତୁ ତାନରେ
ମୁନି ମାନମାୟୁ ଯାନ ପଦ ନିଧାନଙ୍କର ସୁଗାନ ବାଦ ରେ ।୧।
କାଠ କଲୁଷ ଥାଠ ଭୟୁ କବାଠ ସାଜ ରେ
ଘାଟି ଏଥୁ ବାଠ ନତୁ ଉଚ୍ଚାଠ ହେଜ ରେ,
ଘାଠ ନ କର ଭ୍ରାଠ ପଣର ହାଠକ ନଠ ନାଠରେ
ହେବ ହାଠଟି ଏଥୁ ପାଠ-ଶେଜ ରେ ।୨।
ବାରକ ମୋ ନିବାରଣ ମଣ ସାର ନୀତରେ
ତାର ତନୁକୁ କାରଣ ପରଦାର ଭ୍ରାନ୍ତରେ
ମାର ଭୟୁକୁ ବାର ରମଣୀ ସ୍ମାର ଉରଜ ଭାରକୁ ତୁ
ହାର ଭବ ବିହାର ନ କର ଜାର ଭ୍ରାନ୍ତ ରେ ।୩।
ଯେ ବର ମଣୁ ସେ ବପୁ କି ତୋ ଦେବ ଶାନ୍ତରେ,
ସେବକୀ ହୁଲେ ନେବ କି କହ ଏ ବନାନ୍ତରେ,
ଭେବଳ ହେଲେ କେବଳ ତୋର ହେବ ଏ ଘେନି ଦେବଦେବ
କେବଳ ଜଗତଦେବ ବଚନେ ସେବ ତା' ଠାରେ ।୪।

———

( ୨୯୩ )

ରାଗ—ପୂରବୀ—ଅଡ଼ତାଳି

ରସଦାର ସଦା ନଇଁକରିକି ମୁଁ କରିଅଛୁ ମୂଳ ଫନ୍ଦା ।
ରୁଷଣାରୁ ଶୁଣାଯିବ ସିନା ଏବେ ଧରଣୀ ମଣ୍ଡଳେ ନିନ୍ଦା । ୧ ।
ରସି ବରଷିବ କରୁଣା ପୀୟୂଷ ବେଳକୁ ବେଳ ସେ ବୋଲି
ଭରସାଭର ସାଇଁକରି ମୁଁ ମୋଦ ଅମଳରେ ଝୁଲୁଥିଲି । ୨ ।
ମାନସେ ମାନ ଶେଷ ରଖି ନିରତେ ତେତେ ପଣ୍ଡିତା ଛଇଳା
ଧନ ବଦନ ବସ୍ତ୍ରେବର ହୋଇଲି ବୃଥା କାଳ ବଞ୍ଚାଇଲି । ୩ ।
ତରଳତର ଲକ୍ଷଣ ଯୋଗ ଚଳଚଲ୍ଲୀ ନବୀନ ପଣ୍ଡିତା
ବନିତା ବନିତାର ହେବ ମଞ୍ଜୁସ୍ୱିକ ଜାଣି ହେଲି ଖଣ୍ଡିତା । ୪ ।
କରକ କରକଣ ପୀନ କୁଚଯୁଗଙ୍କ ରୁଚିର ସ୍ତନା ମୋ ଧନ
କିବଣି କି ରଞ୍ଜନର ପ୍ରକାଶିବା ବଗୁରି କରୁଛି ମନ । ୫ ।
ମଦନ ମଦ ନଥିଲେ ଜାଗି ମନେ ନଥାଏ ମୋ ମନେ ଧୃତି
କିଶୋରୀ କି ଶୋରଷକେ ହେଲେ ମତେ ଦେଖାଇଲି ପୂର୍ବ ଦ୍ୟୁତି ।
ପ୍ରଭାତେ ପ୍ରଭା ତେଜିବା ଶରଦରୁ ଭଲ ଋତୁ ଶୀତକର
ପରାଟ୍ସ୍ବ ପରା ଏବେ ମୁଖ୍ୟ କରୁଛି ପାଞ୍ଚ ମୋ ନାଶ ବଳୁର । ୬ ।
ସାରସ ସାର ସମୂହଁ ଶୋଭା ଜସୁ ଧୂରନ୍ଧର ଲୋଚନରୁ
ବାରି ନିବାରି ନିପଟ ହସିବାର ପାଶୋରି ଦେଲି ରମ୍ଭୋରୁ । ୮ ।
ତଳପ ତଳ୍ପପକା ହଂସତୁଳୀରେ କଟିନତା ଅବା କେତେ
ସହି ନ ସହୁ ନରମ କାଳେ ଲୁଳେ ସେ ତନୁ ଧସରେ ସତେ । ୯ ।
ରୁଷିଲରୁ ଶିଳା ଭାବକୁ ଶ୍ରୀଅଙ୍ଗେ ବହିଲି ନୂଆ ଛଇଳା
ମହିଳା ମହୀଲସୂକ ହୋଇବାରୁ ଏ ଅନୁମାନ ହୋଇଲି ।୧୦।
କରି ଗୃକରି ଗୃରି ଯାମ କାକରେ ଅନାରତେ ସାବଧାନେ
ଗୃଲିଲେ ଗୃଲି ଲେଶେ ହେଲେ ଖସଇ ପ୍ରଭୁଙ୍କ ଭା ମନେ ଘେନେ ।୧୧।
ଏବେ ତ ଏବେ ତ ହେଲି ମୋ ଚରମେ ଏଣିକି କ୍ଷମା ସୁନ୍ଦର
ରସଭାର ସଭା ପଦେ କହୁ କହେ ଅଷ୍ଟାବୁର୍ଗ ପୁରନ୍ଦର । ୧୨ ।

( ୨୯୪ )

ରାଗ—ପୂରବୀ—ଅଦତାଳ

ରସନିଧି ଭଲ ଅଚରନ୍ତି ମୋହପର ବଧି ରେ । ଘୋଷା ।
କିଙ୍କିଣୀ ତାଳକୁ ରଚୁଥିଲ, ଝୁଲିଝୁଲି ନଥ ନାଚୁଥିଲ,
ନେତ୍ର ପୁଣ୍ୟଫଳ ପାଚୁଥିଲ, ମୋତେ ବ୍ରହ୍ମପଦ ଯାଚୁଥିଲ । ୧ ।
ଅଧୋମୁଖେ ରନୃସାରୁ ଥିଲ, ତା ନିକଟେ ସୁଧାଭାନୁ ଥିଲ,
ତହିଁ ତିଳଫୁଲ ତଳେ ଝଲମଲ ବୁଲାକ ଝୁଲୁ କି ମାନୁଥିଲ । ୨ ।
ଅନେ ତା ଗୁଣର ଲବ କାହିଁ ବିବେକ ବାକି ରହିଲ ନାହିଁ
ବିନ୍ଦୁ ବିନ୍ଦୁ ଝାଳ ସୁନ୍ଦର କପୋଳ-ମୁକୁରେ ମକରାଲୀଳା ଗୁହିଁ । ୩ ।
ବନ୍ଧୁ ମୋ କି ଲଜ ଭଜୁଥିଲ, ଥରେ ଥରେ ନେତ୍ର ବୁଜୁଥିଲ,
ଥରେ ଥରେ ଗୁହିଁଦେଇ ଇନ୍ଦୀବରେ ମଦନ ଦେବକୁ ପୂଜୁଥିଲ । ୪ ।
ନୀଳକୁଞ୍ଚିତ କୁନ୍ତଳତତି ଭଜୁଥିଲ ଅସ୍ତବ୍ୟସ୍ତ ରୀତି,
ମିଶୁଥିଲ ଗର୍ଭ କମରେ ଖସିବା କୁସୁମ ଶ୍ରୀ ଜୟଦେବ ଧୃତି । ୫ ।

( ୨୯୫ )

ରାଗ—କେଦାର—ଅଠତାଳି

ରସାତଳଭୂଷା, ନବରସେ ରସା ରେ ॥ ଘୋଷା ॥
ଗାଢ଼େ ଭୁଜେ ଭିଡ଼ ମୋତେ ବିଦାରି କରଜ-ଘାତେ
ଘସି ଗଣ୍ଡେ ଗଣ୍ଡକୁ ସୁଧା ବରଷା ରେ ॥ ୧
ନଗୁହ ଚୁଟର ବେଣୀ ବଜାଇ କଟି କିଙ୍କିଣି
ମଡ଼ାଇ କୁଚ ଇନ୍ଦ୍ର ପଦକୁ ନସା ରେ । ୨
ରଚି ବନ୍ଧନ ନାଗରୀ ନିଅ ମୋ ମନକୁ ଧରି
ନୀରେ ନୀର ପରି ଅଙ୍ଗେ ଅଙ୍ଗ ମିଶା ରେ ॥ ୩
ପ୍ରେମଭରେ ଯାଇ ମଜ୍ଜି ନିବିଡ଼ ସୁଖକୁ ହେଜି
ଦ୍ୱିଷି ଇଷି ଧନୁ କାମକରୁ ନ ଖସା ରେ ॥ ୪
ଅସ୍ତ୍ରଦୁର୍ଗ ଦଣ୍ଡଧାରୀ ଦ୍ୱେଷେ କାମ ପୁଣ୍ଡ୍ରକରି
ରସିକ ସଂସାରେ ମୋ ସୁକୃତ ବଶା ରେ ॥ ୫

( ୨୯୭ )

ରାଗ—କଲ୍ୟାଣ—ଝୁଲ୍ଲା ।

ରସିକା-ମଣ୍ଡଳୀ ମଥାଙ୍କ ରେ, ବସିଛୁ ତ ବୁଝି ବସୁନ୍ଧରାରେ,
ଖସିପଡ଼ୁଅଛି ଦେଖ ପର କାଟି ଧୃତ ଲତକାଟି ମନୁ ଭ୍ବରାରେ । ଘୋଷା ।
କହୁଛୁ ଘୁମୁରେ କେ କି ଧୀର ରେ, ମଣ୍ଡାରେ ଶବ୍ଦଛୁ ନାଖରିରାରେ,
ଅଛୁ ତ ମୁଁ ନୁହେ ଅଦୋଷେ ନିଗ୍ରହେ ନ ଦଣ୍ଡ ତୁ କୃପାନିଧି ପଣ ରେ ।୧
ଦୁଃଖକୁ ମୋହର ତୁ ପାସୋରି ରେ, ମୁଖଚନ୍ଦ୍ର ଟେକ ବମ୍ବାଧରା ରେ,
ସୁଖ-କସୁମାଳ, ନଯାଅ ମଉଳ, ବନ୍ଧୁ ତୋ ଗୁମାନ ତୀବ୍ର ଖରା ରେ ।୨
ବଣା ମୃଗନେତା ନାରୀମଣ୍ଡରେ, ଗଣା ଚଳିଣି ମୁଁ ତୃଷାତୁରାରେ,
ଛଣା ରସଫଳ, ଥାଉ ଥାଉ ଦୂର, ତୋ ଜରକ ବ୍ୟାଜ-ସୁନାଗରା ରେ ।୩
ମଦନ ମଦୁଅ ଇଚ୍ଛ ଭୁରାରେ, ମୋ ଧନ, ମୁଁ ଯିବି ସିନା ମରାରେ,
କଦନ ବିଧ୍ୱଂସନ କଲେ ତୁ ହଂସ ବଳଯ୍ତିଗମନା ଶୋଭାକାରୀ ରେ ।୪
ହରି ବନିତାର ମନୋହରା ରେ, ପ୍ରଣୟରେ ରୋଷକୁ ହସି ଜରାରେ,
ହାରଲେ କଷ୍ଟ ସିନ୍ଧୁ ତରିବା, ଅଷ୍ଟାଦୁର୍ଗ ସ୍ୱର୍ଗରାଜା ମନ ପୂରାରେ । ୫

---

( ୨୯୭ )

ରାଗ—ଖମ୍ବାଜ—ଝୁଲ୍ଲା ।

ରାତି ପାହିଗଲା ହେ ହାତୀ,
ହୁଅ ଅପହୃତ ତେଜ ସୁପାତି । ଘୋଷା ।
ହେମ ହେଲେ ଜରମୁକୁଡା, ପାନ କଲ ଲଗିଲା ପିଡା,
କରଟ କୁମ୍ଭାଟ ଚମକ ବଟନ୍ତି, ରାଜିଲା ଅରୁଣ କିରଣ କାନ୍ତି ।୧।
ଛୁଇଁ ଗଙ୍ଗଶିକଳ ବନ, ବହିଲଣି ମୃଦୁ ପବନ,
ରଥାଙ୍ଗ ଦମ୍ପତି, ହୃଦଦ୍ୱନ୍ଦ୍ୱ କଷ୍ଟ ଦୂର ହୋଇଲାଣି ବିରହ ଜାତି ।୨।
ବନ୍ଦିହିଲେ କୁମୁଦ ନିଦ, ଅଳିକୁଳ ହେଲେ ପ୍ରମୋଦ
ଲଭିଲଣି ଭସ୍ମ, ସଙ୍ଗିନୀ ନଷ୍ଟସ୍ମୃ, ଇଙ୍ଗିତରେ ଘେନି ଯିବେ ମୋ ଜାତି ।୩
ମନ ମୋର ଚିତ୍ତ ନ ହିତ, ଧନ ମୋତେ ମେଲଣି ମିତ୍ର,
ରାଧା ନନ୍ଦସୁତ ମାତିଲେ ବୋଲି ତ ତୁଷ୍ଟକୁ ଏ ବ୍ରଜ ମଣ୍ଡଳେ ଖ୍ୟାତି ।୪।

ଜଳନ୍ତର ଭୂପତି କହେ, ଅଙ୍ଗରାଗ ଅଛୁ ମୋ ଦେହେ,
ଅତି ସେ ନଙ୍କରୁ ହେମ ଭଗେଜରୁ ଶିଥିଳାଇ ଦିଅ ଅଳପ ଗ୍ଳାନି ।୫।

———

( ୨୯୮ )

ରାଗ—ଗୁଜୁରୀ—ଝୀପଟ।

ରାଧେ, ଅନଙ୍ଗ ରଙ୍ଗ ରଣକୁ ଆଜ ସାଜ ରେ,
ରାଜ ବଦନ ମୋଜ ସଖି ସମାଜରେ,
ମନ୍ଦୁ ଲଜ ତେଜ ହାଜର ଜରଛାଜ ଧର ବିରାଜ ଆଜ ରେ ।
ମଞ୍ଜୁଳରେ କୁଞ୍ଜ ନିଳୟ ମଣ୍ଡ ଅଦରେ,
ଭଞ୍ଜି କୁସୁମ ଗଞ୍ଜନ କମନୀୟ ପାଦରେ,
ଅଞ୍ଜନା ରୁଚି ପୁଞ୍ଜ ବିହଗ ପଞ୍ଜରନିଭ
କୁଞ୍ଜରେନ୍ଦ୍ରରଞ୍ଜନ କ୍ଷଣ ଗର୍ବିତ ମତି ନିର୍ବିବାଦରେ ।୧।
କୁଞ୍ଜ ସଦୃଶ ସୁନ୍ଦରତର ମନ୍ଦହାସୀ ରେ,
ଚନ୍ଦନ ଘନସାର ସକଳ ବୃନ୍ଦବାସୀ ରେ,
ନନ୍ଦ ନିଳୟ ଚନ୍ଦ୍ରମୁଖି ପସନ୍ଦ ସୁଅରବିନ୍ଦ-
ସୂନ ନିର୍ଗତ ମକରନ୍ଦର ହୁଅ ଯା ପିପାସୀ ରେ ।୨।
ମୁଞ୍ଚ ସୁଦନ୍ତୀ ବଞ୍ଚନା ନିଶୀ ରତ ଖେଳ ରେ,
କୁଞ୍ଚିତ ଭ୍ରୂରୁ ଭଙ୍ଗୀ ଜିତ ବିରଚ କୁଳ ରେ,
ଚଞ୍ଚଳ ନୟନାଞ୍ଚଳ ମିଶି ସଞ୍ଚିତ ମଦାଚଞ୍-
ଚୀକ ସଞ୍ଚରୁ ନବ କାଞ୍ଚନ ନିଭ ଗୃହୁଚେଳରେ ।୩।
ଶାନ୍ତରସ ପିଶଣ୍ଡିଳମତି ମନ୍ଥ ପାଳ ରେ,
ସୀମନ୍ତ ମଣି ସୁକୁନ୍ତଳ ମତ୍ତ ଭ୍ରୁ ଅଳି ରେ
ଦାନ୍ତଭ ତୃଣବନ୍ତ କରୁ ନିରନ୍ତର ଏ ଦୁରନ୍ତ
କାମକୁନ୍ତ ସଦୃଶ ପାଣିରୁହ ନିତାନ୍ତ ବେଳ ରେ ।୪।
ବାରଣଗତି ହାର ରେ କୁଚଭାର ମଣ୍ଡ ରେ,
ନିବାର ମୁଦିର ବାର ତନୁରୁ ମାରଦଣ୍ଡରେ,
ଅରକତ ସୁଧାରସ ବାରବାର ବିଜୟୀସାର—
ପଦଦ୍ଵନ୍ଦକୁ ଭାବ ବନ୍ଦଇ କବିମାରତଣ୍ଡ ରେ ।୫।

( ୨୯୯ )

ରାଗ—ଶଙ୍କରାଭରଣ ।

ରାଧେ ରସିକାରାଜ, ତୋ ପ୍ରାଣାପଣ ଜଣା ଯିବ ଆଜ,
ନନ୍ଦର ତନୟ ପୁରନ୍ଦରମଣି ମଙ୍କରନ୍ଦଲିଟ ତୁ ଅରବିନ୍ଦଟି ସୁନ୍ଦର । ଘୋଷା ।

ହେବା ଧନୁ ତୁନ ପୀନ କରକଣ,
ମଦଗତେ ବସୁନ୍ଧରା ମଣ୍ଡଳିଙ୍କ ମଣ୍ଡୁପରା,
ଧରାଧରଧରା କରେ କସ । ୧ ।

ଭଲ ସଖୀ ଦେହେ ସ୍ନେହେ ଜଡ଼ିବାର,
ଭଲ ସେ ଶିଖଣ୍ଡିଚୂଳ ମରକତ ଅରଗଳ
ବଳିଷ୍ଠ ବାହୁ ଯୁଗଳ ଭିଡ଼ିବାର । ୨ ।

ଅମ୍ଭେ ସିନା ପ୍ରଭୁ ବୋଲି କରୁ ଭ୍ରାନ୍ତି,
ତୁ ଯାହା କଲେ ତା ସହୁ କ୍ଷମା କରିବେ ସେ କାହୁଁ,
ବାମା ଗର୍ବ-ଚନ୍ଦ୍ର ରାହୁ କଳାହାତୀ ।୩।

କି ହେବ ମନ୍ଦିରେ ଭୁଲ୍ବ ନଗ୍ରୁଇଲେ,
ଯଣହେବ ଟେହୁକାଳେ ନଟ-ମୁକୁଟକୁ କୋଳେ,
ନଗ୍ରୁଇ ସେ ରସେ କଲେ ଲୁଗ୍ରୁଇଲେ ।୪।

ମୃଦୁ ତନୁ ବୋଲି କେ ଘୁଞ୍ଚିବ ଆଜି,
ଅଙ୍ଗ ଯିବାପାଏ ଶାନ୍ତ ହୋଇବ ନାହିଁ ଯେ ଦାନ୍ତ,
କରନ୍ତୁହ ପ୍ରାନ୍ତ କୁନ୍ତ ଖେଳା ଦାଜି । ୫ ।

ବୋଲେ ଅଷ୍ଟଦୁର୍ଗ ନାଥ ଜଗଦ୍ଦେବ,
ସଖୀ ପରିହାସ ଶୁଣି ଲକେ ହସି ଠାକୁରାଣୀ,
ମନେ କଲେ ହେଲେ ପୁଣି ଲୁହାଯିବ । ୬ ।

———

( ୩୦୦ )

### ରାଗ—କେଦାର—ରୂପକତାଳ

ରାମା ରଥାଙ୍ଗ ଦମ୍ପତ୍ତି ରତେ ରସିଲ ରେ । ଘୋଷା ।

ହଞ୍ଚରୁ ବାହାର ଯୋଗେ ଭଞ୍ଜ କକାଶ ପର୍ଯ୍ୟନ୍ତେ
ଅଞ୍ଜନାଶ୍ରୁ କେବଳ ବରଷିଲ ରେ ।୧।

ନୋହେ ସେ କଞ୍ଜକାଶ ଅହେତୁରେ ବନ୍ଧୁ ବେଷ
ଜାଣିବେ କି ସେ ସାରସ ହସିଲ ରେ ।୨।

ତୁଷାର ହେଲ ମଣ୍ଡନ ସୁସାର ପଦେ ବଚନ
ତୋ ସାରସ ବଦନୁ ନ ଖସିଲ ରେ ।୩।

ସେବା ନ ଘେନ ଆନନ୍ଦ-ହେବାର ଏ ପରବନ୍ଧ
ଜବାଧର କି ପସନ୍ଦ ଦଶିଲ ରେ ।୪।

ଯା' ତୁଲେ ରତି ଶରଣ କରୁ ତୋ ମୃଦୁଚରଣ
ନ ରଖିଲ ସେ ଶରଣ ପଶିଲ ରେ ।୫।

ଉତ୍କଣ୍ଠା କରବାରୁ ପ୍ରେମ ହଣାଇ ଦେଲେ ଜତ୍ରପ—
ଟର ମୋର ମନକି ଅଭ୍ୟସିଲ ରେ ।୬।

କହେ ଅଷ୍ଟଦୁର୍ଗ ପତି ଶୁଣି କିଶୋର ଭାରତୀ
ହୋଇଲେ ଅମନାବନ୍ତୀ ସୁଶୀଳା ରେ ।୭।

---

( ୩୦୧ )

### ରାଗ—ତୋଡ଼ି—ଅଦତାଳ

ରମା ! ଗୃହୁଁ ଯା ନୟନାନ୍ତେ ଅଳପରେ । ଘୋଷା ।

ଟାଳଦେବ ମୁଁ ଦୁଃଖ ପାଳ ଫେରାଇ ମୁଖ
ଗାଳରେ ହେଲେ ପଦେ ଜଳପରେ ।୧।

ଖଣ୍ଡ ମଧୁର ବାଣୀ ମଣ୍ଡନେ ମୋ ପାଣି
ଦଣ୍ଡ ଦେଲଟି କୋଟି କଳପରେ ।୨।

ରେ ବିମ୍ବାଧରବର ସେବ ନଶାବାସର
ହେବ ମୁଁ ତୋ କିଙ୍କର କଳପ ରେ ।୩।

ଭଜଗତକି ସ୍ନେହେ ଶ୍ରୀ ଜଗଦ୍ଦେବ କହେ
ପଣ୍ଡିତା ମଣ୍ଡ କେଳ ତଳପରେ ।୪।

---

( ୩୦୨ )

ରାଗ—କଳିଙ୍ଗଡ଼ା—ରୂପକ ତାଳ ।

ସୀମା ସଜିଲ, ବିଶ୍ୱଶୋଭାପୁଞ୍ଜ ଗର୍ବ ଗଞ୍ଜିଲ ॥
ନାକ ନର ନାଗ ନଗରୀ ନାଗରୀ ଦର୍ପ କି ଭଜିଲ । ଘୋଷା ।
ଧରଣୀ ଦେଶରେ ଧାତା ମାନସରେ କି ଗୁଚ୍ଛ ଚନ୍ଦ ଉପୁଜିଲ,
ଏ ସେନ କି ବାଲା ସ୍ୱର୍ଣ୍ଣ ଚମ୍ପାମାଳା ଶମନ ପିତାଙ୍କୁ ପୂଜିଲ ।୧।
ସବୁ ଯୁବାଶ୍ରେଣୀ ମନ ଜିଣି ଜିଣି ମଦନ ମଦକୁ ଭଞ୍ଜିଲ,
ଯତୀନ୍ଦ୍ରଙ୍କସାର ସାରବ ଏଥର ଅମୋଘ ଆୟୁଧ ସାଜିଲ ।୨।
ଫଳ ଗୁମ୍ଫୀକର କାରଣ ନାଳର ପଙ୍କଜାନମାର ବାଜିଲ,
ଜଗତ ମଣ୍ଡଳା କଳେବର କଳା-କଳଙ୍କ ଛଡ଼ାଇ ମାଜିଲ ।୩।
ଇନ୍ଦୁ ଅରବିନ୍ଦ ଇନ୍ଦୀବର କୁନ୍ଦ ମନ୍ଦାର ମଦ ବରଜିଲ,
ମୁଖ ପାଣି ପାଦ ନେତ୍ର ରଦ ରଦବାସ ସେବାକୁ ନ ତେଜିଲ ।୪।
ଜାଣିଲି ମୋ ସୁଖ-ଦୀପ ଗୃହମୁଖ ସ୍ନେହ ସଂଯୋଗରେ ତେଜିଲ,
କହେ ଅଷ୍ଟଦୁର୍ଗନାଥ ଶୋଭା ସ୍ୱର୍ଗ-ଫଳ ଭୋଗେ ମନ ମଜ୍ଜିଲ ।୫।

---

( ୩୦୩ )

ରାଗ—ତୋଡ଼ି—ଅଠତାଳ ।

ରାମାବର ଜଳଜନେତ୍ରା ହସି ଦେ'ରେ । ଘୋଷା ।
ଚନ୍ଦ୍ର ଚନ୍ଦ୍ରିକା କ୍ଷୀର କୁନ୍ଦ ସୁଧା ହାଣ୍ଡିର—
ପିଣ୍ଡ ଗରବ ମୁଖେ ମସୀ ଦେ'ରେ ।୧।
ମନମଥ ମୁକୁର-ମଣ୍ଡଳ ସହୋଦର
ଗଣ୍ଡ ମୋ ଗଣ୍ଡେ ଥରେ ଘଷି ଦେ'ରେ ।୨।
ମୋ ଭର ଭରଭଣ କି ତୋ କୁଚ କଳଶ
ରସିକା ଶିଖାମଣି କଷି ଦେ'ରେ ।୩।
ରତେ ବଳାଇ ମତ ମୋତେ ଇନ୍ଦ୍ର ସମ୍ପଦ
ମର୍ତ୍ତ୍ୟଲୋକର ଉର୍ବଶୀ ଦେରେ ।୪।
କହେ ଶ୍ରୀ ଜଗଦ୍ଦେବ ଯେବେ ମୋ ଦୋଷ ଥିବ
ଗଳେ ତୋ ବାହୁଲତା କସି ଦେ'ରେ ।୫।

---

( ୩୦୪ )

ରାଗ—ଚୋଖିପରଜ—ଏକତାଳି ।

ରେ ସଜନି, ଆଜ ମୋର ଏ କି ରୀତି,
ଗନ୍ଧଫୁଲ ପାଦେ, ମରନ୍ଦଲେ ପଦେ ଲଭି ସିନା ଅକାରଣ ରେ । ଘୋଷା ।
ଯାହା ପାଇଁ ତପ, କ୍ଳେଶରେ ପ୍ରତାପ—
ରଣ୍ଡପର ମ୍ଳାନ ହେଉ,
ଏବେ ସେ ଶରଣି, ପଶିଲେ ଚରଣି,
—କମଳେ ତ ଫେଲ ଦେଉ ରେ ।୧।
ଥରେ ଯା କଟାକ୍ଷ ଲକ୍ଷ୍ୟ ହେଲେ ଲକ୍ଷ—
ଇନ୍ଦ୍ରପଦ ମଣୁ ଊଣା,
ତାହାକୁ ନିକ୍ଷେପୁ କେଉଁ ଅପରାଧୁ
ନ ବହୁ ଲବେ କରୁଣା ।୨।
କୋଟି ଯାହା ପ୍ରୀତି ଧରୁଥାଇ ଭୂତି—
କର ବଡ଼ପଣ ଛାଡ଼ି,
ବନପ୍ରେ ସେ ପୁଣି ଧରୁଛନ୍ତି ପାଣି
ରୋଷେ ଦେଉଛୁ ଛୁଆଡ଼ି ।୩।
ଯାହା ଦେଖା ଆଶେ, ନ ଛାଡ଼ୁ ନିମିଷେ
ସଜଧ ପଞ୍ଜର ପାଖ,
ତା ଗୃହୁ ଗୃହସ୍ଥ ନ ଚଳି ପର
କାହିଁକି ମୋଡ଼ୁ ଶ୍ରୀମୁଖ ।୪।
ଯାହା ସଙ୍ଗେ ରସି ନିକୁଞ୍ଜକୁ ନିଶି—
ନିବଡ଼ ଅନ୍ଧାରେ ଯାଉ,
ସେ କିଶୋର ଭୋଳେ, ଧରୁଚନ୍ଦ୍ର ତଳେ—
ଭଳି ହୃଦେ ନ ଜଗାଉ ।୫।
ଚିନ୍ତାମଣି କର— ଗତ ହେଲା ଘୋର
ନୋହିଲେ ହେଲେ କାତର,
ମୁଁ ରୁଚିବ ଧନ ! କି ନନ୍ଦନନ୍ଦନ
କହେ ଶ୍ରୀ ମୁକୁନ୍ଦଦେବ ।୬।

( ୩୦୪ )

ରାଗ—ଢୋଡ଼ି ପରଜ—ଏକତାଳି

ରେ କଣୋଖି, ତୁ ଲୋଡ଼ୁଅଛୁ ମାଡ଼କୁ,
ନାହିଁ କରୁକରୁ ଚାହିଁଲୁ କାହିଁକି ଶ୍ୟାମଳ ଚାନ୍ଦ ଆଡ଼କୁ ରେ ॥ ଘୋଷା ॥
ମୋରେ ତ ନଜର ନ ଦେଉ ନଜର ନ ଦେଉ ଯେ ବଣାଖାରେ,
ବୃଥା କିନ୍ତ ବସେ କି ଥାଏ ଚୋର ସେ ତମାଳ ତରୁଶାଖାରେ ।୧।
ଅନ ମହାଧନ ବିବିଧ ବସନ ଘରୁମୁରୁ ନେଉଛି ମାଗି,
ଚୋର ତ ଜୀବକା ହୋଇଅଛି ଏବେ କଳାମେଘି ଶାଢ଼ୀ ଲାଗି ରେ ।୨।
ଭଲପ ପର ଅନଲପ ସୁରଭି ଫୁଲ ଝଡ଼ି ପଡ଼େ ତଳେ,
ମଞ୍ଜୁ ସୀମନ୍ତିନୀ ! ମଣି ମିଶାଇଛି ଅତସୀ କୁସୁମ ଦଳେ ।୩।
ଗଣି ନୋହିବାର ମଣିଭୂଷା ଅଛି ତହିଁକି ନଚାହୁଁ ଢାଳେ,
ଗଳାଇ ଦେଇ ଗୁଞ୍ଜିକୁ ମନୁଷିକି କଳାଇନ୍ଦୀବର ମାଳେ ।୪।
ଜଳାବାଟେ ହେଲେ ବଳାହକେ ଚାହିଁ ପୁଲଟକି ହେଉ ଭରତ,
କଳା ବୋଲି ସ୍ନେହେ ଦଳା ମଳୟଜ ବୋଳାଉ ଯା ଅଙ୍ଗେ ନିତ ।୫।
ମାର ଜାଣିଅଛୁ ବାରଜାଣି ହସି ସବୁ ଅବତଂସ ଫୁଲେ;
କଷ୍ଟ ପାଇବୁ ତୁ ତାହାର କି ଯିବ ଅଷ୍ଟଦୁର୍ଗନାଥ ବୋଲେ ।୬।

———

( ୩୦୫ )

ରାଗ—ଢୋଡ଼ି ପରଜ—ଏକତାଳି

ରେ ନୀରଦ, ଗରଜି ମରୁଛୁ କେତେ,
ଅରଜି ନାହିଁ ତ ମୋ ବନ୍ଧୁ-କଳିତଭାବ ବାଉଁରୁ କିଅଁଟେ । ଘୋଷା ।
ଦେଖୁଛୁ ତ ମୋର ବାଳା ପୟୋଧର ଉପରେ ମୁକୁତା ହାର,
କେଉଁ ବୁଦ୍ଧି ବଳେ ଧରାଧରଚୂଳେ ଲମ୍ବାଉ ସଲିଳ ଧାର ।୧।
ତ୍ରିଭୁବନେ ସବୁ ଅଛି କି କଣୋଖି ଭୁରୁ ଖେଳିବା ଦଣ୍ଡକୁ,
ଫୁଲୁଅଛୁ କେତେ ଦେଖାଇ ନିରତେ ଇନ୍ଦ୍ରକୋଦଣ୍ଡ ଖଣ୍ଡକୁ ।୨।
ସଚେପ୍ରଭା କେଳି ଘରକୁ ସଙ୍ଗୀନିକଟେ ଫୁଲୁଅଛୁ ଚାହା,
ନୀଳଚେଲାଞ୍ଚଳ ବାଳା ଅପଘନ ଛଟାକି ଅଳପ ଚାହାଁ ।୩।

ଝରିଅଛୁ କେତେ ଭରସା ନିବିଡ଼ ଚଉକାବଳୀ ବରଷା,
ଦେଖୁଛୁ ତ କୁନ୍ଦବରହାସୀ ମନ୍ଦ ସୁନ୍ଦର ମଧୁର ହସା ।୪।
ଅସିତ ଗୁଣରେ ମିଶିତ ମୋ ତୁଲ୍ୟ କେହ୍ନ ନୋହେ କା ବିଗୃହ୍ଣୁ,
ମୋ ଧନ କୁନ୍ତଳପାଶ ଇନ୍ଦ୍ରନୀଳମୟ ଗୃମରକୁ ଗୃହ୍ଣୁ ।୫।
ମୁଁ ବଡ଼ ଶୀତଳ ବୋଲି ଏବେ ସ୍ଥୂଳ ଗରବ ଅଣିଛୁ କହୁଁ,
ବୋଲେ ବାଲ୍ୟକୃଷ୍ଣ ଶରଣ ନରେଶ ବନ୍ଧୁଗୁଣ ଶୁଣିନାହୁଁ ।୬।

---

## ( ୩୦୭ )

ରାଗ—ତୋଡ଼ି ପରଜ—ଆଦିତାଳ ।

ରେ କିଶୋର, ପଛେ ଛୁଇଁବୁ ମୋ ତନୁ,
ପାସୋର ପକାଅ ନୀପଅନାଢ଼ଣି ସୁଅଗ ତୁ ଅଗ ମନୁ । ଘୋଷା ।
ମାତଲ୍ଲ ନିକୁଞ୍ଜେ ଜଣାଯାଇ କୁଞ୍ଜେ ବୋଲି ହେଉଛୁ ଖବର,
ନୋହୁ ମନ୍ଦାଦର ଏ ଅପବାଦର ଅଗ୍ରାହ୍ୟ ଉପାୟ କର ରେ ।୧।
ହିତକୁ ଛାଡ଼ି ମୁଁ ନ କହେ ମୋ ପରିଣମିତକୁ କଦାପି ଆନ,
ଚିତ୍ତକୁ ନଅସୁ ଅସୁ ତା ମୁରଲୀ ଗୀତକୁ ନ ଧରିଅ କାନ ରେ ।୨।
ନଜାଣିଲୁ ପର ଇନ୍ଦୀବରାଧର ଚୁମ୍ବୁ ଯେ ଅନବରତ,
ହର ତୋତେ କୃପା କରନ୍ତୁ ମଦନ କରତ ମୁଖୁଁ ବିରତ ରେ ।୩।
ଧନ ମାନରେ ତୋ ଅଙ୍ଗେ ଯେ ପୂରିଛୁ ବନମାଳିକା ବାସନା,
ଛାଡ଼ିବ ମୁଁ ଅଜ ଏକଥା ନିଆଜ ପହିଲେ କହିଲି ସିନା ରେ ।୪।
କାହିଁକି ହେଲାଟି ଏପରି ପଲ୍ଲବ ତଳପରେ ସଢ଼ି ଦେହ,
ଜନେ ଯେ ପୁଚ୍ଛିବେ ତହିଁକି ଜବାବ ଜଳପ ଅଳପ କହ ରେ ।୫।
ସହଚରୀ ପରିହାସୁ ହସି ଗୋରୀ ତାଡ଼ି ଅବତଂସଫୁଲେ,
ସେ ସମୟ ଛବି ଚିନ୍ତି ଚିତ୍ତେ କବିରବି ଗୋପୀକୃଷ୍ଣ ବୋଲେ ରେ ।୬।

---

( ୩୦୮ )

## ରାଗ—ତୋଡ଼ି ପରଜ—ଅଦ୍ଧତାଳ

ରେ କିଶୋର, ବୁଝିବାର ସିନା ଜାଣୁ,
ରସ-ଜଳଧିରେ ଅବଗାହ୍ନ ଧୀରେ, ତହୁଁ ତ ସାର ନ ଘେନୁ ରେ । ଘୋଷା ।
ରମଣୀସ୍ତୁ ଜାଣି, ବସି ଯହିଁ ପୁଣି, ନଡର ପରିବାଦକୁ;
ବେଷ ଅଙ୍ଗୀକାର, କର କି ତାହାର, ଅଳପ କଥା ପଦକୁ ।୧।
ରତି ତ ମୃଦୁଳ,—ନୋହେ ତାକୁ ଅଳଙ୍କାରକୁ ନିକି ନ ଅଣି;
ରସିକାଙ୍କ ଶିଖାମଣି ଘେନୁ ଶିଖାଶିଖି ତୁହି କାହୁଁ ଶୁଣି ରେ ।୨।
ରକତ ବ୍ୟକତ, ହେଲେ ଯଦି ଷତ, ହୁଅଇ ଅପେରନକ;
ରଦାଗ୍ର ସ୍ମରଣ, ଅଟା ନଖଷ୍ଟ ଦୋଷ, ନଖର ଚତ୍ରେ ବିବେକ ।୩।
ରତ୍ତିଇଶ ରଣ ଯାହାର ଶରଣ ଦେଖିଥିଲେ ତାକୁ ନେନେ,
ରହନ୍ତୁ କି ଲଜ୍ଜ ନୋଧେ ଜମି ଅଜ ଭ୍ରୁକୁଟ ଭଙ୍ଗି ଦେବା ମାନେ ।୪।
ରଙ୍କରତନ ଲଭକୁ ପର ଏବେ ରଚ ଯତନକୁ ଭଲେ,
ରମ୍ୟଶ୍ୟାମଛବି କିଶୋରବେ କବିରବି ସମ୍ପୃଗୁରୁ ବୋଲେ ।୫।

———

( ୩୦୯ )

## ରାଗ—ପୂରବୀ—ଅଦ୍ଧତାଳ

ରେ ମଞ୍ଜୁଳା, ଧରୁଛୁ କର-ସାରସ,
ନ ଧରିବୁ ଥିବା ଯାକ ମୋର ଜବାଅଧର ତୁ ତୃଷା ବେଶ ॥ ଘୋଷା ।
କରୁଥାଏଁ ଅତି ପ୍ରୀତିରେ ମୁଁ ନିତି ନିତି ହରି ଦରଶନ,
ନିତ୍ୟତେ ତୋ ମୁଖ ପୀୟୂଷ ମୟୂଖୀ ହୋଇବାକୁ ପରସନ ॥ ୧ ॥
ତୋ ବଦନ ଦରହାସ ଏକା ମୋର କୋଟି କୋଟି ଠଙ୍କା ସୁନା,
ଓଦରେ ନଜରେ ନ ଅଣଇଁ ଇନ୍ଦ୍ରପଦକୁ ଏ ଘେନି ସିନା ॥ ୨ ॥
ମୋର ସୁଖସିନ୍ଧୁ ରହୁଥାଏ ମୂର୍ତ୍ତି ତୋ ମନ ଉଲ୍ଲାସେ ମିଶି,
ହେଲେହେଁ ବିମୁଖ ବିଷମ ବିଶିଖ ନ ପାରେ ଏଣୁ ଭରସି ॥ ୩ ॥

ସଜବାଳେ ଶଙ୍ଖ ଦେଲେ ତୁ ମୁଁ ମଣ୍ଡ ହେଉଥାଏଁ ମଦେ ଫୁଲ୍,
ସେ କାଳ ମାଧୁରୀ ଅବଲୋକ କରି କୃତାର୍ଥ ହୋଇବି ବୋଲି । ୪
ତୋ କୋଳୁ ଅନ୍ତର ହୋଇଥିଲେ, ହୂର ହୋଇଥାଏ ଭାଗ୍ୟ ମୋର,
ଅଷ୍ଟଦୁର୍ଗ-ସ୍ୱର୍ଗ ମହେନ୍ଦ୍ର ବନ୍ଦଇ ଏଣୁ ମୁଁ ଅଯୁତ ତୋର । ୫ ।

---

( ୩୧୦ )

ରାଗ—ତୋଡ଼ିପରଜ—ଏକତାଳି

ରେ ଜୀବନ, ନବମାଳି କଳି ଭଳି
ନାଗିଳ ବଲ୍ଲଭ ବଦନ ଚୁମ୍ବନେ ଅରମ୍ଭିଛି ଅଳି ଅଳି । ଘୋଷା ।
ସୁନ୍ଦର ମାକନ୍ଦ ମୁକୁଳୁ ମରନ୍ଦ ପଡ଼ିବାରୁ ଗଳିଗଳି
ରବ ଦମ୍ଭେ ପିକ କାପରହାସିକ ବୋଲୁଅଛି ଭଳିଭଳି । ୧ ।
ଚନ୍ଦନ ଗୃହାଁ ତୁ ମଦନ ଭସ୍ମାନ ଅସୁଅଛି ଢ଼ଳିଢ଼ଳି,
ଦୀନ ମୁଖେ କେଳି ଶେଜୁ ଯୁବାପର ଦୁଇଆଖି ଝଳିଝଳି । ୨ ।
କେତେଁ କେତେଁ ଗ୍ରାବ ସମୁଚୟୁ ଦ୍ରାବ ଧନଞ୍ଜୟୁ ଜଳିଜଳି,
ବନ ମହୀସ୍ଥଳ କରୁଅଛି ନୀଳ ଜୀର୍ଣ୍ଣ ପର୍ଣ୍ଣ ଦଳି ଦଳି । ୩ ।
କୁସୁମ ସମୟୁ ଲକ୍ଷ୍ମୀ ସମୁଦୟୁ ପଡ଼ୁଅଛି ବଳି ବଳି
କାମିନୀଙ୍କ ମନ ଦୁହିଙ୍କର ମନ ଯାଉଅଛି ଟଳି ଟଳି । ୪ ।
ତରୁଣୀ ଶରଣ ଇତର ମରଣ ହେଉ ବୋଲି ଝଳିଝଳି,
ଯୋଗୀଙ୍କି ପ୍ରହାର କରି କାମବର ରହିଅଛି ଫଳିଫଳି । ୫ ।
ତୋ କୃପା ସକାଶୁଁ ସୁଖେ ବସି ଅଷ୍ଟଦୁର୍ଗନାଥ ଛଳିଛଳି,
ନ ପରୁରେ ପଞ୍ଚ ନାରାଚକୁ ଲଙ୍ଘି ଦେଲେ ହେଲେ ଥଳିଥଳି । ୬ ।

---

( ୩୬୧ )

### ରାଗ—ପୂରବୀ—ଝୁଲା

ରେ ବନ୍ଧୁଅ, ଅଛୁ ପରା ଅବଧାନେ
ନୋହୁ ନବସଙ୍ଗ ତୁହେଁ ଯେ ଅନଙ୍ଗ-ବଶ ହୋଇଥିଲୁଁ ଦିନେ । ଘୋଷା ।
ବେଣୀ ବାମସ୍ତନ କନକ କୁମ୍ଭକୁ ଅଣି ଫେଡ଼ାଇ ଫେଡ଼ାଇ,
ଗେଲ୍ହାଇ ବାଜେ କରିବା ବେଳେ ଧାଡ଼ା ଦେଲ ଯେ ଉତ୍ତେ ଘଡ଼ାଇ । ୧ ।
ଗୃହଚନ୍ଦ୍ର ଜଣା ବଦନକୁ ଟେକୁଁ ଗୃହରଚ୍ଛୁ ମିଶିଗଲା,
ସ୍ନେହ ଅନନ୍ଦ ମନ୍ଦାକ୍ଷ ସୁଖମୟ ସେକ୍ଷଣେ ଯେ ଦିଶିଗଲା । ୨ ।
ମନୋରଥ ପଥ ସଞ୍ଚାର ପଦାର୍ଥ ହୋଇଗଲା ନୀର ସର,
ମନ୍ଦହାସ ଯେ ଜନ୍ମିଲା ଦୁହିଙ୍କର କୁନ୍ଦ ଉପହାର ପର । ୩ ।
ପୁଲକ କମ୍ପ ସମ୍ପଦ ଲମ୍ପଟ ହୋଇବାରୁ ଗୁରବାହା,
ନ ସମ୍ଭାଳ ପରିରମ୍ଭଣ ଅରମ୍ଭେ ବଳିଥିଲୁଁ ଆମ୍ଭେ ଯାହା । ୪ ।
ଜରଗ୍ଧ ପାଶରୁ ଜଣେ ଅସି ହେଲା ଭରତ ନୋହୁଁ ସେ ରସ,
ସକଳ ସୁଖ ସମ୍ପତ୍ତି ତ୍ୟଜି ଯେତେ ବିକଳ ହେଲା ମାନସ । ୫ ।
ଫଳାଇଲୁ ବଳା ଝୁମୁଝୁମୁ କରି ଲାଜରେ ନୁଆଁଇ ମଥା,
କହେ ଅଷ୍ଟବୁର୍ଗ ନାଥ ସେ ସମୟେ ମୋହର ଯେଉଁ ଅବସ୍ଥା । ୬ ।

---

( ୩୬୬ )

### ରାଗ—ପୂରବୀ—ଏକତାଳି

ରେ ବନ୍ଧୁ, ଜଣା ତ ନାହିଁ ଗୃକଶ୍ରୀ,
ଗୁଣାମ୍ବୁନିଧିରେ ଲୁଣାଗଲା ଅଳି ମଧେ ତୁ ବୁଡ଼ିଲା ପରି ॥ ଘୋଷା ॥
ହେଲା ମାନସେ ତୋ ପହୁଡ଼ ସମୟେ ଶେଜ ମୋ ହୃଦୟ ପରି
ଜାମ୍ବୁନଦସାର ଗୋରୀ ରେ ମୁଁ ତୋର ତାମ୍ବୁଳ-ଭାଜନ ଧରି ।୧।
ଗଇରିକ ଶବ ଉରଜେ କରିବା ସହଚରୀ ତ ମୁଁ ତୋର,
ସଙ୍ଗୀତ ସମୟେ ମୁଁ ଜାଣୋବାଦକ ସଙ୍ଗାତା, ନୃତ୍ୟକ ପର ।୨।

ବେହରଣ ବେଳେ ତୁ ମୋତେ କରିବା ମେହରବାନ ବିଶେଷ
ସ୍ନେହର କମକୁ ଦେଖିଲେ ମୁଁ ତୋର ଦେହର ଏକ ପ୍ରଦେଶ ।୩।
ଶାଢ଼ୀ ଲଗି ବେଳେ ସ୍ନେହ ମୋହଠାରୁ ଘୁଞ୍ଚିଲକି ବିନା ଦୋଷୁଁ,
ଖାଲି ସବୁଙ୍କର ମୋ ହୃଦପଟକୁ ଢାଲିସରିକି ତ ରସୁ । ୪ ।
ଉଲପ ଖେଳରେ ନିଜନ ଜାଣିଲେ ଅଳପମାନ ତୋ ସ୍ନେହ,
ରହିବାକୁ ଦେହ ବହିବି ସେ ଦଣ୍ଡ ସହିବି କାହିଁକି କହ ।୫।
ନ ସମନ୍ତେ ଯାହ ଭଲମନ୍ଦ ମହା-ବିଷମ ଫୁଲ-ଧନବା
ହୁଡ଼ି ଯାଇଥିବି ଅଧରେ ମୋ ଦନ୍ତ ବୁଡ଼ିଯାଇଥିବ ଅବା ।୬।
ଶ୍ୟାମ ନର୍ମ ଗୀର ଭାବ ଦେଖି ବର ବାମନୟନା ହସିଲେ
ହରିଚନ୍ଦନ ଶ୍ରୀଜଗଦ୍ଦେବ କହେ ପରିରମ୍ଭରେ ତୋଷିଲେ ।୭।

---

( ୩୧୩ )

ରାଗ—ତୋଡ଼ି ପରଜ—ଏକତାଳି

ରେ କିଶୋରୀ, ଲାଜେ ଯୋଉ କେତେ ମଥା ॥
ଲାଗୁଛି ଯେ ରସ ବିଚକ୍ଷଣା କଣ୍ଠା ନାହିଁକି ତୋ ମନ କଥାରେ । ଘୋଷା ।
ବୟସ ସିନା ପନ୍ଦର ପୂରିନାହିଁ, ଗୁମାନେ ତ ନୋହୁ ଊଣା,
କହୁଥାଏ ସବୁ ଗୁଲିବା ଗରବୁଁ, ତୋ ମଣି-ବଳା ବାଜଣା ରେ ।୧।
ପ୍ରତି ପଦ ଗୁଳା ଇସି ଇସି ଭାପି ବିଳାସ କେତେ ଦେଖାଉ,
ବିଷମ ବାଣକୁ ବିଦ୍ୟା ଶିଖାଇବା ଅଭିମାନ ଥାଉ ଥାଉରେ ।୨।
ମୁକୁତା-ଦଶନା ତନୁ ମାନ ସିନା ଶିରୀଷ କୁସୁମ ସମ,
କଟାକ୍ଷ ଭ ଗିରିବରକୁ ବିଦାରିପାରିବା ପରି ବିଷମ ରେ ।୩।
ପଦେ ପରିହାସେ ମୁଖ ମଣ୍ଡି ବ'ସେ ପଳାଉ କେତେ ଆଗରୁ,
ମୋର ଏ ବିଗୁରି ସୁରତ ସାଧନେ ପାଇଲି ମୁଁ ନୂଆ ଗୁରୁ ରେ ।୪।
ଦୂରୁଖ ସଖୀଙ୍କି ନାନା ପ୍ରବନ୍ଧରେ ନଗୁଇବା ଗୁରୁ ତୁହି,
ଅଷ୍ଟଦୁର୍ଗ ନାଥ କହେ ଯେବେ ନୋହେ କହ ମୋ ମୁଖକୁ ଚାହିଁ ରେ ।୫।

( ୩୧୪ )

ରାଗ—ଢୋଡ଼ୀ ପରଜ—ଏକତାଳି

ରେ କିଶୋରି, ମନା ସିନା ଯିବ ରହି
ଘନାଘନୋଦୟ ବିଳାସ ସମୟେ ନ ନାଚିବ କି ବରହୀ ॥ ଘୋଷା ॥
ମୀନାଯୋଟକୁ ଘଟନା କରିଅଛୁ ସୁନାକୁ ସୁନାସିପୁନ,
ବିନା କାରଣରେ ଖଳଗଣେ ସିନା ଚିହ୍ନା ପଡ଼ିଯିବ ମାନ ।୧।
ଚନ୍ଦ୍ରିକା ରେଖା ଗୃତୃଷ୍ଣ ଚକୋରୀଙ୍କ ଚଞ୍ଚୁପୁଟର କେବଳ,
ଭେକୀ କୋକିଳର ସହକାର ଫଳ କବଳ ବିନା କେବଳ ।୨।
ସରସିଜ ରବି ସ୍ନେହ ଜାଣି ଦ୍ରବି ଭରସି ନ ପାରିବାର,
ନ ରସି ଜାଣି ନ ସହି ଅନ୍ତରାୟ ଅରସିକେ କରିବାର ।୩।
ଜଙ୍ଗମ ତମାଳ ଲତା କରୁଥିବ ସଙ୍ଗମ ଲମ୍ପଟ ଗୃହୁଁ,
କେ ଶୁଖାଉଥିବ ବଦନ ଗୃହିଁ ସେ ସୁଖ ଘଟୁ ବା ନ ଘଟୁ ।୪।
ସଖୀ ବାଣୀ ଶୁଣି ହସି ଠାକୁରାଣୀ ସୁଖୀତ ହୃଦୟା ହେଲେ,
ସ୍ପଷ୍ଟ ହୋଇଗଲା ମନେ ଯାହା ଥିଲା ଅଷ୍ଟଦୁର୍ଗ ନାଥ ବୋଲେ ।୫।

———

( ୩୧୫ )

ରାଗ—ଢୋଡ଼ୀପରଜ— ଏକତାଳି ।

ରେ କିଶୋରୀ, ନ ସହିବୁ କେ ସହିବ ?
ନ ସହିଲେ ଶ୍ୟାମ ମୂରତି ପୀରତିବଲ୍ଲୀ ଫଳ କିସ ହେବ ? ଘୋଷା ।
ଦେଖୁ ନାହୁଁ ତ ଯେଉଁରୂପେ କୁସୁମକୁ ଦେଉଅଛୁ ଅଳି ଦଳି,
ବାମ ଅଙ୍ଗେ ଦକ୍ଷ ଅଙ୍ଗ ବାଞ୍ଛିକାଂକ୍ଷ କରେ ସିନା ଅଳି ଦଳି ।୧।
ବ୍ରଜରାଜ ସୁତ ମୃଦୁପୁଲ୍ଲହସ୍ତ ମଣି ବିରଚିତ ଚୂଡ଼,
ପୂରଭଦରୀଦର୍ପଣ-ଗଣ୍ଡସ୍ଥଳା ସୁରଭି ଇନ୍ଦୀବର ତୁଲ୍ୟ ତ ।୨।
ହଙ୍କାରେ ନିଷେଧି ଜଣାଇଲେ ହେଲେ ନ ଜାଣି ଆପଣା ବାଧ,
ଯାହା କଳାବତୀ, ଯେଣି ବସିଥାଉ ତାହା କଲା ଅପରାଧ ।୩।
ହର-ପରପନ୍ଥି ଦେବାବେଳେ ଗୁହଁ ମନରେ ମନ ଗଳାଇ,
କହିଲା କି ପ୍ରିୟସଖି, ମୃଦେ ପଦେ ପଢ଼ିଲା ଦେଲା ବଳାଇ ।୪।

ଅନ ସହାୟ କେ ଅଛୁ କା ଭୁଲେକେ ମାନସରେ ବସୁବଲେ,
ତା ଚରଣ ବିନା ଶରଣ ସେ ନାନା ଅଚରଣ କଲେ ହେଲେ ।୪।
ଶୁଣି ଅଳ ବାଣୀ ହସି ଠାକୁରାଣୀ ନିମନ୍ତି ରହିଲେ ସ୍ନେହେ,
ତୁଷ୍ଟ ହେଲେ ସଖୀ ଶ୍ୟାମଚନ୍ଦ୍ରମୁଖୀ ଅଷ୍ଟଦୁର୍ଗ ନାଥ କହେ ।୭।

———

( ୩୧୭ )

ରାଗ—ତୋଡ଼ି ପରଜ—ଏକତାଳି

ରେ ରମଣୀ, ଗୁରୁଜନେ ଯେବେ ଖ୍ରାତ,
ପୂର୍ଣ୍ଣବର୍ଣ୍ଣ ନୀଳ ପଦ୍ମବଦନରେ ବହୁଲୁ କାହିଁକି ପ୍ରୀତ । ଘୋଷା ।

ସିନ୍ଧୁ ତ ଶ୍ରୀନ ଅଛନ୍ତି କୁମ୍ଭୀର
ଅହୁ ମହାମୀନ ଶ୍ରେଣୀ,
ତହୁଁ ତ ରତନ ଲବ୍ଧନ୍ତି ଯତନ—
କରି କେତେ କେତେ ପୁଣି ରେ । ୧ ।
ମଳୟରେ ଅହୁ ବଳୟ ତ ରହୁ—
ଥିବାର ସକଳ ଜାଣି,
କାହିଁକି ପଣ୍ଡିତେ ବସୁଥାନ୍ତି ସତେ
ଗନ୍ଧସାରସାରେ ପୁଣି ରେ । ୨ ।
କଣ୍ଟକ ନିଚୟ ସଙ୍କାଶରୁ ଭୟ—
ଲଭେ ଯେବେ ଶିଳୀମୁଖ,
ଦେଉଥାଏ ସେ କି ବସ୍ତୁରେ କେତକୀ
ଲତକାର ପାଖ ପାଖ ରେ । ୩
ହରଚକ ଧାରୀ ପଗ୍ରକମ୍ଭୁ ପରି
ହେଲେ ହେଲେ ଖଣ୍ଡ ଖଣ୍ଡ,
ଯ୍ଣଡ଼ିଲ କି କହ ସୁଧାରୁ ଅଗ୍ରହ
ବାଧନ୍ତୁଦ ଗ୍ରହ ତୁଣ୍ଡରେ ।୪।
ମୋହନ ବଷମ ପଦାର୍ଥରେ ପ୍ରେମ
ନ ଛୁଆଁଇବାର ଭଲ

ବଧୂ ବନ୍ଧୁ ଜନ ଇତରଙ୍କୁ ଡର-
ବାର ବଡ଼ ଜଲ୍‌ବଲ୍ ରେ ।୫।
ବୁଡ଼ିଗଲେ ହେବ ଏଭା ଶେଷ ଦେବ
ଭୁବନକୁ ଅନ୍ଧମୁଖ,
ଜହ୍ନେ ଜଳନ୍ତର— ମହ୍ମୀ ପୁରନ୍ଦର
ଓଟହାରଲେ ଜାହିଁ ସୁଖ ରେ ।୬।

— — —

( ୩୯୭ )

ରାଗ—ଢୋଡ଼ି ପରଜ—ଏକତାଳି

ରେ ସଙ୍ଗାତ, ନନ୍ଦଲେ ନନ୍ଦବେଣ୍ଟିଲେଜେ,
ନୁଅ ବାରବାହ ନୀଳ ଦେହ ସ୍ନେହ ବରଜାବ କି ପଲ୍‌କେ ॥ ଘୋଷା
କହୁ ଦବାଗ୍ନି ବଢାଇ ସୁନ୍ଦିତ ଯେ ଯେତେ ମୋତେ ନବାରୁ,
ମନକୁ କେ ମନା କରିବ ଯମୁନା ତଟକୁ ନିତି ଯିବାରୁ । ୧ ।
ମୋର ଏହି ମନ ହରୁଥିବ ଦିନ ହରିଗୁଣ ଗୁଣି ଗୁଣି,
କିଶୋର ରତନ କର ନିକେତନ-ବଂଶୀ ଗୀତ ଶୁଣି ଶୁଣି ।୨।
ବଢ଼ି ଅଙ୍ଗୀକୃତ କୁଳବତୀ ବ୍ରତ ଭାଜିଲେ ପଛେ ଭାଜିବ
ବାଞ୍ଛିବାରୁ ନନ୍ଦସୁତର ସମନ୍ଦହାସୀତ ମୁଖ ରାଜିବ ।୩।
ମୋତେ ପଛେ ଗୁରୁଜନେ ବେପେ ଘରୁ ଘଉଡ଼ି ଦିଅନ୍ତୁ ପେଲି,
ଯାଇ ନିକୁଞ୍ଜକୁ ଖାଇ କି ଅମଳ ବାଇ ହୋଇଗଲି ବୋଲି ।୪।
ଅସୁଥିବ ଛଳଙ୍କର ନିତି ଜଳ ନେବାକୁ ରବିସୁତାରୁ,
ନଟ ବେଟଧର ଅଧରୁ ମଧୁର ମଧୁ ପିଇଲି ଢଗରୁ ।୫।
ଜଗଦେବ ଭଣେ ଆନ ତ ନ ଦିଶେ ମୋର ଏ ତାପ ଭଙ୍ଗିକୁ,
ଜଭୁଛି ଶରଣ ଏଣୁ ସେ ତରୁଣୀମଣି ଶ୍ରୀଅଙ୍ଗ ସଙ୍ଗକୁ ।୬।

———

( ୩୧୮ )

ରାଗ—ପୂରବୀ—ତ୍ରିପୁଟା

ରେ ସଙ୍ଗାତ, କେ ଜାଣିଥିଲା ଏ କଥା ?
ହଜାଇବି ମତି ମୋର ଏଡ଼େ ସତୀବ୍ରତ ହେବ ଅନ୍ୟଥା । ଘୋଷା ।
ଶୁଣି ତରଣୀଜାତଟେ ବଂଶୀ ବାଜା ହେବାରୁ ମୁଁ ଅନୁମାନ
କେହୁ ଅଗୁଁ ଜାଣି ବଳିବେ ସରଣୀ ପକାଇ ଅସଂଖ୍ୟ ଆନ ।୧।
ଥରେ କୃପାକର ବୋଲି ବାରମ୍ବାର ଲୁଟିବେ ଚରଣ ତଳ
ମନେ କରୁ ମୋତେ କୋଳ ଆଚରିବେ ଶଠ ବୋଲିଦେବା କାଳେ ।୨।
ଗୋଟିଏ ଚୁମ୍ବିବି ବୋଲି ଭଣି, ଦେବେ କୋଟିଏ ଚିବୁକେ ଚୁମ୍ବ
ପୁଣି ଦଶନାନ୍ତେ ନିବଡ଼େ ଫାଡ଼ିବେ ମୋ ବଦନାମ୍ବର ବିମ୍ବ ।୩।
ଛୁଇଁଦେବି ସିନା ବକ୍ଷକୁ ବୋଲନ୍ତେ ଥରେ ଅଙ୍ଗୀକାର କଲି
ମୋ କୁଚଶମ୍ଭୁର ସେ ନଖାଙ୍କଚନ୍ଦ୍ର ଖଣ୍ଡ ଭୂଷା ହେବ ବୋଲି ।୪।
ସେ ରୂପ ପ୍ରକାଶ ନିରୂପମ ହାସ-ବିଳାସ ଭୁରୁ କମାଣି
ଦେଖୁଁ ଦେଖୁଁ ନେଣେ ମୋ ସକଳ ଗାତେ ବିନ୍ଧିବ ମଦନବାଣି ।୫।
ବିଳିବ ମୋ ତାପ ଝୁମ୍ପିବ ପାପ ଅନଙ୍ଗ ଅମଳ ବଶେ
ଭରିବ ମୋ ଦମ୍ଭ ମନୋରଥ କୁମ୍ଭ ଭରତି କରିବେ ରସେ ।୬।
ମୋ ପରାଣ ଅଟୁ ବୋଲି ଅକପଟୁ କହୁଲିଟି ସହୁ ତୋତେ
ଚିତ୍ତେ ଥିବ ତୋର ଜଳନ୍ତର ନବନାଥ ବିରଚିଲେ ଗୀତେ ।୭।

---

( ୩୧୯ )

ରାଗ—ତୋଡ଼ି ପରଜ—ଏକତାଳି

ରେ ସଙ୍ଗାତ, ଏତିକି ମୋ ସଂକଳପ,
କିଶୋର କିଶୋରୀ ଅନାଇଁବେ ଧରି ଅଧରେ ହାସ ଅଳପ । ଘୋଷା ।
ମୁଁ କୋଟି କଳପ କରି ନାହିଁ ତପ, ଏ ଭରସା ହେବ କାହୁଁ,
ଭିଡ଼ିବ ସୁନ୍ଦରତର ପୁରନ୍ଦର, ମଣିମାଳା ରମ୍ୟ ବାହୁ ।୧।
ଦେଇନାହିଁ ସର ସାତ ପାଶବାର ତା ମଧୁରସା ହବନେ,
ଚୁମ୍ବିବ ତାହାଙ୍କ ମୁଖ ହରିଣାଙ୍କ ନିକ ନିକୁଞ୍ଜ ଭୁବନେ ।୨।

ଶଙ୍କର ଗିରିଜା ପଙ୍କଜାଙ୍ଗ ପୂଜା କରନାହିଁ ଗଙ୍ଗାକୂଳେ,
ମରକତ ମାର ମୂରତି ସୁନ୍ଦର ଖେଳିବ କେହୁ ମୋ କୋଳେ ।୩।
ଗଞ୍ଜିନାହିଁ ମଣିମାଳିକା ଧରଣୀ ସୁରସୁନ୍ଦରୀଙ୍କ ଗଳେ,
କାଁପା କଞ୍ଚନେନ୍ଦ୍ର ମୃଗମଦ ଗନ୍ଧ ହେବ ମୋ କୁଚ ଯୁଗଳେ ।୪।
ନଥିବାରୁ ଭାଗ୍ୟ ନୁହଇ ତ ଯୋଗ୍ୟ ଲୋଡ଼ିବ କି ଆନ କଥା,
ମୋହନ ପଙ୍କଜ-ପଦଗନ୍ଧ ବଜ ଚୁମ୍ବୁଥାନ୍ତ ମାନ୍ଦ ମଥା ।୫।
ବଡ଼ଭ୍ରି-ତନାବୀ ପାଶେ କରଥିବ ରଜନୀ ବାସର ସ୍ଥାନ,
ଚରଣ ମଣ୍ଡନ ମୁରଲିକା ସ୍ୱନ ସୁଧା ପିଉଥାନ୍ତ କାନ ।୬।
କେଉଁରୂପେ ହେଲେ ସେ କୃପା ନୋହିଲେ ତମାଳେ ଦେବି ଦଉଡ଼ି,
ଜଳନ୍ତର ଝିଙ୍କଟକବଳାଗତ କହଇ ସନ୍ଦେହ ଛାଡ଼ି ରେ ।୭।

---

( ୩୬୦ )

ରାଗ— ପୂରବୀ—ଆଡ଼ତାଳ

ରେ ସଙ୍ଗାତ, ମକରଧ୍ୱଜ ବଦନେ
ଜନମେ ହରଷ ଦନେଦ୍ଦନେ ବେଶ ହେଲେ ସିନା ଭନ୍ନେ ଭନ୍ନେ ।ଘୋଷା।
ଭଙ୍ଗୀ ଲାବଣ୍ୟ ତଟିନୀ ନାଥ ବଡ଼ ରଙ୍ଗିଲା ସେ ନନ୍ଦପୁଅ
ରଙ୍ଗ ଶାଲ୍ ଯୋଡ଼ି ଅଙ୍ଗକୁ ଉହାଡ଼ି ବଙ୍ଗଦେଶ ବେଶ ହୁଅ ।୧।
ଅକ୍ଷିଣ ମଣ୍ଡନ ଦକ୍ଷିଣ ଦେଶର ବେଶରେ ଶରଧା ବଢ଼ୁ
ବ୍ୟାପାର ନାରନ୍ତୁ ମୀରବନ୍ଦେ ବ୍ରଜ ବାନ୍ଧବ ଅଙ୍ଗୁଳି ଗୃଢ଼ୁ ।୨।
ଜରି ବୁଟାଦାର ଖିନଖାପ ସାର କୁଞ୍ଚ ମହାପାଏ ଲମ୍ବୁ
ମଡ଼ୁଅଲ ଦେଶ ଛଡ଼ଅ-ଡମ୍ବରୁ ଶ୍ୟାମ ତୋ ଚରଣ ଚୁମ୍ବୁ ।୩।
ପାଇଜାମା ଜାମା ବନ୍ଦ ବକ୍ଷ ଲମା ହସ୍ତିନୀ ମସ୍ତକ ଢାଲ୍
ଘନଶାଳ ମାଳା କୁସୁମ୍ଭା ପଗଡ଼ି ଖସି ଖସି ଅଲବେଲ୍ ।୪।
ଜଗଦେବ ବୋଲେ କିଶୋରୀ ଭପିଲେ ହସି କି ଫଳ ବଶରୁ
ବେଶ ବନା ଜୀବଟତଶଙ୍କର ଅନୁରାଗ ଏବେ ସ୍ୱଳ୍ପ ।୫।

---

## ( ୩୨୮ )

### ରାଗ—ପୂରବୀ—ଅଠତାଳି

ରେ ମୋ ବନ୍ଧୁ, ମସ୍ତିକ ଗୃହଁ କାହିଁକି ?
ସରସ ହୃଦୟା ମୋ' ଠାରେ ତୋ ଦୟା ପୂର୍ବବ ପରି ନାହିଁକି । ଘୋଷା ।
ମୋ ରଦ-ଲଞ୍ଛନ ନ ଥିବାର ପାନ ମଣୋହି ନ କରୁ କେତେବ
ପରମ ଦୟାଳୁ ବିନା ଅପରାଧେ ଚରମ କଲୁ ତ ଏବେ ।୧।
ନିଦାନ ବିରହେ ଅବରୋଧ ଗୃହେ ଭିତରେ ଲେଖି ମୋ ମୁଖ
ସ୍ନେହଅବଲମ୍ବ ବଶେ ତହିଁ ଚୁମ୍ବ ଦେଇ ହରୁ ପରା ଦୁଃଖ ।୨।
ସୁବେଶ ପଟଡ଼ଙ୍କରା ମାନ ଗୁଡ଼ି କରେ ଧରି ତାକୁ ଅସୁ
ମୁଁ ମୋ କରେ ଶିରେ ଦେବା ଲଳସାରେ ନଜର ବୋଲି ତ ହସୁ ।୩।
ମଙ୍ଗଳାଙ୍କ ଓଷା ମୋହପାଇଁ ଯୋଷାମଣି ତୁ କରିବା ଦିନ
କଳତୁକେ ଥରେ ଦୁକୂଳ ଉପରେ ଛୁଇଁ ଦେଲି ସିନା ସ୍ତନ ।୪।
ପଛୁ ଯେଉଁ ଦିନ ଲୁଚି ସେ ବିଧାନ ରଚୁଁ ପଡ଼ିଲୁ ଚାହିଁକି
ଯମା ଗୁଡ଼ ରୋଷେ ଶ୍ରବ ଅବତଂସେ ପ୍ରହାରରୁ ତ ତହିଁକି ।୫।
ସଉଧ ପଞ୍ଜର ପାଖେ ବସି ତୋର ମୁଖଚନ୍ଦ୍ରେ ବନ୍ଧି ଅକ୍ଷି
ପକ୍ଷ ପାନବୋଲେ ଚୁମ୍ବିଦେଲିବେଳେ ଦେଖିଲୁ ସିନା ମୋ ଅକ୍ଷି ।୬।
ନିଧିବନେ ତେଡ଼େ ନିବଡ଼େ ନ ଭଡ଼େଁ ଲଭିବା ବଳି ବ୍ୟଥାକୁ
ଅଷ୍ଟଦୁର୍ଗପତି ବୋଲେ ଅତି ଭ୍ରାନ୍ତି ଜନ୍ମଇ ଏହି କଥାକୁ ।୭।

---

## ( ୩୨୯ )

### ରାଗ—ତୋଡ଼ି ପରଜ—ରୂପକ ତାଳ ।

ରେ ସଙ୍ଗାତ, ତୋ ବୋଲେ ବସନ୍ତ ମାନେ,
ଶିଖଣ୍ଡିଶେଖର ସ୍ନେହ ଅଶା ମୋର ତୁଟାଇ ପାରନ୍ତୁ ଧାନେ । ଘୋଷା ।
ଖଳଜନ ବାଣୀ ସତ୍ୟ ପରି ମଣି ନ ଗୃହିଲେ ହେଲେ ମୋତେ,
ଯେନ ଗୃହୁଛର ମୁଖ-କଳାକର ମୁଁ ନ ଗୃହିବି କେମନ୍ତେ ।୧।
ଜାଣିଅଛୁ ଧ୍ରୁବ ମୋ'ଠାରେ ପୂର୍ବବରି ନାହିଁ ହରି ସ୍ନେହ,
ହେଲେହେଲେ ଯେବେ ମୁରଲୀ ବଜାବେ ପୁଲକନ୍ତା ନାହିଁ ଦେହ ।୨।

ଚନ୍ଦ୍ରକଳଙ୍କମେ ଦେଖଇ ମୁଁ ପଛେ ଅନ୍ୟ ପଦ ଲକ୍ଷ୍ୟ ଗତ,
ଇନ୍ଦ୍ରନୀଳମଣିମୟ ନ ଦଶନ୍ତା ଯେବେ ମୋତେ ପ୍ରତିଦିଗ ।୩।
ଆହାର, ବିହାର, ନିଦ୍ରା, ବେଶ ବାସ ହେଉ ତାକୁ ମୁଁ ନ ଗଣେ,
ତା' ଦରଶନେ ଅନାଦର ବହିଲେ ଅଛୁଟ ନୁହନ୍ତା ପ୍ରାଣେ ।୪।
ଭାମୋଦମ୍ୟ ଘନେ ଅମୋଦ ବର୍ଦ୍ଧନେ ତା' ମୋହନ ମୃଦୁହାସ,
ବଶ ନ କରଇ ଯେବେ ଠକୁରାଇ ଦଅନ୍ତା ଧଇର୍ଯ୍ୟ ଲେଶ ।୫।
କେ' କହୁଛି ତୋତେ ହୋଇଛୁ ନିକୁଞ୍ଜ ନିଳୟ ବୁଅର ମନା,
କେ' କହେ ତୁ ବେଣୁପାଣି ପ୍ରାଣ, ଏଣୁ ନିଷ୍ଠୟ ଜାଣିଲେ ସିନା ।୬।
ଅଷ୍ଟବୁର୍ଗ ଧରାନାଥ କହନ୍ତି ସେ ଚତୁରମାନଙ୍କ ରଜା,
ସରଣୀ ତାର କଲଲେ ସିନା ହେବ ଧରଣୀନ୍ୟସ୍ତ କରଜା ୭।

( ୩୨୩ )

ରାଗ—ତୋଡ଼ି ପରଜ—ଅଦତାଳ

ରେ ସଙ୍ଗାତ, ନିଧୁବନେ ମୋହପର,
ରସିବା କାଳରେ ଦଶି ଯାଉଥିଲ ଧନ ଘନକାଳ ପର । ଘୋଷା ।
ବାରଦ ନିଃସ୍ୱନପର ଶୁଭୁଥିଲ ଅବେଜ 'ଜହୁଁ' ବଚନ,
ନାଶା ନୀଳମଣି ନିନ୍ଦା କରୁଥିଲ ନୀଳକଣ୍ଠ ନରତନରେ ।୧।
ମୋର ଉରଘନେ ଖେଳା କରୁଥିଲ ତା ତନୁବଲ୍ଲୀ ଚପଳା
ଚିକୁଳ ପର ମୂକ ହେଲ ଦେଦଙ୍କେଜ ମଞ୍ଜିରା ବଳା ରେ ।୨।
ବଦନଚନ୍ଦ୍ରକୁ ଗ୍ରାସି ଅସୁଥିଲ ଅସିତ ଘନକବରୀ
ମଥା ମୋତି ଛକଜାଲ ଦଶୁଥିଲ ଅନ୍ଧାରେ ଖଦ୍ୟୋତ ପର ରେ ।୩।
ଝିଙ୍କାରୀ ଝଙ୍କାରପର ଶୁଭୁଥିଲ ରତନଯୁକ୍ତ କଙ୍କଣୀ,
କନକ କଦଳୀଦଳେ ବେଢ଼ିଥିଲ କରଗେ କାଳୀନାଗୁଣୀ ରେ ।୪।
ଛୁଡ଼ଯାଏ ମୋତି ବାହ୍ଧି ହୁଏ ଚିତ ପତନ କରକାବଳ,
କପୋଳୁଁ କୁସୁମାବଳି ଖସୁଥାଏ ନୀରକୁଁ ପର ବକାଳିରେ ।୫।
ଭଲା ରଚେଲା ବାସନ୍ତୀ ଜବବନ୍ଧୁ ତଭ ପୁରନ୍ଦର ଧନୁ,
କଦମ୍ବ ପ୍ରଫୁଲ୍ଲ ସମ୍ପଦକୁ ଚେୈର କରୁଥିଲ ତାର ତନୁ ରେ ।୬।
ଶ୍ରମ ସ୍ୱେଦବିନ୍ଦୁ ଛଳେ ଜୀବବନ୍ଧୁ ବରଷିଲ ଘନରସ
ଭଞ୍ଜପ୍ରଭେ ବାଢ଼ି ଧରି ହେଲ ହରିଚନ୍ଦନ ଭୂନାଥ ତୋଷ ରେ ।୭।

( ୩୨୪ )

### ରାଗ—ଭୋଡ଼ପରଜ—ଅଧତାଳ

ରେ ସଙ୍ଗାତ, ତୁ ତ ଅନୁଭବୀ ନୋହୁ,
ସ୍ନେହଜାତ ସୁଖ ତା' ବିଚ୍ଛେଦ ଦୁଃଖ ଯେ ଜାଣେ ସେ ଅସି କହୁ । ଘୋଷା ।
ଅନୁବରତେ ଶରଣ ହୋଇଲ୍ଲ କି ବନଜ ପଲ୍ଲବାବଳି,
ଘନଶ୍ୟାମ ନାମ ବିନା ଦୁଃଖାନଳେ ମନ ଯାଉଅଛୁ ଜଳି ।୧।
ଚୋକୀଠାମାନଙ୍କ ଅଗସ୍ତିକି ମୁଁ ଟେକି ପାରୁନାହିଁ ମଥା,
ଟେକି ଦେଲେ ଭୁଲି ଫୁଲି ଯିବ ବୋଲି ଏ କି ସଠାବଠା କଥା ।୨।
ସାକ୍ଷାତରେ ଲକ୍ଷ୍ୟା ଦେଖିଛୁ କପୋଳେ ତା ଖ୍ୟାତ କରିବ କେତେ,
ବିଷ-ମକରନ୍ଦ ବଳି ପଡ଼ିଲଣି କି ସମ୍ମୁହାଁଇଛୁ ମୋତେ ।୩।
ଝଲାଝଳି ହୋଇ ମରମରେ ମୋର ବଳିଆଇ କହୁଥାଉ,
ଖୁଆଦଣ୍ଡିଖିଆ ଖରାପ କ୍ଷୀରରେ ସୁଆଦ ଥାଏ କି ଆଉ ।୪।
ନୀଳଚଳଚୂଳ ପ୍ରସାଦରୁ ହେଲେ ଟେକିଥିବ ଭିନଥାଳି,
କବିରବି ସପ୍ତଗୁରୁ ବୋଲେ ପ୍ରୀତି ଦଗାଦିଆ ବନମାଳି ।୫।

---

( ୩୨୫ )

### ରାଗ—ଭୋଡ଼ପରଜ—ଝୂଲ

ରେ ସଙ୍ଗାତ, ମହୁଆ ଅଲପ ବସ୍ତୁ,
ଗହୁଅ ହେଲେ ହୋଇବ ପଛେ ଲଭ୍ୟ ମହୁଆ ଅଟେ ନ ଦସ୍ତୁ । ଘୋଷା ।
କୁନ୍ଦ ଅଶୋକବୃନ୍ଦ ସଂଯୋଗରୁ ତ ସୁନ୍ଦର ଦିଶିଲ୍ଲ ହଂସ,
ଇଟଳା ତହିଁରେ ମିଶୁ ଲଳମରେ ଛୁଟି ଲାଗିହେବ ପରି ।୧।
କି ଅଳୀ ଗୁଞ୍ଜିବେ ନାହିଁ ରଙ୍ଗବାଣ କିଅଳ ମିଶିବା ଛୁଟି,
ମାଳତୀ ଦଳେ ତ ପାଳତୀ ଗୁଞ୍ଜନ୍ତି ଆଜ କାହିଁକି ଏ ହୁଟି ।୨।
ଚୂନ ଖଇର ନ ଥିବା ବିଡ଼ିଆରେ ରସନା ନୁହେଁ ସଲୋଭି
ଚୂନଖଇର ପ୍ରସୂନ ବିନା ନାହିଁ ଗହ୍ୱର ସେ ମାର ଶୋଭି ।୩।
ବକୁଳ ଦଶନ୍ତା ଗୁଛକି ମାଳାକୁ ବଉଳ କୁଳର ମାସ,
ରଙ୍ଗିନୀ କଲେ ବହୁତ ଦିନଯାଏ ଠକୁରିଥାଏ ତା ବାସ ।୪।

ଅନେକ ଜାତି ସୁନମାନ ସୁରଭି ବନେ କରିଛନ୍ତି ପ୍ରକାଶ,
ମତି ନ ତନୁ ଦେବଙ୍ଗଣ୍ୟ ଭବବେ ଜାତି ନ ଥିବାର କିସ ।୫।
ଛଟଲେ ଯେ ପାଗ ମିଶାଇ ପ୍ରକାଶ ନାଗେଶ୍ୱର, ଚୁସିଅନା,
ସରିଗେ ଗଞ୍ଜିଲେ ଶ୍ୟାମଅଙ୍ଗ ଫୁଲ ପରିଗେ ପୂରବ ସିନା ।୬।
ଅଟକ ନ କରେ ନଟଣିକଳାରେ ଇଟଲା ଦେବି ବନାଇ,
ସମର୍ପେ ଏ ତୋର ରତ ଗୋ ଚତୁର ମୋ ହାତେ ସେ ହେବନାହିଁ ।୭।
ସୁନ୍ଦର କରଜା ସମୁଚିତ ବାଜ-ବନ୍ଧ ଅପଣା ସାଜିବ,
ମୁଁ ମାନସେ ପାଞ୍ଚୁଅଛି ଫୁଲ ଭାଙ୍ଗି ବେଳେ ନିତମ୍ବେ ରଜିବ ।୮।
ଅତି ଅଭିରାମ ଦଶିବେ ସେ ଶ୍ୟାମବନ୍ଧୁ ତ ଦୁଃଖ ପାଶୋରି,
ଯେବେ କୁଞ୍ଚି କୁଞ୍ଚି ସେବତୀ ପହୁଞ୍ଚି ହେବ ତନୁ ତନୁ ସୋରି ।୯।
କରୁନାହିଁ ଜଣା ଗ୍ରମ କି ଦଅଣା-ଦଳ କଳିତ ବାସନା,
ଢୋଲଢୋଲ ତତ୍ତ୍ୱ ନେବାକୁ ଶ୍ରୀହସ୍ତ ଢୋଳ ହୋଇଯିବ ସିନା ।୧୦।
ଗୁଚ୍ଛଚନ୍ଦ୍ରହାର ଜରଙ୍କେ କରଜ ଚରମରେ ଚିର ଚମ୍ପା,
କରନାହାନ୍ତି ସେ ଦାରିଦ୍ର୍ୟନାଶିନି ଏବେ କର ଅନୁକମ୍ପା ।୧୧।
କୁସୁମ ନିକର ଜାତିଜାତି କର କରିବ କି କୁନ୍ଦ କୁନ୍ଦ,
ଏକା ତୁମ୍ଭପାଇଁ ରଚିଲି କିପାଇଁ କେ ଭଣ୍ଡ ଯୋଡ଼ଏ ମୁଦ ।୧୨।
ଚରଣ ଅରୁଣ ଅମ୍ବୁଜରେ ଏହୁ ଜମ୍ବୁନଦ ବେଶ ଥିବ,
ମଥାଭୂଷାକୁ ଅନ୍ୟଥା କଲେ କେବେ କଥା ସିନା ରହିଯିବ ।୧୩।
ନାନାବର୍ଣ୍ଣ ଫୁଲ ବଚନ ଡକିଲେ ମୁଁ ଖଞ୍ଜିଦେବି ରାଇକା,
ସୁଗଲାବଣରେ ଭଡ଼ାଭଡ଼ି କରୁଛନ୍ତି ହୁଗୁଳା କରିବ ଏକା ।୧୪।
ପରୁ ଜାମାନିମା ହସ୍ତିନୀ ମାନ ମୁଁ ବଚିବି କି କିଅ ହେଲେ,
ସମର କାଳେ ନ ଠକିବ ମାନ କମରବନ୍ଧ ଏ ଫୁଲେ ।୧୫।
କଗଦେବ କହେ ରାଧା ହସି ସ୍ନେହେ ଫୁଲପଙ୍ଗା ଲୁଞ୍ଚାଇଲେ,
ଶରଣ ବୋଲି ଲୁହାର ସହଚରୀ କୁନ୍ତୁଳେ ତା ବାନ୍ଧିଲେ ।୧୬।

———

ରାଗ—ଚୋଢ଼ି ପରଜ—ଅଠତାଳି

ରେ ସଙ୍ଗାତ, ସେ ସିନା ବସିବ ଛୁପି,
ଯେ ଶିଖଣ୍ଡଚୂଳ ନୟନ-କୁନ୍ତରେ ଧନେ ନୋହୁଥିବ କ୍ଷିପ୍ତି । ଘୋଷା ।
ତରୁଣିକା ଉଠ          ସରଣୀରେ ଭେଟ
ଯେ ରମଣୀ ହୋଇ ନାହିଁ,
ନୀଳ ବାରି-ବାହ-          ଦଳନ ବିଗ୍ରହ
ଅଳପ ନଥିବ ଗୃହିଁ ରେ ।୧।
ରସିକାବୃନ୍ଦରେ,          ବସି ଆନନ୍ଦରେ
ରସି ଶ୍ୟାମ ପ୍ରେମ ଗୁଣ,
ଯେ ଶୁଣି ନଥିବ,          ବସୁଧାରେ ଥିବ,
ପଶୁରୁ ହୋଇ ଅଜାଣ ରେ ।୨।
ବସାଇଣ ପାଶେ,          ରସାଇ ହରଷେ
ହସାଇ ଭ୍ରୂଙ୍କ ମନେ,
ପୀଡ଼ାଇ ଓଷ୍ଠକୁ,          ଭିଡ଼ାଇ ଅଙ୍ଗକୁ,
ଜଡ଼ାଇ ନଥିବ ଧନେ ରେ ।୩।
ବଦନ ଲୁଟିଅ,          ରସ ବିନୋଦଅ,
ରସରେ ନଥିଲେ ରସି,
ହରରୁ ଦୁର୍ଲ୍ଲଭ,          ମୁରଲୀର ରବ,
ଶ୍ରବଣେ ନଥିଲେ ପଶି ରେ ।୪।
ଜଳନ୍ତର ଇନ୍ଦ୍ର          ନୃପ ରାମଚନ୍ଦ୍ର
ଶ୍ଳୋକଗାୟୀ ରସେ ଭଣି,
ସ୍ମର-ତରୁଅର          ଧାରରେ ଶରୀର
ଥରେ ନୋହୁଥିଲେ ହାଣି ରେ ।୫।

( ୩୬୭ )

ରାଗ—ତୋଡ଼ି ପରଜ—ରୂପକ ତାଳ

ରେ ସଙ୍ଗାତ, ଦରଦ୍ରାନଧିଙ୍କ ଦ୍ୟୁତ,
ଦେଖୁଥିଲେ ଦେଖୁଥିବାକୁ ମୋ ମନ ଧାଉଁଥାଏ ନିତ ନିତ ॥ ଘୋଷା ॥
ଦଶନ ବସନ ପଲ୍ଲବରେ ମଲ୍ଲୀ ରଶ୍ମି ଦରସ୍ମିତ ଛଳେ,
ଦଣ୍ଡକୁ-ଦ୍ୟୁମଣି ଅସ୍ତ ହେବାଜାଣି ବନୁ ବାହୁଡ଼ିବାବେଳେ ।୧।
ଦକ୍ଷ କରେ ଧରି ମୋହନ ଗୁଞ୍ଜୁରି ବଂଶାବଦ୍ଧ ବେଣୁଦଣ୍ଡ,
ଦକ୍ଷେତର ପଦପଙ୍କେରୁହ ଯୁଗେ ମଣ୍ଡିଦେଲାଙ୍କାଳେ ଦାଣ୍ଡ ।୨।
ଦେଇ ସାନ୍ଦୀପନି ମୁନୀନ୍ଦ୍ର ନନ୍ଦନେ ତା ଦକ୍ଷ କର ସାହସ,
କୁତୂକେ ଶ୍ରୀଦାମ ପରିହାସକ୍ଷମ କରିବାବେଳେ ପ୍ରକାଶ ।୩।
ଦଳିତ ଲଳିତ ହରିତାଳ ଦେହା ସତ୍ତ୍ୱଧ ତନାବୀ ଗୃହିଁ,
ଦୁର୍ମଦ ବଳାସେ ନାଚିବା ଲୀଳା ସେ ଲେଖକଯୋଗ୍ୟ ନାହିଁନାହିଁ ।୪।
ଦର୍ଶିବା ଦୁଇଟା ନୟନକୁ କେତେ ମାଧୁରୀ ମୁଖସୁନ୍ଦର,
ଦମ୍ୟଖୁରଜଡ଼ା ଚୂପରାଗଚୂଡ଼ା ଶ୍ରୀଅଙ୍ଗଟି କି ସୁନ୍ଦର ।୫।
ଦଶପୁର ଦେବ ଗୃଳନ୍ତ୍ର ବାଞ୍ଛୁରି ବଲ୍ଲବବାଳକ ଜନ,
ଦେଖିବାକୁ ସେ ସମସ୍ତ ବାଲ୍ୟକେଶ ଲଗେଇବ କରେ ମନ ।୬।

---

( ୩୬୮ )

ରାଗ—ତୋଡ଼ି ପରଜ—ଏକତାଳି

ରେ ସଙ୍ଗାତ, ସବଗଲ୍ ଲକେ ଅଜ,
କର ବଲେକନ ଭାଲ୍ କେଡ଼ୁ ଘନଶ୍ୟାମ ମୁଖ-ଦ୍ୱିଜରାଜ ॥ ଘୋଷା ॥
ସେ ଶୋଭା ଜଦତ ସମ୍ଭୋଗରେ ରତ
ପୂରା ନଥିବାରୁ ମୋର,
ରଜନୀ ରଥାଙ୍ଗୀ ଜଙ୍ଗୀ ସିନା ଅଙ୍ଗୀ-
କାର କରେ ନିରନ୍ତର ରେ ।୧।
ନୀଳ ସୁଧାସିନ୍ଧୁଁ ପର ତ ମୋ ବନ୍ଧୁ
ଦଶୁଥାନ୍ତ ଗୋଷ୍ଠିଯାଇ,

କେବଳ ଅଧର　　　　ଚୁମ୍ବିବାରୁ ମୋର
ନ ରହଇ ତ ବିବେକ ରେ ।୨।
ମୁଁ ରତି ଭବନ　　　　ଭିତରେ ମୋହନ
ମୂରତିକି ଯତ୍ନେ ଲେଖି,
ଚୁମ୍ବୁଥିଲି ରଙ୍କ—　　　　ପରି ହରଷାଙ୍କ—
ଭୁଲ୍ୟ ମୁଖେ ତୁଳି ଅଙ୍ଗି ରେ ।୩।
ମୋହିତ ହେବାକୁ　　　　ସେ ସୁଖ ଅମଳେ
ନୋହିଥିଲି ସାବଧାନ,
କେହ୍ନୁ ଅସି ଶ୍ୟାମ　　　　ଚୁମ୍ବିଲେ ଚରମ—
ଦେଖେ ରହି ମୋ ବଦନ ରେ ।୪।
ଲେଖାରେ ହେଲେ ତ　　　　ଲେଖାମାନଙ୍କରେ
ଲେଖାରେ ନୋହି ସେ ଠାଣି,
ଝଟକର ଅବା　　　　ଲଭିଲ ଦଅନ୍ତି
ଅଟକି ରହିଲି ପାଣି ରେ ।୫।
ଯାହା ହେଲି ମୋର　　　　ବାହାର ଭିତର
ମଦାଖ ଭିତ୍ତୁରେ ପୂରି,
ଅଷ୍ଟାଭୁର୍ଗ ହରି—　　　　ହସ୍ତୁ ବୋଲେ ଶ୍ରୈର—
ଧରା ପଡ଼ିଗଲି ପରି ।୬।

---

( ୩୨୯ )

ରାଗ—ପୂରବୀ—ଏକତାଳି

ରେ ସଙ୍ଗାତ, ସମ୍ଭାଳି ନପାରେ ଅଜ,
ଅମ୍ଭୋରୁହାକ୍ଷର ଖେଳା କଞ୍ଜାକ୍ଷର ଦମ୍ଭୋଳିରୁ ବଡ଼ ଦାଉ ।ଘୋଷା।
ହୂରିରୁ ପଡ଼ି ବୁଡ଼ିଯାଏ ହୃଦରେ ଲୋଡ଼ିଲେ ନ ଦିଶେ ଅଜ,
ମରମରେ ପଶି ଦରମରି କରେ ସରସ ସୁରସ ନୋହୁ ।୧।
ଶବଦ ନ ଥାଇ ସ୍ତବଧ କରଇ ସେ କି ରତି-ରଙ୍ଗୀ-ସାଧୁ,
ମିଥଦ ଝାଳିଲି ପିଅଦା ପରାଏ ମାର ଝଙ୍କେ ଅସୁ ଯାଉ ।୨।

ନବଘନ ଅଙ୍ଗ ବିକ୍ଷେପ ତରଙ୍ଗ ରଙ୍ଗ ଦଶେ ଦାଉଦାଉ,
ସୁଦନ କୁଦନ କରଏ ବୁଦ୍ଧିନ ଥଏର ଅନାଉଁ ଅନାଉଁ ।୩।
ଗଲେ ହେଲେ ଜାଣ୍ଡ ମହତ୍ତ୍ୱ ସମସ୍ତ ଫିଟି ତୁଟି ଲୁଟିଯାଉ,
ଗଜପତି ଭୂପି ହୁଅ ତାଙ୍କ ଦାସୀ ପିଣ୍ଡେ ପ୍ରାଣ ଥାଉଁ ଥାଉଁ ।୪।

———

( ୩୩୦ )

ରାଗ—ପୂରବୀ—ଅଢ଼ତାଳ

ରେ ସଙ୍ଗାତ । ଲୁଣ୍ଠି ମୁଁ ବସିଲି ଗେଲେ,
ମନ-ମନସିଜ-ଚକ୍ଷୁ-ମୁଖ-ଭୁଜ, ଏମାନେ ମୋ ଶତ୍ରୁ ହେଲେ ରେ ।ଘୋଷା।
ଦେଲି ଯେ ଗୁମାନ ଲାଅ ତୁ ଚଞ୍ଚଳ ନୁହ ମନ ବୋଲି କହି,
କେବେ ନ ଛୁଇଁଲା ସେ ବ୍ରଜ ଛଇଲା ଶୋଭା ସମ୍ପତ୍ତିରେ ରହି ରେ ।୧।
ରଖ ଧୃତି ମୋର ବୋଇଲି ଯେ ସ୍ମର ମାରକୁ ପାଣି ପ୍ରସାରି,
ବାନ୍ଧ କୋଟିକୋଟି ବାଣ ନେଲା ହଟି ଦେଲା ମୋ ଅଗୁର ସାରି ରେ ।୨।
ଜଳ କଲି ମଥା ଜାଣି ଚପଳତା-ସମ୍ବଳ ବୋଲି ମୋ ଡୋଳା,
ନପଡ଼ ଧରିରେ ମୁରଲୀଧରିରେ ରସି ରସି କଲା ଖେଳା ରେ ।୩।
ଏ ପାପ ଲପନ ଦଶୁଥାଏ ଆନ ବେଳେ ସାଭିମାନ ପରି,
ଜାଣି ସେହି କାଳ ବହିଲା କେବଳ ହାସ ଉଲ୍ଲାସରେ ପୂରି ରେ ।୪।
ଭଙ୍ଗି ଯେ ରଖିଲି ତେବେ ଭୁଜବଲ୍ଲୀ ତାହାର ଅଶ୍ଳେଷେ ଠାକି,
ଟେକି ଯେ ହୋଇଲାକାଳେ ନ ରହିଲା ସ୍ତନ ମୂଳବେଳ ବାକି ରେ ।୫।
ବୋଲେ ଶ୍ରୀମୁକୁନ୍ଦଦେବ ଅତି ଯତ୍ନେ ବୁଜିଲି ନୟନ ପୁଣି,
ଜାଣେ କି ମନ୍ତ୍ରର ହେଲା ମୋ ଅନ୍ତରଗତ ସେହି ନୀଳମଣି ।୬।

———

( ୩୩୧ )

ରାଗ—ତୋଡ଼ିପରଜ—ଅଢ଼ତାଳ

ରେ ସଙ୍ଗିନୀ, କାହାର ନୁହଇ କେହି
ଜାଣିଥିବୁ ସେହି ଯାହାର ତଳପେ ଯାହାର ହୁଅଇ କେହି । ଘୋଷା ।
ପ୍ରୀତି ସ୍ନେହବନ୍ଧୁ ଯାହା ମଣି ବନ୍ଧୁ ଉଦର ପଡ଼ିଲି ନାହିଁ
ଭସିଯାଏ ଶୋକ ସିନ୍ଧୁରେ ବିବେକ ତାହାକୁ ମାନ କି ଥାଇ ।୧।

ସ୍ୱାଦୁମୟ ଗୋଟି ଜାଲୁଜାଲୁ ଯେ ଟି ନ ଘେନଇ ଅଗପଛ
ସ୍ନେହ ଅବାହାର ଜୀବନ ଯାହାର ତାହା ବିନା ସବୁ ମିଛ ।୨।
ଏ ମୋହର ଲକ୍ଷ ମୋହର ଏ ପକ୍ଷ ଏହା ଘେନି ଏତେ ଶ୍ରମ
ଏହା ଜଳ୍ପିବାର ସୁଖ କଳ୍ପିବାର ଜନମରେ ଏ ସବୁ ଭ୍ରମ ।୩।
ପ୍ରୀତିଭଙ୍ଗ କ୍ଷଣ ସ୍ୱପ୍ରାଣ ପ୍ରମାଣ ତୁଲ୍ୟ ନ ଘେନନ୍ତି ଜନେ
ଏଣୁ ନିକେ ତୋର ଯାକ ଜାଣ ପର କେବଳ ଘେନିଲେ ମନେ ।୪।
ଏପର ଶ୍ରୀମତୀ ଶ୍ରୀମୁଖ ଭାରତୀ ଶୁଣି ହେଲେ ସଖୀ ସୁଖୀ
ବନ୍ଦିଲେ ଶ୍ରୀ ହରିଚନ୍ଦନ କିଶୋରୀଙ୍କର ପଦେ ଚିତ୍ତ ରଖି ।୫।

---

( ୩୩୬ )

ରାଗ—କାମୋଦୀ—ଯତିତାଳ

ରେ ମୋ ଧନ, ତେଜ ମନୁ ଲଜ
ହେବୁ କି ମୋ ପରି ଅଜରେ । ଘୋଷା ।
ବାନ୍ଧି ବନ୍ଧ କାଞ୍ଚିବନ୍ଧ ଗୃଲମ୍ଭେ ମୋଦରେ
ସ୍ୱର୍ଣ୍ଣବର୍ମା ପର୍ଣ୍ଣ ଚରମରେ ବେଣୀଫଣୀ ଖେଳିବ ବାଦରେ ।୧।
ତିଳ ସମୁଜ୍ଜ୍ୱଳ ନାସା ନୀଳମଣି ଅଳି
ଫୁଲ୍ଲ ଅରବିନ୍ଦ ହାସେ ମକରନ୍ଦ ଅଶାରେ ଭରିବ ଅଳି ରେ ।୨।
ରଦେ ରଦବାସ ଭଙ୍ଗିକରି ବାଧୁନନ
ଅଶ୍ଳେଷରେ ଅପଘନେ ଜମି ମୋର ଗଣ୍ଡେ ମଣ୍ଡିବ ଚୁମ୍ବନ ରେ ।୩।
କକ୍ଷମୂଳେ ତୀକ୍ଷ୍ଣ ନଖକ୍ଷତ କଲବେଳେ
ଜଳଧିରୁ ହଂସ ଉଛୁଳିଲା ପରି ହୋଇଥିବ ମୋର କୋଳେ ରେ ।୪।
ରାମଚନ୍ଦ୍ର ସ୍ନେହବଶ୍ୟ ବୋଇଲେ ସେ ରମଣୀ
ପ୍ରତିଅଙ୍ଗ ଶୋଭା ଦେଖିବାବଶ୍ୟରେ ମୋ ନେତ୍ର ବୁଜିବ ପାଣି ରେ ।୫।

---

( ୩୩୩ )

### ରାଗ—ତୋଡ଼ିପରଜ—ଏକତାଳ

ରେ ମୋ ବନ୍ଧୁ, ଶିଶୁବର୍ଣ୍ଣୋମୃଗଦୃଶା ।
ହସୁଥାଉ କୃପାମୟୁ, ପୁଣି ଯାହା ରୁଷ୍ଟୁ ସେ କେମନ୍ତ ରୁଷା ॥ଘୋଷା॥
ବସୁ ଥାଉଥାଉ କୋଳୁ ମୋର ପୁଣି ଖସି ମଣ୍ଡୁ ବସୁମତୀ,
ବସୁମୁଖଚନ୍ଦ୍ର ନୁଆଇଁ ଯାହାଟି କମ୍ପୁଥାଉ କି ମୋ ଧୃତି ।୧।
ହସୁଥାଉ କୋଳେ ଖେଳ ଯେତେବେଳେ ବସୁ କୋଟି ଦେଉ ଗଣି,
ନସ୍ତଣୁ ଗୃହୁଁ ଶତକୁ ଢାହିଁକି ମୋ ଅସୁ ଘେନିବାକୁ ପୁଣି ।୨।
ତେସୁଥାଉ ଜରେ ଜଟ୍ରାଜକୁ ସମୁଲ୍ଲାସୁଥାଏ ସିନ୍ତେ ଗଣ୍ଡ,
କି ଶୁଣି ଢାଟିଦେଉ ସେ ସୁଖ ସ୍ୱର୍ଗ ନିଶ୍ରେଣୀଟି ଏ କି ଦଣ୍ଡ ।୩।
ମିଶୁଥାଉ ସ୍ନେହେ ନିମଜ୍ଜି ମୋ ଦେହେ କିସୁଖେ ପୁଣି କି କୋପେଁ,
ନିଶୂଳ ମଣ୍ଡିତକର-ପରପତ୍ନୀ-ଇଷ୍ଟୁ ମୁଖେ ସମରପୁ ।୪।
ପଶୁପ-ମହେନ୍ଦ୍ର ନନ୍ଦନ ଭାରତୀ ରସୁଁ ରାଧା ସଙ୍କୋଚଲେ,
ବସୁବର୍ଗ ସ୍ୱର୍ଗ ପୁରନ୍ଦର ଭାବବର୍ଣ୍ଣୁ ଏ ଗୀତ ରଚିଲେ ।୫।

---

( ୩୩୪ )

### ରାଗ—ଭାଟିଆରୀ—ଝିମ୍ପୁଟା

ରେ ମୋ ଜୀବନ,
ମୁଁ କି ମୀନ ମୀନନେତ୍ରା ତୁ ମୋ ଜୀବନ ରେ,
ମୋର ମାନସ ବିହଙ୍ଗରଞ୍ଜନ ॥ଘୋଷା॥
ସାକରସାର ମଧୁରଭାଷୀ          ଢାକରକରକିରଣହାସୀ
ନାକରମଣୀ କି ଟାକର ମାରୁଛୁ ତୋ ଭର ପଇଠଧର ଦାସୀରେ ।୧।
କୁସୁମୋତ୍ସବ ବଚ୍ଛେଦ ଯୁଗ          ଲଗି ଢ଼କାଇତ ଲଗୁଳଗୁ
ଲଳନା କଳନା ନଥଡ଼ି କନା ନାଗବଲ୍ଲୀ ଗେଲେ ମାଗୁ ରେ ।୨।
ଘୁମୁରେ ଘୁଳ ନ ପଡ଼ୁ ବୋଲି          ଛଡ଼ା ହୋଇ ମୁଁ ଯେ ଛୁଡ଼ା ହେଲି
ତୁଳିଲି ଯେ ବେଲି ଛଇଲୀ ହସି ମୋ ଘୁଙ୍ଗି କି ଅରଟଣ ଦେଉ ଫେଲି ରେ ।୩।

ତୁ ତାହା ଦୁଃଖ ପାଶୋରି କି ରେ   ବୋଲି ମୁଁ ପଚାରେଁ ପ୍ରେମଗିରେ
ତୁମ୍ଭର ବୋଲିବା ଦମ୍ଭରେ ଦମ୍ଭୋଳି ଝଡ଼ୁଛି ମୋ ଦୁଃଖଗିରି ଶିରରେ ।୪।
ମେଲାଣି ହେବ କି ଯେବେ ବୋଲେଁ   ମୁଁ କି ଜାଣେ ମା ଭାସି ଗଲେ
ମୋ ପିନ୍ଧାବାସ ଶେଷକୁ ଛନ୍ଦଥାଇ ଅଙ୍ଗୁଳି ଅଗ୍ରୁ ଠ ଚମ୍ପାଫୁଲେ ରେ ।୫।
ସ୍ମିତ ସୁଧାବିନ୍ଦୁ ଝଡ଼ୁଥାଇ   ରତିର ପ୍ରସଙ୍ଗ ବଢ଼ୁଥାଇ
ଶବ୍ଦେ ତୋ ଯହିଁ ଦଉଡ଼ୁଥାଇ ଗୃହୁ ଗୃହିଣୀରୁ ଚାହାଁପଡ଼ୁଥାଇ ରେ ।୬।
ସୁତ ପ୍ରବନ୍ଧେ ମଜ୍ଜାଇ ମଜ୍ଜା,   ନିତି ହେଉଛୁ ବାସକସଜ୍ଜା,
ଗୋଟିକୁ ଗୋଟିଏ ବର୍ଣ୍ଣ ଲଙ୍ଘି ନଣ ବୋଲୁ ଯେ କାହିଁକି ଏଡ଼େ ଲଜ୍ଜା ରେ ।୭।
କ୍ଷଣେକେ ମୋ ଦୋଷ ଦଶକୋଟି   କ୍ଷମା ନକଲେ ମୁଁ ସରିଲିଟି
ଅଖଦଡ଼ ଅବଧାନରୁ ଶ୍ରୀଅଙ୍ଗେ ନଖଦନ୍ତ କ୍ଷତ କରଇଟି ରେ ।୮।
ଏ ସ୍ନେହପୀୟୂଷ ବରଷାରୁ   ଏହି ଅନୁରାଗ ଭରସାରୁ,
କବି ସାରସଲୋଚନା ବରବର ବଳାଇଛୁ ତୋତେ ଧରଷାରୁ ରେ ।୯।

---

( ୩୩୪ )

ରାଗ—ତୋଡ଼ି ପରଜ—ଏକତାଳି

ରେ ମିତଣି, ମଜ୍ଜାକୁ ଭେଦଇ ବ୍ୟଥା
ମିତ୍ରଜନମନ ମାନ୍ଦ କଲେ ମ୍ଳାନ ମଡ଼ଯାଏ ପୁଣି କଥା । ଘୋଷା ।
ତୁହୁ କରେ ଅଳି ବେଲି ନ ସମ୍ଭାଳି ମୁହୁକି ହାସ ବରଜି
ଚଳକୁ ମଙ୍ଗଳ କରି ନେଇକରି ନକଲେ ହେଲେ ତରଜି ।୧।
ଚନ୍ଦ୍ରିକା ଚନ୍ଦନ କଳପିକସ୍ୱନ କୁସୁମ ଭୃଙ୍ଗ ନିନାଦ
ଲାଗେ ବିଷପରି ଦବା ବାଧିବସି ନ ଛୁଅଁଇ ନେତ୍ରେ ନିଦ ।୨।
ଉପାୟ ନ କଲେ ଜଣାଯିବ ବୋଲି ଉପାୟନ କିଛି କର
ଗେଲେ ରେ ଯେତେ କହୁଲେ ଲାଗଇ ଛେଲି ବାଜିଗଲା ପର ।୩।
ତୋଳା କଞ୍ଜଦଳ ଜଳରୁ ତରଳ ହୋଇଯାଏ କାହୁଁ କାହୁଁ
ନନ୍ଦନେ ନୟନ ମିଶୁଥାଇ ବୋଲି ଯେତେ ଯତ୍ନେ ଗୃହୁଁ ଗୃହୁଁ ।୪।
ଅଧର ଦଳରେ ନଗୃହି ଛଳରେ ମଧୁର ସରସ ବାଣୀ
ତେବେ କିମ୍ପା କଲେ ହେଁ ହୃଦୟ ଚୋରି ଦଣ୍ଡେ ସେ ଜାଣି ।୫।

ସ୍ନେହ ପର ସ୍ୱାଦୁ ଟିକ୍କଣ ପଦାର୍ଥ ହୁଅଇ ଯେବେ ଖେଦଜ
ଅନ୍ନପୂର୍ଣ୍ଣ ନାଥ ବୋଲେ ଦମ୍ପତିଙ୍କ କଷ୍ଟ ନାହିଁ ଏହୁଁ ବଡ଼ ।୬।

---

( ୩୩୬ )

ରାଗ—ତୋଡ଼ି ପରଜ—ଏକତାଳି

ରେ ସଙ୍ଗିନୀ, ମନଥିଲେ ମଙ୍ଗିଯାଉ
ମତ୍ତଗଜଗତି ମତନେ ବହ୍ନିଲେ ମୁଁ କିମ୍ପ କରବ ଅଉ । ଘୋଷା ।
ସୁକ୍ଷୀନବସନା ବୁଝିନାହିଁ କି ସେ ମୀନକେତନର ଦାଉ
ବୁଝିବା ମରଜ ଅଛୁ ଯେବେ ବୁଝି ମନକୁ ବଢ଼ାଇ ନେଉ ।୧।
କହିବୁ ମନମୋହନାକୁ ମୋ'ଠାରେ ଅନୁରାଗ ରଖିଥାଉ
ଏଣିକି ଏଣୀନୟନାର ମୁଁ କିଣା ହେଲିନି ଲାଜ ନପାଉ ।୨।
ବଧୂ ବନ୍ଧୁଲିଅଧରୁ ମଧୁରସ ଏଥର ଥରେ ଚଖାଉ
କାଚ କଳସରେ ଜଳଥିଲା ପରି ଭଙ୍ଗୀ ଅଉ ନ ଦେଖାଉ ।୩।
ବକ୍ରଶାର୍ଙ୍ଗବନ୍ଧୁ ମାଝୁଆଣ୍ଡ଼ି ଦୟା ବଡ଼ପଣକୁ ଦେଖାଉ
କୁଟୀଳ କେଶୀ ମୋଠାରେ କୁଟୀଳତା ଭାବ ଅଉ ନଦେଖାଉ ।୪।
ମାରଦର ଖଣ୍ଡାଘାତକୁ ମୁଁ ନିଷ୍ଟେ କରଚ ତାକୁ ବଦାଉ
ନୀଳାଦ୍ରି ବିହାରୀ ଶ୍ରୀ ହରଚନ୍ଦନ ବୋଲେ ଅଣ ମୋର ନ ଭଙ୍ଗାଉ ।୫।

---

( ୩୩୭ )

ରାଗ—ତୋଡ଼ି ପରଜ—ଏକତାଳି

ହେ ସଙ୍ଗୀନ ! ଅଉ କି ବେଶ ପଚ୍ଛୁରୁ ?
ଯାଉ କିରୂପେ ଏ ଦେହ ପ୍ରାଣଧନ ଠାଉକିଅଛ ପଚ୍ଛୁରୁ । ଘୋଷା ।
ଜଳା ମାର୍ଗେ ଅବା ପଳାଇ ବଞ୍ଚିବା କଳାକର-କର ବୋଲି
ଦଳା ନଳଦରେ ଖୋଜା ମଳୟଜ ମିଶାଇ ଲେପାଇ ଦେଲି ।୧।
ଝଡ଼ି ପଡ଼ି ଯାଇଛନ୍ତି ଦବ୍ୟଜନୁ କୁସୁମଚାପୁ ଦେ'ଖୁହି
ଫୁଲପାନଙ୍କ ମୋ ନାହିଁ ମୁଁ ତାଙ୍କ ଅଙ୍ଗକୁ ଅନାଇଁନାହିଁ ।୨।

ଯେଉଁ ସୁକୁମାର ଶ୍ରୀହସ୍ତର ରେଖା ଦେଖାନାହିଁ ପଦ୍ମଜରେ
ସେ ହସ୍ତ ସଜ-ସଜଡ଼ା ଢଙ୍ଗ ଯେବେ ଦେଖାଗଲା ପଦ୍ମ-କରେ ।୩।
ମଜା ନ ଥିବାରୁ ମଜ୍ଜା ହୋଇନାହିଁ ମଣି ମଣ୍ଡନ ଗୁଡ଼ାକ
ରେସ୍ ଧରନ୍ତି ସେ ଗୋସ୍ ଖୋଜାସବୁ କହିବ ତାହାକୁ ତାକ ।୪।
ଲଳିତା ଦେନ ଶ୍ରୀମତୀଙ୍କ ଭାରତୀ ଫଳାର୍ଥକୁ ସେ ମାନସେ
ସମଝାଇଲେ ସେ କଷ୍ଟ ଜାଣି ଅଷ୍ଟଦୁର୍ଗ ନାଥ ଭ୍ରମେ ରସେ ।୫।

---

( ୩୩୮ )

ରାଗ—ପୂରବୀ—ଏକତାଳି

ତୁଣୀ ହୋଇଲ ରେ, ଗୁଣି ତୋର ଗୁଣ ଶ୍ରେଣୀ
ଲଣୀ ମଣିଲଣି ପୁଣି ପୀୟୂଷକୁ ଶୁଣିଲାଦନୁ ତୋ ବାଣୀ । ଘୋଷା ।
ଦୁଃଖ ଏ ଅଧର ଯୁଗଳକୁ ଦୂର କରିବାକୁ ମୋ କପାଳୁ,
ଶଙ୍ଖ-ଲବଣ୍ୟନିଧି-କଣ୍ଠୀ ତୁ ସ୍ନେହେ ସଙ୍ଗ ଲାଇବାର ଭାଳୁଁ ।୧।
ଚଉ କଣିବାର ରସଗର୍ଭିଗିର କେତକୀ ଦଳରେ ଲେଖି,
ପେଷିବା ସଙ୍କେତ ଅରେ ମରକତ କେଶୀ ବାଇହେଲି ଦେଖି ।୨।
ଲେଉଡ଼ ପ୍ରଣୟ ଯା ସଙ୍ଗୀତେ ମୋହର ଯୋଡ଼ିବାରେ ଗୀତ ଗାଇ,
ବୁଡ଼ି ବସିବା ଦଶନ ଚିହ୍ନଥିବା ବଡ଼ଅ ଯାହା ମଗାଇ ।୩।
ଗୁଞ୍ଜକନ ଚୟ ଭରଜନ ଭୟ ଗୁଞ୍ଜଜ ଉଆଁଇ ହୁଞ୍ଚ,
ଦୃଷ୍ଟି ପୁରନ୍ଦର ରତନ ପ୍ରକର ବୃଷ୍ଟି ମୋରେ କରିବାଞ୍ଚୁ ।୪।
ବାଞ୍ଛି ମୋ ଚୁମ୍ବନ ଯା ଦନ୍ତ ବସନ ଦଳ ଦ୍ୱୟ ଦେଇ ଠାରୁ,
କଳନ୍ତର ପତି ବୋଲେ ଧନ ପ୍ରୀତି ଜନମେ ଛୁଟିବ ନ ପାରୁ ।୫।

---

( ୩୩୯ )

ରାଗ ବେଗଡ଼ା—ଏକତାଳି

ଛୁଷାକୁ ଶ୍ୱାରସ ସାରଦୃଶା ତ ଶିଖିଲ ରେ । ଘୋଷା ।
ମୁଁ ସାହସୁଁ କେଉଁ ଦୋଷ କରିବା ଦେଖିଲ ରେ,
ଛୁଷାର-ମୟୂଖ ମୁଖ ମଣ୍ଡଳ ଶୁଖିଲ ରେ । ୧

ଜାଣାରୁ ମୁଁ ହୋଇଛି ଯେ ତା କୃପା ଦେଖିଲେ ରେ,
ବିଶାରଦା କି ତାଳେ ସୁଖ ଉପେକ୍ଷିଲି ରେ ॥ ୨
କୁଟାଙ୍ଗୀ କି ଶୁଣିଲି ତା ମନରେ ଲଖିଲି ରେ
କୁଶାଳରେ କେଉଁ ଖଳୀ କୃଶାନୁ ଯୋଖିଲି ରେ ॥ ୩
ସୁସାର ସରସାକ୍ଷର ଥରେ ନ ଭାଷିଲି ରେ
କି ସାରସ ସଙ୍ଗ ଦୃଷ୍ଟି ଦଶାରେ ଲେଖିଲି ରେ ॥ ୪
ଭାଷେ ଜଗଦ୍ଦେବ ସ୍ନେହ ଅଙ୍ଗ କି ରଖିଲି ରେ
ରସାଳସାଧର ମୋ ରସନା ନ ଚୃଖିଲି ରେ ॥ ୫

---

( ୩୪୦ )

ରାଗ—କଲ୍ୟାଣ—ଅଠତାଳ

ରୂପା ବରଜ ମୃଦୁ କୃଶାଙ୍ଗୀ ଶିଶୁ ମୃଗ ଦୃଶାଟି ବିଚକ୍ଷଳ ହସାଟି ରେ ।
ରସାଳ ନ ଦିଅ ସରସ ପ୍ରବର·ଅଭରସା ଜଳେ ମୋ ଶୁଭ ଦଶାଟି ରେ ।
ପରିଭବକୁ ମୋତେ ଖରିବ ନ କର ରେ
ତରିବରମୁଖି ମୁଁ ତୋ ଶାଠୀ ରେ,
ଧରିମାଣିକ୍ୟଙ୍ଗରି ମଦନ କରେ
ମରିଇ ହେବୁ ଲୋକ ହସାଟି ରେ । ୧ ।
କ୍ଷମାଜଳଧି ଭଙ୍ଗ ଜମାଇ ତରଙ୍ଗ
ଭରମାଚଳରେ ଜାଅ ଜାଣାଟି ରେ,
ଗୁମାନକୁ ନୁହଇ ସମାନ ମୁଁ ତୋହର
ତମାଳ କିଶଳୟ କେଶାଟି ରେ । ୨ ।
ମନା ନ କର ସୁନୟନା ସଦୟ ରସ—
ଅନାକଣି କି ବର ଯୋଷାଟି ରେ,
ଅନାଥ ପର ଦୀନମନା ହେଉଛି ଧନ
ଅନାଇ ନତମୁଖ ବସାଟି ରେ ।୩।
ଅକାରଣେ ସବୁ ଏତ, ଚକାଲପନ ମୋତ,
ନକାଦ ବସୁମତୀ ଭୂଷାଟି ରେ,

ଜଙ୍କାଜଙ୍କି ଚୁମ୍ବନ, ସଙ୍କାମେ ରତି ଧନ,
ପକାଅ ହରି ମୋର ତୃଷାଟି ରେ ।୪।
ରସାଅ ରସରେ ଭରସା ହେଉଛି
ମଧୁରସା ସଦୃଶ ରସ କଷାଟି ରେ,
ରସାଉଳକ ହରଚନ୍ଦନ ଦେବ ଗୋସ୍ୱାମ୍ୱି,
ତୋ ଚରଣ ଶରଣପଶାଟି ରେ ।୫।

---

( ୩୪୧ )

ରାଗ—ତୋଡ଼ି—ଏକତାଳି

ଲଜବରଜ ଦ୍ୱିଜରାଜ ସୁନ୍ଦରମୁଖୀ
ଅଜ ମୋ ସ୍ନେହ ପରପ ଲଭୁ ରେ । ଘୋଷା ।
ବାନସୁ ଘେନି ମୋର, ମୀନନୟନା ମାର
ରଣଦକ୍ଷ କଟାକ୍ଷ ଢାଳଭୁ ରେ ।୧।
ବନା ଲଜେ ମୋ ଦେହ, ମୀନା ଧରଣୀରୁହ
ସୁନାବଲ୍ଲରୀ ପରି ପାଳଭୁ ରେ ।୨।
ଘନ ପରିରମ୍ଭରେ—ଧନ, ମୋହନ ଜ୍ୱରେ
ସ୍ତନ କନକ କୁମ୍ଭ ଟାଳଭୁ ରେ ।୩।
ମୁଁ ନିର୍ମଳାଲେ ନଖ, ମୂନ ଗୃଳନ୍ତେ ସୁଖ—
ବଶେ ମୋ ଅଙ୍ଗେ ନଖ ଗୃଳଭୁ ରେ ।୪।
ମଦନ ଶରକୁଳ କଦନ ଭଜୁମୂଳ
ମୋ ଧନ ଘନବେଣୀ ଟାଳଭୁ ରେ ।୫।
ଅଷ୍ଟବର୍ଗ ଭୂବର ଦସ୍ତ ବଦନାମ୍ବର
ହେବ ଯେ ତହିଁକି ନ ଭାଳଭୁ ରେ ।୬।

---

( ୩୪୨ )

## ରାଗ—ପୂରବୀ—ତ୍ରିପୁଟା

ଲାବଣ୍ୟସିନ୍ଧୁରେ ବନ୍ଧୁ ! ଅଛୁ ଏ ଦେହଟି ତୋ ସ୍ନେହାମ୍ବୁବନ୍ଧୁ ରେ ।ଘୋଷା।
ଯା ନେତ୍ରୁ ଦ୍ରବନ୍ତ ମୋ ମୁଖେ ବରଷ୍
ତାଷ୍ଟିକଭୋଗ୍ୟ ସୁଖ ସୁଧାପରସୁ ।୧।
ବିମ୍ବାତ୍ମମ୍ବଯ ଓଷ୍ଠେ ଚୁମ୍ବ ଯା'ଠାରୁ
ତାଙ୍କୁ ମୁଁ ଜାଣି ପଡ଼େ ସମ୍ବକାଠାରୁ ।୨।
କି ଭାଗ୍ୟ ନ ଦେଇଛି ବଦନ ଦେଲେ
ସରସୋଦଯସ୍ଫୁଟ ବିଳାସ ବେଳେ ।୩।
ତାଙ୍କମ ଦେଇ ଭେଟୁ ଯା ଦରହାସେ
ସାଜି ମଦନ ନାଚେ ମୋ ହୃଦଦେଶେ ।୪।
ଭୂଷଇ ବସୁବର୍ଗ ବସୁଧା ପାଳ
ଅସ ଇନ୍ଦବଗ୍ରଷ୍ଟୀ ମୋ କୋଳେ ଖେଳ ।୫।

---

( ୩୪୩ )

## ରାଗ— ବଙ୍ଗଳାଶ୍ରୀ—ଏକତାଳି

ଲଗିବାର ବାର ମୁଁ ଗହଣେ ଚନ୍ଦ୍ରମୁଖୀ ହେ,
ମାଗିବାର ଏତେମୋହ ଦବ୍ୟତଙ୍କେ ରଖି ହେ ॥ ଘୋଷା ॥
ମୁଁ ଷଷ୍ଠଥର ଜଣାଇଅଛୁ ତାଳଗତ ହେ
ହୃତୀ ଖୁସାମତୀ ନ ଜାଣେ ସେ ମାନବତୀ ହେ,
କାମର ଗାବଡାଟି ସେ ପ୍ରବୀଣା
ତା ମରଜି ଏବା ତୁମ୍ଭଙ୍କୁ ଜଣା
ଅପଣ ତା' ପଣ ସିନା ଜାଣିବ
ତା' ମନ ବୁଝାଇ ପରପାଳିବ ।୧।
ପେଟରେ ପୂରିଅଛୁ ଏ ପ୍ରତି ଭେଦନ ହେ
ବାବଜାମ୍ବ କେହି ଉପକାରୀ ନାହିଁ ଜନ ହେ,
ଖୁଣ ଖୋଜୁଥିବେ ରଜନୀ ଦବା
ଗୁଣୀ ଗହଣି କେ କରୁଛୁ ଅବା ?

କଲ୍ପବଲ୍ଲୀକି କଣ୍ଟ ଭ୍ରାଗରେ
ଭଲ ଭଲ ବୋଲୁଥିବେ ଅଗରେ ।୨।
କିଶୋରୀ ସବୁର ତୁଲେ ପ୍ରେମକୁ ମନାସେ ହେ
ଖଳ ଖେଳେ ତା'ଠାରୁ ତୁମ୍ଭର ପ୍ରେମ ନାଶେ ହେ
ବନ୍ଧୁ ହେ ତା' ହୃଦୟୁ କେ ସହିବ
ଘ୍ରମୁରେ ତା' ଅଗେ କେ କାସ ହେବ
କସ୍ତୁରୀ ଅଗେ କି ମୁସ୍ତକ ବାସେ
ଦୀପ କି ଦଣ୍ଡଇ ମଶାଲ ପାଶେ ।୩।
ଊଣା ହେଲେ ତାହାଠାରୁ ନାଥ ଗଜରଦ ହେ
ଖଞ୍ଜନାକ୍ଷୀ ଯେବେ ନିକୁଞ୍ଜରୁ ଫେର ଯିବ ହେ,
କୋଟିନିଧି ଗୋଟି ହୋଇଲା ପର
ନିରସ ମନରେ ହରଷ ଭର,
ବାଲୀକି ମୂରୁଖ ଅଳି ଗୁଆଳୀ
ଠାଳି ନ ଧଅନ୍ତୁ ବଜାଇ ତାଳି ।୪।
ଯାହା ବାହା ଅମର ଭୁଲୁହ ଅନାଚପେ ହେ
ଅଛନ୍ତି ଅସଂଖ୍ୟ ଧେନୁ ବତ୍ସା ଗୋପୀ ଗୋପେ ହେ
ସେ ବାହୁତଳେ ଗୋଟିଏ କିଶୋରୀ
ସେବା ନ ପାଇ ଗଲା ଅପସରି
ଏପରି ପରବାଦ ନ ପ୍ରସରୁ
ସନ୍ତୁମଧାର ମନୁ ଚନ୍ଦ୍ରା ସରୁ ।୫।
ଅହୁନକୁ ନ ଯା ଲଜ୍ଜାନିଧି ଏ ସର୍ବଥା ହେ
କହି ଜଣାଇଲି ପ୍ରଭୁ ଅଗେ ନିଜ ବ୍ୟଥା ହେ
ଅହି ନକୁଳ ଗ୍ରୀତରୁ ଡ଼ରଇ
ମଣ୍ଡି ନଖରେ ନ ଚିରି ପାରଇ
ଇଷ୍ଟଙ୍କ ଅନୁମତି ଏତା ଜାଣେ
ଅଷ୍ଟଦୁର୍ଗ ମଣ୍ଡାମହେନ୍ଦ୍ର ଭଣେ ।୬।

———

( ୩୪୪ )

ରାଗ—ଶାବେରୀ—ଆଠତାଳି

ଲୀଳାବତୀ ରେ,
ଶିଳା ହେଲୁ କି ବିଳାପ ନ ଶୁଣୁ ଶ୍ରୁତିରେ । ଘୋଷା ।
ବାଳାମଣି ତୋ ରତିସାଗରେ,— ଖେଳାଉଛୁ ପ୍ରୀତି ସରାଗରେ,
ବେଳା ନିକଟରେ ଅତି ରାଗରେ,
ଭେଳା ବୁଡ଼ାଇ ଦେଉଛୁ ଭାବକି ମତିରେ ।୧।
ଚଳି ହେଲେ ମୋତେ ଦେଲେ ଗାଳି— ବାଳୀରତନ ତୁ ମୋ ସଙ୍ଗାଳି
ଆଳୀ ସେବାରେ ଅଜ ମୋ ପାଳି —
ଭାଳି ଗୁନ୍ଥି ଛୁ ମାଳି ସେବତୀ ମାଳତୀ ରେ ।୨।
କଳାବତୀ ସୁରତି କୁଶଳା—ବଳାତ୍କାରେ ନିଧୁବନ ଚଳା
ବଳା ରସନା ଧ୍ୱନି ପ୍ରବଳା—ବଳାଇ ସେ ମନମଥ ବିପଥ ରତିରେ ।୩।
କେଳିବିଦ୍ୟା ଅଜନ୍ମୁ ସମ୍ଭାଳି—ଟାଳି ଦେଉଛୁ କିଛି ନ ଭାଳି
କାଳି ଦେହଳୀ ଦେବୁ କଟାଳି —
କେଳି ସଦନେ ରଖ ପୋଟାଳି ସୁପାତି ରେ ।୪।

---

( ୩୪୫ )

ରାଗ—କାମୋଦୀ—ଏକତାଳି

ଶିଖଣ୍ଡମଣ୍ଡନ କି କହିଲେ ଗୋ, ଅଖଣ୍ଡ ଦଣ୍ଡକୁ ଯେ ସହିବେ ଗୋ ।
ଏ ଖଣ୍ଡ ଏଥେ ପୂରିରହିଛି ବୋଲିକରି,
ଜଣାଉଥିଲି ପରି ପହିଲେ ଗୋ । ଘୋଷା ।
ଛାମୁକୁ ନିତ ଯାଇ କେତେ ଯେ ସମଜାଇ
ଶୁଣି ସଂଯତ ହେବେ ନୋହିଲେ ଗୋ,
ଜାଣି ଦଳକୁ ସହି, ନକର ଏବେ କେହି
ମହୀନ୍ଦ୍ରବରଭର ବହିଲେ ଗୋ ।୧।
ନବୀନ ସୁକୁମାର ସୁଖବଲ୍ଲୀ କି ଛର
ଫଳେ ଖେଳନାନଳେ ଦହିଲେ ଗୋ,

ଏଡେ ସବୁ ବିପଦେ ପୁଣି ଘେନାଇ ପଦେ
କହିବା ଯାଏ ନାକ ରହିଲେ ଗୋ ।୨।
ବରଜ ଅଖଣ୍ଡଳ— ଧେନୁକୁ ଗୁରୁ ଗଳ—
ଚମକୁ ଶର ବୋଲି ଦୁହିଁଲେ ଗୋ,
ରଖିଛୁ-ବୀଣା ବାଣୀ ମୋହନ—ବିଦ୍ୟା ଜାଣି
କାହାକୁ ସେ କିଶୋର ମୋହିଲେ ଗୋ ।୩।
ଶଙ୍କରଙ୍କର ଜାଭ- ମାଳା ଧୂମାରୁ ଯାଇ
ପଙ୍କେଳ ପୂରେ ଅବଗାହିଲେ ଗୋ,
ସିନ୍ଧୁରେ ଅନାଦର ରଚି ଶ୍ୟାମସୁନ୍ଦର
ଅନ୍ଧୁରେ ପର ଉତ୍ସି ବାନ୍ଧିଲେ ଗୋ ।୪।
ନନ୍ଦନନ୍ଦନ ଦେହ ଦେଇ ଯେ ଥିବ ଦାହ
ଚନ୍ଦନ ପ୍ରଭଞ୍ଜନ ବହିଲେ ଗୋ,
ଏ ରସେ ଅଷ୍ଟଦୁର୍ଗ— ଧରି ବଳସ୍ଥ ସ୍ୱର୍ଗ—
ମଣ୍ଡଳ ଅଖଣ୍ଡଳ କହିଲେ ଗୋ ।୫।

---

( ୩୪୭ )

ରାଗ—କାମୋଦୀ—ଅଦତାଳ

ଶିରୀଷ କୋମଳା ରେ, ପ୍ରୀତିବତ୍ସଳା ବାଳା ॥ ଘୋଷା ॥
ନବ ଅବଳା ଲକ୍ଷେ କେଳି ବାହୁଡ଼ା ବକେ—
କରନ୍ତେ ଅଳିମାଳା ମିଳି ପାଶେ,
ବେଶ ବିଷମ ସ୍ଥିତି ଦେଖି ଭଙ୍ଗୀ ଭାରତୀ—
କହନ୍ତି ପରସ୍ପରେ ପରିହାସେ ।୧।
କହ ରେ ଚନ୍ଦ୍ରମୁହାଁ ଯାଇ ଯେ ଦେଇ ନାହିଁ
ଅନ୍ତେ ସଜାଡ଼ି ଦେବା ସଜବାଜ
ଏ କାସ ମା କେଶସ୍ରି- ଧରି ଶଶାଙ୍କ ସରି
ଶିରୀ ଅଣିରୁ ଚ୍ୟୁତ କର ଅଜ ।୨।
ଶଙ୍କ ଲାଗୁଛି ଦେଖି— ନାହିଁ ଯା ତୋର ସଖି,
କାଲି ଚୂଳି ଚପଳ ଲୀଳା ଲବେ,

ଗଣ୍ଡ ତୋ ଚକ୍ର ଭୃଙ୍ଗ                ସଙ୍କାଶରୁ ଅନଙ୍ଗ

ଜୟ ମଙ୍ଗଳ ରଥ ପରି ଏବେ ।୩।

ଦନ୍ତେ ଅଧର ପୀଡ଼ି,                ନୀଳ କାଞ୍ଚୁଲି ଭିଡ଼ି

ଲିଗୁଡ଼ ଥାଉ କୁଚ ପଗ୍ର ସନ୍ଧି,

ସଞ୍ଚାଣ ଚଞ୍ଚୁ ଗଳି                ଚକ୍ରବାକ ଯୁଗଳି

ଲୁଳିଲାପରି ଅଜି ସ୍ୱେଜେ କେହ୍ନି ।୪।

ଆହା ନ ସହୁ ଅମ୍ଭ—                ଶିଥିଳ ପରିରମ୍ଭ

ଲେଶ ବଢ଼ ହେଲେ ହେଲେହେଁ ଯେତେ,

ମୀନକେତନ ଭଲି,                ଧନକେ କି ନକଲି

ଛଇଲା ଶିରୋମଣି ସତେ ତୋତେ ।୫।

ଏପରି ପରିହାସେ                ଲିଜେ ରଦନବାସେ,

ହାସ ମିଶାଇ ବାସ ଦେବା ଭଙ୍ଗୀ,

ନାସା ମଣିମୟୂଖେ                ଦଶି ପୁର ଗବାକ୍ଷେ,

କବିସୂର୍ଯ୍ୟ ଧଇର୍ଯ୍ୟ ଦେଲି ଭାଙ୍ଗି ।୬।

———

( ୩୪୭ )

ରାଗ—ଦକ୍ଷିଣ ଗୁର୍ଜ୍ଜରୀ—ଏକତାଳି

ଶୁଣ ଶୁଣରେ ଜୀବର ଧନ ତୋ କର ସାରଣି ରେ,

ତୁ ସିନା ଏକା ମୋ ସ୍ମରଶରକୁ ବାରଣୀ ରେ । ଘୋଷା ।

ତୁ ଗୃହ୍ନୁଁ ଗୃହ୍ନୁଁ ମଦନଶରେ ନାଶ ଗଲି ରେ,

ନଥିଲି ମୋ ମନେ ଏହା ଭରିରୁ ତୁ ବୋଲି ରେ

ମୋ ଶପଥଟି ରେ ରାମାବର,        କରିଥିଲୁ କଣ୍ଠ ରଞ୍ଜନ ହାର,

ଏବେ କେଉଁ ବୁଦ୍ଧି ଶୁଣି କାହାର, ଘେନିଲୁ ନାହିଁ ତୁ ସାର ଅସାର ।୧।

ଲଗାଇଥିଲେ ହେଁ ବିଷବୃକ୍ଷ ବିମ୍ବାଧରୀ ରେ,

କେତେବେଳେ ପ୍ରିୟେ ତାକୁ ବିନାଶ ନକର ରେ,

ଜାଣି ଜାଣି ତୁ ରେ ନବ ବନିତା,        କିଛି ମନେ ନକଲୁ ବିବେକିତା,

ସୁଖେ ରୋପଣ କରି ପ୍ରୀତିଲତା,        ନିଜ କରେ ଉପାଡ଼ିଲୁ ଏବେ ତା ।୨

କମେ କମେ ପ୍ରେମ ଦ୍ରୁମ ପର ବଢ଼ାଇଲୁ ରେ,
କି ବଗୁର ଏବେ ବନ୍ଧୁ ମୂଳ କାଟି ଦେଲୁ ରେ,
ଦରଦ୍ରକୁ ଦେଇ ଇନ୍ଦ୍ର ସମ୍ପତ୍ତି, ପୁଣି ନେବାକୁ ବଳାଇଲୁ ମତ,
ପ୍ରୀତ ବଚ୍ଛେଦରୁ ନାହିଁ ବପତ୍ତି, ମରଣ ହିଁ ସିନା ପରମ ଗତ ।୩।
ମନ ନେକ କର୍ଣ୍ଣ ଅଦ ଯେତେ ତମା ଥିଲ ବର,
ମୋ କଥା ସେ ନଶୁଣି ତ ତୋତେ ଅଶ୍ରା କଲ ରେ,
ଏକମାନ ଦେହେ ଅଛୁ ଜୀବନ, ତୋର ସଙ୍ଗ ବହୁନେ ଅତ କ୍ଷୀନ,
ସେ ଏବେ ରହୁ ନ ପାରେ ବହନ, ଯିବାକୁ କରଛୁ କଣ୍ଠେ ପ୍ରସ୍ଥାନ ।୪।
ତୋ ନମିଷ ଅନ୍ତର ଜଗତ ଶୂନ୍ୟ ମୋତେ ରେ,
ବାଲ୍ୟତ କାଳରୁ ପ୍ରୀତ ଭଙ୍ଗିବ କେମନ୍ତେ ରେ,
ଏବେ କାହାଠାରୁ କି ବୁଦ୍ଧି ପାଇ, ସଦୟ ହୃଦୟ ନର୍ଦ୍ଦୟ ହୋଇ,
ମଦନ ନଦୀସ୍ରୋତ ମଧ୍ୟେ ନେଇ, କରେ କରଧର ଦେଲୁ ଭସାଇ ।୫।
ଶରଣଜନକୁ ନାଶି ଲଭବୁ କି ଯଶ ରେ,
ଦୋଷଥିଲେ କ୍ଷମାକର ମୁଁ ତୋ କଣା ଦାସ ରେ,
ସେ ନବନାଗର ବଚନ ଶୁଣି, ତେଜି ମନୁ ମାନ ରମଣୀମଣି,
ସୁପ୍ରେମରେ କଲ ଭଙ୍ଗୀଗୃହାଣୀ, ଦାନବନ୍ଧୁ ହରଚନ୍ଦନ ଭଣି ।୬।

---

( ୩୪୮ )

ରାଗ—ପରଜ—ଏକତାଳି

ଶୁଣ କହୁଛୁ ଗୋ ପ୍ରାଣ ସଜନୀ ମୁଁ ତୋତେ,
ନବସଙ୍ଗ ଭାବ ଅନୁସଙ୍ଗ ହେଲ କାଲ୍ ନଶୀରେ ଯେମନ୍ତେ । ଘୋଷା ।
ସମରପି ପାଶେ କାନ୍ତରେ ଅନ୍ତର ସହଚରୀ ହେଲ କାଳେ,
ଲଜ ଅନୁରାଗ ଗୋଳ ନ ଧରୁଣୁ କୋଳକଲେ ପ୍ରିୟ ବଳେ ।୧।
ହସି ବସୁ କେତେ ରସାଇଲେ ମୋତେ ପ୍ରକଟି ଗୂଢ଼ ସମ୍ଭାରେ,
ଲୁଟିବାକୁ ହଟି ବସିଲେ ଯାହାଟି ବଷମ କାଣ୍ଡ ଭଣ୍ଡାରେ ।୨।
ଦୃଢ଼ ଅଲିଙ୍ଗନ ଅଦ ଯେ ବଧାନ ପରସ୍ପରେ ବରଚନ୍ତୁ,
ପୂର୍ବ ବାଞ୍ଛା ପରପୂର୍ଣ୍ଣ ହେଲ ପର ଶଙ୍କା ନ ଭାଜିଲ ମନୁ ।୩।

ପ୍ରେମରସ ଭାବବଶ୍ୟ ବିଶେଷରେ ପ୍ରବର୍ତ୍ତିଲ କାମରଣୀ,
ତେଜିଲି ଏ ରତି ହୀନ ଯେ ମହୀରେ ତା' ଗତି ଏକା ମରଣ ।୪।
ଜୀବଧନ ଦେବା ଚୁମ୍ବନ ଅଣିଲି ଅଣିମାଦ ସୁଖ ଜିଣି,
ଅଧର ମୋର ସେ କି ଧୀର ଲଳଟେ ପିଇଲେ ପୀୟୂଷ ଗୁଣି ।୫।
ବନ୍ଧ କେମେ କଥା ବନ୍ଧନ ହେବାରୁ ବଳାଇଲି ବିପରୀତ,
ବସ୍ତୁର୍ଗ ବସୁମତୀ ସୁଗତିରେ ହେଲି ଢେଢେ଼ ଅନାଯୃତ ।୬।

---

## ( ୩୪୯ )

### ରାଗ—କାମୋଦୀ—ଝୁଲ

ଶ୍ୟାମ ସୁନ୍ଦର ତୁ ଶୁଣିଲ ସୁଅଗ ଲଗାନା ॥ ଘୋଷା ॥
ଯା'ରସେ ହୋଇଛୁ ବଶ, ତୁ ଯାଇ ତା' ପାଶେ ବସ,
ଉଜୁ ତା'ର ସୁନ୍ଦରୀ ବାନା ।୧।
ଯା' ପାଦ ରଙ୍ଗ ଅଳତା କପୋଳେ ଘେନିଛୁ ଶଠା
ସେ ଛବି ମୋ ଆଗେ ଦେଖାନା ।୨।
ଯା' ରତି ରସରେ ମାତି ଉନିଦ୍ରେ ବଞ୍ଚିଛୁ ରାତି
ତା' ଅଙ୍କେ ଶୁଅ ଯା' ଘୁମାନା ।୩।
ସେ ବାଳା ନବ ପଦ୍ମିନୀ, ତୁ ତ ମଧୁବ୍ରତ ଜାଣି
ମୁଁ କେତକୀ କି ମୋ ପାଶେ ଆ'ନା ।୪।
ବୋଲେ ଜଗଦେବ ହରି— ଛନ୍ଦନା ଭାଷେ ଚତୁରୀ
ମୋତେ ତୁ ଉଗାଇ ହସାନା ।୫।

---

## ( ୩୫୦ )

### ରାଗ—କାମୋଦୀ—ଅଠତାଳି

ଶ୍ୟାମ କେତେ଼ ଅବୁଝାଣି ଗୋ, ତା ଲାଗି ଯିବ ଏ ପ୍ରାଣ ଗୋ ।
ଗ୍ରେହ ପଣେ ଅସି ମୋର ପାଶେ ବସି ଘୋର ଅଠରଇ ଠାଣ ଗୋ,
ହୃଦ ମନ୍ଦଲ ତା ବଚନ ପାଇ ବିଷମ ଶର ପଠାଣ ଗୋ ।୧।

ପଗୁଇ ଦେବାକୁ ଅଭିଳାଷ ଫଳ ନଗୁଇ ଭୁରୁ କମାଣ ଗୋ,
ଫିଟାଇ ଦଅଇ ଧୃତିକି ପ୍ରହାର କଟାକ୍ଷ କପଟବାଣ ଗୋ ।୨।
ଗୋଟିଏ ଗୋଟିଏ ଅଳପ କଥାକୁ କୋଟିଏ ପକାଏ ଘଣ ଗୋ,
ସବେ ସେହି ଅବସରେ ସବୁ ସହି, କରେ ଯେତେଡ଼ େ ହରଷଣ ଗୋ ।୩।
ଜମି ରହେ ମନ ତା ଭଙ୍ଗୀରେ କାହିଁ ନ ମିଳଇ ପରହାଣ ଗୋ,
ଲଜ-ବିହଙ୍ଗକୁ ବାନ୍ଧଇ ତା ଶୋଭା ଦମ୍ଭ ଚପଳ ସନ୍ଧାଣ ଗୋ ।୪।
ଜଣାଇଲେ ସଖୀ ଧୃତି ସେ ଭୁଜଙ୍ଗପଠା ନାଠୁଅ ପ୍ରମାଣ ଗୋ,
ଜଗଦେବ କହେ ତା ସ୍ନେହ ବିରହେ ମବପାତ ଭଲ ଜାଣ ଗୋ ।୫।

———

( ୩୪୧ )

ରାଗ—ମୁଖାବରୀ—ଅଠତାଳ

ଶ୍ୟାମ ହେ, ସଙ୍ଗେ କାହିଁକି ଲାଗ,
ମୁଁ ଜାଣିନାହିଁ କେଉଁ ଅନୁରାଗ ।-ଘୋଷା।
କେ ବୋଲେ ତୁମ୍ଭ ମୁକୁଟେ ଅଳତା
ଯେତୁ ଗୁହାରେ ଖେଳିବା ଫଳ ତା ।୧।
ସାକ୍ଷୀଅଛୁ ବ୍ରଜନନ୍ଦନା ବାଟ
ଫିଟି ତ ନାହିଁ କାହାର କବାଟ ।୨।
ଗଣ୍ଡରେ ଲାଗିବା ବଡ଼ଅ ବୋଲ
ଦାଣ୍ଡରେ କେହି ନ ଦେଖୁ ସମ୍ଭାଳ ।୩।
ତୁମ୍ଭଠାରେ କି ବୁଷ୍ଟ ଆଚରଣ
ଲୁଚଯାଉ, ମୋତେ ହେଉ ମରଣ ।୪।
ଏଣୁ କଜ୍ଜଳ ନ ଦଅ ଲିଭାଇ
ଅଶୋଭା ଦେଖଚି ମୁଁ ହେଲି ବାଇ ।୫।
ପୁଣି ସଙ୍କୋଚେ କିଶୋର ହସିଲେ
ଅଷ୍ଟବୁର୍ଗ ନାଥ ରସେ ଭାଷିଲେ ।୬।

———

( ୩୪୨ )

ରାଗ—ଦେଶ—ରୂପକ ତାଳ

ଶ୍ୟାମ ସୁଅଗ ଲେଉଡ଼ୁ କାହିଁକ । ଘୋଷା ।

ବଳ ପଡ଼ିବ ବ୍ୟଥା—ନତ ନୁଆଁଇ ମଥା
ମୁକୁର କରବୁଛି ମଙ୍ଗି କ । ୧ ।

ଭୁଲ୍ ଲଟାକୁଲଟା—ବୋଲଇବୁ କାଲଟା
ଦାଟଦାଟାକୁ ଡର ନାହିଁ କ । ୨ ।

ଭଲ୍ ନାହିଁଟି ସନ୍ଧ—ଖିଅଲ୍ ଭାବ ବନ୍ଧ
ଖେଳାଇବାର କଳା ଅହ୍ନକ । ୩ ।

ଗଲେ ଯିବ ଜୀବନ—ଲଭ ନବ ଯୌବନ
ଚନ୍ଦ୍ରକ ଚୂଳ ଛଟା ଗୁହିଁକ । ୪ ।

ଜଳନ୍ତର ବାସର—କହଇ ହେ କେଶବ
ଭଗାର ଦସା ମିଶା ଟାହ୍ନକ । ୫ ।

---

( ୩୪୩ )

ରାଗ—ଭୈରବୀ—ଅଠତାଳ

ଶ୍ୟାମ ସମ କମନୀୟ ନାହିଁ ଅଉ,
ତା ବାହୁଭଡ଼ାରେ ମୋର ଧନ ଯାଉ । ଘୋଷା ।

କି ସୁନ୍ଦର ପୀତପଟ      ତ୍ରିଭଙ୍ଗ ମୁରଲୀନଟ,
ତା ଶିର ମୁକୁଟ ଦଶେ ଦାଉଦାଉ । ୧ ।

ଅଳି ମଙ୍ଗଳାଙ୍କ ଜଣା,      ଥିଲେ ନଥିଲେ କରୁଣା,
ନୟନ ସମ୍ମୁଖ ମୋର ଜୀଇଥାଉ । ୨ ।

ପଡ଼ିଗଲେ ତା ନଜରେ,      ମଦନ ମାଦକ ଶରେ,
ନାରୀ ହୃଦୟରୁ ଖସି ପଡ଼େ ହାଉ । ୩ ।

ନିନ୍ଦିଲେ ନିନ୍ଦନ୍ତୁ ଜନେ,      ତା ପଛେ ମୁଁ ବନେ ବନେ,
ଫିରେ ଯେନି ବୁଲୁଥିବି ତା କଠାଉ । ୪ ।

କବିବର ଭାଷେ ରସେ,      ମନମଥ ରତିବାସେ,
ତା ପ୍ରେମ ସାଗରେ ଚିତ୍ତ ବୁଡ଼ିଯାଉ । ୫ ।

---

( ୩୪୪ )

ରାଗ—ଶାବେରୀ—ଏକତାଳି

ଶ୍ୟାମ ପ୍ରୀତିରେ ରତିମୂର୍ତ୍ତି ତୁ ନ ଜାଣୁ ପର ପରମାଣୁ ମଧ୍ୟା ତୁ । ଘୋଷା

ଖଣ୍ଡେ ହୃଦକୁ ଦଶେ ମଞ୍ଜୁଳ, ଗଣ୍ଡେ ତାହାର ତାମ୍ବୁଳ ବୋଳ
ମଣ୍ଡେ କି ଚନ୍ଦ୍ର ଦନ୍ତଦୁକୂଳ
ଦଣ୍ଡେ କମ୍ପିଦେଲୁ କି ରସ ପରଚିତ ରେ ।୧।

ଶୀବ ନିବଡ଼ତା ନାହିଁ କିଛି, ଲଭିଅଛି ମୃଗମଦ ମାଛି
ଜୀବତେଣେ ତୋହର ଶ୍ରୀବସ୍ତି
କି କହିଲେ ସେହୁ ମଦ ଦ୍ୱିରଦ ଗତିରେ ।୨।

ମୁଁ ଟିକଏ ହେଲେ ଶୁଣିଥାଏଁ, ତୁଟିଗଲୁ କି ଲୁକ ଥୋଇଏ
ଲୁଟିବାରେ ମାର ପୁରଯାଏ
ଫୁଟି ହୁଡ଼ି ଗଲୁକି ଶେଫାଳିକାତତିରେ ।୩।

ମୁଖ କେତକୀ ବନ୍ଧୁକାଧର, ରଖ ବୋଲି ନାହୁଁ ଥରେ ମର
ନଖକ୍ଷତେ ହେଲା ତନୁ ପୂର
ଅଖଣ୍ଡିତ ହେଲୁ କି କାମୀ ତ ସନ୍ତତରେ ।୪।

କି ସାହସ କଲୁ ସତେ ଅଳି, ଜଣାଯାକେ ଜାଗରେ ପ୍ରବଳି
କଷା ଦଶୁଛି ନେବ ଯୁଗଳ
ହସା ଲଗୁଛି ଅଜ ଅନାଇ ତୋ ଦ୍ୟୁତିରେ ।୫।

ଝୁଲି ଜଳପ ବରଜ ଫୁଲ, ଢୁଲି ସମାଜ କି ଶେଜ ହେଲୁ
ଗୁଲି ବାଜିଲା ପର ତ ଗୁଲୁ
ଲୁଲି ଯାଇଛି ଅଳକ ମୋତି ସୀମନ୍ତ ରେ ।୬।

ଅସେ କନକ ଅଜ ଏ ଶୀର, ବାସେ ଉତ୍ପଳ ମିଶା କସ୍ତୁରୀ
ନାଶେ ମାନସ ବ୍ୟଥା ବଇର
ଭାଷେ ବସୁ ଦୁର୍ଗା ଧରା ବଳୟୁ ପତି ରେ ।୭।

---

( ୩୪୪ )

ରାଗ—ସାରଙ୍ଗ—ଝୁଲ୍ଲ

ଶ୍ୟାମ ତୁ ଏଣିକି ଛାଡ଼ିଲୁ ଛାଡ଼
ହୋଇବଟି ଅଜ ଆଖର ମାଡ଼ ॥
ଅଳି ମୋତେ ଗାଳିଦେବ ବରମାଳ ପୂଜାକୁ
ମୁଁ ଧରିଯିବି ଯୋଗାଡ଼,
ଅଠଳୀ ବୋଲି ଯେ ଭିଡ଼ ଦେଇ ଲୁଟିବ
ମୋ ତନୁ ଅତନୁ ଜାତ ଜିଙ୍କାଡ଼ ।୧।
ନୂଆ ବୁକୁଳ ମୁଁ ଭରେ ଧରିଅଛି
ଛୁଆଁଇ କର ତୁ ନ ବିଗାଡ଼,
ତର ଛାଡ଼ ମନ ପର ଭୂଅସୁଣୀ
ଘରବୁଡ଼ା ତଥା ଅଳିଗାଡ଼ ।୨।
ଅନାଇଁ ବହିଲୁ ତତେ ଗୁହିଁ ହାତେ
ପଡ଼ିଇ ଦେଲି ଯେ ନାହିଁ କବାଡ଼
ଖଣ୍ଡିଦେଇ ମୁକୁ ଗଣ୍ଡେ ଯେ ବସନ
ଛାଡ଼ିଯିବ ହୋଇ ଅବାଡ଼ ।୩।
ତଅଁଳା ପୁଅ ତୁ ରାତିଯାକ ବୁଲୁ
ନ'ଥର ଡେଙ୍ଗୁଁ ତୁ ପଥବବାଡ଼,
ଗୃହପତିର ଯେ ବେଶ୍ୟା ଘର ପରି
କଲୁ ମୋ ଶାଶୁଙ୍କ ଘର ଖୁଆଡ଼ ।୪।
ତୋର ବାପ ଗୋପ ନଗରବର ଭୂପ
ହେତୁ ନ ଥିଲେ ହେଁ ହେଉ ଛିଅଡ଼
ସେ ସବୁ ଧସିଲେ ସବୁ ହେବ କେତେ
ସେ ସହିବ ତ ଗୃହାଣୀ ଛିଅଡ଼ ।୫।
ନନ୍ଦଘରେ ଯେଉଁ ସୁନ୍ଦରୀ କେ ଥିବ
ତାର ପାଇଁ ଫୁଲଶେଯ ସଜାଡ଼
କବିବର ବୋଲେ ଚାପରୀ ଚାପରି
ଯେବେ ଥିବ ତା' ଉପରେ ଅଜାଡ଼ ।୬।

( ୩୪୭ )

### ରାଗ—ମୁଖାରୀ—ଅଦତାଳ

ଶ୍ରୀ ନୀଳଗିରିଶିଖରି-କନ୍ଦର-ସଞ୍ଚାରୀ କଳା କେଶରୀ ହେ । ଜୟ ଜୟ
ଯା' ନାମ ସୁମରଣ କୁଠାର ହାଣେ କଳୁଷ ପାପ ସାକ୍ଷୀ ସମୁଦାୟ । ଘୋଷା ।
ସିନ୍ଧୁ ଜେମା ହାତୀ ନୟନ ସମ୍ପତ୍ତି,
ବରାଙ୍ଗନା ମନମୋହନ ମୂରତି
ଯା' ପଦାରବିନ୍ଦର ବରକନ୍ଦର ସୁନାମାଦି ସୁମନସ ଚୟ ।୧।
ହେ ନିଖିଳ ଦୁଃଖୀ ନିବହ ସମ୍ପଦ
ଅଟଇ ବନା ମୋ ମନ ଷଟପଦ
ହାକିମ ହୁକୁମ କର କରୁଣବ ଚରଣାରବିନ୍ଦ ମଧୂବ୍ୟୟ ।୨।
ପରଖି ଜାଣିଛ ଅରକ୍ଷିତ ବୋଲି,
ହର ଖିଅଲକୁ ସମୟ ନ ସହେ
ତରତରେ ଥରେ ମୋ ଦୁଃଖ ଦୁଷ୍ଟକୁ ତରଜ କୃପା ଅପାଙ୍ଗ ଦ୍ୱୟ ।୩।
ଭରସି ଶ୍ରୀମୁଖେ ଜଣାଉଛି ପ୍ରଭୋ,
ନଷ୍ଟ ଅଷ୍ଟାଧି ମୋ ଦୁଃଖ ପକ୍ଷପାତ
ଏଣୁ ଏ ହେମନ୍ତ ଯେମନ୍ତେ ରହିବ ବିଳସୁ ହୃଦୟ କୋଶଳୟ ।୪।
ବିଳମ୍ବରେ ଅଜ୍ଞ କାରଣ ଏଣିକି
ଅରଜିବାକୁ ନାହିଁ ହେ ମହାବାହୁ
ସରବ ସନ୍ତାପ ଭୁଜଙ୍ଗ ଦଂଶନେ ଛଟପଟେ ରାଜା ଗ୍ଲେଟସ୍ୟ ।୫।

———

( ୩୪୭ )

### ରାଗ—ପୂରବୀ—ଏକତାଳି

ସଂଯୋଗୁଁ ପଡ଼େ ପ୍ରମାଦ, ରେ ସଙ୍ଗାତ ।
ବୈରାଗୀ, ଭୋଗୀ, ଯୋଗୀ, ଚତୁର, ଅନୁରାଗୀ
ଯାଆଁକୁ ନ ମାଡ଼େ ନିଦ ରେ । ଘୋଷା ।
ଶୁଭ ଆଗମନେ ବରଷକେ ହୁଏ ନିମିଷ ପରାୟେ ନିଶା,
ଦାରବ ବିମୁଖ ଯୋଗୁଁ ତନୁ ଦୁଃଖ କରାଇଲା ଦୁଷ୍ଟ ଦଶା ରେ ।୧।

ସୁରତ କୁସୁମକେ ରଚନ ପଲଙ୍କେ ଭୋଗେ ଯାଉଥାଏ ଦିନ,
ତହିଁକି କାଙ୍କିତ ହେଲେ ଜପସ୍ଥିତ ସଂସାର ବିଷୟମାନ ରେ ।୨।
ଯେଉଁ ମାନସରେ ଧିଆନ ବଶରେ ହେଉଥାଇ ବ୍ରହ୍ମଜ୍ଞାନ,
କରି ସଙ୍କଳପ ଅଡ଼ିଲେ ଅଲପ ବାଳବୀର ଅଭିମାନ ରେ ।୩।
ଚଉପାଶେ ଗୃହିଁ ରଖିଲଟା ବନ୍ଧୁ ପଶେ ଇତର ତତ୍ତ୍ୱର,
ନିଶୀଥର କାଳେ ପରନାରୀ କୋଳେ ଥିବାକାଳେ ତା ପତର ରେ ।୪।
ନିଯୋଗ ଯୋଗାଇ ଗୁପତ ସୁରତ ବାଞ୍ଛାନ୍ତି ସଙ୍କେତ ସ୍ଥାନ,
ଭଜନ୍ତେ ହରଷେ କବିସୂର୍ଯ୍ୟ ଭାଷେ ତହିଁରେ ସପନ୍ତୀ ଜନ ରେ ।୫।

---

( ୩୪୮ )

ରାଗ—କାମୋଦୀ—ଝମ୍ପା

ସଞ୍ଚାରିଣୀ ପାଞ୍ଚାଳିକା କାଞ୍ଚନମୟୀ ରେ ପ୍ରଲମ୍ବ କୁଞ୍ଚିତକେଶା,
ଯୋଗୀ-ସମାଧିଖଣ୍ଡନ ବିଧିଚତୁର ଗୂଢ଼ବେଶା,
ପଦପଙ୍କଜନ୍ୟାସ ପବିତ୍ରକୃତ ଧରଣୀଦେଶା,
କେ ତୁ ମୋହନ,-ହେତୁ ମନର, ସେତୁ ବିଳାସମିଷବନର
ନରଲୋକରେ କୃତବାଗୀଶ ଶିଳ୍ପ ବିଶେଷ ଶେଷା । ଘୋଷା ।
ପଦ୍ମରୁ ଜଣା ପର ତ ଜଣା ପଡ଼ୁନ୍ଥ କେହୁ ଏଡ଼େ ପ୍ରବୀଣା ହେଲୁ ରେ,
ଛଣାପୀୟୂଷ ଜଣା ବାଣୀ, ସୁଧାତରଳ ମିଶା, ତରଳ ବିଲକ୍ଷଣ ଗୃହାଣୀ
ଜଗତଯୋଷାରତନଶୋଭାଭୂଷା ଶ୍ରୀଅଙ୍ଗଠାଣି,
ନୟନନୟନ-ନୀଳେନ୍ଦୀବର-ଚନ୍ଦ୍ରିକା-ପରମ୍ପରା କି
ବରବରନା ତୁହି ନିଶ୍ଚୟ ମୋର ବୁଦ୍ଧି ନପାରେ ଜାଣିବାରେ ।୧।
ଦରିଦ୍ରୁ ଖର୍ବ ସୁପର୍ବପର୍ବସୁଧାଂଶୁମୁଖୀଗଣଙ୍କ ଗର୍ବ ସର୍ବଂ ସହାରେ
କେ ରହିବମାନ, ଲଜର ବାସଗୃହ ତୁ ରସରାଜର ରାଜଧାନୀ,
ଗଭଲବଣ୍ୟ ମାତଲ ବନ୍ୟହାତୀରୁ ବଳାଧିକ, ଧନ ଯାହାର ମୁକୁତାହାର
ହେବୁ ତୁ ଶ୍ରୀଛମୁକୁ ତାହାର ସୁକୃତ ତୁଲେ ମୋର କୁହାର ହେଉ
ମହତ୍ତ୍ୱ ହାନି ।୨।
ଜଡ଼ଖଣ୍ଡରତ-ପାଣ୍ଡିତ୍ୟବନ୍ତୀ ବୋଲାଇ ଟେକାଇବୁ କି ଛତି ଏବେ ତ
ଯତିମୋହନା ଷିତମଣ୍ଡ; ଖଣ୍ଡିବୁ ଚଣ୍ଡ ଫୁଲ କୋଦଣ୍ଡ ବୀରଦୋର୍ଦ୍ଦଣ୍ଡକଣ୍ଡୁ,
ଚୂମ୍ବେ ଯେ କୁର ନେବ ମକର ତୋର ସୁନ୍ଦର ଗଣ୍ଡ, ସେ ବଢ଼

ତ୍ରିପୁରଶଙ୍କରୁ ଅମରନାଥଙ୍କୁ ପାଶଙ୍କରୁ କୁବେର ଠାରୁ ନଳନନନ୍ଦନୁ ମୀନସ୍ୟନ୍ଦନୁ ମାରଖଣ୍ଡୁ । ୩ ।

ଭଣନ୍ତି ଅଷ୍ଟ-ଦୁର୍ଗସାମନ୍ତ ଶ୍ରୀକୃଷ୍ଣଚନ୍ଦ୍ର ମୁହଁ ଏମନ୍ତ ସରସବାଣୀ ଶ୍ରୀ ଠାକୁରାଣୀ ଶୁଣି ଲଭିଲେ ଲାଜ, ସ୍ଫୁରିଲା କୁନ୍ଦ ମଧୁନିଃସ୍ୟନ୍ଦ ମନ୍ଦ ହସିତ ବ୍ୟାଜ, ଗୃହୀ ଚରଣ କଲେ ଶରଣ ଆଳିଜନ ସମାଜ, ମିଳନ୍ତେ ଧନେ ଏକାନ୍ତ-ସୀମା ଏପରି ପରିଣତ ଚନ୍ଦ୍ରମା-ବଦନା ଶ୍ୟାମ ବୁନ୍ଧୁଙ୍କ ପ୍ରେମ ହେଲା ନାବଡ଼େ ନ୍ୟାଜ । ୪ ।

---

( ୩୬୯ )

ରାଗ—କାମୋଦୀ—ଏକତାଳି

ମଜ ହୋଇଥା'ରେ, ଗଜରାଜ ଗତି ଅଜ
ରଜନୀ ଆସିବେ ସଜନୀଲୋଚନ ଶ୍ୟାମ ବ୍ରଜ ଯୁବରାଜ । ଘୋଷା ।
ସୁନା ଲତିକାରେ ମୀନାପରି କଳା ଫେନ ଶାଢ଼ୀ ଯତ୍ନେ ପିନ୍ଧ,
କଳାପଦ୍ମମଣି ନୀଳ କୁନ୍ତଳରେ କଳାପ କମର ବାନ୍ଧ ।୧।
ପୁଣ୍ଡରୀକବର ଯୁଗେ ଇନ୍ଦୀବର ଯୁଗଳୀ ଲଢ଼ାଇବାକୁ,
ମର୍ଦ୍ଦିବା ଲାଞ୍ଛନ ଛାପିଦେଇ କନକମଞ୍ଜରୀ ମିଳାଇବାକୁ ।୨।
ମସାରମଣି ହେମସାରସମୂହ ମିଶିବାର ବୁଝିବାକୁ,
ବରତୁଳ ପୟୋଧରେ ରତ୍ନବର ତୁଲେ ଥରେ ଯୁଝିବାକୁ । ୩ ।
କୁଞ୍ଜାଳୟ ହଂସଧ୍ୱଜ କେଳିରସ ଭୁଞ୍ଜାଇ ଭୁଞ୍ଜିବୁ ପରା,
କଞ୍ଜାକୃତାକ୍ଷି ରେ ଖଞ୍ଜାଇ ଲଳାମ ତା'ପରେ ପୁନ୍ନାଗହଂସ୍ରା ।୪।
ଦେଖି ସେ ଉତ୍ସବ ନେତ୍ରେ ଆମ୍ଭେମାନେ ସୁଖୀହୋଇ ଜୀଇବାକୁ,
ତୁହେଁ ତ ଦୁହିଁଙ୍କ ଜୀବ, ଜୀବବନ୍ଧୁ ପିବ ମଧୁ ପିଇବାକୁ ।୫।
ଶୁଣି ଲଳିତାଙ୍କ ଲୀଳା ଭାମରସ ଭଣାଇଲେ ଦେବୀ ସ୍ନେହେ,
ସେ ସମୟେ କର ବନ୍ଦନକୁ ହରଚନ୍ଦନ ଭୂନାଥ କହେ ।୬।

---

( ୩୭୦ )

ରାଗ—ଚନ୍ଦ୍ରଭୈରବ—ଝପତାଳ

ସଜନି, ଅଜ ରଜନୀରେ ନଇଲେ ବ୍ରଜମୋହନ
ମନ କେଡ଼େ ମୋହିଲା ରେ । ଘୋଷା ।
ମୋ ଦେହେ ଦେଇ କର,—କମଳ ବାରମ୍ବାର
କୁଚଯୁଗ କର କେତେ କହିଲା ରେ,
କପଟ ମତି କରି, ସାହସେ ସେ କପରି
ଧରମ ତାଙ୍କୁ ସହି । ସହିଲା ରେ ।୧।
ଲଗାଇ ପ୍ରେମରସ, ମଧୁ ଜନ୍ମାଇ ବଶ,
ନୟନୁ ଅଶ୍ରୁ ବରଷାଇଲା ରେ,
ଭଜ ମୁଁ କଣା ଦବା, କି ଅପରାଧୁ ଅବା
ମୋ ଠାରେ ଅବଧାନ ନୋହିଲା ରେ ।୨।
ଘୁଙ୍ଗ ରଖିଛି ପାନ, କର୍ପୂର ଶ୍ରୀଚନ୍ଦନ,
ଏବେ ତ ବେଶ ବାସି ହୋଇଲା ରେ,
କାହା ସୁରତେ ମାତି, ଅସି ହେଲା ପାହାନ୍ତି,
କୁକ୍‌କୁଟ କୁଳୁରବେ ରଡ଼ିଲା ରେ ।୩।
ଏ ପାପ କାମ ମୋତେ, ଦଣ୍ଡ ଦେଲାଣି ଯେତେ
ପରାଣ ଭୁଲେ ପିଣ୍ଡ ଦହିଲା ରେ,
କବିମିହିର ଚନ୍ଦ୍ର, ଅହା ବ୍ରଜବନିତା,
କପାଳେ ବହୁ ଏହା ଲିହିଲା ରେ ।୪।

———

( ୩୭୧ )

ରାଗ—ମୁଖାରି—ଏକତାଳି

ସରସ ଯେତକ ବେ ବନ୍ଧୁ ବିରସ ତେତକ ରେ । ଘୋଷା ।
ନାଗର ମୁକୁଟ ହୀର, ଜନ୍ମାଦ ପ୍ରେମ ପସର
ସୁରତ-ରଙ୍ଗିଣୀ ଠାଣି, କହୁଁ କହୁଁ ଇଷ୍ଟବାଣୀ

(ପଢ଼) ନାହିଁ ନାହିଁ ମହୀମଣ୍ଡଳେ ସହୀ ପର
ପରଣତ-ବମ୍ବାଧରୀ ଧରଣୀର
ଭଗ୍ନାନ୍ତରବର ଗତ ସଙ୍ଗତ ଜଗତୀରେ
ଗତ ମୋ ରତିପଣ୍ଡିତା ରମଣୀମଣି ।୧।

ଅସେ ହୋଇ ରହରହ, ହାସେ ମଣ୍ଡୁଥାଏ ଦେହ
ମୁଖେ ବାସଶେଷ ଦେବା, ପଛକୁ ଘୁଞ୍ଚୁ ଅସିବା
(ପଢ଼) ଭେଟ ହେଲେ ଗୃହ ନେଇ, ପୁଲକେ ପୂରଇ ଗାଇ
କଣ୍ଠେ ମଣ୍ଡଇ ପାଣିକି, ତୋଳା ଥଳା ଗୃହାଣୀକି ।୨।

ବସାଇଲେ କୋଳେ ଭେଳେ, ଚୁମ୍ବନ୍ତେ ଅଧର ଛଳେ
ପ୍ରକମ୍ପଇ ଗଣ୍ଡପାଳି, ଅହା ସେ ଶ୍ରୀମୁଖ ଝଳି
(ପଢ଼) ଜବାଧରେ ମନ୍ଦହାସ, ହୃଦୟ ଭର ଉଲ୍ଲାସ
ତୁଳିଲେ ସାରସ ଶଶୀ, ସରସ ଲପନ ଦଶି ।୩।

ସୁଧା ମଧୁର ନିଗଡ଼ା, ଘାନେ ଅନ ଧ୍ୟାନ ଛଡ଼ା
ସେ ଯେଉଁ ମଧୁରାଧର, ମୃଦୁ ଭାଷାବ ସଞ୍ଚାର
(ପଢ଼) ଶ୍ରୀ ମୁକୁନ୍ଦଦେବ ଶଙ୍କ, ବର୍ଣ୍ଣୁଥାଇ ସତତ
ମଣ୍ଡଳ ଉଚ୍ଚାଟ ମନ୍ତ୍ର, ହୋଇଛି କି ପୁଷ୍ପବନ୍ତ ।୪।

---

( ୩୭୬ )

ରାଗ—କାମୋଦୀ—ଏକତାଳ

ସଖି, ଦେ ସେ ନୀପମୂଳେ ଗୋ । ଘୋଷା ।

ଅସିତ ଅକାଶଖଣ୍ଡେ, ରବି ପର ତାର ଗଣ୍ଡେ,
ମଣି ମକର କୁଣ୍ଡଳ ଲୋଟଲେ ଗୋ ।୧।

ମୁଁ ହାରେ, ନାୟକ ଅଣି, କରନ୍ତୁ ସେ ନୀଳମଣି,
କଣ ହେବ ସଖି କେଉଁ ମୂଲେ ଗୋ ।୨।

ଚୁହିଁ ତା ଚନ୍ଦ୍ରବଦନ, ମନ୍ଦରେ ନ ରହେ ମନ,
ଖେଳୁଛି ଅର୍ଦ୍ଧମାକଜମା କୂଳେ ଗୋ ।୩।

ସଖି ମୁଁ କହୁଛି ସତ, ଛାଡ଼ ସବୁ କୁଳବ୍ରତ,
ଝୁରଏ ଖେଳନ୍ତି ତାର ତୁଲେ ଗୋ ।୪।

ଭୂମି ଅନନ୍ତ ଅମଳେ, ତା ପାଦପଙ୍କଜତଳେ,
ଶ୍ରୀ ମୁକୁନ୍ଦଦେବ ଶରଣ ଭୁଲେ ଗୋ ।୫।

---

( ୩୭୩ )

ରାଗ—କେଦାର—ଅଠତାଳି

ସଖି, ଗୃହିଁଛନ୍ତି ମାନ ଶିଖଣ୍ଡ ଲୋ । ଘୋଷା ।
ତୁଚ୍ଛା ଅପବାଦେ ଚମକି ପଡ଼ୁଛନ୍ତି ଏ ବ୍ରଜ ବଜାର ଦାଣ୍ଡ ଲୋ ।୧।
ଶଙ୍କିଣୀ ଶ୍ୟାମଳ ଚନ୍ଦ୍ର ନିକଟକୁ ଗୃଲି ନାହୁଁ ଟି ପହଣ୍ଡ ଲୋ ।୨।
ଗୃହେର ଜର ହେଲେ ସ୍ୱପ୍ନେ ମୁଁ ତାହାର ଚୁମ୍ବିଛି କି ଗୃହୁଗଣ୍ଡ ଲୋ ।୩।
ଚେଟୀ ହେଲେ ତାର ବଦ୍ଦପତ୍ରୀ ମୋର ଷୀର ଉପରେ ତ ଖଣ୍ଡ ଲୋ ।୪।
ଚଳୁଅଛି ବଡ଼ ମୋ ଘର ଗହଡ଼ ଶୁଣିଲେ ହେବ ପ୍ରଚଣ୍ଡ ଲୋ ।୫।
ଚପରସଚନ୍ଦ୍ର ପେଶୀ କଂସ ରାଜ୍ୟ ନିର୍ଦ୍ଦୋଷେ ନେବ କି ଦଣ୍ଡଲୋ ।୬।
ଅଷ୍ଟଭୁଜେଶ୍ୱର ଭକ୍ତ ନତଶିର ଶ୍ୟାମ ପଦକଞ୍ଜେ ମଣ୍ଡ ଲୋ ।୭।

---

( ୩୭୪ )

ରାଗ—କାଫି—ଅଦ୍ଧତାଳ

ସଖି, ଦେଖିଯିବା ଗୃଲ ଗୋ । ଘୋଷା ।
ପ୍ରସୂନ ପୁଞ୍ଜେ ନୀପକୁଞ୍ଜେ ଖେଳୁଅଛନ୍ତି ନନ୍ଦଲାଲ୍ ଗୋ ।୧।
ଧୃତ ଲତାଳି ଦେଉଛି ତାଳି ସୁର ତଟିନୀ ତଟୀ ତାଲ ଗୋ ।୨।
ମାର ଖଡ଼ଗ ଧାରକୁ ବେଗ ବାଧ ଦେବାକୁ ସେ ଢାଲ୍ ଗୋ ।୩।
ନିଶ୍ୱାସ ବାସ ତା'ରଦବାସ ଗୃହୁ ମାଣିକ୍ୟ ମଣି ଲାଲ ଗୋ ।୪।
ନାଶା ସଂସାର ବୋଲକ ସାର ଚୁମ୍ବି ତା' ମନୋହର ଗାଲ୍ ଗୋ ।୫।
ମହେନ୍ଦ୍ର ମଣିମୟ ସେ ପୁଣି ବାମା ହୃଦୟ-ମୀନ ଜାଲ ଗୋ ।୬।
ଅଷ୍ଟଭୁଜେଶ ରଖିଲେ ରସ ସ୍ନେହେ ନ ଦେଲି ଦ୍ୱୀପ ଖାଲ ଗୋ । ।

---

( ୩୭୪ )

ରାଗ—ଢୋଡ଼ ପରଜ—ଅଦତାଳ

ସଙ୍ଗାତ, ତୁଷି ବସୁଥିଲ ପରା ?
କହନ୍ତାଇଁ ଶ୍ୟାମ ସୁନ୍ଦରଙ୍କ ପ୍ରେମ ସତ କି ଅବା ଛାପରା । ଘୋଷା ।
ଶୁଣନ୍ତାଇଁ କାତବରତୀକି ବୁଝନ୍ତାଇଁ ଚେକଚେଡ଼ ଚିତ୍ତ
ବସ ପାଣି ଗଣ୍ଡେ ସମରପି ଦଣ୍ଡେ ମାନବକ ଅନାଇଁ ଯେଉଁ ।୧।
ସାଷାତ ନେନେ ଦେଖିଛ ଲଗିବାର ଲକ୍ଷା ତ ଚୂଳଶିଖଣ୍ଡେ
ନ ଧର ସରସ ସ୍ମିତ କୁତୁକକୁ ଅଧର ଦଳରେ ଦଣ୍ଡେ ।୨।
ସବୁତା ନନ୍ଦନା ଗହନ ବାହୁଡ଼ା ଛବ ଏବେ ଭଲେ ଭଲେ
ଏଣୁ ଜଣାଉଛୁ ବେଣୁ ଗୀତ ଶୁଣି ନ ପୁଲକ ଏକାବନେ ।୩।
ହାକର କରବା ନଜର ମୁଜୁରା ନଦେଲା ସାବେପେ ଗେଲେ
ଶରଣ ବୋଲି ତୋ ଚରଣେ ଚନ୍ଦ୍ରଙ୍କ ଚୁମ୍ବାଇଲେ ଏକ ହେଲେ ।୪।
ବସନ୍ତ ବାସନ୍ତୀକ ବେଶ ରସିକା କରଜେ ଧରନ୍ତୀ ଶର
ଘୁଞ୍ଚ ସ୍ୱକଲମ୍ବ ଆସନ୍ତା କି ସ୍ମରବର ଫର ଖଣ୍ଡା ଧର ।୫।
ଚରଣତଳ ପତନ ଦୁଃଖ ଘନଶ୍ୟାମ ଜାଣନ୍ତେ କି ନାହିଁ
ଅଷ୍ଟତୁର୍ଗ ନରନାଥ ମନୋରଥ ଭରତ କରବା ପାଇଁ ।୬।

---

( ୩୭୭ )

ରାଗ—ଦେଶୀବରାଡ଼ୀ—ଝିମ୍ପତା

ସଙ୍ଗାତ ରେ, ସହ ତ ଗଞ୍ଜନ ସବୁ ସୁଖ ।
ସକୋର ବନା ବାହୁର ଚୁମ୍ବିବ କିରୂପେ ହବ ସୁନ୍ଦର ଶ୍ୟାମଳ ଚନ୍ଦ୍ରମୁଖ ।
ଫସର୍ଗ କଲେ ଇତରେ, ସେ ଥାଏ ଚିତ୍ତ ଭିତରେ
ଅପ୍ରେମ୍ସ୍ବେ ଜଣା ନ କର ଦୁଃଖ,
ସରୋଜ ସଙ୍ଗ କାପଟ ଘୁଞ୍ଚ କି କହିଁ ଲମ୍ପଟ
ହୁଅଇ ପ୍ରମତ୍ତ ଶିଳୀମୁଖ ।୧।
ସାକ୍ଷାତ ଦେଖିଲି ଭଲ ଲକ୍ଷାରେ ହେବାର ଲାଲ
ଧୂଳୀ ଚନ୍ଦ୍ରକଚୂଡ଼ ଶିଖ,

ଶୁଣିବାକୁ ଲୋକେ ଲଜ ବଢ଼ାଇ ସପତ୍ନୀ ଓଳ
ଏ କଥା ତୋହର ମନେ ବଖ ।୨।
ସମ୍ଭୋଗ ପ୍ରବଳ ବେଳେ ଯାହାର ଜିରଜମୂଳେ
ହେଲେ ଗାଢ଼େ ବାଜିଗଲେ ନଖ,
ସୁକୁମାରୀ କ୍ଷମାକର ବୋଲ୍ ଧରିଯାଏ କର
ଏବେ ତାକୁ ବିଷମ ବିଶିଖ ।୩।
ସନ୍ତତ ସରତ ତଟୀ ସମୀପ କୁସୁମ ବାଟୀ
ଭୁଲାଇ ଦିଅ ଯାହାକୁ କାଖ
ସେ ସ୍ନେହ ପାଶୋର ମନୁ ତାହାକୁ ଖଚ ବଚନୁ
ସ୍ୱପନେ ନ ଦିଅ ଟିକେ ପାଖ ।୪।
ସୁଧାରୁ ମଧୁର ସାର ରସରେ କରିଛ ଖାର
ମିଳାଇ ବୋଲ୍ କି ଅଛ ଗୃଖ,
ସୁମେରୁ ତୁଳ ଦାରଣ ଦାରୁଣ ଦମ୍ଭୋଳ ବାଣ—
ଶ୍ରେଣୀକି ଶିଖିଷ ଜ୍ଞାନକି ଲଖ ।୫।
ସରସ ବଚନ ରସେ ଅଷ୍ଟବୁର୍ଗନାଥ ଭୃତ୍ୟେ
ସାଇଛ ରଖିଛୁ ଦେଖ ଦେଖ,
ସର୍ବସ୍ୱ ହୃଦୟି ମୋର ଶରଣ ସୁବେଣୀ-ବର
ବୋଲ୍ ପେଷିବାର ପ୍ରେମ ଲେଖ ।୬।

---

( ୩୭୭ )

ରାଗ—କେଦାର—ଅଠତାଳ ।

ସରଭଲ ଯେ ଲଜେ
ରହ ନପାରେ ସଖି ସମାଜେ ।ଘୋଷା।
ନଗତଳକ-ଜିବକାଏ ଅଛନ୍ତି ଅଗଣିତେ ଅନୁସର ହେ,
ଜଗତୀଲଲାମ ତମୋହଂସ ନାମ ଯୋଗ୍ୟ କି ଏକା କଶୋରୀ ହେ ।୧।
ଯେତେ ନାଇଁ କହିଲେ ହେଲେ ନେତ୍ରାଅଁଳେ ଅନାଇଁ ତ ସେ ନଜାଣେ ହେ
ତାକୁ ନଟ-ଖଞ୍ଜରୀଟ-ନେତ୍ରା ବୋଲ୍ ଡାକୁଥାଅ ତୁମ୍ଭେ କେଣେ ହେ ।୨।
ତୁମ୍ଭ ଦବେ ସ୍ତନକୁମ୍ଭ ନତ-ତନୁଲତା ଯେ ମନ୍ତ୍ରାଏ ନାହିଁ ହେ,
କହିବ ବୋଲ୍ ଶୋଭା ପୀୟୁଷ କି ବହୁଥାଅ ଏକା ଗୁହିଁ ହେ ।୩।

ତରୁଣୀ ଗବବେ ବାଳା ସେ ତ କେବେ ଗୃଲିକ ନଜରେ ଗୃଛୁ ହେ,
ସତୁ ଅଛୁ କେଳି-ଲଳସୀ ମଗ୍ଲୀ ଗତ ବୋଲି ଡ଼ାକିବାନ୍ତୁ ହେ ।୪।
ଅଧର ମାଧୁରୀ ଅଭିମାନେ ପୂର୍ବ କେତେ ନାଗରୀ ନାହାନ୍ତି ହେ,
ତା' ଦଶନ ଅଙ୍କ ଥିବା ପାନ ରଙ୍ଗପର୍ ମାଗିବାର କିତ ହେ ।୫।
ପ୍ରେମାଦରେ ଅବା ପ୍ରମାଦରେ ବାଣୀ ଶୁଣିବା ଶତ୍ର କାହିଁକ ହେ,
ସ୍ୱରସବର୍ଣ୍ଣସମ୍ପଦକଳକୋକିଳ ବଚନା ବୋଲି ନାହିଁକ ହେ ।୬।
ଜଗଦ୍ଧେବ ବନ୍ଧ ଜଣାଇଲେ ଇନ୍ଦୀବର ଶ୍ୟାମ ବଂଶୀପାଣି ହେ,
ତୁମ୍ଭେ ସେ ତରୁଣୀ ଗୃଲିବା ସରଣୀ-ପରିଗେ ଗଢ଼ିବା ଜାଣି ହେ ।୭।

---

( ୩୭୮ )

ରାଗ—ପୂରବୀ—ଅଠତାଳ

ସବୁ ଯାଉଛୁ ରେ ଏହିଠାରୁ ମନୋରଥ,
ଗୃହିଁ ଦେଲେ ଅତି କାହିଁ ନ ଦଶଇ ଅଖି ଥାଉଁ ଥାଉଁ ପଥ ॥ ଘୋଷା ॥
ସୀତା ସୀତାକାନ୍ତ ଲକ୍ଷ୍ମଣ ସହିତେ ଅରୋହଣ କଲ ରଥ,
କାନନ ଗମନ କରୁ ସୁମନ୍ତ୍ରରେ ଖେଦେ କହେ ଦଶରଥ ।୧।
ଶବର ଶରରେ ଜନ୍ତ ହେବାକାଳେ କପଟରେ ଗୋପୀନାଥ,
ଗାଣ୍ଡିବ ବଢ଼ାଇ ଦେଇ ଶ୍ରୀକୃଷ୍ଣଙ୍କୁ ମନେ ବିଗୃରଇ ପାର୍ଥ ।୨।
ଅକ୍ରୁର ସହିତେ ମଧୁପୁର ଯିବେ ବୃନ୍ଦାବନ କଳାନାଥ,
ଦେଖି ଅନ୍ୟୋନ୍ୟରେ ଲୁହାଲୁହି ହୋନ୍ତି ସ୍ନେହେ ଗୋପାଙ୍ଗନା ଯୂଥ ।୩।
ସନ୍ୟାସବେଶ ଧାରଣ କରି ଗୋରା ତେଜିଣ ସକଳ ସ୍ୱାର୍ଥ,
ନ ମାନନ୍ତେ ଶଚୀଲୁହା ବିଷ୍ଣୁପ୍ରିୟା ଭୂବେ କରେ ତାଡ଼ି ମାଥ ।୪।
ଦଶରଥ ପାର୍ଥ ଗୋପୀ ବିଷ୍ଣୁପ୍ରିୟା ପ୍ରାଣ ଧାରଣେ ସମର୍ଥ,
ନୋହିବାରୁ ବୋଲେ ନୀଳାଦ୍ରିବିହାରୀ ହରିଚନ୍ଦନ ଯଥାର୍ଥ ।୫।

( ୩୬୯ )

ରାଗ—କେଦାର—ଅଦତାଳ

ସାଜ ରାଜହଂସ ଗତି ବୃତ୍ତିକା ରେ । ଘୋଷା ।

ଚପଳା ବଲ୍ଲରୀ ମୃଦୁରଙ୍ଗୁ ପରି ରେ
ମଣ୍ଡିବୁ ଶ୍ୟାମଳ ଗ୍ଲାନ୍ତିକା ରେ ।୧।

କଣୋରୀ ରାଜର ନେନେ ନ ବାଜାରରେ
ଅଡ଼ଗ୍ରୁଷ୍ଟି ସ୍ବରଙ୍କର କାନ୍ତିକା ରେ ।୨।

ଅମ୍ଭେ ଯେ ପ୍ରକାଶ କରୁଛୁଁ ତୋ ଯଶ ରେ
ପୂହାଇବୁ ନାହିଁ ତା କୀରତ୍ତିକା ରେ ।୩।

ଅଗ୍ରୁଛୁ ଭୁରୁଛୁ ଅଳାନତ ଜରୁ ରେ
ରୁନ୍ଧ ବାନ୍ଧିବୁ ତ ନୀଳ ହାନ୍ତିକା ରେ ।୪।

ନାନା ମଦବାଜ ମାଟିବେ ଯେ ଅଜ୍ଞ ରେ
ରାଜ କରିବୁଟି କେତେ ଜାନ୍ତିକା ରେ ।୫।

ଏ ବାଣୀ ବଳାସେ ହସି ରାଧା ଭ୍ରପେ ରେ
ମହୁଛୁ ଗଞ୍ଜାଇ ଖୀର ମାତ୍ରିକା ରେ ।୬।

ଜଗଦେବ ଚନ୍ଦ୍ରେ ଏ ସମୟେ ଶନ୍ତେ ରେ
କଶୋରୀ ମଣିକ ବଂସାରତିକା ରେ ।୭।

———

( ୩୭୦ )

ରାଗ—ମୁଖାରୀ—ଝିପଟ ।

ସୁରସବତୀଟି ରେ, ମୋହ ସପତଟି ରେ । ଘୋଷା ।

( ପଢ଼ି )

ଭାଷ ଭାଷ ମୃଦୁହାସ ମଧୁର କର—କରୀଗତି ଚନ୍ଦ୍ରାନନୀ କନକଗୋରୀ
ଗତ ନଣୀ ବପରୀନ୍ଧ ରତିରେ ମୋହପର
ହେଲା ଯା ମନ ଜ ଲଗିଲା ସେ ସମୟରେ ।
କଙ୍କଣ ହେବାରୁ ମୂକ—କିଙ୍କିଣୀ ଦେଲା କି ଡାକ
ପାପଲୁ କପାଁ ଚଞ୍ଚଳ—ବଣ୍ଟିଲ ହୁଲୁଳାଉଲେ
( ପଢ଼ି ) । ୧ ।

ଅଣନ୍ତେ ମୁଁ ସେ ପ୍ରସଙ୍ଗ—ପୁଲକିଲ କି ଶ୍ରୀଅଙ୍ଗ
ଚମକିଲ କି ମଦନ—ଭୁପତି ଢେକଲ ସଦନ
( ପଢ଼ି ) ।୨।
ହେଲକି ମୋର ଯୁଗଳ—ଶିଖେ ଗଙ୍ଗାଧାର୍ ଦୋଳ
ଭ୍ରମରକୁ ପଙ୍କେରୁହ—ଚୁମ୍ବିଲ କି ବହୁ ସ୍ନେହ
( ପଢ଼ି ) ।୩।
ସେ ଗୃହୁ ଶଜ ଭୁଲକି—ଦରଭରୁ କମ୍ପିଲ କି
ଭାଷେ ଜଳନ୍ତର ନାଥ—ପୂରିଲ କି ମନୋରଥ
( ପଢ଼ି ) ।୪।

---

( ୬୭୧ )

ରାଗ—ବେହାଗଡ଼ା,—ଝୁଲ ।

ସୁନାଗୋ'ର ତୁ ଏକା ସିନା,
ସୁନାଗସ୍ତି ଶିର ଫୁଲ ବାସନା । ଘୋଷା ।

ଏ ଜଗତୀ ଭିତରେ କେହୁ, | ଭଜଗନ୍ତି ତୋ ସମ ନାହିଁ,
ରଜା ନାଗ୍ରି ମଣ୍ଡଳେ ତୁହୁ, | ସୁନ୍ଦରକୁନ୍ଦରଦନ ହସନା ।୧।
ପଦନଖ କୋଣି କଣିକୁ, | ରସବତୀ ମଣିଏଣିକୁ,
ସାଧାରଣେତର ଗୁଣକୁ, | ବରନି ପାରବେ ନାହିଁ ଭଣନା ।୨।
ଗିରବର ଶିଖରେ ଚଢ଼ି, | କରଥିଲ୍ କେତେ କଳପ,
ବାଳାବର ମୋତେ ଅଳପ | ସୁଲଭ ହୋଇଛୁ ତୋ ଜ୍ୟାବନା ।୩।
ପୟୋଧରେ ହାର ନଚୁଇ, | ମୋ ସୁକୃତ ଫଳ ପଚୁର,
ମାରସ୍ୱତ ଡ଼ର ଘୁଞ୍ଚାଇ, | ବଢାଇଦେବୁ କି ଥରେ ରସନା ।୪।
ବାଲ୍ଲବେଶ ନୃପତି ମଣି, | ଭଣେ ଶ୍ୟାମ ଭାରତୀ ଶୁଣି,
ଲଜେ ହସି ବରତରୁଣୀ, | ହେଲେ ମୁଖ ବିନାହୃତ ବସନା ।୫।

---

( ୩୭୨ )

## ରାଗ—କଲ୍ୟାଣ—ଏକତାଳି

ସୁନାଗୋରୀ ରେ ନାଗରୀ ଏ କି ଅଳ୍ପ ॥ ଘୋଷା ॥

ଅସିଛୁ ଅଶାରେ, ଦାସୀ ପରିବାରେ

କୁସୁମଭୂଷାରେ ଦେବି ବୋଲି ସାଜ ।୧।

ଧୀର ମୋର କୋଳେ ବରାଜ ଗୋ ଲୋଳେ,

ଦଅଇ ପଦ୍ମାରେ ମୁଖଚନ୍ଦ୍ର ମାଜ ।୨।

ଦୋଷ ନାହିଁ ଲେଶେ, ରୋଚବୁଦ୍ଧା ଦେଶେ,

ବସାଇଛୁ ତୋତେ ବନ୍ଧୁ କେଉଁ ପାଜ ।୩।

ଏଡ଼ ମନୁ ଦମ୍ଭ, ଭଡ଼ ପରିରମ୍ଭ,

ଦେଇ ମୋତେ ରଖ ରାଜାବାଷିରାଜ ।୪।

କରୀନ୍ଦ୍ର ଗମନା, ସରଲ୍‌ଚି ଅନା,

ମଦନ ପଠାଣ ବାଣରାଜ ବାଜ ।୫।

ଅଷ୍ଟଦୁର୍ଗେଶ୍ୱର, କଷ୍ଟମିଶା ଗିର

ଶୁଣି ଗଲା ମହିଳାର ମନ ଭାଜ ।୬।

---

( ୩୭୩ )

## ରାଗ—ମୂଲ୍‌ତାନୀ—ଅଠତାଳି

ସୁଦୃଶା ଟରେ, ଅଳ୍ପ ଏ କି ଉଷାରେ ?

ପାଳିଲି ନାହିଁ ତୋର ହୁକୁମ ସୁଷାରେ । ଘୋଷା ।

ହେଲୁ ଯେ ଗଣ୍ଡ ମଣ୍ଡିତ କର ସାରସା ରେ

ତୋ ବିନା ଅଛୁ କେ ମୋର ଭରସା ରସାରେ ।୧।

ଚିନ୍ତାମଣି ପରି ତୁ ମୋ ଚିତ୍ତଘରସାରେ

ଚିନ୍ତାଅନା କୁଚକୁମ୍ଭ ଅଶ୍ରୁ ବରଷା ଟରେ ।୨।

ସହ, ସରଲ୍‌ଚି ହର-ଅହିତ ତୃଷାରେ

ବନ୍ଧ ପଡ଼ୁ ସିନ୍ଧୁ ମକରନ୍ଦ ପରଶା ରେ ।୩।

ଗୁଣାମ୍ବୁଧି ଥରେ ସ୍ବର ସମରେ ରସାରେ
ଉଣାଯାଉ ଛୋର ଗଣା ନଯା' ନାରସାରେ ।୪।
ଜଗଦ୍ଦେବ ବୋଲେ ଶ୍ୟାମ ବନସ୍ତୁ ଭୁଷାରେ
ଶଙ୍କିଲ ଦେବୀଙ୍କ ମାନ ପଙ୍କଜ ଦଶାରେ ।୫।

—— ——

( ୩୭୪ )

ରାଗ—ଗୁଣ୍ଡକିରୀ—ଏକତାଳ

ସେ କି ପୁରୁଷରେ ଜମା—ରସଗ୍ରନ୍ଥ ଶ୍ରବଣରେ ଯା'ର ନାହିଁ ପ୍ରେମା ॥
ନୁହନ୍ତ ଯାଚକେ ମାଗି ଯା'କୁ ପୂର୍ଣ୍ଣକାମା
ମଣ୍ଡିନାହିଁ କ୍ଷିତି ଯାର କୀରତି ଚନ୍ଦ୍ରମା ।୧।
ଅଙ୍କେ ଧରି ଜାମାପରି କାମାତୁର ରମା
ରତରେ ଯେ ହରୁନାହିଁ ଭୁହନ ନିକାମା ।୨।
ହରି ଗୁଣଗଣ ପ୍ରସଙ୍ଗେ ଶ୍ରୁତିସୀମା
ରହୁନାହିଁ ଅଙ୍ଗ ଯାର ସପୁଲକ ରମା ।୩।
ଦାତାପଣ ନାହିଁ ଯାର ଥାଉ ଥାଉ କ୍ଷମା
ବଳବନ୍ତ ହୋଇ ଯାର ନାହିଁ ପୂର୍ଣ୍ଣ କ୍ଷମା ।୪।
ଯେ ତେଜି ବିପ୍ରଙ୍କ ଦ୍ରାକ୍ଷା ଭରେ ଖର ଜମା
କଣ୍ଟିରବ ଜସ୍ତ ଇଚ୍ଛି ପୋଷଇ ସରମା ।୫।
ଯେ ବରଜି ଯାଏ ଯୁବାକାଳେ ପ୍ରିୟତମା
ସ୍ଥିର ମଧୁକରେ ବନ୍ଧୁ ଅଧର ଉପମା ।୬।
ଭକ୍ତ ହୋଇନାହିଁ ଯାର ବଚନେ ପଞ୍ଚିମା
କହୁଥାଇ ସଦମ୍ଭେ ଯେ ସ୍ୱଗୁଣ ଗରିମା ।୭।
ନୟନରେ ପଡ଼ଗଲେ ଯା ଅଙ୍କ ସୁଷମା
ନୋହେ ଯେବେ ସସମ୍ଭ୍ରମା ସ୍ଥିତନୁ ମଧ୍ୟମା ।୮।
କରିନାହିଁ ଅନୁଗ୍ରହ ଯାକୁ ସିନ୍ଧୁଜେମା
ଯା'କୁ ଗୃହିଁ ଅବମୁଖ ନ ଭଜେ କାଳମା ।୯।
ଭାଷେ ଜଗଦ୍ଦେବ ଚଇତନ୍ୟ ଚନ୍ଦ୍ରନାମା
ବସୁଦୁର୍ଗ ଧରାମରାବତୀର ସୁକାମା ।୧୦।

—— ——

( ୩୭୫ )

ରାଗ—ମୁଖାରି—ଏକତାଳି

ସେ କି ସାରସାର ଜାଣେ,
ପ୍ରୀତି ରୀତି ନ ପାଳେ ଯେ ଅଣୁ ପରମାଣେ । ଘୋଷା ।
ରାଜମାର୍ଗ ଛାଡ଼ି କଠେ ଅବାଟ ଜଠାଣେ,
ଦ୍ୱିଜସଙ୍ଗ ବର୍ଜି ଯେ ମିଶଇ ପଠାଣେ ।୧।
ଖ୍ୱଜ ସାରି ମାରି ଫଳ ଯେ ଧଏ ସନ୍ଧାଣେ,
ଯେ କୁନ୍ଦନେ ଖଞ୍ଜେ ମଣି ନ ବସାଇ ଶାଣେ ।୨।
ଫଳ ବିନା ଅନ୍ତି ଲୋଭ ରଖି ଛାର ପ୍ରାଣେ,
ଜଳଧିରେ ଯେ ନ ପଡ଼େ ପ୍ରିୟଜନ ରଣେ ।୩।
ତାହାକୁ କି କଳାବତୀ ନଜରକୁ ଅଣେ,
ବନ୍ଧା ହୋଇନାହିଁ ଥରେ ହେ କୁସୁମ ବାଣେ ।୪।
କନକ କଳବ ବୋଲି ରାତି କି ରସାଣେ,
ଧଡ଼୍ୟବୁଦ୍ଧି କରୁଥାଏ ଯେ ଶଶ-ବିଷାଣେ ।୫।
ଯେ ବାମା ଅଧର ମଧୁ ବସନରେ ଛାଣେ,
ମୃଦୁଳ ମାଳତୀମାଳା ମ୍ୱାରମୁନେ ହାଣେ ।୬।
ଯେ ଲେଖି ସୁରତ ଚିତ୍ର ସମରପେ ଭାଣେ,
ମାଗିବା ଲୋକର କରେ ନ ଦଅଇ ମାଣେ ।୭।
କନକ କୁଡ଼ୁଅ ଥାଉ ଯେ ପିଏ ପିହାଣେ,
କାଇ ଥାଇଁ ଚିରମଲ୍ଲୀ ଯେ ଲଗାଏ ଘାଣେ ।୮।
କର୍ଣ୍ଣେ ଯେ ସମର୍ପି ନାହିଁ ଭ୍ରମରେ ପୁରାଣେ,
ହରିଙ୍କି ଯେ କରିନାହିଁ ମୂଳ ପରିହାଣେ ।୯।
କହେ ଜଗଦେବ ଶିଷ୍ୟ ହେଲେ ହେଲେ ଟାଣେ,
କେ କାହା ସ୍ୱଭାବ ଛାଡ଼େ ପରାଣ ପ୍ରୟାଣେ ।୧୦।

———

( ୩୭୭ )

ରାଗ—ଗୁଜ୍ଜରୀ—ଆଡ଼ତାଳ

ସେ ଗଜେନ୍ଦ୍ରଗତି ମୋତେ ପ୍ରୀତି ଦଶେ ଦିଶିଲା । ଘୋଷା ।
ଏ ଜଗତେ ଭାବ ଯେତେ, ନ ରହିଲା ମୋର ଚିତ୍ତେ,
ଯାହାକୁ ଚାହିଁଲେ ସେ ତ ତାହାପରି ଦିଶିଲା ।୧।
ସହଜେ କାନ୍ତିରେ ଗୋରୀ, ଧଇଲେ ନଦିଏ ଧରି,
ମାର ମାରଗଣ ଗାଢ଼େ ମରମରେ ପଶିଲା ।୨।
ମୁଁ ତାହାର ପ୍ରୀତି କିଣା, ହେଉଚନ୍ତୁ ଅଧିକେ ବଣା,
ମୃଗାକ୍ଷୀର ବିନା ଆନେ ମନ ମୋ ନ ରସିଲା ।୩।
ଅତି ଯତ୍ନ କରି ବଳେ, ଶୟନ କରିବା କାଳେ,
କ୍ଷଣେ ହେଲେ ନିଦ୍ରା ମୋ ଈକ୍ଷଣକୁ ନ ଦିଶିଲା ।୪।
ବୋଲେ ଅଷ୍ଟକୁର୍ଗେଶ୍ୱର, ତା ପାଶୁ ହେବାରୁ ଦୂର,
ଦିନକୁ ଦିନ ମଦନ ଜୀବନକୁ ଶୋଷିଲା ।୫।

---

( ୩୭୮ )

ରାଗ—ପୂରବୀ—ଆଠତାଳ

ସେତେ ବେଳକୁ ଯେ କେତକୀ ବରନା ମୋର,
ଆଗେ ଉଭା ହୋଇ ବଦନ କମାଇ ଲାଜେ କହୁନାହିଁ ଗିର । ଘୋଷା ।
ଛୁଟଇ କୁନ୍ତଳ କୁଣ୍ଡଳରେ ଛୁଟି ଲୁଟି ଦେଉଥିଲା ଧନେ,
ସୂଚଇ ପରାୟେ ମୋର ଆସିବାର ସଖୀ ସୂଚି ଦେଲା କାନେ ।୧।
କେଳି ନିଳୟରେ କପାଟ ପାଶରେ ବନ୍ଦପଟ ଦେଉଥିଲା,
ଚରଣରୁ ମୋର ଆସିବାର ଜାଣି ପଟ ଗୁଡ଼ି ଉଭା ହେଲା ।୨।
ମୋଦରେ କୀରକୁ ଚନ୍ଦ୍ରପଦୀ ପଦେ ପଢ଼ାଉଥିଲା ନାଗରୀ,
ଆର ପଦ ହସି ନିକଟକୁ ଆସି କହିଦେଲା ଧୀରକରି ।୩।
ସୁରତରୁ ବଳି ପରମ ପଦାର୍ଥ ସ୍ୱର୍ଗେ ଥିବ ପରା ବୋଲି,
ପୁଚ୍ଛନ୍ତୁ ସଜନୀକି ଅଜ ରଜନୀକି ଜଣାଯିବ ବୋଲି ଦେଲା ।୪।
ଉରଜୁ ବସନ ଫେଡ଼ି ନଖ ଚିହ୍ନମାନ ଦେଖୁଥିଲା ସଖୀ,
କବିବର ବୋଲେ ତନାବ-ପାଶରେ ବନ୍ଧ ଥିବେ ଦେଲା ଚାହିଁ ।୫।

( ୩୭୮ )

ରାଗ—ମାଳବ—ଅଧତାଳ

ସେ ମୋହନ ସ୍ନେହରେ, ସହଚରୀ କି ପଦାର୍ଥ କହ ରେ । ଘୋଷା ।
ନୋହେ ଅଭୟ ନ ରଖଇ ଦଣ୍ଡ,
ଅମଳ ନୋହେ ଅତି ଉନ୍ମାଦକ,
ହୋଇ ହୃଦୟ ଅଦୃଶ୍ୟ ପଦକ,
ହଜାଇ ଦଅଇ ବାଟବଣଯାକ ।୧।
ନୋହେ ଧୂକନେତ୍ରଗୋଳକଜ୍ଜଳ,
ଦୃଶ୍ୟ କରାଏ ଗାଢ଼ତମ ସ୍ଥଳ,
ଲଙ୍ଘାଏ ଦୁର୍ଗ ନୋହେ ଜଙ୍ଘାବଳ,
ବୁଡ଼ାଇ ଦଅଇ ନୁହଇ ଜଳ ।୨।
ନୁହଇ ପରାଣ ନୁହଇ ଗଣ୍ଡ,
ଅଟକଇ ପଦ ନୁହଇ ବେଢ଼,
ବୃଷ୍ଟି ବାରଣ ଛନ୍ଦକୁ ନ ଲୋଡ଼,
ନ ମାନେ ନବମାସଜନଗା ଝଡ଼ ।୩।
ନୋହେ ସଂକଳପ ମାନସେ ରହେ,
ହେଲା ନୋହେ ଯତ୍ନ ନ ରଖେ ଦେହେ,
ଅନଳ ନୋହୁ ଶୀର୍ଣ୍ଣ କରେ ବରହେ,
ସନ୍ଦେହେ ଶ୍ରୀମୁକୁନ୍ଦଦେବ କହେ ।୪।

---

( ୩୭୯ )

ରାଗ—କେଦାର—ଅଠତାଳ

ସ୍ନେହ-ଶୂନ୍ୟ ସୁଅଙ୍ଗ ବଟ-ମୁକୁଟ ପ୍ରକାଶୁ ଅଙ୍ଗ । ଘୋଷା ।
ହରଷ ସରସ ଅତଳ ସୁରସ ହୃଦୟ କେହୁ ସୁଝିଲ
ସଖି, ପୀତପଟ ନଟ ସେ କପଟପଟୁତା କାହୁଁ ଶିଖିଲ ।୧।
କୃପାକୁ କଶୋର କେହୁ ହେବ ମୋର କପାଳଟି ଯେବେ ପୋଡ଼ା,
ସଚରାଚରରେ ତ ସୁଖ ନାହିଁ ତୁଚ୍ଛା ପଚରା କାହାକୁ ଲୋଡ଼ା ।୨।

ଏତିକି ମୁହୂର୍ତ୍ତି ବିଳମ୍ବ, ତା ଧୃତି ସଂଖ୍ୟାକୁ ଅରେ ବୁଝିବ,
ଦେଖିବୁ ତ ଶତଆନନେନ୍ଦ୍ର ଶତଗୁଣ କରି ମୁଁ ଖୁଞ୍ଚିବ ।୩।
କରୁଣାରୁ ଦୂର ଗୃହବୁଲିରେ ମୋର ଚରଣାଞ୍ଚଳେ ନମରେ,
ଛୁଅଇଁଲେ ହେଲେ ଚନ୍ଦ୍ରିକ ଲାଗମ ଗୁଇଁବ କି ମୁଁ ଭ୍ରମରେ ।୪।
ସଖି ରେ କପଟ ନ ପଇଟେ ମୋତେ ଶିଖିବ ବୋଇଲେ ହେଲେ,
ଆଳୀଙ୍କି ଏପରି ଭାଷିଲେ କାଶୋସି ଅଷ୍ଟଦୁର୍ଗନାଥ ଚୋଲେ ।୫।

---

( ୩୮୦ )

ରାଗ-ବରାଡ଼ୀ—ଅଦ୍ଧତାଳ

ସ୍ନେହ ଥିବା ଦେହକୁ ନୁହେଁ ପ୍ରାଣ ପ୍ରାଣ
ସେହି ସ୍ନେହୀ ଦେହୀ ତାର ପରମାଣ ।ଘୋଷା ।
ପଞ୍ଚଗଣ୍ଡ ଯିବାଯାଏଁ—ଅପ୍ରକଟ ହୋଇଥାଏ
ପ୍ରାଣ ସହବାସ ସ୍ନେହୀ ବୋଲି ଜାଣ ।୧।
ହୃଦୟ ନଦେ ସେ ସ୍ନେହ—କଲ୍ପତଣେ ଅବଗାହ
କରେ କେଉଁ ଜଳଧିକୁ କି ନୁଆଁଣ ।୨।
ସାନ ବଡ଼ ବିବେଚନା—ଆନ ହୋଇଯାଏ ଚୂନା
ମାନ ଧନ ଜନର ମନରେ ଠାଣ ।୩।
ପ୍ରକାରେ ନ ଥିଲେ ରୋଧ—ପ୍ରଣୟ ବଡ଼ ସୁବୋଧ
ଅଳପକେ ତା ପର ଯେ ଅବୁଝାଣ ।୪।
ଗୁରୁଜନ ଗରଜନ—ଶୁଣେନ୍ତି ନଗରଜନ
ପ୍ରତି ରଜନୀ ଜାଗର ହଇରାଣ ।୫।
ଅଷ୍ଟଦୁର୍ଗ ନାଥ ଭାଷେ—ଯେ ହାରଇ ଜିଣଇ ସେ
ପ୍ରବଳ ଯାହା ପକ୍ଷରେ ପଞ୍ଚବାଣ ।୬।

---

( ୩୮୯ )

### ରାଗ—ଶାବେରୀ—ଅଡ଼ତାଳି

ସ୍ନେହେ କହରେ, ଚନ୍ଦ୍ରବଦନା  କା'ର ହାରମଣି ମଣି ତୁ । ଘୋଷା ।
ତୋର ଚରଣ ନଖରଗଣ  ଝରେବୁଦତ ତାରା କାରଣ
ପରମେଶ୍ୱର ସୃଷ୍ଟମାନ୍ତୁ ଜାଣି, ବରବାମାବୃନ୍ଦେ ନାହିଁ ଏ ବ୍ରଜ ସହରେ ।୧।
କଳାହଂସରୁ କରସି କଳା  କଳାକର ବମ୍ବେ ମୁଖ ତୁଳା
କଳାମାନ ନାହିଁ ରେ ଅବଳା, ବାଳାବଳୟର କି ତୁ ଭୂଷା ନିବନ୍ଧ ରେ ।୨।
ତନୁବର୍ଣ୍ଣ ବଳନ୍ତି କୁନ୍ଦନୁ,  ତନୁକଟୀଟି କି ଯିବ ମନୁ
ଅନୁମିତ ହୁଏ ମଣିସାନୁ, ସ୍ତନୁ ଉଣା ହୋଇବ ଏ ତହୁଁ ବୁଦ୍ଧ ରେ ।୩।
ଯଉବନ ମଦ ଗ୍ଳାନି ଲବ  କେଉଁ ବନ ମଦଗଜେ ଥିବ
କଜଳତ୍ତୁକର ତୁ ତ ଅର୍ଣ୍ଣବ, ନଉବନ୍ଧ କାନ୍ତି ସ୍ମର ସିନ୍ଧୁ ପ୍ରବାହ ରେ ।୪।
ପଟ୍ଟାଟୋପ ଲେକେ ନିରୂପମ,  ଛଟା କଟାକ୍ଷର କି ବିଷମ
କଟା ଲେଟାଟି କି ହେବ ସମ, ସଟାବଟା ନ କର ସ୍ନେହେ ମୋ ଅଗ୍ରହରେ ।୫।
ଧନ ହୁଅ ଯାହାର ତାହାର  ମୁଁ ତୋ ଗୃହକୁ ନୁହେଁ ବାହାର
ମୁଖ ପଙ୍କଜୁଁ ମରନ୍ଦାହାର, ଦେଉଛି କି ମୋତେ ନ ମଣାଅ ସନ୍ଦେହ ରେ ।୬
ବସୁଦୁର୍ଗ ପୁରନ୍ଦର ଭାଷେ  ଶ୍ୟାମସୁନ୍ଦର ବାଣୀ ବିଳାସେ
ଲାଜେ ମଜ୍ଜି ବର ମହିଳା ସେ, ହସି ପଳାଇଲେ ମହା ମଦନ ମୋହରେ ।୭

---

( ୩୮୭ )

### ରାଗ—ବସନ୍ତ—ଝମ୍ପା

ସ୍ୱପ୍ନେ ଦେଖିଛୁ ପଦ୍ମ ସଖି ତୋତେ ଏ କି ପରିପରି । ଘୋଷା ।
ଅଞ୍ଜନ ଅତସୀ ମୃଗମଦ ମସୀ ନୀଳଶାଟୀ ନୀଳୋତ୍ପଳ
ଏ ମ ନ ନ ଛୁଇବାଛୁ ତ ଧରଣ ମୁଁ ଏବେ ପୀତହୁକୁଳ ।୧।
ପହୁଡ଼ିବା ବେଳେ ଗଣ୍ଡ ପାଳି ତଳେ ଥିଲା ଦଶୁଥିଲା ଲଲ
ଉଭାରଲେ କେଶ କାହା ଚୂର୍ଣ୍ଣକେଶ ଲୀଳା ନ ଆଚ୍ଛାଦେ ଭାଲ ।୨।
ଝାଙ୍କି ଦେଉଁ କାଲି ବଳତ ବଧୂଲି ଭ୍ରମରୁ ଭ୍ରମର ଯୁବା
ଏଣୁ ମୋ ଅଧର ଅଳପ କଙ୍କୁର ଦଶି ପାଉଥିବ ଏବା ।୩।

ସୁନବଂଶୀକଣ୍ଠା ମୂନ ବନ୍ଧ ହୋଇ ବାନ୍ଧ ଯାଇଥିବ ଦେହେ
ଘାତକ ଚନ୍ଦ୍ର ଏ ବାଣିଜଳପୂଜା ଜାଣିବାପଣ ଏ ନୁହେଁ ।୪।
ଝୁଣ୍ଡିବାର ଫୁଲ ପଗ୍ରଗ ନୟନେ ପଡ଼ିବାରୁ ଅବା କିଛି
ଭଷା ଦଶୁଥିବ ଏ କଥାକୁ ଏଡ଼େ ହସା ତାହାଙ୍କ ହେଉଛି ।୫।
ଭଲ ଭାମରସନେତ୍ରାଙ୍କର ରସ ଲଳିତା ରସେ ଭାସିଲେ
ଜଗଦ୍ଦେବ ହରଚନ୍ଦନ ଭୂପତି ରସି ଏ ରସେ ଭାସିଲେ ।୬।

---

( ୩୮୩ )

ରାଗ—ବଳାହୁଂସୀ—ଅଦତାଳ

ହଇରଣ କାହିଁକି ଏତେ,
ଅତ ହଇରଣ ନକର ମୋତେ । ଘୋଷା ।
ମୋଦେ ମୋଦେ ହସି ତୁମ୍ଭେ ଯିବ ଖସି
ମୋ ଦେହ ପୂରାଇ ଭରଜ ଯେତେ,
ଚୁଳୁର ଶାଢ଼ୀ ତ ରଙ୍ଗିଦେବ ନାହିଁ
ମୁଁ କରତଳେ ଅଚ୍ଛାଦବି କେତେ ।୧।
ଚକୁର ବେଶ ତ ରଙ୍ଗି ଦେଉ ନାହିଁ
ମୁକୁରରେ ଦଶୁନାହିଁ କି ମୋତେ,
ବ୍ରୀଡ଼ା ଜଳଧିରେ ବୁଡ଼ିବି ମୁଁ କେହ୍ନ
ଜଣା ହେବ ସଙ୍ଗୀମାନ ପୁରତେ ।୨।
ସଖୀଏ ମନ୍ଦିରେ ଗଣ୍ଡେ ଥିଲେ ଲିହ
ନକର ତା ଅନୁରୋଧ କାହିଁତେ,
ଖଣ୍ଡକୁ ତ କେହ୍ନ ସେପର ନକରେ,
ଗଣ୍ଡକୁ ମୋ ଯାହା କର ସୁରତେ ।୩।
ଅଙ୍ଗ ନ ପାରଇ ଭାଜିଛି ମୋ ବଳ
ରାଜ କରାଉଛ କାହିଁତ ଚନ୍ଦ୍ରେ,
ବାମଦେବ ପଦ୍ମପତ୍ନୀ ରଣଜୟକାମ
ତୋଷକୁ କି ଅନୁଭବ ଜଗତେ ।୪।

ଠାକୁରାଣୀ ପ୍ରେମବାଣୀ ଶୁଣି ବଂଶୀପାଣି
ପ୍ରେମମଗ୍ନ ଅନ୍ତରଗତେ,
ସବନୟେ ପୁଣି କୋଳରେ ଅଣିଲେ,
କବି ଧନମଣି ରଚିଲେ ଗୀତେ ।୫।

---

( ୩୮୪ )

ରାଗ—ଚନ୍ଦ୍ରା ଦେଶାଖ୍ୟ—ଏକତାଳି

ହରିତୁଲେ କରିବୁ ଯେ ପ୍ରୀତି, ମୋ ଅଭିନ୍ନା ରେ
ଧରିବୁ କପଟ କହ ଧୃତି । ଘୋଷା ।

ଥୋଇ ଯତନେ ସେ ଶ୍ୟାମଳ ଗାତ୍ର, ମୋ ସଙ୍ଗିନି ରେ,
ସୀଇଁ ପାରିବୁ କି ନେତ୍ର,
ନିତି ତ ସେ ବସ୍ତ୍ରା ପଛେ ଚଳିବ, ନିମିଷ ତ ଶତଯୁଗ ବଳିବ,
କାମାନଳ ତୋ ହୃଦେ ଜଳିବ, ମୋ ଦରଶୀ ରେ,
ନେତ୍ରୁ ନୀର ନିରତେ ଗଳିବ ।୧।
ପରପୁରୁଷର ସ୍ନେହଭୂତ, ମୋ ସଜନୀ ରେ,
ହରିବର କରଇ ବହୁତ
ଲଗେ ପରେ ସ୍ନେହ ପରବଧୂର,
ଶୁଣୁ ସୁଧା ଧାରଠାରୁ ମଧୁର
ଈପ୍ସିତରେ କରଇ ବଧୂର, ମୋ ବଜଳ ରେ,
ବଷ ହୁଏ କିରଣ ବଧୂର ।୨।
ବାଟର ଶ୍ୟାମଟୋରେ ନେତ୍ରାଞ୍ଚଳ, ମୋ ହିତୀପ୍ସା ରେ,
ଟଳିଲେ କାଲି ମୁଁ ଚଞ୍ଚଳ,
ଥାଉ ଅଜ ବଡ଼ ସୁଖ ବାଡ଼ବ,
ଯାଉ ଯାଉ କଷ୍ଟେ ରହିଲା ଜୀବ,
ତାହା ଜାଣେ ଏକା ମୋ ମନୋଭବ, ମୋ ସଙ୍ଗାତରେ,
ଯାହା ହୋଇଛି ମୋ ଅନୁଭବ ।୩।

## ( ୩୮୫ )

### ରାଗ—ବଙ୍ଗଳାଶ୍ରୀ—ଝୁଲା

ରହି ବିଦେଶରେ ଦଇବବଶରେ ବଲ୍ଲଭ ନୃପ କୁମର
ରତିପତି ହୃତ ବଳକୁ ବୋଲନ୍ତି ଆହା ବିଳାସିନୀ ବର ।୦।
ରଣରଣ ଶର ଦମ୍ଭୋଳି ପ୍ରକର ବରଷାରୁ ନିରନ୍ତର
ରକ୍ଷା କେ କରବ ମୋର ରେ ପଲ୍ଲବ-ଅଧର ବିନା ତୋହର ।୧।
ରଙ୍କ ମୁଁ ସୁଭାଗ୍ୟବଶୁଁ ଅରଜିବା ଚିନ୍ତାମଣି କର ଦୂର
ରସବତୀ ରାଜା ତୁ ସଙ୍ଗ ପରଜା ଏକାଳେ ହେଲୁ ଅନ୍ତର ।୨।
ରଥପର ମନମଥର ଆଯନ୍ତେ ହୋଇ ମନ୍ଥର ମନ୍ଥର
ରହିବ କଙ୍କିଣୀ କାହାରଟି ଶୁଣି ଲଭିବି ମୁଁ ମୋଦଭର ।୩।
ରଜ ନିକରେ କୁସୁମ ମାନଙ୍କର କର ଦେହକୁ ଧୂସର
ରଜନୀକର ମୟୂଖେ ବିହରିବ କୁଞ୍ଜେ ଧରି କାହା କର ।୪।
ରସି କାହା ପରିରମ୍ଭ ଚୁମ୍ବେ ହରିବିଟି ଯାମିନୀ ବାସର
ରତେ ରସି କାହା ତୁଳେ ହେବି ମହାସୁଖାମୃତ-ଜରଜର ।୫।
ରଙ୍ଗ ତାମରସ ପଦ ଲାକ୍ଷାରସ ଚିତେ ସାଜିନ୍ତି ତାହାର
ରସିକ ଚକ୍ର ଚୂଡ଼ାମଣି ହୋଇବ ମୋ ପଦତଳେ କିଙ୍କର ।୬।
ରତ ନିଧୁବନ ଅବସାନେ ଧନ, ଧରି କୁସୁମ ଚାମର
ରଙ୍ଗ ମୋତେ ଉରେ ବାନ୍ଧି ପୁଣି ଧୀରେ ଏବେ ସାରଦେଇ ସ୍ୱର ।୭।
ରଦନ ଅମ୍ବର ସୁପକ୍ୱ ବିମ୍ବର ସ୍ୱାଦୁ ନ ଖାଇ ଏଥର
ରଦ ହେବା ପରି ଲାଗିବାରୁ ଜରି ହୋଇଲାଣି ଥରଥର ।୮।
ରନୁ ପରଚିତ ସୁକୃତ ସଞ୍ଚିତ ହେବା କଣ୍ଠ ଅଳଙ୍କାର
ରସାମଧ ଶୀର ତୁ ଯେ ମୋର କର ନ ପାରିଲି ଅଙ୍ଗୀକାର ।୯।
ରମଣୀୟତର ପୟୋଧରେ ତୋର ନ ଖେଳାଇଲି ନଖର
ରମଣୀ ଅତର ସୁବାସିନୀ ତୋର ଜନମ ବଡ଼ ଅସାର ।୧୦।
ରହିତେ ଏପରି ଚିନ୍ତିଲେ ଶ୍ରୀହରି ପ୍ରିୟାଙ୍କ ଗୁଣ ନିକର
ରଚିଲେ ହରଷରେ ହରିଚନ୍ଦନ ଜଗଦେବ ନୃପବର ।୧୧।

---

( ୩୮୭ )

ରାଗ—ଢୋଡ଼ି ମଲ୍ଲୁଅ—ଅଢ଼ତାଳି

ହସି ମୋତେ ଅନା ରେ,
ଅସୀମ ଲାବଣ୍ୟନିଧି ରସିକା ମୋହନା ରେ । ଘୋଷା ।
ଅପରାଧ ପରାଭୂତ ହେଲା ଯେ ଦୂଷନା ରେ
ସପରାଗ ବସୁନ୍ଧରା ପୃଷ୍ଠରେ ବସନା ରେ ।୧।
ଢାରଣ ନ ଥାଉ ବର-ବାରଣ ଗମନା ରେ
ତେ ସକଳ ସୁଖ ତୁଲେ ବେଣକଲ୍ପ ମନା ରେ ।୨।
ବଲ୍ଲଭ ବଲ୍ଲଭୀ ରାଜା ମୋ ଅଙ୍କ-ଆସନା ରେ
ନ ଲଭିଲି ତୃଷ୍ଣମୁଖ ସରୋଜ ବାସନା ରେ ।୩।
ତରୁଣୀ ଅରୁଣ ତା' ସରଣୀକି ଯା'ନା ରେ
ମୋ ସପତ୍ନି ଜଡ଼ାଅ ରସବନ୍ତୀ ବାନା ରେ ।୪।
ଅପ୍ରବୁର୍ଗାଧୀଶ ଭୂପେ ଶୁଣି ସେ ନବୀନା ରେ
ବାହାରିଲେ ଶ୍ରୀହରିଙ୍କ ଅଙ୍କେ ଶଙ୍କା ବିନାରେ ।୫।

---

( ୩୮୭ )

ରାଗ—ପିଲୁ—ଝୁଲ

ହସି ଦେଉଛୁ ଯେ ରସିକା ରଖିଛୁ ମନେ ।
ଭୁଷିଲ ପର ତା' ଶଶୀଜିତମୁଖ ଦର୍ଶିଯାଏ ଦିନେଦିନେ । ଘୋଷା ।
ସନ୍ଧନସୁ ପ୍ରେମଗୀତ ମୋହପାଇଁ କବି ଅଭିମାନେ ଭଣି
ଶାବକ ମୃଗାକ୍ଷୀ ସଖୀଙ୍କି ଦେନାଇଁ ଭାବ ଜହ୍ନବାର ଗୁଣି ।୧।
ମୋଦେ ବାସ ଝେକି ମୁଁ ଦେବା ନଖର ଲାଞ୍ଛନ ତା ଉରମୂଳେ
ନିରେଖିବା ଢାଳେ କି ରେଖାଙ୍କି ଧନ, ବୋଲି ପଚ୍ଛୁଁ ଧରି କୋଳେ ।୨।
ବିବାଧ ରନ୍ଧ୍ରେ ରେ ନୀବି ଧରିବାରୁ ଚଳା ମୋତେ କଠ ରସି
ଛଳେ ଉପଳେ ବଳେ କହୁଁ ଦଇବବଳେ ପଡ଼ିବାରୁ ଖସି ।୩।
ଅଳସ ଲାଗିବାପରି ମୁଁ ବସିବା ଛିଳେ ଶୟନର କାଳେ
ସଦନେ ପଦ ନ ଶୁଣାଇ ଅପି ମୋ ବଦନ ଚୁମ୍ବିବା ବେଳେ ।୪।

ଯାମିନୀ ମୁଖେ ମୁଁ କାମିନୀ ବେଶରେ ଯିବାର ନ ଜାଣି ହସି
ସ୍ନେହରେ ନାଅଲୀ ଅସ ବୋଲ୍ ମୋର ଦେହରେ ଯିବାର ମିଶି ।୫।
ପୁରତେ ଭଲେ ଉ ଜହ୍ନହୋଇ ଲକ୍ଷେ କରୁଥାଏ ନାହିଁ ନାହିଁ
ସୁରତେ ସୁନ୍ଦର ଜଘନ ନାରେଣି ତେଣେ ତା’ ଶ୍ରୀମୁଖ ଚୁହିଁ ।୬।
ମୋ ନାଥ କାମନା ପୂର ବୋଲି ଦେବୀ ଛାମୁରେ କର ପଲ୍ଲବ
ଠେକି ଦେଉଁ ଶିରେ ଜହ୍ନଜ ମଣ୍ଡଳ ଅନାଇଁ ଶ୍ରୀ ଜଗଦ୍ଦେବ ।୭।

---

( ୩୮୮ )

ରାଗ--ପୂର୍ବୀ କଲ୍ୟାଣ—ଏକତାଳି

ହା ନିତମ୍ବିନୀ ମୋ ବାରବାନି ସୁନା ରେ । ଘୋଷା ।।
ତା’ ଶୋଭା ପ୍ରତି ପ୍ରତି କେ ଘେନି ମୁଁ ସୁରତି ରତି କେ
କସୁଥାଏ ରସୁଥାଏ ଏଣୁ ସିନା ରେ ।୧।
ମୋ ମନ ମହାଜନକୁ ତା’ଠାରୁ ମୋ ମଣ୍ଡନକୁ
ବିକୁଥାଏ କିଣୁଥାଏ ଶନା ଶନା ରେ ।୨।
ମକରଧ୍ୱଜ ପ୍ରଧନେ ହଠରେ ମୁଁ ଦନେ ଦନେ
ସୁନାସି ହୁଏ ସେ କରୁ କରୁ ମନା ରେ ।୩।
ଶଙ୍କାକୁ ନ ବଣି ଚତୁର ଟଙ୍କାର ଦେଲେ କଣ୍ଠତେ
ଫୁଙ୍କାଯାଏ ମୋ ଶ୍ୟାମଳ ଦେହ ସିନା ରେ ।୪।
ଅଷ୍ଟଦୁର୍ଗ ନାଥ ବୋଲେ ହର ଏପର ଚନ୍ତ୍ରଲେ
ହର ନେବାରୁ ହୃଦୟ ସେ ନବୀନା ରେ ।୫।

---

( ୩୮୯ )

ରାଗ—ମଙ୍ଗଳଗୁର୍ଜରୀ—ଏକତାଳି ।

ହେ ତମାଲ ଅତସୀ କୁସୁମ ଅଭିରାମ,
ରମ୍ଭା ଜଙ୍ଘୁ ନବ ରସୋଦ୍ଭବ ରସଧାମ ହେ ।୧।
କମଳା ବିଳାସୀ କୋଟି କଳାକରମୁଖ
କର କର ବିନାଶ ମୋ ଭବ ଜନ୍ମ ଦୁଃଖ ।୨।

କାମ୍ବୁନଦ ସୁଲଳିତ ଜିତ ପୀତାମ୍ବର
ରସାଳସା ବ୍ରଜବଧୂଜନ ମନୋହର ।୩।
ବଦରୀକାଶ୍ରମ ଉପଗୃହୀ ହେ ସୁନ୍ଦର—
ପଣ ସରଯାଏ ହେଲେ ତୁମ୍ଭ ଦୟା ହୂର ।୪।
ସଙ୍ଗଳୀ ଅନୁଜ ଦନୁଜଙ୍କ ଜୀବହାରୀ
ତାଳବନେ ଯଶଗ୍ରାମେ ଦେବେ କୃପାକର ।୫।
ଉଦ୍ଧୁ ଭୁଜେ ଜପାଜ୍ଜନ୍ତେ ସେ ନଳକୁବର
ଚୁଚକ-ସ୍ୱର୍ଗ ପୀଠରେ ଦେଲେ ବାସବର ।୬।
କପିବଢେ ଯାହା ନେଇପାରେ ନାସ୍ତିକାରେ
ସୀଙ୍ଗାଫଳ ହେତୁ ରଖି ନିଜ ହୃଦାନ୍ତରେ ।୭।
କରମ ଗାଢ଼ ପାଢକୁଁ ମୁକ୍ତ ହୋଇ ନର
ଯେ ଜଠର ସୁରପୁରେ ସେ ତୁମ୍ଭ କଙ୍କର ।୮।
କରୁଣାରେ କରୁଣାଳୟ ତ ଅବମୂଳ
ସଫଳ ସ୍ତବକୁ ମୋର ନକର ବିଫଳ ।୯।
ପଦ୍‌କଞ୍ଜେ କରେ ହରିଚନ୍ଦନ ବିନୟ
ପୂର୍ଣ୍ଣ କର ଏ ମୋର ଚକ୍ରପଦୀ ଚନ୍ଦ୍ରୋଦୟ ।୧୦।

---

( ୩୯୦ )

ରାଗ—ପୂରବୀ—ଅଦତାଳ

ହେ ଧର ଧର ଏବେ କରୁଣା କରୁଣା-କର କର
ହୋଇଗଲଣି ତ ବାଳା ଥରଥର ହେ । ଘୋଷା ।
ଶାଣିବାରୁ ଫୂଲଶର ରେ ମୋ ସଖୀ ଲଭ ଅଧର ଦର
କଣି ନିଦ ନାହିଁ ବଣିମା ପଲ୍ଲବ—
ଉଳପେ ରହିଛି ହରହର ହେ ।୧।
ତଣ୍ଡ କଣ ସ୍ନେହେ ଜରଜର, ତାର ପୀନ ପୟୋଧର ଧର
ବନା ଅପରାଧେ ନାଗରୀ ବରକୁ
ନ ଦଅ ବିରହାଗର ଭର ହେ ।୨।

ଝୁଅ ପଡ଼େ ସ୍ୱେଦ ସରସର, ବଜେକର ହୋଇ ଖରଖର
କିଶୋରୀମଣିର ପ୍ରାଣ ପରକାଶ—
ପତାକା ଉଡ଼ାଅ ଫରଫର ହେ ।୩।
ଗ୍ରେର ସଦୃଶ ଲ ଡରଡର, ହୋଇ ପଶୁଥାଅ ଘରଘର
ଅଧରେ ଅଧର ନଇବେ ଯେ ନର
ବୋଲିବେ ବାଇନା ବରବର ହେ ।୪।
ଏତାପ ସିନ୍ଧୁକୁ ତର ତର, ହୋଇ ନ ଦେବ ଆତର ତର
ରୁକ୍ମିଣୀ ଶ୍ରୀମୁଖେ ଭୋଗକର ସୁଖେ
ପଙ୍କଜ ସଉରଭର ଭର ହେ ।୫।
ତା' ଅଙ୍ଗ ରାଗରେ ଗରଗର, ହେଲେ ଝିଙ୍କିନେବ ଝଂରଝଂର
ବୋଲେ ଅଷ୍ଟଦୁର୍ଗ ଧରି ଦମ୍ଭ ସ୍ୱର୍ଗ—
ମହେନ୍ଦ୍ର ଦୁଃଖକୁ ମରମର ହେ ।୬।

———

( ୩୯୧ )

ରାଗ-ତୋଡ଼ି—ଅଢତାଳ

ହେ ନବ ଯୁବତୀ-ହୃଦୟ ବିହାରୀ
ମନମୋହନ ମୁରଲୀଧାରୀ । ଘୋଷା ।

କହ ହେ ଅଜ କିଶୋରୀ ସତୀ ଭତ୍ତି ଧୃତି ଗିରି
ଗ୍ରାମଣି ଚଳନ କରିପାରେ ତୁମ୍ଭ ବିନା ହରି ।୧।

ବାଳ କାଳେ ଗୋବର୍ଦ୍ଧନ ଧରି ଯେସନ ସୁମନ
ତୋଳିଲ ତୁମ୍ଭ ସମାନ ଅଛି କେ ବ୍ରଜ ନଗରୀ ।୨।

ଏଣୁ ତୁମ୍ଭଙ୍କୁ ଜାଣ୍ଟୁ କଲୁ ଅମ୍ଭେ ସଖୀଚୟ
ଭାଷେ ରାଜ ହରିହର ଚରଣ କଞ୍ଜେ ଜୁହାରି ।୩।

———

( ୩୯୨ )

### ରାଗ-ତୋଡ଼ିଆରକ୍ତ — ଏକତାଳି

ହେ ରସିକେ, କି ବର୍ଣ୍ଣିବ ତାହା କବି ?
ପଙ୍କଜ ନେତ୍ରା ମୋ ଅଙ୍କ ଜଗତକୁ ଆସିବା ସମୟ ଛବି । ଘୋଷା ।
ଝଂରି, ଗୃଦର, ନାଗବଲ୍ଲୀ ତାରୁକୁ ହେମ ପିକଦାନୀ ଧରି
ପାଞ୍ଚଗୃରି ପରିଗୃରି ଘେରିଥାନ୍ତି ଯା ଚନ୍ଦ୍ରକୁ ତାରାପରି ।୧।
ଖସନ୍ତେ କାଖୁଁତେ ଗାଢ଼ାଶ୍ଳେଷ ସୁଖ ଦୁଇ ଦେହ ସିଅଁ ତାଗ
କି ବା ସେ ଉଲ୍ଲସ ଠେଳିବା ସମୟେ ତା'ବିମର୍ଦ୍ଦିତ ଅଙ୍ଗରାଗ ।୨।
ଫଳ ସ୍ତନବ୍ୟାଜେ ଫୁଲ୍ ଫୁଟି ଲାଜେ ମିଶି ଯା ମଧୁରହାସେ
ମୋ ପୂର୍ବ ପୁଣ୍ୟ କଳପ ବଲ୍ଲରୀକି ମୂର୍ତ୍ତିମତୀ ହୋଇ ରସେ ।୩।
ଜାଣି ମୋ ଆଗ୍ରହ ଦନ୍ତେ ତୃଣ ଗ୍ରହ ଠାରି ଅଟରି ଜୁହାର
ହସିହସି ଡୋଳାବାର ବେଗବେଗହୋଇ କେଳି ଶେଯୁଁ ହାର ।୪।
ସମାନ ବୟସୀ କେହି କର୍ଣ୍ଣଫାଶୀ ପାଶେ ହସି କିଛି କହେ
କି ସୁନ୍ଦର ତାକୁ ମାରିବାର ଶିବ ଅବତଂସ ଫୁଲେ ସ୍ନେହେ ।୫।
ନୀବିକି ନିବାଡ଼ ଭିଡ଼ ଖସିପଡ଼ିଥିବାର କସିଦାବୃଳି
ସଖୀଜନ ହସାଭ୍ୟୁକ୍ତ ଲହଆ ଖୋସା ଦେବାର ସାଉଁଳି ।୬।
ଉଠାଇ ଆଣେ କି କାମ ହେମଫୁଲ୍ ଶୋପମଣ୍ଡା ପାଟଖଣ୍ଡା
ଅଥବା ରଥବାହନୀ ହେଉଥାଏ ଶୃଙ୍ଗାର ମଙ୍ଗଳ ଝଣ୍ଡା ।୭।
ଗୃହାଁ-ଦରପଣ ବାଢ଼େ ଦନ୍ତବ୍ରଣ ଅଧରେ ଗଣ୍ଡେ ଚିବୁକେ
ମୋର ସୁସ୍ନେହାଟି ଲୁଚାଏ ଯାହାଟି ଯେ କି କରକଞ୍ଜେ ଲୁଚେ ।୮।
ରୁଚିର ଚରଣଯୁଗ ଯହୁଁ କେଳି ନିଳୟ ଦେହଳୀ ଲଙ୍ଘେ
ମନପୁର ପୂରି ପ୍ରମୋଦ ଲହରୀ ହୋଇଯାଏ ମୋତେ ଜଙ୍ଘେ ।୯।
ଚେଳାଞ୍ଚଳ ଲୁଟୁଥାଏ ଯାହା ସେ କି ଗୁଡ଼ ଗୁଡ଼ ବୋଲୁ ବାଟ
ବଦାଇ ଛେଲ ଘୋଷାର ଗୁଳୁଥାଏ ମଦନ ମହୁଆ ଭାଟ ।୧୦।
ପଞ୍ଚ ଶିଳୀମୁଖ ପଞ୍ଚମ ବିଶିଖ ଦୁଇଯୁଗ ଦୃଷ୍ଟି ତୁଳେ
ଧୂର୍ଜ୍ଜୀ ପ୍ରତାପ ନିର୍ବାପ ଆରମ୍ଭଇ ପାଳିଲାରବିନ୍ଦ ଫୁଲେ ।୧୧।
ଅମନ୍ଦ ମନ୍ଦାକ୍ଷ ପ୍ରମୋଦ ବଲକ୍ଷ ସ୍ମିତେ କି ସୁନ୍ଦର ମୁଖ
ତମିଯାକ ଦେହେ ଜମିଯାଏ ସ୍ନେହେ ଦଅଇ ଯେମନ୍ତ ସୁଖ ।୧୨।

ସଞ୍ଜବେଳ କଞ୍ଜ ମଞ୍ଜୁ ହୋଇଥାଏ ଜାଗର ଦ୍ଦୃଷ୍ଟା ନୟନ
ଝୁମି ଝୁମି ଡଳୁଥାଏ କମଣ୍ଡଳୁ ପିଦ୍ଧରସ୍ତନା ମୋ ଧନ ।୧୩।
ଦଳୁଳା ମାଳ ଝାଲଗ୍ରାଅ ଅଳକେ ଗୁନ୍ଥା ଘର୍ମବିନ୍ଦୁ ମୋତି
କି ମାନୁଥାଏ ସେ ମୋ ଅଧରେ ଅଧେ ଲଗିବା ମଦ୍ଧସ୍ନି ଧୃତି ।୧୪।
ଯିବା ଆସିବା ସମୟେ କି ସୁବାସମୟୁ ହୁଏ ମହୀ ସତେ
ଏଠାର ଶ୍ରୀଧର ଖେଳିବାର ହରିଚନ୍ଦନ ରଚିଲେ ଗୀତେ ।୧୫।

---

( ୩୯୩ )

ରାଗ-ମାରୁଆ—ଝୁଲ

ହେଲି ତୋ ଅନୁରାଗ ଜଣା, ଯା' ମୋହନ ଯା' । ଘୋଷା ।
ଯା' ଗିରେ ବସୁ ରଜଣୀଯାକ—ସେ ରତି କୁଶଳାକୁ ଡାକ
ମୋ ନାମରେ ବୋଲି କରଛେ ମୁରଲୀ ବାଜା ନବଜା ।୧।
ଅଳୀ କାବହ ବଦନେ ମୋର—ଗାଲ ନ ଶୁଣ ବଂଶୀକିଶୋର
ଚରଣ ନଧର ଏ ମଧୁନଗର ରାଜା ଭଣିଜା ।୨।
ଯା' ପାଦ ଅଲକ୍ତ ଶିଖଣ୍ଡ—ମଣ୍ଡିତ ରତି ସୁଖ ଅଖଣ୍ଡ—
ଦେଇଛୁ, ସେ ବର ବରତୁଳ ଜରଜାକୁ ଭରଜା ।୩।
ଭାଷଇ ଜଳନ୍ତର ମହେନ୍ଦ୍ର—ଇନ୍ଦ୍ର ନୀଳଯୁ ଗଗନଚନ୍ଦ୍ର
କହୁ ଯେ ବିନୟ ବଚନ ତନଯୁ ନାହିଁକି ଲଜା ।୪।

---

( ୩୯୪ )

ରାଗ- ତୋଡ଼ି ପରଜ—ଏକତାଳି

ହେ ସରସେ, ମଙ୍ଗଳଗଲେହେଁ ଜୀବ,
ମଙ୍ଗଳ ନ ଯିବା ଜବାଅଧରାକୁ ଅଭୋଗରେ କେ ତେଜିବ । ଘୋଷା ।
ସେହି ନକ ସୁବା ତା ଜୀବନ ଯିବାକୁ ଚାହ ଜନ ଧିକ୍‌କାରେ,
ଯା ଭୋଗ୍ଯ ସୁହାସୀ ଲୁହଇଛି ବାସି କୁସୁମମାଳା ପ୍ରକାରେ ।୧।

କୁବେର କୁମରଦ୍ୱୟ ସୁରପୁର ଗଣିକାକୁ ପର ଧରି,
ରସବଶହେଲେ ଜନ ସିନା ଭଲ ଦଶବଦନର ପରି ।୨।

ଚନ୍ଦ୍ରମୁହାଁ ସୁଖ ବଢ଼ କି ତା ମୁଖ ଦେଖା ବଢ଼ ବଢ଼ୁବଢ଼ୁ,
ମଧୁର ଅଧର ପିଇ ପୟୋଧର ଉପରେ ଦେଇ ଉଡ଼ୁଉଡ଼ୁ ।୩।

ଅର୍ଦ୍ଧ ଗର୍ଭକ କେତକୀ ଦଳରେ ପ୍ରେମଲେଖ ଚତୁରତ୍ରି,
ହେତୁ ପଛେ ବାଧ ସେ ଥିବା ସଉଧ ଗବାକ୍ଷରେ ଗତ୍ରିଗତ୍ରି ।୪।

ଅଷ୍ଟଦୁର୍ଗ ନାଥ ବୋଲେ ମନୋରଥ ତା ବିନେ ଅନେ କାହାରେ,
ତା'ଠାରୁ ନିର୍ଗୁଣ ନ ଲଭ କି ନାଶ ଯାଇ ମାର ତରୁଅରେ ।୫।

---

( ୩୯୪ )

ରାଗ-କାମୋଦୀ—ଅଦତାଳ

କ୍ଷମାନିଧି ନିରୁପମା, ଏପରି ଗୁରୁ ଗୁମାନ ସରଜି ନବସଛି ରେ
ଅଗତି ନୁହଇ ମୁଁ ତ ରସଦୃଶହାସ ଧରି ଅମୁଖ ମିଶ ଶଣାଛି ରେ । ଘୋଷା।

ଲଲମଗିର ମୋର ସଲମତ ତୁ ଅଛୁ ଗଲ ମଦନୁ ଧୃତ ଖସିଛି ରେ ।
କି ଲଜକୁ ଭରସିଲ ଚରଣେ ଅଛୁ ପିଲ ଦନୁ ଶରଣ ପଶିଛି ରେ ।୧।

ପାଣି ଗଣ୍ଡେ ନ କର ଠାଣି ମଣ୍ଡନା ବର ମାଣିକ୍ୟ ମଣି ଦଞ୍ଜ ବାସିଛି ରେ
ଜାଣି ନିଗ୍ରହ ତୋର ହାଣିବାକୁ ମୋ ଶିର ଶାଣିଲଣିଛି ସ୍ମର ଅସିଛି ରେ ।୨

କୃଶାବନତ ତନୁ ରୁଷା ନ କରତନୁ ବିଶାଳ ସୁଖ ଭଳି ନିସ୍ତିଛି ରେ
ଅଶାର ଅକୁଶଳ କି ସାର ମୁଁ କୁଶଳ ବିଶାରଦ ପଣରେ କଷିଛି ରେ ।୩।

ହରିବଚନୁ ମଦ ଭରବର ଗତ ସେ ହର ମନରୁ ମ୍ଳାନ ମଶିଛି ରେ
ହରିଚନ୍ଦନ ବୋଲେ ପରିଚୟ ବଚଲେ ଧରବଣୀ ରୁଷା ରସେ ରସିଛି ରେ ।

---

( ଶ୍ରୀ ଜଗଦ୍ଦେବଙ୍କ ଚୌପଦୀ ଚନ୍ଦ୍ରୋଦୟ )

# ପ୍ରେମୋଦୟ ଚମ୍ପୁ

## (୧)

### ରାଗ—ପୂରବୀ—ଅଠତାଳି

କଳାବତୀ ରେ, କହ ମୋଠାରୁ ତେଜି କପଟରୀତ । ଘୋଷା ।

କିପାଁ ଥଳ ଅଞ୍ଜନମ, ସୁଖୀ          କଳାକର ମୁଖ ଅଛୁ ଶୁଖି
କମନୀୟ ବିମ୍ବ-ବିଜୟୀ ଅଧରେ
ମୃଗମଦେ ଭୃଙ୍ଗ ନାହିଁ ଲେଖି ।୧।

କୋକନଦଜିଣା ଗୃଢ଼ୁକର          କାଶଳୀଯୁ ଗଣ୍ଡେ ମଣ୍ଡିବାର
କେଉଁକାଳେ ହେଲେ ଦେଖି ତ ନଥିଲି
ପରାଣ ସଙ୍ଗି, ନୟନ ମୋର ।୨।

କଞ୍ଜଲତା ମନ୍ଦ ବାତ ପରି          କମ୍ପୁଛୁ ତୋ'ତନୁ ସୁକୁମାରୀ
କିସ ଏ ବେଦନା କୁ ରାଜନନ୍ଦନା
କହି ମଞ୍ଜିଅଛୁ ଶୋକବାରି ।୩।

କନକରୁ କଳଥିବା ତେଜ          କଳା କିପାଁ ପଡ଼ିଗଲା ଆଜ
କହଇ ଶ୍ରୀ ଜଗଦ୍ଦେବ ଦୁଃଖେ ପୋଡ଼ି ଅଛୁ
କିପାଁ ମୁଖ ଦ୍ୱିଜରାଜ ।୪।

---

## (୨)

### ରାଗ—ବସନ୍ତ—ଝିପଟା

ଖଞ୍ଜନ ଗଞ୍ଜନାକ୍ଷୀ ଅହା ଟେର ପ୍ରାଣସଖି ।
ନ ଘେନିଲୁ ତ ମୋ ବାଣୀ ରେ । ଘୋଷା ।

ଖମଣି ସୁତାତଟ, ବଟ ସେ ନନ୍ଦଗୃହ
ବୋଲି ନ ଥିଲୁ ଏହା ଜାଣି ରେ ।୧।

ଖୁରୂକେ ସେ କିଶୋର-ବର ତରଳତର
ଭୁଭଙ୍ଗୀ ଦିଏ ଦମ୍ଭ ହାଣି ରେ ।୨।

ଖଣ୍ଡି ବ ସତୀବ୍ରତ ବୋଲି ତା'ର ନେହାନ୍ତ—
ଦେବକୁ ବଶିଛୁ ସେ ଶାଣି ରେ ।୩।

ଖଟି ହରିଚନ୍ଦନ କହେ ନ ଜାଣୁ ଧନ,
ବୋଲି ମୋହନ ବଂଶୀପାଣି ରେ ।୪।

---

( ୩ )

### ରାଗ—ଗୁର୍ଜରୀ—ନିଃସାରୀ ତାଳ

ଗୁମାନ କରବା ବୃଥା ରେ ସଙ୍ଗିନୀ, ଗୁମାନ କରବା ବୃଥା
ଚନ୍ଦନ ନ ଥିବ ଘନଶ୍ୟାମ ବିନୁ ଖଣ୍ଡିବାକୁ ତାପବ୍ୟଥା । ଘୋଷା ।

ଗରବ ପରବ ଚନ୍ଦ୍ରମାକୁ ନିନ୍ଦେ
ଯେଉଁ ଶୀତମୁଖୀ ଦ୍ୟୁତ ।
ଗଲେ ଯିବ ପଛେ ଜୀବ, ଅନ୍ୟଥରେ
ଦେଖିବାକୁ ବଳେ ମନ ।୧।

ଗଗନ ମଣି-ତନୟାତଟଗୃହ
ବାରନ୍ତୁହ ଗୃହନେକ ।
ଛାଡ଼ ପରରମ୍ଭ ବିନା ସଖି, ଦମ୍ଭ
ଭଜିପାରେ କି ମୋ ଗାତ୍ର ।୨।

ଗୃହୁ ହେଲଣି ପିନ୍ଧିବା ସହୁବାସ
ବାସରେ ନ ରହେ ମନ ।
ଗୋଟିଏ ବାସର କଳପ ମଣଇଁ
ଦେଖି ବାସନ୍ତୀକ ସ୍ୱାନ୍ତ ।୩।

ଗରଳ ପରି ଉପବନ ପବନ
ଲଗୁଅଛି ମୋତେ ସଖି ।
ଗଲାଣି ଜୀବନ ଭଣେ ଜଗଦ୍ଦେବ
ଅଉ ନ ପାରେଁ ମୁଁ ରଖି ।୪।

---

( ୪ )

### ରାଗ—ପଞ୍ଚମ ବରାଡ଼ୀ—ଝୁଲା

ଘାରିହେଲ ପରି କାମ ଅମଳେ ଓ ଦିସ ଶ୍ୟାମ
ଓାମରିସ ମୁଖେ ନାହିଁ ହାସ ।
ଘଡ଼କୁ ଘଡ଼ି ତ ମୋହ ଭଜୁଅଛି ତୁମ୍ଭ ଦେହ
କି କାରଣେ କର ପରକାଶ

ହେ ଘନଶ୍ୟାମ,
ଘାଣ୍ଟି ହେଲ ମର ତୁମ୍ଭ ମନ
ଘର୍ମ ବିନ୍ଦୁ ବହେ ଅପଘନ;
ଘୋଷୁଛ ତ ପର ନବ-ବାଳା ନାମମନ୍ତ୍ର ଭାବ—
ବଣେ ତା' ମୁରତି କର ଧ୍ୟାନ ।୧।
ଘନକଦଳୀ କେ ଭୁଲୁ, ଶୁଭ୍ରାଙ୍ଗୀ ବିଭ୍ରମ ଦୃଷ୍ଟି—
କଟାକ୍ଷ ବିକ୍ଷଣେ ତୁମ୍ଭ ଚିତ୍ତ
ଘେନାଗଲା କି ହେ ହରି, ନୋହିଲେ କି ଏତେସବ
ଅଶକତ ହୋଇ ରହିଥାନ୍ତ
ହେ ଘନଶ୍ୟାମ,
ଘଟିବ କି ନାହିଁ ନ ବିଚାରି
ଘନନୀଳ ଶ୍ରୀଅଙ୍ଗ ମାଧୁରୀ ।
ଘୋର ବିରହ-ଦହନ, ଝାସେ କରାଇ ନିଜନ
ଦଣ୍ଡ କଳା ଶେଷ ଚନ୍ଦ୍ରପରି ହେ ।୨।
ଘୃତ କି ତରଳ ନୋହି, ଅନଳ ସମୀପେ ରହି—
ପାରେ ଏହା ନ ଜାଣେ କି ମୁହିଁ
ଘରେ ସୁଷ୍ଟୁ ହେଲେ ତାତ, କି ବୋଲିବେ ଟି କହତ
ବିଚାରି ନ କର କାହିଁପାଇଁ
ହେ ଘନଶ୍ୟାମ,
ଘେନ ମୋ ବାଣୀ ଯମୁନାଜଳ—
ଘାଟ ଦେଖ ଭବନକୁ ଚଳ;
ଘୋଷଣ ଅଛି ନ ଦଅ, ବ୍ରଜମହାରାଜ ପୁଅ
ହେଲେ ବୋଲି ମଦନ-ଚଞ୍ଚଳ ହେ ।୩।
ଘୋଟି ଅସୁଅଛି ଅତି, ତିମିର ସଙ୍କୁଳ ରାତି
ଜନାନ୍ତରେ କମ୍ପା ଅଛି ବସି
ଘଟ ପ୍ରତିଘଟ ସ୍ତନ, ସ୍ପୃହା ଗ୍ଲାନ ଏବେ ଘେନ
କରତଳେ କମନୀୟ ବଂଶୀ
ହେ ଘନଶ୍ୟାମ,
ଘୋର ଚନ୍ଦ୍ରସାର ମନୋହର
ଘନସାର ମିଶାଇ କିଶୋର;
ଘେନ ହୃଦୟରେ ଯୁବ ଛାପ ହୋଇଯିବ ହୃଦ
ଭନେ ସ୍ନେହେ ଜଗଦେବ ଧୀର ହେ ।୪।

( ୫ )

ରାଗ—ଢୋଡ଼ି ଜଙ୍ଗଲା-ଏକତାଲି

ନାହିଁ ଭ ସଙ୍ଗରେ ମୋର କାହିଁ ପ୍ରିୟସଖୀ ରେ । ଘୋଷା ।
ନବ ପଲ୍ଲବ ଅଧର, ନିକଟେ ଯେ ମନୋହର
ଗୀଳତନ୍ଦେ ଲୀଳା-ମଧୁକର ଅଙ୍କ ଲେଖି ରେ ।୧।
ନଟ ଚ୍ଛବିର ଖଞ୍ଜନ,—ନିରନ୍ଧ ଶୋଭା ଗଞ୍ଜନ
ନୟନାନ୍ତେ ଯେ ମୋହନ ଶର ଅଛି ରଖି ରେ ।୨।
ନୂଆ ଭ୍ରିର ଯେ କିଶୋରୀ ନାଗରଙ୍କ ଦମ୍ଭ ହର—
ନେବାର ବିଳାସ ଅଛି ମାଧୁରୀକି ଶିଖି ରେ ।୩।
ନିରୁପମ ଯା'ର ଗଦ, ନଳୀନଜ ମକରନ୍ଦ
ନିତି ଜଗନ୍ଧେ୦ ମତ୍ତ ଭୃଙ୍ଗ ପାରେ ଶୁଙ୍ଖି ରେ ।୪।

———

( ୬ )

ରାଗ—ବସନ୍ତ—ରୂପକ

ଚଞ୍ଚଳ ଦୃଗଞ୍ଚଳବତୀ, ତୋ ଯେନି ନୀଳନୀରଦ—
ତନୁ ତନୁ ଦଶେ ଗୋ । ଘୋଷା ।
ଚକୋର ପର ଭାର, ଚନ୍ଦ୍ର ନିରତେ ତୋର
ଶୁଚ୍ଛ ବଦନଚନ୍ଦ୍ରେ ରସେ ଗୋ । ୧ ।
ଚମକି ସ୍ମରଣରେ ଚଣ୍ଡ ନିବେଶି ତୋରେ
ଚକିତେ ଶୁହୁଁ ଚକ୍ରପାଶେ ଗୋ ।୨।
ଚରଣ କିଶଳୟ ଶୁଳବାକୁ ସଂଶୟ
ଶର ବିରହଭାର ବଶେ ଗୋ ।୩।
ଚନ୍ଦ୍ର ରୂପ ତୋହର ଚିତ୍ତ ପ୍ରତିମା ପର
ଶୁହିଁଲେ ହୃଦକୁ ଆଶ୍ୱାସେ ଗୋ ।୪।
ଶୁଚ୍ଛୁର୍ଯ୍ୟବତୀ ତୋଷେ ଚନ୍ଦ୍ରକୂଳ ପାଶେ
ଚଳ ତୁ ଜଗବେ ଭାଷେ ଗୋ ।୫।

———

( ୭ )

ରାଗ—ଶଙ୍କରାଭରଣ—ଅଠତାଳି

ଛାଡ଼ରେ ସଖି, ମନରୁ ତ୍ରାସ ରେ,
ଛାର ମାର ଅଜ କରବ କାସ ରେ । ଘୋଷା ।

ଛାଇପର ରେ ତୋନତ ଅନୁସର
ଛାମୁରେ ଥିବ ବଲ୍ଲଭ ତୋହର ।୧।

ଛନ୍ଦ ବାହୁ ଜାନୁ ଯୁଗଳେ ତୋ'ତେ
ଛାତିପରେ ଭିଡ଼ି ମାତିବ ରତେ ।୨।

ଛାଡ଼ିଗଲେ ଭିଡ଼ିବା'ର ତୋହର
ଛଳ ନ କର ବୁଝେ ଗ୍ରାମାବର ।୩।

ଛଟଚକ୍ଷୀ ନବନାଗସ୍ୱରାଜ
ଛଡ଼ାଇବ କି ଆଜ ତୋତେ ଲଜ ।୪।

ଛପି ଗଲାନି ହୃଦାକର ଦ୍ୟୁତ
ଛଦ୍ମ ନୁହଁ ଜଗଦେବ ଭାରତୀ ।୫।

---

( ୮ )

ରାଗ—ମୁଖାରୀ—ଏକତାଳି

ଜାଣିବୁ ରେ, ଦମ୍ଭେ ହାଣିବୁ ରେ । ଘୋଷା ।

ଜବାଜାତ ଅଧରୀ—ଅଭିସାରକୁ କର
ମଦନେ ମତ୍ତ-କରିରାଜ ଗମନ ହର ।୧।

ଜଳଜ ରମ୍ୟ ମୁଖୀ— ସ୍ମିତ ଅଧରେ ରଞ୍ଜି
ଭୂରୁ ଗୃପରେ ସଖି ନେତ୍ରାନ୍ତ ଶର ଯୋଖି ।୨।

ଜୀବେଶ ଅଙ୍କେ ଜଡ଼ି—ତୋର ଶ୍ରୀହସ୍ତ ବୁଡ଼ି
ବସିବା ପର ବୁଡ଼ି—ନବଡ଼ ବନ୍ଧେ ଭିଡ଼ି ।୩।

ଯତନେ ନାସାମଣି— ଝୁଲେ ନଗ୍ନଇ ବେଣୀ
କୁସୁମଧନୁ ପାଣି—ଭଣ୍ଡାରୁ ରସ ଛାଣି ।୪।

ଜଗଦ୍ଦେବ ଯେ ଭ୍ରଷ୍ଟି—ଭଲେ ଛନ୍ଦୁରେ ମିଶି
ସଖି ତୁ ଅଜ ନିଶୀ—ନବ ସୁରତେ ରସି ।୫।

———

( ୯ )

ରାଗ—କାମୋଦୀ—ଆଡ଼ତାଳ

ଝୁଲୁଥିବ ସେ କାମ, ଅମଳ ବର୍ଣ୍ଣେ ଶ୍ୟାମ
ସୁନ୍ଦର ତୋର ମୁଖ ଶଶୀଙ୍କ ରେ । ଘୋଷା ।
ଝମ ଝମ ବାଜିବା—ଭୂଷଣ ସଜ ଜବା—
ଅଧର ସମରପ ସଖୀଙ୍କ ରେ ।୧।
ଝସ କେତନ ଶର—କରୁଥିବ ପ୍ରହାର
ମରମେ ନିକୁଞ୍ଜବିଳାସୀଙ୍କ ରେ ।୨।
ଝର ସଜାଡ଼ି ରଙ୍ଗି—ଅଛୁ ରେ ପ୍ରିୟସଙ୍ଗି ।
ଗଣ୍ଡ ଉପରେ ଦେବୁ ଖୋସିକ ରେ ।୩।
ଝୀନ ବସନା କାନ୍ତ—ପାଶ ତେଜି ଏମନ୍ତ
ସମୟେ ଏକାନ୍ତରେ ବସି କି ରେ ? ।୪।
ଝଟତି ଅସ ଭ୍ରଟେ—ଜଗଦ୍ଦେବ ହରଷେ
ପ୍ରିୟାପାଶେ ପ୍ରହାଅ ନିଶୀଙ୍କ ରେ ।୫।

———

( ୧୦ )

ରାଗ—ପୁନ୍ନାଗ—ଯତି

ଅସ ଅସ ସଖି, ଯିବା ବାସକୁ ଗୋ । ଘୋଷା ।
ଅଙ୍ଗ ବହିଲେ ଏ ବନେ—ଅସତୀ ବୋଲିବଟି ଜନେ
ଅବଶ୍ୟ କରିବେ ଉପହାସକୁ ଗୋ ।୧।
ଅଖିଳ ଲାବଣ୍ୟଶୀର—ଅଙ୍କ ଆସିବେ ହର
ଅଚ୍ଛିଣ ଭଜିଲ ପରକାଶକୁ ଗୋ ।୨।

ଅମ୍ଭ ଅବସ୍ଥା ସଜନୀ—ଅଗରେ ରଖି ପଦ୍ମନୀ
ଅଧରେ ଧରନ୍ତି ଦରହାସକୁ ଟୋ ।୩।
ଅନ ନାଗରୀକୁ ଧର—ଅରମ୍ଭିଲେ ନିଷ୍ଟେ ହର
ଅନଙ୍ଗ ରଙ୍ଗରେ ଅଭିଳାଷକୁ ଟୋ ।୪।
ଅଣ୍ଠି କହେ ଜଗଦ୍ଦେବ—ଅଜ୍ କା ସତେ ଅସିବ
ଅଭିନବ କୁଞ୍ଜବନ-ରାସକୁ ବଶା ।୫।

———

( ୧୧ )

ରାଗ—ଢୋଡ଼ି ଜଙ୍ଗଲ—ନିଃସାରୁ ତାଳ

ଟାଳିଲ ଭେ ମୋ ସୁଖ ମୂଳକୁ
ଚନ୍ଦ୍ରମୁଖ ରସି ରହିଲେ କାହା ପାଶେ । ଘୋଷା ।
ଟଙ୍କାର ସ୍ମରଶର, ବାଜେ ମରମେ ମୋର
ବାରବାର ଅତି ନିରାଶେ ।୧।
ଟେକାଇ ଶୁଭ୍ରାଙ୍ଗିନୀ,—ଚନ୍ଦ୍ରକୁଳେ ସଙ୍ଗିନୀ
ରମିଲ ଶ୍ୟାମରେ ହରଷେ ।୨।
ଟିକଏ ନାହିଁ ଦୋଷ, କାହିଁକି ଧର ରୋଷ
ହର ନଇଲେ ମୋର ପାଶେ ।୩।
ଟାଣି ନେଇ ମୋ ମତି, ଅନ ରାମାରେ ପ୍ରୀତି—
କଲେ ଶ୍ରୀ ଜଗଦ୍ଦେବ ଭାଷେ ।୪।

———

( ୧୨ )

ରାଗ—ପୂରବୀ—ଏକତାଳି

ଠଭରବ ମୁଁ କପଟ ଅଟଗୋ ସୁନାଗୋରୀ,
ଠକପଣ ତ ମୋଠାରେ ଅଚଇଲେ ହର । ଘୋଷା ।
ଠ ବର୍ତ୍ତୁଳ ଚନ୍ଦ୍ରମା ମଣ୍ଡଳ ଦେଖ ସଖି
ହୃଦୟ ଦମ୍ଭକୁ ମୋର ଦେଉନାହିଁ ରଖି ।୧।

ଫୁଲହୋଇ ପୁଷ୍ପଙ୍କରେ ମଧୁକର କୁଳ
        ମଧୁର ନିନାଦେ ମୋତେ କରନ୍ତି ଆକୁଳ ।୨।
ଠାବେ ଠାବେ ମନୋହର କୁସୁମିତ କୁଞ୍ଜ
        କରାଉଛନ୍ତି ମୋତେ ମୋହ ବଢ଼ାଇ ନୀରଜ ।୩।
ଟିକି ଭଣ୍ଡ ପ୍ରିୟ ସଜନୀରେ ପିକଶ୍ରେଣୀ
        ଦହଇ ମୋ ହୃଦ ଶୀଘ୍ର ଜଗଦ୍ଦେବ ଭଣି ।୪।

---

( ୧୩ )

ରାଗ— କାମୋଦୀ—ଏକତାଳି

ତାଙ୍କେ ସଖୀ ନ ଶୁଣେ ଶ୍ୟାମ କାହିଁକି ?
        ତାଙ୍କମଧ୍ୟରେ ଅଜ ମନେ ନାହିଁକି । ଘୋଷା ।
ତହିଁରୁ ବୋଲି ଆମ୍ଭେ, ଲୁଚି ତ ସିନା ତୁମ୍ଭେ
        ଆମ୍ଭର ଦମ୍ଭ ବଢ଼ିବାର ପାଇଁକି ।୧।
ତାଳମ୍ବ ସୁଦର୍ଶନା, ଡ଼ରବ ତୁଚ୍ଛା ସିନା
        ଉରେ ଘରେ ଯେ ଦେଖି ନିଜ ଗୁଇଁକି ।୨।
ତଡାଇ ଏତେ ସର, କରୁଛି ଯାହା ହବ
        କାଲି ପାରିବ ସଖୀ ମୁଖ ଚାହିଁ କି ।୩।
ଡମ୍ବରୁମଧ୍ୟା ଯେବେ, ମାନିନୀ ହେବ ତେବେ
        ଜଗଦ୍ଦେବ ପାରିବ ସମଝାଇ କି ।୪।

---

( ୧୪ )

ରାଗ—କେଦାର—ଝିପଠା

ଛାଲେ ଜୀବନ ନେବ ସ୍ମର ହଟିଲି ରେ । ଘୋଷା ।
ଠକ୍‌କା ବାଜିବ କି ବ୍ରଜେ, ଅସତୀ ବୋଲି ସହଜେ
        ପ୍ରାଚୀଦିଗୁଁ ଅନ୍ଧକାର ଛୁଟିଲି ରେ ।୧।

ତୋକବାକୁ ବଷ ଶତ୍ରୁ, ହେଜନ୍ତୁ ରେ ପ୍ରାଣମିତ
ଦେଖ ଅରବିନ୍ଦ ଜଳେ ଫୁଟିଲ୍ଲ ରେ ।୨।
ତାଳଦେଇ ମୋର ମୋଦ,—ନୀର ଘଟକୁ ବିପଦ
ମହାଭୟପ୍ରଦ ହୋଇ ଘୋଟିଲ୍ଲ ରେ ।୩।
ଚଳ ପଢ଼ିବ ଏଥର, ଭୃଣେ ଜଗଦ୍ଦେବ ଗୀର
ଶଠ ପଣ କରି ଶ୍ୟାମ ଜୁଟିଲ୍ଲ ରେ ।୪।

---

( ୧୪ )

ରାଗ—କେଦାର—ରୂପକତାଳ

ଅଭ୍ଭ ରାଜ ରାସେ ଭର ରେ । ଘୋଷା ।
ଅତସୀ ଶ୍ୟାମ, ହେଜ ସକାମ
ପିଇ ତା' ଗୃହ୍ଣୁ ବିମ୍ବାଧର ରେ
ଅନଙ୍ଗାହତେ, ପ୍ରିୟ ହୃଦାନ୍ତେ
ଖେଳୁ ତୋ ମଣିମୟ ହାର ରେ ।୨।
ଅନାଦଭର, କରୁ କାନ୍ତର
ତୋ ଘନ ପୀନ ପୟୋଧର ରେ ।୩।
ଅରେ କଶୋରି, ହେଜ ସେ ହରି
ତୋ ମୁଖଚନ୍ଦ୍ର ଚକୋର ରେ ।୪।
ଅତ ହରଷେ, ଭାବାବଶେ
ଭାଷଇ ଜଗଦ୍ଦେବ ଗୀର ରେ ।୫।

---

( ୧୬ )

ରାଗ—ହିଂଙ୍ଗୋଟି— ଅଦାତାଳ

ତମାଳ ନୀଳତନୁ
ତାପ ନ ଯାଏ ମୋ ସଖୀ ମନୁଁ ହେ । ଘୋଷା ।
ତରଣୀକାତଟ ବନୁ ତୁମ୍ଭଙ୍କ ଶ୍ରୀହରି
ଖୋଜ ଖୋଜ ହରିଣାକ୍ଷୀ ଫେରିପିବା ଦିନୁ ।୧।

ଉରଜରେ ନୟନୁ ଢେଳୁଅଛୁ ନିରନ୍ତରେ
ନୀରଧାର ବରଷିଲା ପରି ଘନୁ ।୨।
ଭୀଷଣ ବାଣ ଅତନୁ ତାମରସମୁଖୀ—
ମରମକୁ ଯୋଖି ବଛେ ଫୁଲଧନୁ ।୩।
ତାପଦଏ ହିମଭାନୁ ତନୁରେ ଫୋଟକା—
ହେଉଅଛୁ ଏକା ଘନସାର ବିଲେପନୁ ।୪।
ତୁମ୍ଭ ଅବଲୋକନୁ ଭ୍ରଷ୍ଟେ ଜଗଦ୍ଦେବ ତା'ର
ପ୍ରାଣ ଯିବ ଶ୍ରୀଅଙ୍ଗଟି ହେଲା ତନୁ ।୫।

---

( ୧୭ )

ରାଗ—ତୋଡ଼ି—ଆଠତାଳି

ଥିଲେ ଅପରାଧ ମୋର,
ଥରେ କ୍ଷମା ନକରନ୍ତ କି ସେ ଶ୍ୟାମାବର । ଘୋଷା ।
ଥଳ କମଳ ବିଜୟୀ ଚରଣେ ମୁଁ ତା'ର
ଲଷା ଲେଖୁଥିବ ନିତ୍ତ କଲେ ଅଙ୍ଗୀକାର ।୧।
ଥିବ ଖଟି ପାଶେ ତା'ର ମରଜିକି ଜାଣି
କଲେ ଅନୁକମ୍ପା ମୋରେ ସୁରସିକାମଣି ।୨।
ଥାଉ ବା ନ ଥାଉ ମୋହୋଠାରେ ତା' କରୁଣା
ମୋ ମନରେ ଭାବୁଛି ତ ମୁଁ ତାହାର କିଣା ।୩।
ଥିବ ଗମନାକୁ ମୋର ହୃଦୟରେ ଦ୍ୱାର—
କରିବାକୁ ସହଚରୀ ଉପାୟ ବିସ୍ତର ।୪।
ଥାଏ ଯା' ମୋଠାରେ ସଖି ଟଳେ ଦୟା ଡୋର
କହିବାକୁ ଅଛି କିସ ଜଗଦ୍ଦେବଙ୍କର ।୫।

---

(୧୮)

ରାଗ—ପୂରବୀ—ଏକତାଳି

ଦୟା ନ କଲେହେଁ ଦାରୁଣ ହୃଦୟ ସେହୁ
ଯେତେ ଯେତେ ଦୁଃଖ ପୂର୍ଣ୍ଣଚନ୍ଦ୍ରମୁଖ ପାଶୋରିବ ସଖି କେହୁ । ଘୋଷା ।
ଦଳିତ ଅଞ୍ଜନ-ଗଞ୍ଜନ ବେଣୀକି ଜଗି ନିତ ତା' ମରଜି
ଦର୍ପିଣୀ କରି ମୁଁ କେତେ ଆୟାସରେ କରାଇଥିଲି ରାଜି ।୧।
ଦ୍ୟୁମଣିତନୟା ତଟର ନିକଟ ନିକୁଞ୍ଜ ସଙ୍କେତ କରି
ଦର ବିକଶିତ ଅରବିନ୍ଦ ହେବା ପାଏ ଜଗିଲି କିଶୋରୀ ।୨।
ଦେଇ ବିଶୋରି କହିବା ଗୀର୍ କେଉଁ କିଶୋରୀ ସଙ୍କେତ ବଶି
ଦୋଷ ବିନା ଦୁଃଖୀ କରାଇ ମୋ ସଖୀ ଦିବ୍ୟବେଶ କରେ ବାସି ।୩।
ଦଣ୍ଡୁନାହିଁ ମୋତେ ଉପାୟ କହୁଁତେ ଶ୍ରୀହରିଚନ୍ଦନ ଭାଷେ
ଦୁଃଖ ସହଚରୀ ଚତ୍ରେ ଅଛୁ ମୂଢ଼ ନ କହିବି ତାର ପାଶେ ।୪।

— — —

(୧୯)

ରାଗ—ବଙ୍ଗଳା ଶ୍ରୀ—ଏକତାଳି

ଧରଣୀ-ମଣ୍ଡନାକୁ ତୁ କହ ସହଚରୀ ଗୋ
ଧୀର ମୋଠାରେ ନିର୍ଗୁଣ ନ କହିବା ପର ଗୋ । ଘୋଷା ।
ଧଇଲେ ହେଲେହେଁ କଣ୍ଠତଟରେ ଜୀବନ ଗୋ
ଚାର ତୃଷାତୁରେ ସେ ଅସ୍ଥିର କର ଚଉ ଗୋ
ଧରାଧର ଅଭିନବ ଜଳଦ
ଧାରା ପାନ ବିହୀନରେ ଗୃତକ
ଧରା ସରଲେ କି ହୁଏ କସ୍ତୁକ—
ବିଚକ୍ଷଣୀ କି ନ କରେ ବିବେକ ଗୋ ।୧।
ଧରକି ବିନା ଇନ୍ଦୁ କୁମୁଦ ଆନନ୍ଦ ଗୋ
ପ୍ରଭାକର ବିନା ବିକାଶେ କି ଅରବିନ୍ଦ ଗୋ,
ବରହୀ କି ନବ ଜଳଦ ଘନ
ବିହୀନେ ନର୍ତ୍ତଇ ପାରେ କି ଅନ

ସେ ପରରେ ସେ କିଶୋର ରତନ—

ବିସ୍ମରିନ ଅଟନ ବଟେ କି ମୋ ମନ ଗୋ ।୨।

ଧରଣୀଶୋଭନୀ ମୋଠାରୁ ତେଜିଲେ କୃପାକୁ ଗୋ

ଧରି ପାରିବି ଚିତ୍ତେ ପରାଣି କି

ପ୍ରୀତି ଆଶା କରି ଶଶ ଶଶୀକି

ତେଜିବାର ଯିବ ଅଳି ସରସିଜ,

ବନ୍ଧୁ ତାକୁ ବାଧୁ ଦେଲ କଳଙ୍କି

ନ ଭାବେ କି ସେ ତ ଅଟେ ବିବେକୀ ଗୋ ।୩।

ଧରାରେ ତା' ସମ ନାହିଁ ବିଚକ୍ଷଣା ପଣେ ଗୋ

କିପାଁ ମୋରେ ମାନ କରିଅଛୁ ଅକାରଣେ ଗୋ

ନବଘନେ ବିଜୁଳିଲତା ସଦୃଶେ,

ବିଳସ ମୋ ଅଙ୍ଗେ ଅତି ହରଷେ

ଦେଖି ବସନ୍ତ ଶୋଭା ପରକାଶେ

ସପ୍ରେମରେ ହରିଚନ୍ଦନ ଭାଷେ ।୪।

---

( ୬୦ )

ରାଗ—ପିଲୁ—ଝମ୍ପା

ନାହିଁ ନ କର ନୀରଜ ମୁଖୀ ରେ ।ଘୋଷା ।

ନପାରି ମୁଁ ପାଶୋରି, ନିରତେ ସେ କିଶୋରୀ—

ମୂରତି ନେତ୍ରେ ଅଛୁ ରଖି ରେ ।୧।

ନବ ନାଗରୀ ମୋର, ନୋହିଲେ ହୃଦେ ହାର

ଦେବି ମୁଁ ଜୀବନ ଉପେକ୍ଷି ରେ ।୨।

ନିର୍ଦ୍ଦୟ ପାପ ସ୍ମର, ସନ୍ଧି ବାନ୍ଧଇ ଶର

ନିରତେ ମରମକୁ ଲକ୍ଷି ରେ ।୩।

ନବୀନା ରେ ବିନୟ,—କରି ଏବେ ହୃଦୟ

ଅର୍ପିଦିଅ ତୋ ପ୍ରିୟସଖୀ ରେ । ୪ ।

ନାହିଁ ତ ମୋର ଆନ, ନାଗରୀ ରସେ ମନ

ଏଥିକୁ ଜଗଦେବ ସାକ୍ଷୀ ରେ ।୫।

---

( ୬୧ )

### ରାଗ—ବିଭାସ—ଏକତାଳି

ପ୍ରୀତି କରି କାହାପାଶେ ପୁହାଇଲ ନିଶା ତୋଷେ । ଘୋଷା ।
ପରିଣତ ବିମ୍ବ ଅଧରେ ତାହାର ରଦନ କ୍ଷତ ବିକାଶେ
ପଲ୍ଲବ-ବିଜୟୀ-କର କାହା କୁଚ କୁଙ୍କୁମେ ଅଙ୍କିତ ଦିଶେ ।୧।
ଚଢ଼ି ତାଂ ଚରଣେ ଶିଖଣ୍ଡ ମୁକୁଟ ରଙ୍ଗ କଲ ଲକ୍ଷା ରସେ
ପରିରମ୍ଭ କଲ ତାହାର ବଳୟ-ଚିହ୍ନ ଦିଶେ ବେକପାଶେ ।୨।
ପାଲଟି କରି କେଉଁ ସହଚରୀର ଚିତ୍ତକୁ ସନ୍ତୁଷ୍ଟେ ବାସେ
ପିନ୍ଧିଅଛ ନିଜ କଟିତଟେ ଅନ୍ୟ ଗୃହିଁକି ସୁନ୍ଦର ଦିଶେ ।୩।
ପାନବୋଳ ଗଣ୍ଡେ, ଲଲାଟେ ସିନ୍ଦୂର ଲାଗି ତ ଅଛି ବିଶେଷେ
ପଚ୍ଛୁଅ ନକର ଚିତ୍ତରେ ତୁମ୍ଭର ଜନାପବାଦକୁ ଲେଶେ ।୪।
ପ୍ରତି ଅଙ୍ଗ ଯାକ କି ଶୋଭା ଦିଶଇ କରଜ-କ୍ଷତ ବିଳାସେ
ପ୍ରେମଭରେ ହରିଚନ୍ଦନ ଭାବଇ ସେ ରୂପ ନିଜ ମାନସେ ।୫।

---

( ୬୨ )

### ରାଗ—ନଟ—ଏକତାଳି

ଫୁଲଶରେ ନ ଯାଂ ମୋତେ ସୁକୁମାରୀ ମାରି ରେ । ଘୋଷା ।
ଫେଡ଼ି କହୁଛି ମୁଁ ସତେ, ଯେନ ମୋ ବିନୟ ଶତେ
ବରନେ ନ ପାରି ତୋତେ, ରହିଲି ମୁଁ ହାରି ରେ ।୧।
ଫିଟାଇ ସଜନୀ ମାନ—ଗ୍ରନ୍ଥିକି ସମାରତନ
ମୋତେ ଏ ବିପଦୁଁ ବେଗେ ନିଅ ତୁ ଉଦ୍ଧାରି ରେ ।୨।
ଫନ୍ଦା କରିଛି ମୁଁ ତୋତେ, ନାହିଁ ତୋ ବିନା ଜଗତେ
ମୋତେ କାମ ପାରିବାନ୍ତି, କରିବାକୁ ପାରିରେ ।୩।
ଫୁଟାଇ ନ ଦେଇ ତମ,—ବାଣୀରେ ମୋର ମରମ
ଦେଖାଅ ସଖୀକି ବାରେ ଉପାୟ ବିଗୁରି ରେ ।୪।
ଫରମାସ ଅଜ୍ଞା ବେଶେ, ଶ୍ରୀ ହରିଚନ୍ଦନ ଭାଷେ
[illegible] କେ ଅଛି ମୋର ବିନା ରେ ତମା ତୋହରି ରେ ।୫।

---

( ୨୩ )

ରାଗ—କଲ୍ୟାଣ—ଅଡ଼ତାଳ

ବିମ୍ବାଧରୀ ବସି କୁଞ୍ଜେ ଲୋଡ଼େ ତୋତେ ହରି । ଘୋଷା ।
ବିଜପରି ମଣେ ଶ୍ରୀଅଙ୍ଗ ସୁବେଶ
ବିଷଧର ପରି ଛାଡ଼ଇ ନିଃଶ୍ୱାସ,
ବିଧୁ କିରଣକୁ ହୁଡ଼ୁଅଛି ତ୍ରାସ
ପ୍ରଭାକର ପ୍ରଭାପରି ।୧।

ବଳ ପଡ଼ିଲାଣି ବିରହ ସନ୍ତାପ
ବିକଳେ ଭାବୁଛି ତୋହର ସ୍ୱରୂପ
ବରଜ ତା'ଠାରେ କରିଥିବା କୋପ
ବାରେ କରୁଣାକୁ ଧରି ।୨।

ବର୍ଣ୍ଣି କାନ୍ତି ଶେଜେ ସୁଧାକର ରଙ୍ଗ
ବାସନ୍ତୀକ ପୁଷ୍ପେ ମଣ୍ଡି କେଳିକୁଞ୍ଜ
ବିନ୍ଧୁଅଛି ତାକୁ ଶର ମନସିଜ
ବିଶେଷରେ କୋପ ଧରି ।୩।

ବେଗେ ଆସ ଆସ ଆସ ରେ କିଶୋରି ।
ବିହରି ମୋ ସଙ୍ଗେ ବୃନ୍ଦାବନ ହେରି
ବୋଲି ଡାକୁଅଛି ଶୁଣ ସୁକୁମାରୀ
ବଂଶୀ ତୋ ନାମକୁ ଧରି ।୪।

ବୋଲେ ଜଗଦ୍ଦେବ ତେଜ ସଖି ମାନ
ବ୍ରଜକିଶୋର ତୋ ଚରଣ ମଣ୍ଡନ
ବାଜିବା ନୂପୁର ଶବଦକୁ କର୍ଣ୍ଣ—
ଦେଇ ଏକା ଅଛି ଡେରି ।୫।

---

( ୨୪ )

ରାଗ—କେଦାର—ଝୁଲା

ଭୁଲନା ସଖି ତୁ ତା' ଗୀରେ
କଲ ନୁହେଁ ପ୍ରୀତି ଶ୍ୟାମ ସଙ୍ଗରେ । ଘୋଷା ।

ଭ୍ରମିଗଲି ସିନା ସଜନୀ, କପଟ ବାଣୀ ସତକରି ମଣି
କରୁ ପଛେ ବଂଶୀଧ୍ୱନି,
ନ କହୁ ସହୁ, ରହ ହୋଇ ତୁନି ।୧।
ଭ୍ରାନ୍ତି ନାହିଁ ମଦନଶରେ, ଅଜ୍ଞ ଷଣ-ଭ୍ରବକୁ ମୁଁ ନ ପାରେ
ବାଡ଼ିକ ଛ ତା' ଶତ୍ର ବାରେ,
ରଖିଅଛୁ ହୃଦେ ବର ମୁଁ ଗାରେ ।୨।
ଭାବବଶେ ଯାହାର ପାଶେ, କାଲି ରହିଲ ସେ କିଶୋର ବାସେ
ସଙ୍ଗେ ତାର ସୁରତ ରସେ
ମାତୁ ଯା' ତୁ କହୁଦଅ ସରସେ ।୩।
ଭୁଙ୍ଗପରି ଶ୍ୟାମ ସ୍ୱଭାବ, ନେବ କୁଳବଧୂଙ୍କର ସେ ଜୀବ
ନିଶ୍ଚୟ ମୋ କଥାକୁ ଭାବ
ଭଣେ ହରିଚନ୍ଦନ ଜଗଦ୍ଦେବ ।୪।

---

( ୨୪ )

ରାଗ—କାମୋଦୀ—ଏକତାଳି

ମଦନ୍କିକ ଗୃହିଁ ତୋର ନିଶ୍ଚେ ନାହିଁ କଲିଟି । ଘୋଷା ।
ମଦନରୁ ମନୋହର—ଅଟେ ଶ୍ୟାମ କଳେବର
ଦେଖି ସଖି, ତୁ ଅବଶ୍ୟ ପଛେ ଯିବୁ ଭୁଲିଟି ।୧।
ମାନ ନ ରଖିବ ତୋର—ନାଚବ ଯେବେ ତାହାର
ନାଗରୀଙ୍କ ଧୃତି ହର ଗୃହୁ ଚଳି ବଲ୍ଲୀଟି ।୨।
ମହା ଅବିବେକୀ ପର—ତୋ ବୋଲରେ ନ ବଗୁର
ସୁକୃତ ପ୍ରାପତ ନିଧି ପାଦେ ପିଙ୍ଗି ଦେଲିଟି ।୩।
ପାନେ କରବୁ ନିଷେଧ—ପଛେ ନୋହିବ ସେ ବୋଧ
ଯେବେ ବୁଝିଲେ ତୁ କାମସିନ୍ଧୁରେ ମୁଁ ମଲିଟି ।୪।
ମନ ମେ ହନ ମନ୍ତ୍ରର—ଭଣେ ଜଗଦ୍ଦେବ ଗୀର
ତା'ର ଲୀଳାରେ ଭୋଳାକୁ ଖେଳାଇ ମୁଁ ଦେଲିଟି ।୫।

---

( ୨୭ )

ରାଗ—କାମୋଦୀ—ଅଠତାଳ

ଯଥାର୍ଥ କର ଶ୍ୟାମ କହୁଛୁ ହେ,
କେମାର ଅଙ୍ଗୀକାର ନୋହୁଛୁ ହେ । ଘୋଷା ।
ଯାମକୁ ଯାମ ତାମରସ ନେତ୍ରାକୁ କାମ
ବାନ୍ଧ ମରମେ ଶର ମୋହୁଛୁ ହେ ।
ତେମନ୍ତେ ହେଲେ ଯାହା କରଅଛୁ ସୁଦେହା—
ତଢେ ନାବଢେ ଶଙ୍କା ରହୁଛୁ ହେ ।୧।

ଯନ୍ତ୍ରକଲେ ନ ରହୁ ନିରତେ ପ୍ରିୟସଖୀ—
ନୟନୁ ଅଶ୍ରୁଧାର ବହୁଛୁ ହେ
ଯାବକ ରସ ଗୁରୁ ଚରଣ ପଙ୍କଜରୁ
ପଡ଼ିବା ପ୍ରବାହରେ ଧୋଉଛୁ ହେ ।୨।

ଯାବତ ସୁବ୍ରଜନୟ କହିଲେ ମୁଁ ସଦୟ
ନ କର ତୁନି ହୋଇ ରହୁଛୁ ହେ
ନବ ନଳିନୀ ଦଳେ ପହୁଡ଼ୁଛୁ ବିକଳେ
ନିଃଶ୍ୱାସ ମାନ ତାର ବହୁଛୁ ହେ ।୩।

ଯାମିନୀଶ, ବସନ୍ତ, ମଧୁପ, ପରଭୃତ
ଲୁତ ଜାତ ସନ୍ତାପ ସହୁଛୁ ହେ
ନବ ପଲ୍ଲବ କରେ ଅବିରତେ ଶୋକରେ
ଗୃହୁ ଖଣ୍ଡମଣ୍ଡଳ ବହୁଛୁ ହେ ।୪।

ଯାତନା ଦେଇ କୁମ୍ଭଜନ୍ମ-ସ୍ତନାକୁ ତୁମ୍ଭ
ବିରହ ହୁତବହ ଦହୁଛୁ ହେ
ଜଗଦ୍ଦେବ ଭାଷଇ ତାର ସହାୟ ହୋଇ
ମଳୟ ଗନ୍ଧବହ ବହୁଛୁ ହେ ।୫।

———

( ୨୭ )

## ରାଗ—ସୁରଠ—ଝୁଲ

ରାଜା ନ କଲ୍ଲ ଅଙ୍କ ରମଣୀବନ୍ଥ
ଏଣିକି ତୁମ୍ଭେ ତୁମ୍ଭ ଉପାୟ କର । ଘୋଷା ।
ରୋଷ ତା' ମନୁ ଯେବେ ପାରିବ ହର
ଗମନ କର ଯହିଁ ଅଛି କିଶୋରୀ ।୧।
ରାଧାର ମନେ ଅଛି ଦୁର୍ଜ୍ଜୟମାନ
ପାରିଲେ ନାଶ, କହ ଗୁଟି ବଚନ ।୨।
ରସିକା ଅମ୍ଭ ବାଣୀ ସତ ନ ଘେନେ
ଲଭିଛି ଯେଉଁ ତାପ ରଖିଛି ମନେ ।୩।
ରମା ତୁମ୍ଭର ପୂର୍ଣ୍ଣଚନ୍ଦ୍ର ବଦନ
ଦେଖିଲେ ଅବା ମନୁ ତେଜିବ ମାନ ।୪।
ରଣକୁ ମୋର ହେଲେ ପ୍ରାଣ ସଙ୍ଗାତ
ଭଣଇ ଜଗଦ୍ଦେବ ନ କଲ୍ଲ ସତ ।୫।

———

( ୨୮ )

## ରାଗ—ବିହାଗ—ଝୁଲ

ଲାବଣ୍ୟବତୀ ଲାଜ ଧରୁ ଅଜ ମତରେ । ଘୋଷା ।
ଲଳିତ ଅଧର ଲେଖୁ ନଖେ ଧରି
ଶରଦ ଚନ୍ଦ୍ରମା ମୁଖ ପୋଛ ରେ ।୧।
ଲେଖିବା ବିନୟ କଲ୍ଲ କି ହୃଦୟ
ନବୀନା ତୋ ବିନା କେ ମୋ ଗତି ରେ ।୨।
ଲାଗି କରି ମାର ହୃଦୟକୁ ଶର
ବିନ୍ଧେ ଅତି କୋପେ ରତି ପତି ରେ ।୩।
ଲତା ରମ୍ୟକୁଞ୍ଜ ମଣ୍ଡ ପଦକଞ୍ଜ
ଖଞ୍ଜନାକ୍ଷୀ ଘେନ ମୋ ବିନତିରେ ।୪।
ଲଭିଅ ବିରହ ଜାତ ହୁତବହ
ଜଗଦ୍ଦେବ କହେ ଭାରତୀରେ ।୫।

———

( ୨୯ )

ରାଗ—ଭୋଡ଼—ଝୁଲାଳ

ବନ୍ଧୁ ମୋ ହୃଦୟ ହାର—ବନ୍ଧୁକ ଗୃହ୍ଛ ଅଧର
ବୃଥାରେ ନ କର ମାନ—ବଦାଣ୍ଟ ଚନ୍ଦ୍ରବଦନ । ଘୋଷା ।
ବହଇ ମଳୟାନଳ—ବରହୀ ହୃଦ ଅକୁଳ
କରନ୍ତି ଅତି କୋମଳ—ଧ୍ୱନିରେ କୋକିଳକୁଳ
କିରଣରେ ଧରାତଳ—କରି କେଡ଼େ ସୁମଞ୍ଜୁଳ
ଗଗନେ ହୋଇ ନିର୍ମଳ—ଉଦୟ ଚନ୍ଦ୍ରମଣ୍ଡଳ ।୧।
ବନଜୟନେ ବନ—ରଖି ରମଣୀ ରତନ
କର ପଲ୍ଲବେ ବଦନ—କମଳ କରି ଧିଆନ
ନ କହୁ ମୋତେ ବଚନ—ଅଧର ସ୍ମିତ-ବିହୀନ
ଆଜ ତ ଏଡ଼େ ବିମନ—କିପାଁରେ ଜୀବଜୀବନ ।୨।
ବନ୍ଧୁ, ତୋ ଗୁମାନ ଆଜ—ଦେଖି ଧନୁଗୁଁଣ ମାଜ
ମରମକୁ ଖୋଜ ଖୋଜ—ବିନ୍ଧେ ସ୍ମର ଶରରାଜ
ମୋ ହୃଦରେ ଅଣ୍ଡେ ବାଜ—ଯିବା ସକାଶରୁ ମଜ୍ଜି—
ଗଲାଣି ମୋ ଧୃତି ହଜ—ନୋହୁଛୁ ତୋ କିପାଁ ଗ୍ରାଜ ।୩।
ବଦନ ଗୃହ୍ଣ ଅମ୍ବୁଜ—କର ତୁ ପ୍ରସନ୍ନ ଆଜ
ଦେଖି ପୂର୍ଣ୍ଣ ଦ୍ୱିଜରାଜ—ପାଉ ଅତିଶୟ ଲାଜ
ମୋଠାରୁ ଗୁମାନ ତେଜ—ଅଭିରଣେ ତନୁ ସାଜ
ମୋର ଅଙ୍କରେ ବିରାଜ—ଭଣେ ବସୁଦ୍ଧର୍ତ ରାଜ ।୪।

———

( ୩୦ )

ରାଗ—ବାହାର—ଏକତାଳ

ଶ୍ୟାମଳ-ତନୁକୁ ପଗ୍ରର ରେ ସଖି । ଘୋଷା ।
ସ୍ନେହ ଯେବେ ଥିଲା ଆନେ କିପାଁ ଆଜ ମୋତେ ଗୋ,
ଭଗାଇଥିଲେ ସେ ଅଭିସାର ଗୋ ।୧।

ସଙ୍କେତ କରିବ ସତେ କେଉଁ ରସିକାକୁ ଗୋ,
କଲେ କଣ୍ଠେ ଉପମାସୃ ହାର ଗୋ ।୨।
ଶତ ଶପଥରେ ମୋତେ କରିଇଲେ ସ୍ୱଜ ଗୋ,
କଲେ କୃପାଁ ଏତେ କାରଣାର ଗୋ ।୩।
ସଙ୍ଗତେ ଅବଳା ମୁହିଁ ରଜନୀରେ ବନେ ଗୋ
କେ କରନ୍ତା ମୋତେ ପ୍ରତିକାର ଗୋ ।୪।
ସପ୍ରେମରେ ଜଗଦେବ ଭୃଷେ ବନା ଦୋଷେ ଗୋ
କରିଇଲେ ଭବ ଶରହାର ଗୋ ।୫।

---

( ୩୧୯ )

ରାଗ—ଶାବେରୀ—ଝୁଲ୍ଲ

ସୁକୁମାରୀ ନୃପତି କୁମାରୀ ।
ନ ଯା' ମୋତେ ମାରି ରେ । ଘୋଷା ।
ସୁର ମନୋହାରୀ— ମୋ ଅଙ୍କ ବିହାରୀ
ହୁଅ, ମନସିଜ-ରାଜ ଯାଜ ଅଜ ହାର ରେ ।୧।
ସୁଲଳିତ ବାର,— ରୁହ କେଳିବାର
କର୍ଦ୍ଦମକୁ ନ ଫଗିଇ ଦଅ ତୁ ନିବାର ରେ ।୨।
ସୁରନଦୀ ପାର, କରାଇ ଜଙ୍ଗାର
ନ ନେଇ ତୁ ମୋତେ ରହୁ ଶତେ କି ବିଗୁଣ ରେ ।୩।
ସିଞ୍ଚ କୃପାବାରି—ଶାୟକ ପ୍ରହାରି
ବୋଲେ ଜଗଦେବ ସ୍ମର ଦେହଟି ସଂହାର ରେ ।୪।

---

( ୩୨୦ )

ରାଗ—ମଙ୍ଗଳଗୁଜୁରୀ—ଅଦତାଳ

ସଖି, ନ ବସ ତୋ ତୁ ଗୁମାନେ । ଘୋଷା ।
ଶୁଣି ଶ୍ୟାମ ତୋର ବାଣୀ—ପ୍ରାଣେଙ୍କଣୁତଚେ ଅଣି
ଲଙ୍ଘିଲା ଧର ରେ ଦଣେ ଅନୁମାନେ ।୧।

ଶରଦଚନ୍ଦ୍ରମା ମୁଖୀ—କର ତୁ ଶ୍ୟାମକୁ ସୁଖୀ
 ଅଧର ମଧୁର ସୁଧା ରସପାନେ ।୨।
ସେତ କହୁଣି ବେଣୁ—ତୁହି ତ ମାରଦାତନୁ
 ମନେ ହେଲେ ନ ରସିବ ବୋଲୁ ଆନେ ।୩।
ସତ୍ତ ରେ ତୁ ଦୟାବତୀ,—ବୋଲାଇ ନିଷ୍ଠୁର ଅତି—
 ହେବାର ଅଛ ଗୋ କେଉଁ ଚେତେ ଯେ ନ ମାନେ ।୪।
ଧଇରଖେ ରାଜ ଇନ୍ଦୁ ଭଣଇ ସେ ପ୍ରାଣବନ୍ଧୁ
 କର କରୁଣାକୁ ଦିବ୍ୟ ଅବଧାନେ ।୫।

———

( ୩୩ )

ରାଗ—ଏମନକଲ୍ୟାଣ—ଏକତାଳି

ହରି ପାଶରେ ସଜନୀ ଥାଉ ଗୋ ଆଜ ରଜନୀ । ଘୋଷା ।
ହେଲାଣି ସଖୀର ହାସ—ବଦନଚନ୍ଦ୍ର ପ୍ରକାଶ
ଚେତାଇଲାଣି ଶ୍ୟାମବେଶ
 ଏଠାରୁ ଗୋ ଯିବା ଅସ ।୧।
ହଟିଛୁ ମଦନରାଜ—ବାନ୍ଧ ଶାୟକ ସମାଜ
ନାଶିବାକୁ ସଖୀ ଲାଜ—ଭଲ୍ଲ କି ଗୋ ଧନୁସଜ ।୨।
ହ୍ରୀମ ବିନା କମ୍ପେ ତନୁ—ସ୍ୱେଦ ସଖୀ ଅପଘନୁ
ବଢ଼ାଇ ସନ୍ତାପ କାନୁ—ନ ସ୍ଫୁରେ ବାଣୀ ମଦନୁ ।୩।
ହେବାକୁ ସ୍ମର ଅମୃତ—ହେଲେ ହେଁ ପ୍ରିୟ ସଙ୍ଗତ
ଅମ୍ଭଙ୍କୁ ଚେତିବା ଚିତ୍ତ—କହନା ଗୋ ପ୍ରାଣମିତ ।୪।
ହରଷରେ ରାମ ସୋମ—ଧରି ନିଜ ହୃଦେ ପ୍ରେମ
ଭାବିଲାଣି ଘନଶ୍ୟାମ,—ପଦ ଅସ୍ତୁଦୁର୍ଗ ଧାମ ।୫।

———

( ୩୪ )

## ରାଗ—ତୋଡ଼ି ଜଙ୍ଗଲା—ରୂପକ

କ୍ଷୀରୋଦବାସ କରନ୍ତୁ ସବୁ ପ୍ରକାଶ ରେ ସଙ୍ଗିନୀ । ଘୋଷା ।
କ୍ଷମା ନ କଲ୍ଲ ତ ଅମ୍ଭ ବୋଲେ ଶ୍ୟାମ ଦୋଷ
ସେ ମାନ କତୁସ୍ଥି ଦେଲ କି ଚତୁସ୍ଥି
ତା' ଭ୍ରୂକୁ ଭଙ୍ଗୀ ବିଳାସ ରେ ।୧।

ଶ୍ୟମ ଜିଙ୍କ ତୋତେ ଅମ୍ଭେ କହିବାକୁ ତୋଷ
ମୋହିଲ ତୋ ମନ ଛଡ଼ାଇ ଗୁମାନ
ମୋହନ ସୁମନ୍ଦ ହାସ ରେ ।୨।

ହୋଇ ନାହିଁ ଅମ୍ଭଙ୍କ ଯା ତେଜାଇଲ୍ଲ ପାଶ
ସଖି, ରଖି ତ ନ ପାରିଲ୍ଲ ଶ୍ରୀଅଙ୍ଗେ
ଚିର ସଙ୍ଗୀ ନୀଳ ବାସ ରେ ।୩।

କ୍ଷୀଣୋଦରି, ଶ୍ୟାମକୁ କଲ୍ଲ କି ନିଜ ଦାସ
ପରିବ ଚନ୍ଦ୍ର ଗରବ-ହର ମୁଖୀ
ଅରମ୍ଭି ତ ଥିଲ୍ଲ ରାସ ରେ ।୪।

କ୍ଷୀର ରଖି ନୀର ଉପେଖିଲା ପରି ହଂସ
ଭାଷେ ଜଗଦ୍ଦେବ ତୋ ଶ୍ରୀଅଙ୍ଗ ବନ୍ଧୁ
କଲା ଶ୍ୟାମ ରସ ଶେଷ ରେ ।୫।

———

( ୧ )

## ମହାବାହୁ ଚଉତିଶା

ରାଗ—ପଞ୍ଚମ ବରାଡ଼ୀ

କମଳ ବାସିନୀ ପ୍ରାଣ,—ବାନ୍ଧବ ହେ ଅଭିମାଣ,
କମନୀୟ କଳା ମୁଖଚନ୍ଦ୍ର
କମ୍ବୁମଧ୍ୟ ପୁରୀ ନୀଳ,—ବସୁନ୍ଧରା ଧର ଚୂଳ,
ଗୁହା-ଗୁହ ବିହାର ପାରୀନ୍ଦ୍ର ହେ
ମହାବାହୁ—କୌଣପକୁଳର କ୍ଷୟ ଦକ୍ଷ
କାର୍ପଣ୍ୟକାମୀ କଳପବୃକ୍ଷ
କହ୍ନ ନୋହିବା କଦନ, ସିନ୍ଧୁ ନିମଜ୍ଜନ ଜନ,
କର୍ଣ୍ଣଧାରବର ରକ୍ଷ ରକ୍ଷ ହେ ।୧।
ଖଣ୍ଡ ପରଶୁ ବନ୍ଦନ, ମୂରଜ୍ଜ ସୁସାବଧାନ,
ଖମଣି ମଣ୍ଡଳ ମଧ୍ୟ ବାସୀ
ଖଗାଧୀପ ଧ୍ୱଜ ବ୍ରଜ, ଖଞ୍ଜନ ନେତ୍ରା ସମାଜ,
ଖେଳ କୁତୂହଳ ଅଭିଳାଷୀ ହେ
ମହାବାହୁ—କ୍ଷୀଣ ଜନଙ୍କର ଅନ୍ତଃସାର
ଖଣ୍ଡିତ ମେଦନୀ ଭୟଭାର
ଖର ମଖପୁର ପୂଜ ଚରଣର କରପଜ-
ଦର ନିବାରଣ ଦୟାକର ହେ ।୨।

ଗହନେ ଗର୍ଭିଣୀ ଏଣୀ, ଗରସ୍ତୁ ଶ୍ୱାପଦୁଁ ପୁଣି,
ଗୁହାଗ୍ନି ଗର୍ଭକ ସ୍ତବକଲ
ତୋର ଅମିତ୍ରଙ୍କ ଫର,-ମାସିବା ମାତ୍ରକେ ତାର
ତେତେକ୍ଷେ ବଜ୍ର ଦର ହୁରହେଲ ହେ
ମହାବାହୁ—ଗୋପେ ଗୋବତ୍ସା ଗୋପୀକା ଗୋପ-
ତ୍ରାସି ଦେଉଥିଲ ଶକ୍ର କୋପ
ଗୋବର୍ଦ୍ଧନଗିରି-ଛତ୍ର,ଟେକି ଟିକି ପଦ୍ମନେତ୍ର
ବାହିଲ ସେ ଉପତାପ କ୍ଲୋମ ନିଧି ।୩।
ଘନ ଘନଘଟା ଘୋର, ନୃଶଂସ ହିରଣ୍ୟାସୁର,
ବାଞ୍ଛି ନିଜ ତନୁଜର ବଧ
ଧର୍ମୀକୁ ଜାନ୍ତ କୋପରେ, ଘଟାଇଲ ତା'ଉପରେ
ଚକ୍ରାୟୁଧ ଅନେକ ଆୟୁଧ ହେ
ମହାବାହୁ—ଯେଣି ଯୁବା ସିଂହ ଅବତାର
ଘାତ ମାନଙ୍କରେ ଜରଜର
ଘଟି ଅର୍ଦ୍ଧକରେ ଭକ୍ତ, ପ୍ରହ୍ଲାଦରେ ଭୟମୁକ୍ତ—
କଲ ପଶୁ ତୁମ୍ଭେ ଚକ୍ରଧର ହେ ।୪।
ନାଗନାଥକୁ ସଲଲେ, ନକ୍ର ଆକର୍ଷିଲ କାଳେ
ଲକ୍ଷ୍ମୀ ଅଙ୍କ ଖେଳେ ଥିଲ ରସି
ନିରେଖି ସାରକୁ ଭୂଲେ ନିମିଷମଧ୍ୟେ ଦେଖିଲେ
ନାଗାର ହେବାର ଖରଶ୍ୱାସୀ ହେ
ମହାବାହୁ—ନକ୍ର କଣ୍ଠିନରୁ ଚକ୍ରଧାର
ନିନ୍ଦୁଥିଲ ବନ୍ଧୁକ ପ୍ରକାର
ନିଖିଳ ଲୋକେ ଏ ଯଶ, ନାଚୁଛି ହେ ଜଗଦୀଶ,
ନୋହିଲଟି କେଉଁ ଖ୍ୟାତିକର ହେ ।୫।
ଚତୁର୍ଦ୍ଦଶ ଲୋକେ ଯେଉଁ, ଚକ୍ର ପରାକ୍ରମ ଗାଉ,—
ଅଛନ୍ତି ଅଭୟ ପାଇ ନିତ
ଚକ୍ରାନୟନ ହେ ସେହି, ଚକ୍ରକୁ ଶ୍ରୀକରେ ବହି,
ଗୃହୁଁ ନାହିଁ ମୋର ଏ ବିପତ୍ତି ହେ
ମହାବାହୁ—ଚରାଚର ଚକ୍ର ଅନ୍ତ ହେଲ
ଚକୋର କି ଚନ୍ଦ୍ର ନ ପାଇଲ ?

ଚନ୍ଦ୍ରଚୂଡ଼ ମୁଁ ଶରଦନ, ଚେହ୍ବାକୁ ତାଷ ବେଢନ,—
ଚପଳ କି ଚରି ହୋଇଗଲ ହେ ।୬।
ଛଳ ଯତି ବେଶ ଧରି, ଛଦନଶାଳାକୁ ହରି,—
ନେଲ ଯେ ଦେବୀଙ୍କୁ ସୁରମିନ୍ଦ
ଛେଦ ତାହାଙ୍କୁ ମାର୍ଗଣେ, ଛିଦ୍ରକୁହା ବକ୍ଷୋପଣେ,
ଫେଡାଇଲ ଅପଣା ତ ଛନ୍ଦ ହେ
ମହାବାହୁ—ଛାର ଦୁଃଖ କେତେ ଅବା ମୋର
ଛାୟାନାଥ ତୁମ୍ଭେ, ସେ ଅନ୍ଧାର
ଛଦ୍ମେ ବଳୀଦ୍ୱାରେ ଗର୍ବ, ଦ୍ୱିଜେନ୍ଦ୍ର ବେଶେ ତା ଗର୍ବ
ଛଡ଼ାଇଲ ପରମଈଶ୍ୱର ହେ ।୭।
ଜଗତେ ଜାଣନ୍ତି ଜନ, ଯାହା କଲ ଦୁଃଶାସନ,
ଦ୍ରୁପଦ ଜେମାଙ୍କୁ ସଭାତଳେ
ଜଳଜ-ଚରଣେ ସ୍ତୁତି, ଜପିବାରୁ ମହାସତୀ,
ପ୍ରତିଷ୍ଠା ତୁଟିଲା ନାହିଁ ଛଳେ ହେ
ମହାବାହୁ—ଜମା ହୋଇଥିଲେ ଯେତେ ଜନ
ଜଣେ ଦେଖିନାହିଁ ଅପଘନ
ଜୟରବେ ଜଗତ୍ରୟ, ଜଠର ପୂରିଲ ଭୟ-
ନିବାରଣ ଜଳଧି-ଶୟନ ହେ ।୮।
ଝଞ୍ଜାନଳେ ଝାଡ଼ଦଳ, ଝଡ଼ଗଲାପରି ଜଳ,—
ଝରିଗଲ ପରି ଫଟା ଘଟ,
ଝାଙ୍କି ମନସ୍ତାପ ଭୟ, ଅମଳେ ମୋ ଅସୁ କ୍ଷୟ
ହୋଇଲାଣି ଦୀନ-ଦୟାପଟୁ ହେ
ମହାବାହୁ—ଝଟତ ମୋ ଅଭିଳାଷ ପୂର
ଝିମିଟି ହେଲାଣି ମନ୍ୱନ୍ତର
ଝାଞ୍ଜିତପ୍ର ଅଳ୍ପଜଳ, ଜମ୍ବାଳବସ୍ତୁଁ ବ୍ୟାକୁଳ,
ଝଷ ଦଶା ହୋଇଲା ମୋହର ହେ ।୯।
ନୃଗ ନାମେ ନୃପବର, ନିରଯେ ନିମଜ୍ଜି ଶର—
ତାଙ୍କୁ ହୋଇଥିଲେ କୃପା ସର
ନବୀନ ନୀରଦ ନିଭା, ନବରତନ ବିସନ୍ଧା
ଶ୍ରୀହସ୍ତେ ତାହାଙ୍କ କର ଧରି ହେ

ମହାବାହୁ—ନେଇଯିବା କାଳେ ଭୁଲେ ଭୁଲେ
ନିରେଖି ତାହାଙ୍କ ତେଜ ଭଲେ
ନାକ ନିତମ୍ବିନୀମାନେ, ନନ୍ଦନ ବନପ୍ରସୂନେ
ନିତନିତ ଉପହାର ଦେଲେ ହେ ।୧୦।
ଟେକିଛ ଅଦ୍ୟାପି ପୀନ,—ବାହୁ ଯୁଗଳକୁ ଧ୍ୟାନ,—
ଜନରେ ଯେ ଶ୍ଳାଘ୍ୟା ଦେବା ଶକ୍ତ
ଟାଙ୍କ ରହିଛି ମୁଁ ସ୍ୱେଦ, ବାହୁ ବୃନ୍ଦାରକ ମଧ୍ୟ—
ରୁଦ୍ର ଅନାତପକୁ ଟି ନିତ ହେ
ମହାବାହୁ—ଟିକିଏ କରୁଣା ଜାତ ହେଉ
ଟେକିଏ ତହୁଁ ଏ ଟୋକା ପାଉ
ଟାଳ ଦେଲେ ଭବଗ୍ରାହୀ, ଦୁର୍ଗତ ଦୁଃଖକୁ ଏହି
ଟମକ ପିଷ୍ଟ ତୋ ବାଜାପାଉ ହେ ।୧୧।
ଠଣାଦାର ପର କାଳ, କବଚରେ ଧର କରାଳ,
ଦଣ୍ଡ ଜଗି ରହିଅଛୁ ଠଣା
ଠିକମାର୍ଗ ପରହର, ଠକ ଆଚରଣ କର,
ବଞ୍ଚିବା ଜନ୍ତୁର କି ଠିକଣା ହେ
ମହାବାହୁ—ଠେଉରଥିବାର ଏ ଜଗତେ
ଠେଉରିଇ ଗତ ହତାହତେ
ଠାକୁରମାନଙ୍କ ମଥାମଣି ହେ, ମୁଁ କେଉଁ କଥା
କରବି ବଗ୍ରର ଦବ୍ୟଚଭେ ହେ ।୧୨।
ଡାକି ଗଉରବେ ଅଣି, ବନ୍ଦନୀୟ ଜନ ପାଣି—
ପଦ୍ମେ ଦେଇନାହିଁ ବରିଷ୍ଠକ
ଡୁବାଇ ନାହିଁ ମସ୍ତକ, ମନ୍ଦାକିନୀ ହ୍ରଦୋଦକ—
ପୂରେ ପଶିକର ହର ଡାକ ହେ
ମହାବାହୁ—ଡରୁଛି ଯେ ଯମୁରେ ତୁମ୍ବର
ଡାକୁଅଛି ଆହେ ବିଶ୍ୱମ୍ଭର
ଡମ୍ବର ଦୋଷ କଳାପ, ତୁମ୍ଭ ପରି ବାପ ମାଙ୍କ
ନ କଲେ କି କରବ ଇତର ହେ ।୧୩।
ଡାଳ କରୁଣା ପୀୟୂଷ, ଅଶେଷ ଦୋଷୀଙ୍କ ଦୋଷ,
ନାଶିବାରୁ ସିନା ବାରମ୍ବାର

ତତ୍ତ୍ୱା ବାଜୁଛୁ ସଂସାରମଧ୍ୟେ ଏହା ଅନ୍ତଃସାର
ସେ ସଭାଙ୍କୁ କରୁଛନ୍ତି ବ୍ୟାପାର ହେ
ମହାବାହୁ—ତାଳେ ଷିତ ଅନାଇଁ ନଗୃଲ
ତମ ବହୁଅଛୁ ଘୃତ ପେଲ
ତାଙ୍କି ରହୁଥିବା ଘୋର, ଦାବାଗ୍ନିକ ନାଥ ମୋର
ତୋଳିଦେବେ ଅନାୟାସେ ବୋଲ ହେ ।୧୪।
ଅପରମିତ ମହିମ, ଅଘ ବିଧ୍ୱଂସନ ନାମ
ଅତ୍ୟନ୍ତ ପ୍ରବଳ ହେଲେ ହେଲେ
ଅପରାଧୀ ହେବା ଡରେ, ଅଘରେ ଆଗଳ ନରେ
ଅସକ୍ତ ନୋହିବା ଜାଣେ ଭଲେ ହେ
ମହାବାହୁ—ଅଣୁଏ ଅଯତ୍ନ ନାହିଁ ମୋର
ଅଚଳୁଛି ପାତକ ପ୍ରଖର
ଆପଣ ହୃଦେ ନିବାସ, କରି ସେଇଁ ପରମାସ—
କରୁଛ, ମୁଁ କରୁଛି କିଙ୍କର ହେ ।୧୫।
ତାରିବାକୁ, ମାରିବାକୁ, ତାପାଣି ନିବାରିବାକୁ
ତୁମ୍ଭ ତୁଲେ ପ୍ରଭୁ ଆଉ ନାହିଁ
ତପନୀପ୍ ଗିରିତଳେ, ତପୋଧନମାନେ ଛଳେ
ତବ ତତ୍ତ୍ୱ ଜାଣନ୍ତି ବା କାହିଁ ହେ
ମହାବାହୁ—ତର୍କି ନ ପାରିବାରୁ ବିଭୂତି
ତସ୍କର ବନିଲେ ପ୍ରଜାପତି
ତନୁରୁ ତଣ୍ଡୁଳ ଶିଶୁ, ତତ୍ପରେ ହେବା ସଭାଙ୍କୁ
ତଳେ ଲୁଠି ଲଜେ କଲେ ସ୍ତୁତି ହେ ।୧୬।
ଥିବାରୁ ମଞ୍ଜୁଷେ ଗଣ୍ଠି,—ପରି ହେ ବୈକୁଣ୍ଠ କଣ୍ଠୀ—
ରବ ତବ ପ୍ରଭାବ ମୋ ମନେ
ଠ୍ୟ ଧନ ପିନା ଭୋଗ,—କରି ହରିବି ଉଦ୍ବେଗ
ବୋଲି ଭାବୁଁ ଭାବୁଁ ଅନୁଦିନେ ହେ
ମହାବାହୁ—ଥାଏ ମୋ ଭରସା ମେରୁପରି
ଥାପିଲେ ଧଇର୍ଯ୍ୟ ଥାଏ ପୂରି
ଥରୁଅଛୁ ଏକେ କାଏ,— ଡରେ ଅନୁକମ୍ପା ମୟ—
ନୟନାନ୍ତ ଛାଟା ଦଅ ଠାରି ହେ ।୧୭।

ଦୀନେ ଦୟାକୃତା ବାନା, ଦୃଶ୍ୟ କରାଇଲେ ସିନା

ଦୀନବନ୍ଧୁ ନାମକୁ ସୁନ୍ଦର

ଦୁଷ୍ଟ ଦୁଃଖ ଦ୍ୱନ୍ଦ୍ୱ ସଙ୍ଗ,—ଦଗ୍ଧ ହୃଦାନ୍ତର ଲୋକ—

ରକ୍ଷା ଜାଙ୍ଗଳିକ ପୁରନ୍ଦର ହେ

ମହାବାହୁ—ଦରିଦ୍ରରେ ଦାନଦେବା ଯଶ

ଦିଗନ୍ତକୁ କରଇ ଅଶେଷ

ଦଇବେ ଦ୍ରବିଣବନ୍ତ,—ଜନେ କଲେ ବାଞ୍ଛା ଦତ୍ତ

ଦାତାର କି ହେବ ପଟନ୍ତର ହେ ॥୧॥

ଧରିଥିଲେ ଭକ୍ତ ରୂପ, ଧାତାପୁତ୍ର ମୁନି ଶାପ—

ବଞ୍ଚୁଁ ବସୁନାଥଙ୍କର ସୁତେ

ଧରାଇଲ ଦିବ୍ୟ ତନୁ, ଧ୍ରୁବଙ୍କୁ ବାଳକ ଦିନୁ

ଦିବ୍ୟଧାମ ଦେଲ ଏ ଜଗତେ ହେ

ମହାବାହୁ-ଧଡ଼ି ଶେଷୁଁ ସମର୍ପି ନିଜର

ଧନ୍ୟ ହେଲେ ସୁଦାମା ଭୂସୁର

ଧବଳ କରଛ ଏହୁ, ଯଶ ବ୍ୟୋମ ତୁଲେ ମହୀ

ଧର୍ମ ଧାରୀ ବନ ଧୁରନ୍ଧର ହେ ॥୨॥

ନିରର୍ଗଳ ଅଧିକାର, ନିତ୍ୟ ନିଳୟ ଯାହାର

ନାଥଙ୍କର ନାମ ନ ଶୁଭୁଛି

ନିସ୍ତାରଣି ହୋଇ ମୋର, ନରଦେହ ବହିବାର

ନାଶଗଲି ବୋଲାଇଣି ଛୁଟୁ ହେ

ମହାବାହୁ-ନ ନଗୃଇ ଏହା ଜନମୁଖ

ନିଯୋଜନାକର ମୋର ସୁଖ

ନଳୀନେ ଉଲ୍ଲାସ ଶିରୀ ନିଧାନ କରନ୍ତି ପରି

ନବୋଦିତ ମିହିର ମୟୂଖ ହେ ॥୩॥

ପ୍ରପନ୍ନ ହୋଇ ମୁଁ ବାରେ, ପଦପଙ୍କେରୁହ ତଳେ

ପଡ଼ୁ ପଡ଼ୁ ପେଲ ଦେବା ଯେହୁ

ପଡ଼ିବ ସିନା ଭୂମିର, ଗର୍ବେ ଦେଇ କରଭର

ପଦାରେ ତ ସ୍ଥଳ ନାହିଁ ଅଜ ହେ

ମହାବାହୁ—ପରମ ଭାଗ୍ୟ ମୋର ଏ କା

ପରମାଣୁ ପରି ନାହିଁ ଦକା

ପ୍ରଭୁ ପଣକୁ ମାନବ, ପ୍ରପଞ୍ଚ ମଣ୍ଡଳ ଯାକ
ନିନ୍ଦାହେବ ବୋଲି କରେଁ ଶଙ୍କା ହେ ।୨୧।
ଘନାକର ଅପଣଙ୍କ, ଫଳ ଲଭ ବିନା ବଙ୍କ
କଳଲିଣି ଅଚରଣେ ସିନା
ଫେଡ଼ ଏ ମାନସ କଥା, କା'ଅଗେ କହିଲେ ବ୍ୟଥା
ଫେଡ଼ି ନେବ ଅନ୍ୟ ତୁମ୍ଭ ବିନା ହେ
ମହାବାହୁ—ଫାଟିଅଛୁ ଯେବେ ମୋ କରମ
ଫଳାଇବାକୁ ଆପଣ କ୍ଷମ
ଫୁଟୁଥିଲ ପଦଣ୍ଡକେ, ଯେଉଁ କୁବ୍ଜା ଏହି ଲୋକେ
ନ କଲ କି ତାକୁ ରମ୍ଭା ସମ ହେ ।୨୨।
ବିଳମ୍ବ ସହିବ। ପୀଡ଼ା, ହେଲେ ହେଁ ବରସ୍ତ୍ରୀ ଚୂଡ଼ା—
ବଢଂସ ମୁଁ କଳଅଇ କେତେ
ବିବକଡ କର ନିତ, ବିଜ୍ଞାପନ ନ କରନ୍ତ
ବାଧା କଳଲିଣି ଯେଣୁ ମୋତେ ହେ
ମହାବାହୁ-ବଳିଷ୍ଠ ବାହୁ ଯୁଗଳ ତଳେ
ବେଗେ ମୋତେ ଛାୟା ଦିଅ ବେଳେ
ବଳଦେବ ବଳାନ୍ୱିତା,—ବରଜ ହେ ସିନ୍ଧୁସୁତା—
ବର ବନ୍ଦେ ଅମନ୍ଦ ବିକଳେ ହେ ।୨୩।
ଭୟାନକ ଭବ ଅବ୍ଧି, ମୁଖେ ପଡ଼ିଅଛି ତ ମୁହିଁ
ଭବ୍ୟ କଥା ଲୋଡ଼ିଲେ କେ ଦେବ ?
ଭରଜିଲେ ହେଲେ ଏହା, ଭ୍ରମକୁ ହେ ରମାନାଥ
ଭଲ ଲୋଡ଼େଁ, ନ ଲୋଡ଼େଁ ଲାଘବ ହେ
ମହାବାହୁ—ଭରସା ଏତିକି ଥାଏ ମୋର
ଭର୍ତ୍ତା ଯେଣୁ ତୁମ୍ଭେ କଳୀପ୍ସାର
ଭୂରୁଭଙ୍ଗ ମାନଙ୍କରେ, ଭସାଇଲ ରତ୍ନାକରେ
ମହୋନ୍ନତ ବହୁତ ଭୂଧର ହେ ।୨୪।
ମହା ମଧ୍ୟମ ହେ ମଣି,—ମଞ୍ଜୁଳ ଗର୍ଭକ ମଣି
ମହୋନ୍ନତ ମହୀଧର ସିନା
ମନାସି ତୁମ୍ଭର ଯଶ, ମଙ୍ଗୁ ଲଙ୍ଘୁଛି କାମିଷ
ମାନକୁ ତାହାକୁ ଶମ ବିନା ହେ

ମହାବାହୁ—ମଳିଥିବା ନାଗମକୁ ଘୁଣି
ମଲ୍ଲ ଗୁଚ୍ଛ ତନୟଙ୍କ ଅଣି
ମହସିଦ୍ଧ ଲେକେ ଦର, ମଲ୍ଲୀମାଳା ମନୋହର
କଣ୍ଠିରେ ମଣ୍ଡିଲ ଯଦୁମଣି ହେ ।୨୫।
ଯମଙ୍କ କିଙ୍କର ମନ୍ତୁ, ମନ୍ତ୍ର ହେବା ଯେଉଁ ଜନ୍ତୁ —
ମାନଙ୍କୁ ଯାତନା ଦେଉଥାନ୍ତି
ଯାଗଭାଗ ଭୁଞ୍ଜିବାକୁ, ଯୋଗ୍ୟ କରାଅ ତାହାଙ୍କୁ
ଯଶୋଦାଙ୍କ ଦୁଷ୍ଟ ସନ୍ତତ ହେ
ମହାବାହୁ—ଯଦୃଚ୍ଛା ବିଳାସ ବିଚକ୍ଷଣ
ଯତ୍ନକଲେ ନ ମିଳ ଆପଣ
ଯାବତ ଘଟରେ ବହୁ, ଅନ୍ତରେ ସନ୍ତତ ରହୁ
କରୁଛ କି ଇଚ୍ଛା ତୁମ୍ଭେ ଜାଣ ହେ ।୨୬।
ରତ୍ନାକର ଯା ମନ୍ଦର, ରମା ରମଣୀ ଯାହାର
ଯାହାର କୌସ୍ତୁଭ ମଣି ହାର
ରଥସୁତ ବିନତାର, ରଥଚରଣ ହତ୍ୟାର
ରୁଦ୍ରାଦି ଦେବତା ପରିବାର ହେ
ମହାବାହୁ—ରସା ଚରମରେ ପଡ଼ି ପଡ଼ି
ରହିଛୁ ସନ୍ତତ କରଯୋଡ଼ି
ରଙ୍କ ଗୁହାର ଭାରତୀ, ରତ୍ନକୁଣ୍ଡଳଅ ଶ୍ରୁତି —
ରନ୍ଧ୍ରପ୍ରାଣେ ଥରେ ଯାଉ ପଡ଼ି ହେ ।୨୭।
ଲଗିଛାଲେ ଏ ମକର,—କୁଣ୍ଡଳ ଯୁଗଳ ମୋର
ଦୁଃଖ ଜଣାଇବେ ବୋଲି ଚିନ୍ତି
ଲଗାଇ ରସାରେ ଶିର, ଲକ୍ଷ ଲକ୍ଷ ନମସ୍କାର
ଲକ୍ଷି ଦେଇ କରୁଥାଏଁ ସ୍ତୁତି ହେ
ମହାବାହୁ—ଲବ୍ଧହୋଇ ଏତେ ରତ୍ନଗଣ
ଲଗିଲେ କାହିଁକି ମୋର ଋଣ
ଲଭି ଶ୍ରୁତି ଘାଣେ ଘର, ଲଗଡ଼ଙ୍କ ନାଟସାର
ଲୋକରେ ଲୋଳତା ଲବ୍ଧ ଗୁଣ ହେ ।୨୮।
ବକ୍ତ୍ର ମୁକୁଳ ଏ ଧନ,—ମାଳା ବୋଲି ପ୍ରଭଞ୍ଜନ
ବନ୍ଧ କରୁଥାଏଁ ବାଞ୍ଛାପନ

ବିଶେଷେ ତାହାଙ୍କ ସଙ୍ଗ, ଭବ ଅସୁଥିବା ଭଙ୍ଗ
ପଛେ ଗୋଡ଼ାଇବାକୁ ମୋ ମନ ହେ
ମହାବାହୁ—ବନଂ ଜବନିକା ଯାକ ବୁଲି
ବୁଝୁଥାଏଁ ଦେଖି ପ୍ରତି ବଲ୍ଲୀ
ବିଜୟନ୍ତୀ ବକ୍ଷଶ୍ରୀ, ବକ୍ଷରେ ଯେ ଥିଲେ ଶୀର—
ଘୁମୁରେ କି ପଡ଼ିଥିଲା ବୋଲି ହେ ।୨୯।
ସରିବ୍ଧି ବେଳାକୁ ବଳି, ଅଦ୍ୟାପି ନାହାନ୍ତି କଳି
ଢାଳେହେଁ ନିତ୍ୟ ମୁଁ ଲଭି ଘ୍ରାତ
ଶଶୀ କୁରଙ୍ଗକୁ ଶେଷ, ଧରାଙ୍କଶଙ୍କର ଗ୍ରାସ
କଳଙ୍କ ପରିଏ ବହୁଛନ୍ତି ହେ
ମହାବାହୁ—ଶରଣ ବୋଲିବା ଡାକପଣେ
ଶରଣାର୍ଥୀ ଜନ ତୋତେଂ କଣେ
ଶତ୍ରୁ ହେଲେ ତ ତୁମ୍ଭର, ବୋଲି ତ ହୁକୁମ କର
ପରପାକୁ ନାହିଁ ମୋତେ ଯଣେ ହେ ।୩୦।
ଶୋଡ଼ଶ ସହସ୍ର ବ୍ରଜ,—ସରୋରୁହାକ୍ଷୀ ସମାଜ
ଯେକି ସୁରସୁତା ତୀର କୁଞ୍ଜେ
ଷଡ଼ାସ୍ୟ ଜନବାହୁତ, ସଙ୍ଗ ପ୍ରସଙ୍ଗରେ ମତ୍ତ—
ହୋଇ ପ୍ରଫୁଲ୍ଲିତ ପୁଷ୍ପକୁଞ୍ଜେ ହେ
ମହାବାହୁ—ଷଡ଼ଙ୍ଘ୍ରୀଂ ରଚିଲା ପରି କେଳି
ଷଡ଼ହୃତ ନିରଖନ ଶାଳୀ
ସପ୍ତଅଙ୍ଗ ଶୁଭମାନେ, ସୁତ୍ତି କଲେ ଅବିଚ୍ଛିନ୍ନେ
ନ ଲାଗିଲା ଅପବାଦ ଧୂଳି ହେ ।୩୧।
ସବୁ ସମାଚାର ସଦନୁ, ସମସ୍ତ ଜନ ବଦନୁ
ଶୁଣିଛୁ ମୁଁ ସତ ଅବା ମିଛ
ସହସ୍ର ସଂଖ୍ୟକ ଅପରାଧ ଥିଲେ ହେଲେ ମାଫ —
କରି ପ୍ରପନ୍ନକୁ ରଖୁଅଛ ହେ
ମହାବାହୁ—ସେ ସଙ୍କାଶୁଁ ମୋର ଏ ସାହସ
ସଙ୍କୋଚକୁ ମଣେ ନାହିଁ ତ୍ରାସ
ସ୍ୱରସ ସକଳେଶ୍ୱର.—ସାମନ୍ତ ମାନଙ୍କ ସାର
ସର୍ବେଜ୍ଞ ସେବକ ସମୁଲ୍ଲାସ ହେ ।୩୨।

ହରହସ୍ତ ବନ୍ଦିତଙ୍କ, ହଂସ ରଥାଧିରୂଢ଼ଙ୍କ,
ହଟି ରହୁନାହିଁ ମୁଁ ସମ୍ମୁଖେ
ହର୍ମ୍ୟତଳେ ଥିବାଯାକେ, ହାସ୍ୟାସ୍ପଦ ନୋହୁ ଲୋକେ,
ହରବ ସମସ୍ତ କାହ୍ନୁ ସୁଖେ ହେ
ମହାବାହୁ—ହଇରାଣ ନୋହୁ କ୍ଲେଶ ଜାଲେ
ହରେ ହରେ ଜାକ ଅନ୍ତଃକାଳେ
ହସି ହସି ଯିବ ହର,-ଦଣ୍ଡସୁତଙ୍କ ନଗରୀ—
ସୀମା ମାତ୍ର ନ ଦେଖିବ ତୋଳେ ହେ ।୩୩।
ଯତିକ ବନ୍ଧୁବା ଅନ୍ଧୁ, କ୍ଷମ ନୋହୁବାକୁ କନ୍ଧୁ—
ନ ପାରନ୍ତି ଯାହାର ପ୍ରରତେ
କ୍ଷମା ମୀଯୁକ୍ତ ସମୁଦ୍ର, ତୁମ୍ଭେ ହେବାକୁ ମୁଁ କ୍ଷୁଦ୍ର
ଶ୍ରୀଙ୍ଗମୂରେ ଜଣା ଇଲ୍ ଏତେ ହେ
ମହାବାହୁ—କ୍ଷମ ଅପରାଧ ଏ ତ ନୁହେଁ
କ୍ଷମାଧିକବାନାଧିବାସ ହେ
କ୍ଷମାକର ଅଣ୍ଡ ହେବ, କ୍ଷିତି ସୁର ବଳଦେବ
କବିରବ ରାୟଗୁରୁ କହେ ହେ ।୩୪।

---

( ୬ )

## ବନ୍ଦୀ-ଚଉତିଶା

### ରାଗ—ଅଷ୍ଟାଢ଼ଶ୍ଳୁକ

କଟଣାରଚନ୍ଦ୍ର କଂସକଣ୍ଠକେ ବନ୍ଧୁ,
କଶୋରୀଙ୍କ ବନ୍ଦୀ ହୋଇ ବରହ୍ମୀ ଯେ
କଲେ ତାହାଙ୍କ ଗୁଣଗଣ ସ୍ମରଣ,
କଞ୍ଜ କାଞ୍ଜଳକ ଦେହା ଥରଭରଣ ରେ ।୧।
ଖୁର ତୁରାସ୍ଥ ଭାଗ କାଳ ମୋ କୋଳେ,
ଖେଳ ନଥିଲେ କ୍ଷଣ ଯୁଗର ବଳେ ଯେ
ଖମଣି ଯେମା ବନ୍ଧ ଶିଖର ଅନ୍ତେ,
ଖଞ୍ଜିଲ୍ ଧାଡା ବଇରଣ କୋମନ୍ତେ ରେ । ୨

ଗଳା ମଣ୍ଡନ-ତୁ ମୋ ରତନ ହାର,
ଗମାର ଦଶା ଭରିଅଛୁ ବାହାର ଯେ
ଗତ ଭେ ବର୍ଷିବଟି ଭେହ୍ଲ ଏଣିକି,
ଗୁପତ ଧନ ଫିଙ୍ଗିଅଛୁ ପାଣିକି ରେ । ୩ ।
ଘନମଣ୍ଡଳା ତୁ ମୁଁ ଗୁଡକ ବୋଲି,
ଘଣ୍ଟା ଘୋଷଣ ମୁଁ ଯେ ଦିଅଉଥିଲି ଯେ
ଘୋର ଜାଙ୍ଗଲ ବିଷ ଖାଇଲି ପରି,
ଘାରି ହେଉଛୁ ଏବେ ବିରହାଗରି ରେ । ୪ ।
ଙାନ୍ଦତ ଶରଦନ୍ଦୁ ସୁନ୍ଦର ମୁଖୀ,
ନଚନ ଲୀଳା-ପଟୁ ଖଞ୍ଜନକଟାକ୍ଷି ଯେ
ଙାଦ ନଜାଣେ ଛାମୁ ଛାଡ଼ିଲି ଦିନୁ,
ନ ଗଲି ନତ ଦେହା ନିମିଷେ ମନୁ ରେ । ୫ ।
ଚାହିଁଲେ ଚାରି ଦିଗେ ବାହାରେ ଦିଶୁ,
ଚକ୍ଷୁ ବୁଜିଲେ ପୁଣି ଭିତରେ ବିଲସୁ ଯେ
ଚତୁର୍ଦ୍ଦଶୀଧି ଜାଣୁ ତୁ କି କୁହୁକ,
ଚଜନ୍ତୁ ଚଜ ଏ ତ ଅଲଉକୀକ ରେ । ୬ ।
ଛୁତକି ଲଗିବାର ହେଜ ବିହୂର,
ଛୁଇ ଛୁଅଁ ଜନାହୁଁ ଦେହକୁ ମୋର ଯେ
ଛାମୁ ମୁକୁର ପରି ଯେ ହୋଇଥିଲି,
ଛବି ଜଳଧି କେତେ ଅନ୍ତର ହେଲି ରେ ।୭।
ଜଙ୍ଗମ ଜାମ୍ବୁନଦ ନବ ଲତାଙ୍ଗୀ,
ଜଗଜ୍ଜୀବା ତୁ ମୋ ଜୀବନ ସଙ୍ଗୀ ଯେ
ଜାଣୁ ତୁ ଯେତେ ରମ୍ଭ ସଖି ତମ୍ଭହିଁ,
ଜମ୍ଭାରି ସୁଖପ୍ରଦା ରମ୍ଭାରେ ନାହିଁ ରେ ।୮।
ଝଟକୁଥାଏ କାନ୍ତି କନକଶୀରି,
ଝଲକି ପଡ଼ୁଥାଏ ଲାବଣ୍ୟଝରି ଯେ
ଝମକୁଥାଏ ପଦକଞ୍ଜ ମଣ୍ଡନ,
ଝୁଲି କରୀନ୍ଦ୍ର ପରି ଆସ ମୋ ଧନ ରେ ।୯।
ଞାଜ ସଖୀଙ୍କ କର ପଇଠଦିଅ,
ନେବାକୁ ପୁଣି ବାହା କରୁ ବଢ଼ାଅ ଯେ

ଞବ ରଚନ ଯୁତ କଠଜ ଲଗି,
ଞେନ ସିନା ସେ ଶୋଭା ଶଭବ ଭାଗୀ ରେ ।୧୦।
ଟେକାଇଥାଉ ଶଙ୍ଖ ଫୁଲ ଅଢ଼ଣି,
ଟାପରା କର ପ୍ରିୟ ଅଳକ ପୁଣି ଯେ
ଟିପି ଦେବାର କନିଷ୍ଠିକା ଅଞ୍ଚଳେ,
ଟିକାଯୁତ ତୁ ରସବତୀ ମଣ୍ଡଳେ ରେ ।୧୧।
ଠକସଜ ହୃଦରୁ ପ୍ରବେଶ ମୋର,
ଠାର ଲୋଚନାଞ୍ଚଳେ ଚତୁରୀବର ଯେ
ଠାକୁରାଣୀ ଲାଞ୍ଛନ ଛପାଇ ଦେଉ,
ଠାଣି ଜଳଧି ଭିନ୍ନ ଛବି ଦେଖାଉ ରେ ।୧୨।
ଡେଉ ନ ରଙ୍ଗ ଘୁଞ୍ଚ ମୁଖ ନ ଟେକ,
ଡୋଳା ଚପଳା ଲୀଳା ଦେଇ ଅଟକ ଯେ
ଡାକ କଟୀ କି ଅବା କିଛି ନ ଜାଣୁ,
ଡଉଲ ପଦ ରଣରଣ କରଣୁ ରେ । ୧୩ ।
ଢଳା ଢଳାବଢଳେ କରନ୍ତେ ବାଜେ,
ଢଳ ମୋ ନୟନ ସେ ଶୋଭା ସମାଜେ ଯେ
ଢାଳିବ ବୋଲି ନବ ମାଳ ଗୃମର,
ଢୋକେ ଢୋକିବ ବୋଲି ମଧୁସ୍ୱର ରେ ।୧୪।
ଣପକ୍ଷଣକୁ ମୋର ଯିବାର ଦେଖି,
ଅହା ସସ୍ମିତ ବ୍ରୀଡ଼ ପ୍ରସାଦ ମୁଖୀ ଯେ
ଣଠି ଭାଜମ ଦେଲ ଯହୁଁ କୁହାରୁ,
ଣଚ୍ଛ୍ୱଳେ ସ୍ମରସିଂହ ମନ ଗୁହାକୁ ରେ । ୧୫ ।
ତୋଟେ ନବଢେ ଭିଡ଼ି ଚରଣୀ ତଳୁ,
ତମାଳ ତୁଲ୍ୟକେଶା ତୁ ହିଁ ଦୟାଳୁ ଯେ
ତୁ ସାରଙ୍ଗକୁ ଚୁମ୍ବି ଦେବଙ୍କ ପର,
ତୃଷାର ଶାନ୍ତକରା ନବ କଶୋରୀ ରେ । ୧୬ ।
ଥୋକାଏ ବେଳେ ଚୁମ୍ବରସରେ ମାତ,
ଥାପି କରାଇ କିଛି ଅତନୁପତ ଯେ
ଥୁଳ ନତମ୍ବେ ଥାପି ଧରନ୍ତେ ମାର,
ଥକୁ ତୁ କମଣି କି ରମଣୀବର ରେ ।୧୭।

ଦନ୍ତେ ବଖାଣିବାକୁ ମଞ୍ଜୁଳ ବଦନ,
 କୁଃଖୀ ପାଶୋରି କରୁ ନାନା ଯତନ ଯେ
ହୃତ ଯହିଁରେ ବୀର ମଦର ପତ୍ର,
 କୁଳ ହୃଦୟ ମିଶିବାର କି ଚିତ୍ର ରେ । ୧୮ ।
ଧମ୍ମିଲ୍ଲ ବ୍ୟସ୍ତ ହେବାଯାଏଁ ଅଗ୍ରହେ,
 ଧାଡାର ଶତ୍ରେ ହୋଇ ଲମ୍ପଟ ବୁଢେଁ ଯେ
ଧକ ସ୍ତୁହାର ବର ବର୍ଣ୍ଣରୂହାଟି,
 ଧମକାଉ ଯା ଝଂପଧ୍ୱଜ କୁହାଟି ରେ । ୧୯ ।
ନ ଯାଏ ମନୁଁ ଅନୁପମ ତୋ ଲୀଳା,
 ନଟନୁ ଦେବଛନୁମଧ୍ୟା କୁଶଳା ଯେ
ନାହିଁ ତୋ ତୁଳା ତଳେ ଥିବାର ସମା,
 ନକ୍ଷତ୍ରନାଥମୁଖୀ ତୁ ତୋ ଉପମା ରେ । ୨୦ ।
ପରମେଷ୍ଠିବ ପୁଣି ପ୍ରସନ୍ନ ହେବେ,
 ପ୍ରୀତିବଲ୍ଲଭା ତୋତେ ପାଇବି କେବେ ଯେ
ପରତେ ହେଉନାହିଁ ମାନସେ ମୋର,
 ପାପିଷ୍ଠ ଦଶା ଯହିଁ କରନ୍ତି ଦୂର ରେ । ୨୧ ।
ଫୁଲର ଭର ଫଗୁ ଖେଳିବା ବେଳ,
 ଫନ୍ଦାଧନକୁ ଦନେ କଲି ମୁଁ ଅଳ ଯେ
ଫିଟାଇ ହେଉ ଦେଲି ମୋତେ ନ ଭାଷି,
 ଫେର ଗୃହିଁଲ ସଖୀ ମୁଖକୁ ହସି ରେ । ୨୨ ।
ବଦା ହେଉଛି ବୋଲି ଅବକୁଞ୍ଜକୁ,
 ବୋଲାଇ ନେଲ ପ୍ରିୟ ଅଳି ପୁଞ୍ଜକୁ ଯେ
ବନାଇବାକୁ ରଣ ପ୍ରବୀର ବେଶ,
 ବସୁଧା-ଭୂଷା ଠାକୁ ଦେଲ ନିଦେଶ ରେ । ୨୩ ।
ଭଙ୍ଗୀଭଙ୍ଗୁର ଅଳବେଲିଆ ଖୋଷା,
 ଭଲେ କରାଇ ଦକ୍ଷଅଂଶ ଲହସା ଯେ
ଭରମ ଭରପରୁ ଗୁଚ୍ଛ ଟହିଆ,
 ଭ୍ରୂମଧ୍ୟେ ଯତ୍ନ ଧୃତଖିଆ ଅଖିଆ ରେ । ୨୪ ।
ମଧ୍ୟକୁ ଅଳକର ବନ୍ଦୁ ସିନ୍ଦୂର,
 ମାନିଲ ନବୋଦ୍ଧତ ଇନ୍ଦୁ ସୁନ୍ଦର ଯେ

ମଣ୍ଡଳ ଅତି ମନୋରମ ଭାଲରେ,
ମଣ୍ଡନ କଲେ ଧବ୍ୟ ମୋତି ଝାଲରେ । ୨୫ ।
ଯତ୍ନେ କୁସୁମାସ୍ରଗ ରଞ୍ଜିତ ଶାଢ଼ୀ,
ଯୋଷାଏ ଲାଗି କରଇଲେ ନିବାଢ଼ି ଯେ
ଯମୁନା ଜଳ ନୀଳ କଞ୍ଚୁକେ ଭଲେ,
ଯାମଳ ମେରୁ ଶୃଙ୍ଗ ସ୍ତନ ମଣ୍ଡିଲେ ରେ ।୨୬।
ରମା ମୋ ସ୍ମର ଜ୍ୱର ଜାର୍ଣ୍ଣ ବଟିକା,
ରଖିଲ୍ କନ୍ଦପୁର ବାସବାଟିକା ଯେ
ରଙ୍ଗ ପରାଗମୂର୍ତ୍ତି କରୁ ଖସିଲ,
ରକ୍ତିମା ଝଲକିଲା ପଥ ଧସିଲ ରେ ।୨୭।
ଲମ୍ବି ଜାନୁକୁ ମୋତିଝୁମ୍ପା ଅଞ୍ଚଳ,
ଲଭାଇ ଦେଲା ସୃଷ୍ଟି ସୁଷମା ବଳ ଯେ
ଲହଙ୍ଗା-ଲାଗି ଶୋଭା ସମ୍ଭାର ଦେଖି,
ଲଭନ୍ତୁ ସୁଖ ଯେଉଁ ଅଛି ସେ ସାକ୍ଷୀରେ ।୨୮।
ବାଜେଣୀ ଭୂଷାପୁଞ୍ଜ ସିଞ୍ଜିତ ବାଜା,
ବଜାଇ ବଜେଇଲ୍ ରସିକା ରାଜା ଯେ
ବଳେ ମଣିମା ତାଙ୍କ ଧଅନ୍ତେ ଦାସୀ
ବଳୟ ଫୁଲଛଣ୍ଡା ପିବାକୁ ଧସି ରେ ।୨୯।
ଶାମ୍ଭବୀ ସଖୀ ବେଶେ ଘୁମୁରେ ଭେଟି,
ଶର୍ମଦାୟିନୀ ତୁଲେ ଖେଳିଲ୍ ହଟି ଯେ
ଶେଷ ହେବ କି ସେ ସମୟର ଭାବ,
ଶେଷ କହିଲେ ଅବଶେଷ ରହିବ ରେ ।୩୦।
ଷୋଡ଼ଶ ବୟସୀରେ ସଦୟ ହେବେ,
ଷଡ଼ାସ୍ୟ-ତାତ ଦେବ ମୋ'ଠାରେ କେବେ ଯେ
ଷାଠିଏ ଦଣ୍ଡଯାକ ପୁଷ୍ପିତ କୁଞ୍ଜେ,
ଷଡ଼ଙ୍ଘ୍ରି ହେବାକି ତୋ ଶ୍ରୀମୁଖକଞ୍ଜେ ରେ ।୩୧।
ସନ୍ତତ ହୃଦୟରେ କରବ ହାର,
ସୁବର୍ଣ୍ଣ ସଉଧରେ କର ବାହାର ଯେ
ସଢ଼ାଇ ସ୍ମରବୀର ବଢ଼ାଇଧୃତି,
ସମସ୍ତ ବର୍ଣ୍ଣାଇବ କେବେ ସୁଦତି ରେ ।୩୨।

ହଜାରେ ନୃପ ଦେଲେ ହେଲେ ନିଦେଶ,
ହିରଣ୍ୟଗୋସ୍ତ ନ କରିବି ବିଦେଶ ଯେ
ହରଷେ ତୋହ ରସସୁଧାରେ ଭାସି,
ହିରିବି ଢାଲ ହଳମଧୁରଭାଷୀ ରେ ।୩୩।
କ୍ଷପାରମଣକର କଳଙ୍କା କେଳି,
କ୍ଷତ ଶମିର ରମ୍ୟ ପୁଳକେ ମିଳି ଯେ
କ୍ଷୀଣ ହେବାକୁ ହଜେ ଅନଙ୍ଗରଣେ,
କ୍ଷିତି ମହେନ୍ଦ୍ର ହରିଚନ୍ଦନ ଭଣି ରେ ।୩୪।

---

( ୩ )

## ମଞ୍ଜୁଳା ଚଉତିଶା

ରାଗ—ବସନ୍ତ

କେଶୋଶ୍ୱରଙ୍କ ବଦନ ନିରଙ୍କ ଚନ୍ଦ୍ରରେ ଗୁମାନ ଦେଖି ରେ
କଳାପୀ କଳାପ କାଶ୍ୱଠ ମଣ୍ଡନ କହନ୍ତି ଅଳକନ୍ଦ ସୁଖୀ ରେ
ମଞ୍ଜୁଳା, କିଛୁ ଦୋଷ ନାହିଁ ମୋର ରେ
କାହିଁକି ଶିଖିଲୁ ଛଳକୁ ଶିଖିଲୁ ତୋ ଶ୍ରୀମୁଖ କଳାକର ରେ ।୧।
ଖଟିଅଛୁ ନିତ ଖଟର ପଞ୍ଚମ ଖୁରୀପର ଜଗି ବସି ରେ
ଖସି ପଡ଼ୁଥିବା ନିତମ୍ବ ଅମ୍ବର ଖଞ୍ଜୁଅଛୁ ପ୍ରତିନିଶିରେ
ମଞ୍ଜୁଳା, ଖେଳା ଖଞ୍ଜିସ୍ୱଠଦୃଶା ରେ
ଖଳଜନ ଖଚ ବଚନକୁ ସତ୍ୟମଣି ଆଚର କିଦୃଶାରେ ।୨।
ଗଣି ନିଶା-ଗର୍ଭ ଗରବ ଗଞ୍ଜନ ଗଜର ବିଗ୍ରହବତୀ ରେ
ଗଣି ଗୁପ୍ତଧନ ଭଣ୍ଡୀରବମଧ୍ୟମଧ୍ୟା ତୁ ମୋର ସୁଦତୀ ରେ
ମଞ୍ଜୁଳା, ଗିରୀଶ ସପନ୍ନ ଶରରେ
ଗୁହ୍ଲାଇ ନ ଦିଅ ଗୁଣି ରୂପ ରସସିନ୍ଧୁ ମୋବନ୍ଧୁ ବେଷରେ ରେ ।୩।
ଘଡ଼ିଏ ଅନ୍ତର ନୋହିବାର ତୋର ଘର୍ମାମ୍ବୁ ଚର୍ଚ୍ଚେ ନାହିଁକି ରେ
ଘୋଷା ଘୋଷାକର ଯୋଷାମାନଙ୍କର ଭୂଷାକରିଛୁ କାହିଁକି ରେ
ମଞ୍ଜୁଳା, ଘେନିଲେ ଘେଲାନି ଯୁଗରେ
ଘନଜଘନା ତୋ ମୁଖଚନ୍ଦ୍ରେ ଦେଖି ସ୍ମିତକୀଡ଼ା ବିପ୍ରଯୋଗ ରେ ।୪।

ନଖରଞ୍ଜ ମାଳ ନବୀନ ନଳୀନ ବିକାଶ ଚରଣେ ତୋର ରେ
ନିନ୍ଦ୍ୟ ନୋହିବାର ଅଲକ୍ତ ସାର ବୋଲି ବଡ଼ପଣ ମୋର ରେ
ମଞ୍ଜୁଳା, ନ ଥିଲେ ତୋ ନଖକଇରେ
ନ ଲେଖନ୍ତେଁ ମୁଁ ମୋର ଭାଗ୍ୟ ବଡ଼ ଚଢ଼ିଥାବ ଚତୁର୍ଦ୍ଦନ୍ତ କସିରେ ।୫।
ଚନ୍ଦ୍ରିକା ତୁ ଚିରତୃଷିତ ଚକୋର ଚଞ୍ଚୁପୁଟ ମୋ ଲପନ ରେ
ଚୁମ୍ବେ ଚମତ୍କାର ରବ ନକରଇ ସବ୍ରୀଡ଼ ଜାଣି ତୋ ମନ ରେ
ମଞ୍ଜୁଳା, ଶିହରିବୁ ବୋଲି ଡରେ ରେ
ଚେଇ ପଡ଼ୁଥିବା ବେଳେ ଏକା ନଖ ଶିଖର ଗୁଞ୍ଜନ କରେ ରେ ।୬।
ଛଂନବ ବୟସୀ ଛଣାମୃତ ଭାଷୀ ତୁଅ ମଦଗଜ ଗତି ରେ
ଘୁଞ୍ଚି ଟେକାଇ ମୁଁ ତୋର ଭୃତ୍ୟ ବୋଲି ପ୍ରସରୁଅଛି ଜଗତୀରେ
ମଞ୍ଜୁଳା, ଛେଦନା' ଉନ୍ନତି ମୋର ରେ
ଛେଚ ହେବ ଛେଲ ମାରିହେବା ଅବା ସିନା ଶ୍ରୀଘୁମୁରେ ତୋର ରେ ।୭।
ଯେତେବ ଶମ୍ବର ଜମ୍ବୁନଦ ଜରଇମ୍ଭ ବରେବର ସ୍ତନାରେ
ଜାଣିଥିବ ଜମ୍ବାଗତ ଭାଗ୍ୟ ରମ୍ଭା ତୁଲ୍ୟ ନାସି ଉପାସନା ରେ
ମଞ୍ଜୁଳା, ଯାହା ତୁ ଫରମାସିବୁ ରେ
ଜବାବ ନ ଦେଇ ଯୋଡ଼କର ହୋଇ ସେ ଦଣ୍ଡ ସହିବ ସବୁ ରେ ।୮।
ଝଳି ଝଲମଲ ଝଟକ ହାଟକ ନ ସଞ୍ଚ କେଉଁ ଦୁର୍ମତି ରେ
ଝପାଇ ମନକୁ ଲୋଭରେ ମୋହରେ ବଳାଏ ବଳାଏ ରତିରେ
ମଞ୍ଜୁଳା, ଝୁଣ୍ଟି ମରିବ କେ ଧେନ ରେ
ଝୁମ୍ପା ଝାଲରିଅ ଅମ୍ବରରୁ ଖସି ଝଗଡ଼ ଝଗଡ଼ା ବନରେ ।୯।
ନନ୍ଦନ ବନ ତୁନ୍ଦ ହରିଚନ୍ଦନ ତରୁତଳ ବାସ ଥିବ ରେ
ନିର୍ଗନ୍ଧନ ମେରୁ ବନକୁ ଧନକୁ ପରୁରୁଛି କେଉଁ ଜୀବ ରେ
ମଞ୍ଜୁଳା, ନିର୍ଝର ନଦୀ ଡେଜିବ ରେ
ମୀଚ ପଣ୍ଡୁଜନ ମ୍ଲାନ ପାନ ମ୍ଲାନ ଜଳଗର୍ଭକୁ କେ ଯିବ ରେ ।୧୦।
ଟିକିଏ ବୁଦ୍ଧିଠ ନୋହି ସୁଧାଘଟ ଥିବ ଯା ରସନା ପାଣରେ
ଟାଙ୍କର ନ ଫରମାସିବ ସେ ନିଜ କର୍ କାସ୍ତ ନିର୍ଯାସ ରେ
ମଞ୍ଜୁଳା, ଟୋକଟା କେ ଟାଙ୍କ ଥିଲା ରେ
ଟେକାଟେକି କରି ଘୁମୁରେ କସଟି ଟୁପୁ କରି ଟିପି ଦେଲା ରେ ।୧୧।
ଠାକୁରଙ୍କ ସାକ୍ଷୀ କରି ଖଞ୍ଜନାକ୍ଷି ଯଥାର୍ଥ ଜଣାଉଅଛି ରେ
ଠକ ଆଚରଣ ମୋର ତୋ ଚରଣ ସେବାରେ ନାହିଁଟି କିଛି ରେ

ମଞ୍ଜୁଳା, ଟୋ'କର ହଣାଇ ଦେ'ନା ରେ
ଠ ଅକ୍ଷର ପରି ଜଗତୀରେ ଫେରିବାର ଦୟାକୃତା ବାନା ରେ ।୧୨।
ଡହାପଣି କଲେ ହେଲେ ମୁଁ ଦୋଷକୁ କ୍ଷମାଗୁଣେ କର ମନା ରେ
ଡମ୍ବ କୁରଙ୍ଗ ନୟନ ଜଣା ନେନ୍ତ ଅଞ୍ଚଳରେ ଥରେ ଅନା ରେ
ମଞ୍ଜୁଳା, ଡାକ ମୋତେ ପର୍ଯ୍ୟଙ୍କକୁ ରେ
ଢେଉଁ ପଡଉଛି ତୋ ଅଙ୍ଗେ ଅସୀମା କେମା ଜୀବନ ଅଙ୍କକୁ ରେ ।୧୩।
ଢାଳ ମୋରେ ଅନୁକମ୍ପା ତମ୍ପା ଶମ୍ପା ସମନ୍ତ-କମ୍ପଦ ମୂର୍ତ୍ତି ରେ
ତୋବାଇ ଅଧରୁ ତୋକେ ସୁଧାଧାର୍ ଧବଳିତ କର କୀର୍ତ୍ତିରେ
ମଞ୍ଜୁଳା, ତକ୍ରୁଛୁ ମୋ ମୋଦ ଶାଖୀ ରେ
ତାଳେ ଧୂତଜଳ ପିଆଇ ତା ମୂଳ ଦୃଢିମାକୁ ଦିଅ ରକ୍ଷି ରେ ।୧୪।
ତମୃଦ ଅଭିନବ ଦଳ ତମାଳତରୁ ଅତସୀ ଅଞ୍ଜନା ରେ
ଏତାମଦ ନୀଳଚେଳ ଏତେ ଦୃବ୍ୟେ ମୋ ସ୍ନେହ ବଢେ ତୋମନ ରେ
ମଞ୍ଜୁଳା, ଅପେ ମୁଁ ହାଜର ଅଛୁ ରେ
ଅତ କରୁଣାଦ୍ର ମନୁଟି ତ ତୋର ଅନୁକମ୍ପା ନାହିଁ କାହୁଁ ରେ ।୧୫।
ତରୁଣୀ ତିଳକୀକୃତ ତାମରସ ଚରଣ ପଦ୍ମଗାବଳି ରେ
ତପନ ତନୟା ତଟିନୀ ତଟକୁ ତୋଷ ରଣ ରସ କେଳି ରେ
ମଞ୍ଜୁଳା, ତଳକୁ ନ କର ମୁଖ ରେ
ତାଳକୁତୁଳ ପୂର୍ଣ୍ଣସ୍ତନା ଗୁମାନେ କାଳକୁ କଥା ନ ରଖ ରେ ।୧୬।
ଥରେ ତୋ ଶ୍ରୀମୁଖ ତୁଷାର ମୟୂଖ ଶୁଖିଲା ଦେଖିଲା ନାହିଁ ରେ
ଥରେ ଏହି ଉଦୟବନ୍ତୁଁ ମୋ ହୃଦୟ ଅପୂର୍ବ ସୁଷମା ଗୁହିଁ ରେ
ମଞ୍ଜୁଳା, ଥାପିଦେଇ କ୍ରୋଧଭର ରେ
ଥାଳ ତୁ, ମୁଁ ଯୋଗୀହେଲେଁ ବିପ୍ର ଯୋଗୀ ତୋତେ ସିନା ଅସୁନ୍ଦର ରେ ।
ଦୟା ଦରିଦ୍ର ସେ କୁବନ୍ତ ଦଇବ ଦେଇଛୁ ମୋତେ ଏ ଦଣ୍ଡ ରେ
ଦଳି ପକାଉଛୁ ଦାରୁଣ ନାରାଚ ଦମ୍ଭ ଦମ୍ଭୋଳି ମୋ ପିଣ୍ଡ ରେ
ମଞ୍ଜୁଳା, ଦେଲେ ହେଲେ ତୁ ଘଉଡ଼ି ରେ
ଦୁଃଖିଧନ, ତୋର ଜଘନ କି ହୁର କୁଞ୍ଜ ମନ୍ଦର ଦେହୁଡ଼ି ରେ ।୧୮।
ଧୀର ଯୁବତୀଙ୍କ ଧୀର ବର୍ଣ୍ଣ ସ୍ଥିତ ଶରୀ ମାଗୁଛୁ ଏତେକ ରେ
ଧନ, ମୁଁ ମୀନଜୀବନ ତୁ ନବୀନ ଘନ ତ ମୁଁ ଯେ ଗୃହକ ରେ
ମଞ୍ଜୁଳା, ଧ୍ୱଂସ କରିବ ମୋ ଓଜ ରେ
ଧକଧକାଟି ହେଉଛୁ ଧୂର୍ଜଟୀ ବପୁ ଧୂଳି ଧୂମଧ୍ୱଜ ରେ ।୧୯।

ନିପଟ ନିସର୍ଗ ହୃଦୟୁ ଯେ ଭର୍ଗ ପଢ଼ନ୍ତି ହେତୁବର ରେ
ନ ଦଣ୍ଡ୍ୟ ଅପରଚଣ୍ଡ କରେ ଅପେ ଦଣ୍ଡକରେ ସାଧକର ରେ
ମଞ୍ଜୁଳା, ନିଶ୍ଚିତ ହେଲେ ମୋ ଦୋଷ ରେ
ନଖର ପ୍ରଖର ପ୍ରାନ୍ତର କୁନ୍ତରେ ମୋତେ ଭୂମିଭୂଷା ଭୂଷ ରେ ।୨୦।
ପକାଇ ଜଘନ ଭର ତଳେ ମୋତେ ପଥର ନଦଳପର ରେ
ପୀନ ପୟୋଧର ପର୍ବତ ମୋର ଉରେ ଲଦିଦିଅ ଚୂର୍ଣ୍ଣ ରେ
ମଞ୍ଜୁଳା, ପୀଡ଼ି ଦନ୍ତେ ଦନ୍ତାମ୍ବର ରେ
ପୂତନାର ମୁଚୁଚୁକଦ୍ୱାରେ ପୂର୍ଣ୍ଣ ପିଇଦିଅ ପ୍ରାଣ ମୋର ରେ ।୨୧।
ଫାଟିଯିବା ଭଳି ମୋ ବାହାପୁଟଳି ଭିଡ଼ି ବନ୍ଧୁ କୁନ୍ଦହାସୀ ରେ
ଫିଟାଇ ଦେବାକୁ ହୁକୁମ ନ ଥାଇ ବାନ୍ଧ ବାହୁ ଦୃଢ଼ପାଶି ରେ
ମଞ୍ଜୁଳା, ଫରମାସିବୁ ତୁ ଯାହା ରେ
ଫନ୍ଦା କର ତାକୁ ଫୁଲପର ଶିରେ ବହୁ ସହିବ ସୁସ୍ନେହା ରେ ।୨୨।
ବିଶ୍ୱାସ ହଟଠ ନଜ୍ଜର ଶଠ ହୂର ହେଲେ କର ହୂର ରେ
ବସନ ଫିଟାଇ ବନ୍ଧନ ଫିଟାଇବାର ବୋଲି ଅସୁନ୍ଦର ରେ
ମଞ୍ଜୁଳା, ଝଗୁରବୁ ନାହିଁ ମନେ ରେ
ବରଜା କଙ୍କଣୀ ଏଥୁଁ ବଜ୍ରଦଣ୍ଡ ଦେଇଅଛୁ ଘନେ ଘନେ ରେ ।୨୩।
ଭୃତ୍ୟ କଲେ ଦୋଷ ପ୍ରଭୁ ବହୁ ରୋଷ ନ ଦଣ୍ଡିଲେ କେ ଦଣ୍ଡିବ ରେ
ଭରଜା ଦାସର ଦାସ୍ୟରେ ବିଶ୍ୱାସ ନ ମଣ୍ଡିଲେ କେ ମଣ୍ଡିବ ରେ
ମଞ୍ଜୁଳା, ଭର୍ତ୍ତାକୁ ଯେଷ୍ଟି ଭଣ୍ଡିବ ରେ
ଭରଣ ନ କଲ ପ୍ରଭୁ ତାର ଅଙ୍ଗ ନ ଖଣ୍ଡିଲେ କେ ଖଣ୍ଡିବ ରେ ।୨୪।
ମୋହନ ପଦାର୍ଥ ତୁ ସିନା କଶୋରୀ ମହୀ ଲଯୁକ୍ତ ଯେ ନୋହୁ ରେ
ମହୀ ଲବରୁଁ ମୁକ୍ତ ହେଲ ବହିଲ ଏ ବିଧି ଏତିକ ରହୁ ରେ
ମଞ୍ଜୁଳା, ମଦାଳସା ବ୍ରଜବ୍ରଜରେ
ମଲ୍ଲୀଦଲକୃତ ବହଳ ବିଛଣା ମଧ୍ୟରେ ଥରେ ବିଶ୍ରଜ ରେ ।୨୫।
ଯମସ୍ୱସାଜଳେ ଯୁବତୀଙ୍କ ମେଳେ କରୁଥିଲୁ ଅବଗାହ ରେ
ଯାଦୁପର ହୁଲ୍ଲିଁ ବୁଡ଼ିଅସି ଭିଡ଼ି ତୋଳିଲୁ ପଦାମ୍ଭୋରୁହ ରେ
ମଞ୍ଜୁଳା, ଯଥୋଚିତେ ଗୃଳି ନଖ ରେ
ଯତ୍ନେ ନଟବେଶ ଦେଖାଦେଲୁ ହା'ସେ ସଖୀମାନେ ଥିବା ସୁଖରେ ।୨୬।
ରମଣୀୟ-ଶୀଳ ରମଣୀମଣ୍ଡଳ ରମଣୀ ତୁ ତ ବିଦୁଷୀ ରେ
ରଣି ମନେ ଏହ କଥାକୁ କି ମଥା ନୁଆଇଁ ବସନ୍ତ ତୁଷି ରେ

ମଞ୍ଜୁଳା, ରହସ୍ୟ ଲେଖାନ୍ତ ଭେଦ ରେ
ରମ୍ୟଗୁଣ ଚଢାର ରଖଇ କି ପଛେ ଜଣୁଛ ସିନା ନିବେଦରେ ।୨୭।
ଲଭୁଛି ମଙ୍ଗଳାଙ୍କୁ ମୁଁ ଏକ ଜଣା ଲକ୍ଷେ ମଦାଇ ମୁକୁଳ ରେ
ଲଗଢ଼ ବଗୁର ଏକ ନଜରର ସ୍ପଗୋଚେ କର ମୁଁ କୁଳ ରେ
ମଞ୍ଜୁଳା, ଲଗାଇଲେ ପ୍ରେମଧାରାରେ
ଲଲନାମଣି ରେ ନ ପାଳିବାକୁ ସେ ଅଙ୍କାକୁ କାହାର ଗୃହ ରେ ।୨୮।
ବସ୍ତ୍ର ବସ୍ତ୍ରମ୍ଭର ଧୂଳି ପରମ୍ପରା ଲେଖିବାକୁ ବଦ୍ୟା ଥିବ ରେ
ବସ୍ତ୍ରାସୀ ଗୃହର ଦୋଷର ଅକର ତା' ଦୋଷ ଗଣା ନ ଯିବ ରେ
ମଞ୍ଜୁଳା, ବିବେକୀ ପ୍ରଭୁ ତୋ ପର ରେ
ବଖାଇ ନେଉଥାଏ କ୍ଷମାଗୁଣରୁ ଗ୍ରହଳଭାବ ନ ଧର ରେ ।୨୯।
ଶେଫାଳିକା ବାସ ଭ୍ରମରଗୁହାଳସ ପ୍ରସରଣୁ ହୋଇ ଗୃହୁ ରେ
ଶତପତ୍ର ବନବିଳାସୀ ପବନ ବହୁଲଣି ଯମୁନାରୁ ରେ
ମଞ୍ଜୁଳା, ଶିଶିର ହେଲା ନୀହାର ରେ
ଶୀତଳ ନୋହିଲା ଏବେ ବନପ୍ରେ ତୋ ଶତ୍ରୁ ଏ କି ଚମତ୍କାର ରେ ।୩୦।
ଷଡ଼ାନନ ପିତା ପ୍ରାସାଦମାନଙ୍କେ ବାଜୁଅଛି ଶଙ୍ଖ ନାଦ ରେ
ଷଡ଼ଙ୍ଘ୍ରିମାନେ କୁସୁମକଳି ଚୁମ୍ବି ତା' ତୁଲେ କଲେଣି ବାଦ ରେ
ମଞ୍ଜୁଳା, ଷଡ଼ୃତୁପ୍ରାୟ ଶେଷ ହେଲା ରେ
ଷୋଡ଼ଷୁଁ ନ୍ୟୂନ ବୟସୀ ଅକାରଣେ ତୋ ବେଷ ଶେଷ ନୋହିଲା ରେ ।୩୧।
ସହି ବାରକ ମୋ ଅପରାଧ ଏବେ କହିବାର କଥା ଯେନ ରେ
ସଙ୍ଖାଳି ସରସ ନେତ୍ରାନ୍ତେ ମୋହର ସମ୍ଭାଳି ରଖ ଜୀବନ ରେ
ମଞ୍ଜୁଳା, ସରିଲଟି ଗୃହୁଁ ଗୃହୁଁ ରେ
ସୁଧା ସାର ସାର ସଦ୍ଗୁଣ ବଚନେ ଥରେ ଅହା ବୋଲୁ ନାହୁଁ ରେ ।୩୨।
ହିମ ହରତାଳ ଡାଳ ସୁବର୍ତ୍ତୁଳ ସ୍ତନ ଲଗାଇ ମୋ ଛାତିରେ
ହର-ପରପନ୍ଥି ଶର ଜ୍ୱର ମନ୍ତ୍ରି ପଢାଅ ମନ୍ତ୍ରର ଗତି ରେ
ମଞ୍ଜୁଳା, ହାର ଏକା ସବୁ ମୋର ରେ
ହେଲା ଏଣିକି ମୁଁ ଯେବେ ଅଚରବି ହର୍ଷାଇ ଦିଅ ମୋ ଶିର ରେ ।୩୩।
କ୍ଷଣଦା-ପତିମୁଖୀ ଶ୍ୟାମମୁଖ ବାଣୀ ଶୁଣି ହୋଇ ସୁଖୀ ରେ
କ୍ଷୀରସିନ୍ଧୁ କୁନ୍ଦଅବଦାତ ମନ୍ଦ ସ୍ମିତ ରଦାମ୍ବରେ ରଙ୍ଗି ରେ
ମଞ୍ଜୁଳା, କ୍ଷିତି ପ୍ରସାଦେ ପଣ୍ଡିଲେ ରେ
କ୍ଷମା କନ୍ଦନ ଶ୍ରୀଭଞ୍ଜନନ୍ଦନ ଜଗଦ୍ଦେବ ବିରଚିଲେ ରେ ।୩୪।

---

( ୪ )

## ମୋହନା ଚଉତିଶା

### ରାଗ—ବସନ୍ତ

କଂସ ନଗରରେ ବିହରି ଶ୍ରୀହରି ହଂସଗମନାକୁ ଭାବି ରେ
କୁସୁମ ବିଶିଖେ ବିଦ୍ଧ ହୋଇ ଦୁଃଖେ ବୋଲନ୍ତି ଆହା ବାନ୍ଧବୀ ରେ,
ମୋହନା, କେତେ ଦୂର ଧାତା କଲା ରେ,
କି ଛଡ଼ ରହିଲି ଯାହା ପାଶେ ନେତ୍ର ପିଛୁଡ଼ି ହେଉ ନଥିଲା ରେ ।୧।
ଖମଣି-ନନ୍ଦନା-ତଟ ବନ ସୁନା ନିର୍ମିତ ଜଙ୍ଗମ ଲତାରେ
ଖୁଆ-ମୁହାଁ ନବନୀତେ ତ ନ ଥିବ ତୋ ଶ୍ରୀଅଙ୍ଗ କୋମଳତା ରେ
ମୋହନା, ଖଟପଡ଼ା ହଂସ ତୁଳୀରେ
ଖୁରି ଅର୍ଦ୍ଧକାଳ ବରଜ୍ଜ ମୋ କୋଳ ପହୁଡ଼ିଲେ ପଡ଼ୁଲୁଳି ରେ ।୨।
ଗଜେନ୍ଦ୍ର ଗର୍ବଗଞ୍ଜନ ଗମନା ଅଞ୍ଜନା ନୀଳକୁନ୍ତଳା ରେ
ଗୁଣରୂପ ରସବତୀମାନଙ୍କର ଗୁରୁ ମୋ ନେତ୍ରପିତୁଳା ରେ
ମୋହନା, ଗିରିତୁଙ୍ଗେଶ୍ୱର ସ୍ତନା ରେ,
ଗୋରି ତୁ ମୋ ଚିତ୍ତ ନିଖିଳ ଜଗତୀ ଶୀର୍ଷ ତୁଳନା-ବିହୀନା ରେ ।୩।
ଘେନା ଘେନି ବାଣୀ କୁହା ଯୋଗ୍ୟ ଠାଣି ଦୀନଜନ ଅନୁକମ୍ପା ରେ
ଘନକେଶୀ ଅଣୁମଧ୍ୟା ସିନା ଜାଣୁ ଶୃତ ମୋତନ୍ତୁ ମ୍ପା କମ୍ପା ରେ
ମୋହନା, ଘଡ଼ିଏ ନୁହେଁ ପାଶୋରି ରେ
ଘୃତାଚୀମୁଖ ଲେଖ ବାଳବାମାଏ ନୁହନ୍ତି ତ ତୋ ପା' ସରି ରେ ।୪।
ଙରେଙ୍ଗି ମୋର ସ୍ମୃତିକୁ ଆସିବାର ଦିନେ ନିତମ୍ବିନୀବର ରେ
ଙିଦ ନ ଥାଇ ନୟନ ରୁଜା ମିଳେ ଅଙ୍ଗଜାଲ ଅପସରରେ
ମୋହନା, ଙିକଟକୁ ଧୀରେ ଆସି ରେ
ନବ ଜାତୀ ସୂନ ଙ୍ଗରା ଖଞ୍ଜି ମୁଁ ନିଜେନୁ ନଦେ ଚଲି ଭାସି ରେ ।୫।
ଚୁମ୍ବି ଚିବୁକେ ଚଞ୍ଚଳ ପୟୋଧର ଚକ୍ରବାକେ ଦେଲି ପାଣି ରେ
ଚତୁର୍ଦ୍ଦିଶ ସେ ସୁଖ ଭୋଗିଲି କିନ୍ତୁ ନ ପାରିଲି ପର ଜାଣି ରେ
ମୋହନା, ଚିରସୁଖ ସ୍ୱାଦ ଅନ୍ତେ ରେ
ଚହିଁକି ପଡ଼ିଲି ହୋଇ ଚନ୍ଦ୍ରାନନା ନିବଡ଼େ ଭିଡ଼ିଲି ମୋତେ ରେ ।୬।
ଛକେ ଛକେ ତହୁଁ ଛବି ଜଳଧର ଛନ୍ଦ ପ୍ରତିଅଙ୍ଗ ଅଙ୍ଗେ ରେ
ଛପିଲି ଛ' ଦଣ୍ଡ ଯାଏଁ ପୁଲକାଣ୍ଡ ସମର ରସତରଙ୍ଗେ ରେ

ମୋହନା, ଛୁଡ଼ନ୍ତେ ଉନ୍ମାଦ ଫାଶି ରେ
ଛାଡ଼ ଛଗୁଅନା ଭଷ୍ମ ମୋ ଗ୍ରନ୍ଥି ବୋଲି ଭୁଷିଲୁ ଯା' ହସି ରେ ।୭।
ଜଗତୀଭୂଷାର ଜାଣିବାକୁ ସାର ମୁଁ କଲୁ ସୁଧାର ଯତନରେ
କବର ତ ବର-ଯୋଷା ତୁ ଶବର ସ୍ୱର ଅହବରେ ମାତି ରେ
ମୋହନା, ଜାଗରୁକ ଅତି ହେଲୁ ରେ
କବଜର ଭର ରସେ ମୋ ସନ୍ତାପ-ନଗଗ୍ରୀ ଜୁଡ଼ାଇ ଦେଲୁ ରେ ।୮।
ହଂସଧ୍ୱଜ ଗଜକୁମ୍ଭ ତୋ ଉରଜ କଟିଟି ତ ମାପ୍ୟା ସବୁ ରେ
ହଂଲବନ୍ଧୁ ବୃନ୍ଦ ହଂରବା ତନୁକୁ ହଂଲୁହଂଲୁ ଅଭ୍ୟାସକୁ ରେ
ମୋହନା, ହଂମୁଥିଲୁ ମାରମଦେ ରେ
ହଂଲକ ଲବଣ୍ୟ ନେକ ମାର୍ଗେ ଅସେ ଭରନ୍ତ ହେଲ ମୋ ହୃଦେ ରେ ।୯।
ନାଭମ୍ଭ ବମ୍ବ ଅଡ଼ମ୍ବର ଶମ୍ବର ସପନୁ ଉଣ୍ଡେମେ ବାନ୍ଧି ରେ
ନୟନ କଳୁଷ ନୁହେଁକି ନିଃଶେଷ ନିଧୁବନ କାଳେ ଗୁହିଁ ରେ
ମୋହନା, ନାହିଁ ତୋ'ପରି କିଡୁର ରେ
ନୀବ ନବରସ ଅର୍ଟେଲ ଗିଗ୍ରୀଶ-ଦର ମନ୍ଦର ତୋପ୍ରର ରେ ।୧୦।
ତୋକି ପଞ୍ଚଦଶ ଯାଏଁ ପରବେଶ ଦେଇ ଥାନ୍ତି କେତେ ବେଳ ରେ
ତୋପି କସ୍ତୁରୀତିଳକ ଶୋଭନୀ ତୁ ପଞ୍ଚଦଶ ଶଶୀପରି ରେ
ମୋହନା, ଟେକାଇ କୁସୁମାଲଟ ରେ
ଟିକେ ପରସରେ ଜଗ୍ମହେଲେ ସବେ ସଂସାର ସୁଷମା ଲୁଟ ରେ ।୧୧।
ଠକିବଥିବ ମୋ ଧନ ଷଣ୍ଢ କେବେ ନୋହୁବ ବୋଲି ଅନ୍ୟଥା ରେ
ଠାକୁରମାନଙ୍କ ପଦପୀଠରେ ମୁଁ ଠୁକୁଥାଏଁ ନିତି ମଥା ରେ
ମୋହନା, ଠକ ପ୍ରକୃଷ୍ଟ ଦଇବ ରେ
ଠେଲେ ମୋ ଚରଷ ଭରନ୍ତ ନକଲ ଏ ଦେହ କେଉଁ ସହ୍ୟବ ରେ ।୧୨।
ଡାକି-ମନୋହରମଧ୍ୟାକୁ ତ ହୂର କରନ୍ତୁ ନିର୍ଦ୍ଦୟ ହୃଦେ ରେ
ଡାକିବ ମୁଁ ଏବେ କାହାକୁ କି ଜୀବେଶ୍ୱରୀ କରେ ବୋଲି ମୋଦେ ରେ
ମୋହନା, ଡମ୍ଭ-ସାରଙ୍ଗ ଲୋଚନା ରେ
ଡକା ଭର ଦନ ପିବ ମୋର ପାପ ଦଇବ କଲା ରଚନା ରେ ।୧୩।
ଢୋକେ ତୋ ମଧୁର ସୁବାସ ଅଧର ମଧୁରସ ନ ପାଇଲି ରେ
ଢାଳେ ଫଲ-କଙ୍କପନ୍ନ ରଶାରଙ୍କ ଢୋଇ କାଳ ପୂହାଇଲି ରେ
ମୋହନା, ଢଳା ଚପଳ ନେତ୍ରାନ୍ତ ରେ
ଢାଳ ମୋ ବଦନେ ରଚନାର ସ୍ମୃତି ସ୍ୱପ୍ନ ହେଲ ପ୍ରାଣମିତ ରେ ।୧୪।

ଅଙ୍କରେ ପଙ୍କଜନେତ୍ରା ବସି ମୋର ଶରଦର ସୁହାସିନୀ ରେ
ଇନ୍ଦୁ ଇନ୍ଦୀବରକୁ ପ୍ରଶଂସିଲୁ ଧୀରେ ଅଙ୍ଗୁଳିକି ଦେଇ ଦର୍ଶି ରେ
ମୋହନା, ଅଳକ କସ୍ତୁରୀ ମସୀରେ
ଏଥିକି କେ ପାରିବ ମୋ ମା' ବୋଲି ଗଲୁ ହସି ମୋ ତନୁରେ ମିଶି ରେ
ତନୁରୁ ଅନ୍ତର ହୋଇବାରୁ ମୋର ଛଳେ ତ ସହି ନ ପାରୁ ରେ
ତରୁଣୀ ତମାଳ ତରୁକୁ ତରୁଣୀମଣି ପରିରମ୍ଭ କରୁ ରେ
ମୋହନା, ତରଙ୍ଗ ତୋର ମରଜ ରେ
ତପତ ତପନୀସୁତକୁ ମୀନାକ୍ଷି ପରି ମୀନାକ୍ଷୀ ଥାଏଁ ମୁଁ ଭଜି ରେ ।୧୬।
ଥିର ମନ୍ମଥରେ ଉର ଥରେ ଥରେ ସରି ଯାଉଥାଏଁ ମୁହିଁ ରେ
ଥାପି କରଦେଇ କି ଭାବରେ ପୂର୍ଣ୍ଣ ବିଭାବରୀବର ମୁହିଁ ରେ
ମୋହନା, ଥିଲେ ତୋ ଛାମୁରେ ବସି ରେ
ଥାଟପରି ମାଡ଼ି ଆସୁଥିଲେ ଛୁଡ଼ିଯାଏ ସ୍ମରତାପ ରାଶି ରେ ।୧୭।
ଦିନେ ଦିନେ ଦିନ ଦଧୀଚି-ଦୁହିତା ତଟ ଅଟବୀରେ ପଶି ରେ
ଦୁହେଁ ମିଶି ଫୁଲ ତୋଳିବା କାଳରେ କି ରସ ଯାଏ ବରଷି ରେ
ମୋହନା, ଦୁରାପ ସେ ଦେବତାଙ୍କୁ ରେ
ଦିବ୍ୟ ଦ୍ରବ୍ୟମାନ ମିଳୁ ତୋ ସମାନ ରସିକା କେ ଦେବ ତାଙ୍କୁ ରେ ।୧୮।
ଧରାଅ ପୁନ୍ନାଗ ଫୁଲକୁ ମୋ ଶିରେ ବୋଲି ତାହାକୁ ମୁଁ ଭାବି ରେ
ଧନ ମୋ କୋଡ଼ରେ ଥାଇ ମୋ ଗୋଡ଼ରେ ତୋଡର କରୁ ମାଧବୀ ରେ
ମୋହନା, ଧାର୍ମିକ ପଣକୁ ଜାଣିରେ
ଧରି ପ୍ରପଦରୁ ମଥାଯାଏଁ ଲକ୍ଷେ ଚୁମ୍ବିଇଁ ମୁଁ ଗଣିଗଣି ରେ ।୧୯।
ନକ୍ଷତ୍ରମଣ୍ଡଳ ରମ୍ୟ ଗୃହରୁ ଚେଳ ବଲ୍ଲରୀ ବଢ଼ି ସ୍ଥଳେ ରେ
ନିସ୍ତନ୍ଦ୍ର ଚନ୍ଦ୍ର ସୁନ୍ଦରମୁଖୀ ସଖୀବୃନ୍ଦ ଗାଧ ମଧ୍ୟସ୍ଥଳେ ରେ
ମୋହନା, ନିଶାମୁଖେ ବିଜେକର ରେ
ନିର୍ଜରାଧିନାଥ ନିତମ୍ବିନୀ ପରି ବିପଞ୍ଚୀକି ଅଙ୍କେ ଧରି ରେ ।୨୦।
ପ୍ରଶଂସାରେ ମୋର ପୂରି ରହୁବାର ଚମ୍ପକ ରସ କବିତାରେ
ପଞ୍ଚମେ ଫକାଇଥିଲୁ ମାଳବରେ ମାଳବର ବିଭୁଷିତା ରେ
ମୋହନା, ପହିଲୁଁ ତ ଦିନଶେଷେ ରେ
ପ୍ରଥୁ ଅପସର ପଛେ ଥିଲି ତୋର ପ୍ରିୟ ସହଚରୀ ବେଶେ ରେ ।୨୧।
ଫୁଲଇ ଫୁଲଙ୍କ ମୁକୁଳେ ଚୁମ୍ବିଣ ଗୋଟିଆଙ୍କ ମୋଦ ଦଳେ ରେ
ଫଣୀ ପକ୍ଷୀ ଖିନ୍ନ ଶିବଣା ପ୍ରଜଣୀ ସଙ୍ଗୀତେ ରସିବା ବେଳେ ରେ

ମୋହନା, ଫାଟିଲା ମୋ ଧୃତି ଘଟି ରେ
ଫଲ ଲୁଞ୍ଚମୁଖେ ଚୁମ୍ବିଲି ପଛରୁ ଭଙ୍ଗଧର ଶତଗୋଷ୍ଠି ରେ ।୨୨।
ବେହେଲା ସୀତାର ତମୁରା ଅମୃତ ପିନାକୀ ଚନ୍ଦ୍ର ମର୍ଦ୍ଦନୀ ରେ
ବଂଶୀମୁଖ ଚଙ୍ଗ ଖଞ୍ଜଣୀ ସାରଙ୍ଗ କିଙ୍କିଣି ମର୍ଦ୍ଦଳ ଗହ୍ନ ରେ
ମୋହନା, ବଜାଉଥିଲେ ଯେ ସଖୀ ରେ
ବ୍ରୀଡ଼ାଭରନତ ବଦନରେ ସ୍ମିତ ଧରି ପଳାଇଲେ ଦେଖି ରେ ।୨୩।
ଭରତ ବନ୍ଧୁର ଜଳା ଗୃଳନାଦ କଉତୁକ ମହୋତ୍ସବ ରେ
ଭରତ କଲଇଁ ସେ ଗୀତ ଶିବଙ୍କ ଅଗ୍ରତ ପ୍ରବୀଣ ହବେ ରେ
ମୋହନା, ଭାଗ୍ୟହୀନ ଦଶା ଏବେ ରେ
ଭଗାରି ହସାଇ ଦେଉଛୁ ଭସାଇ ତୋ ବିଚ୍ଛେଦ ମହାର୍ଣ୍ଣବେରେ ।୨୪।
ମାନସେ ମୋହର ନ ଥିଲା ମଦନ କେଳି ବଦ୍ୟା କଳ୍ପବଲ୍ଲୀ ରେ
ମଧୁରାଧରାମୃତ ପାନ ଏପରି ଅଧୀରା ହୋଇବି ବୋଲି ରେ
ମୋହନା, ମନ୍ଦମତି ଗୃହମୁଖ ରେ
ମାରି ନ ପକାଇ ମରିବି ପକାଇ ଦେଲୁ ମୋର ମୂଳ ସୁଖରେ ।୨୫।
ଯନ୍ତ୍ର ଶତଶତ କଲେ ହେଲେ ଶିତସ୍ମିତା ଯା ନଦେଉ ଧରା ରେ
ଯନ୍ତ୍ର ଧୁରନ୍ଧର ସ୍ମରଶୈଳୁଁ ଶର ମାୟାବଦ୍ୟା ତୁହି ପରା ରେ
ମୋହନା, ଯଶହୀନ ମୋ କରମ ରେ
ଯାତ ଯାମ କରି ଦେଉଛୁ ମନ୍ଦରୀ-ମଣ୍ଡନା ତୋ ସଙ୍ଗୋଦ୍ୟମ ରେ ।୨୬।
ରତି ରସାଞ୍ଚଳ ସମୟେ ଚଞ୍ଚଳଭାବ ନୟନେ ନ ଥାଇ ରେ
ରଣକୃତ-ଶର-ବ୍ରଣତନୁ ଶୂର ପରି ଅଳପ ବ୍ୟଥାଇ ରେ
ମୋହନା, ରୁଷିଲାପରି ଶ୍ରୀମୁଖ ରେ
ରଖି ତାରକା ମନ୍ଥର ନେତ୍ରାନ୍ତରେ ସସ୍ମିତେ ଦେଉଥିଲା ସୁଖ ରେ ।୨୭।
ଲକ୍ଷ ଲଡ଼ୁ ଲମ୍ବୋଦରଙ୍କ ଅଧରେ ଲଗି କରାଇବା ଫଳରେ
ଲେଖା-ଲେଖ ଶୀରି ସିନା ଗୈରିକର ମଣ୍ଡିଛୁ ତୋ ବକ୍ଷସ୍ଥଳ ରେ
ମୋହନା, ଲୋକ ବୋଲେ ପୟୋଧର ରେ
ଲଗେ ଅତି ଭାରୀ ଯେଣୁ ମେରୁପରି ହେବାରୁ ସମୁକ୍ତା-ହାର ରେ ।୨୮।
ବକୁଳବଲ୍ଲୀ ବାସରେ ଯତନେ ହୋଇ ବଶ୍ୱକେତୁ ରଥାତୁରା ରେ
ବସିଥିଲୁ ମୋର ଉସଙ୍ଗରେ ରସି ବଶୀକରଣ ଚତୁରା ରେ
ମୋହନା, ବମ୍ବାଧରୁ ଦେଇ ମଧୁ ରେ
ବଡ଼ଦେଶ ପରି ଏ ସୁଅଦ ହେବକି ବୋଲି ଯେ ସୁନବବଧୂ ରେ ।୨୯।

ଶଚୀ ଶତମୁଖ ବୁଝେଁ ଯେଉଁ ସୁଖ ନ ଲଭନ୍ତି ଅଭିଳାଷ ରେ
ଶଶୀ ସକଳ ଶିରଭୂଷା ପ୍ରସାଦୁଁ ହୋଇଥିଲ ଅମ୍ଭ ବଶ ରେ
ମୋହନା, ଶାତଘାତିନୀ ଏ ଦଶାରେ
ଶମ୍ଭୁ ପ୍ରସାଦକୁ କରନେଲ ଶଣ ବଶାଣ ସଦୃଶ ମୃଷା ରେ ।୩୦।
ଷଟ୍‌ପଦ ଯୁବାପର ଅଚରବା ଚରିତ ମୋର କୁହନା ରେ
ଷୋଡ଼ଶରୁ ଊଣା ବୟସୀ ରେ । କିଣା ତୋହର ଏ ପ୍ରାଣସିନା ରେ
ମୋହନା, ଷଡ଼ଙ୍ଘ୍ରି ନୀଳ କୁନ୍ତଳା ରେ
ଷଡ଼ାସ୍ୟ ଜନକ ବିପକ୍ଷ ତଟିନୀ ତରିବାକୁ ତୁ ମୋ ଭେଳା ରେ ।୩୧।
ସରସିଜ ସୂନୁ ସରଳିବ ନାହିଁ ସରସ ହେବା ସଂସାର ରେ
ସର୍ଜିଲେ ସର୍ବଥା ସଞ୍ଚିତ କରିବ ନାହିଁ ତହିଁ ସ୍ନେହ ସାର ରେ
ମୋହନା, ସ୍ନେହକୁ ଯେବେ ସର୍ଜିବ ରେ
ସ୍ନେହୀ ବିରହରେ ସେହିକ୍ଷଣେ ସରିଯିବାକୁ ଉପାୟ ଥିବ ରେ ।୩୨।
ହଣ୍ଡିର ହାର ହୀରକ ହିମଚୟ କୁମୁଦ କର୍ପୂର ହାସୀ ରେ
ହଇରାଣ ବଡ଼ ହେଲି ତୋତେ ହୃଦେ ହରାଇ ହୋଇ ପ୍ରବାସୀ ରେ
ମୋହନା, ହେବ ହରକୃପା ଲବେ ରେ
ହେମସାର ଗୋରି ମୃଦୁ ତନୁଟି କି ଏ ମସାର ଯୁତ ହେବ ରେ ।୩୩।
କ୍ଷମଦା, ରତିବାନ୍ଧବୀ ସୁଖୀକର ବିରହୁଁ ବ୍ରଜେନ୍ଦ୍ରସୁତ ରେ
କ୍ଷଣାର୍ଦ୍ଧକୁ ଯୁଗଠାରୁ ଅତି ଦୀର୍ଘ ଘେନି ହୋଇ ସନ୍ତପତ ରେ
ମୋହନା, କ୍ଷମ ନୋହୁ ବିହରଣି ରେ
କ୍ଷୀଣାନନ୍ଦ ହେଲେ ଜଗଦେବ ହରିଚନ୍ଦନ ଭୂପତି ଭଣେ ରେ ।୩୪।

———

( ୪ )

## ସଖୀ ଚଉତିଶା

### ରାଗ—ପୂରବୀ—ଏକତାଳି

ଅରେ ପ୍ରାଣସଖି,
ପ୍ରାଣ ନନ୍ଦନେ ତୋ ବିନା ତାକୁ ଦେଖି,
ବାଣ ବନ୍ଧେ ମନ୍ମଥ ମର୍ମ୍ମକୁ କୋପି,
ପ୍ରାଣ ଅଳ୍ପ ନ ପାଇବି ପରି ରଖି ।ଘୋଷା ।

କଞ୍ଜନୟନ ଯେ କେ ଗୋ କହ—ଅଞ୍ଜନପୁଞ୍ଜ ମଞ୍ଜୁଳ ଦେହ,
ଖଞ୍ଜନନେତ୍ରା ସେ ସତ ମଦଗଜ-ଗଞ୍ଜନ ଗୁଞ୍ଜ କନ୍ଦର ସିଂହ ।୧।
ଖଣ୍ଡହୁଡ଼ୁ ଦୃଷ୍ଟି ପଡ଼ିଗଲା—ଖ'ମଣ୍ଡଳେ ଧୃତି ଉଡ଼ିଗଲା,
ଖସି ମତ୍ତ ଲତିକାରୁ ସାରସାର ବିବେଚନା ଫଳ ଝଡ଼ିଗଲା ।୨।
ଗମ୍ଭୀର ତା'ର ଲାବଣ୍ୟବନ—ଗୋଟିଯାକ ବୁଡ଼ିଗଲା ମନ,
ଗଲା ତହିଁ ରହି ଆସ ପାରୁନାହିଁ ଏ ଯେନ ହୋଇଲା ତା ଅଧୀନ ।୩।
ଘାଣ୍ଟି ହେଉଅଛୁ ହୃଦାନ୍ତର—ଘରେ ମନ ରହୁ ନାହିଁ ମୋର,
ଘରମ ଉଦକ ଶ୍ରବ ହେଉଅଛୁ ଭରମୁ ମୋ ଦେହ ଥର ଥର ।୪।
ନିର୍ମ୍ମଳ କସ୍ତୁରି ବାନ୍ଧୁଥିଲା—ନଉନୁର ଶିର ବନ୍ଦୁଥିଲା,
ନୂଆ ନୀଳଜଳ ହେଲେ ନବଲକ୍ଷ ନକ୍ଷତ୍ର ନାଥକୁ ନିନ୍ଦୁଥିଲା ।୫।
ଚଞ୍ଚଳ ଚନ୍ଦ୍ରକ ଚୂଡ଼ାଚୂଳ—ଚଳିବଲ୍ଲୀ ନାଚ କି ମଞ୍ଜୁଳ,
ଚରଣତଳେ ତାହାର ଚୁମ୍ବିଥିଲେ ଚକ୍ରବର୍ତ୍ତୀ ହୋଇ କେଉଁ ଫଳ ।୬।
ଛାଡ଼ି ମନୁଜସ୍ତୁ କୁତୁହଳେ, ଛପନ୍ତି କଦମ୍ବ କୁଞ୍ଜ ତଳେ,
ଛାଇ ହେଲେ ତାର ଛାତକି ଛୁଇଁବ ଛତ ଚୈକାନ୍ତି ଅବଲାକୁଳେ ।୭।
ଯେବେ ତା କୃପା ନୋହିବ କିଛି—ଜାଣିଥାଅ ଜଣା କରୁଅଛି,
ଜସ ନୋହିବାର ଜାଙ୍ଗଳଜହର ଗଳିବ ଜୀବ କି ହେଉ ଛୁଛି ।୮।
ଝଲକ ମାନସେ ଖେଳିଲଣି—ଝମିଟକୁ ଯୁଗ ବଳିଲଣି,
ଝଙ୍କିବାରୁ ଝସଧ୍ୱଜ ପୀଡ଼ାଝାଞ୍ଜି, ଚେତା ଲତିକାଟି ଲୁଳିଲଣି ।୯।
ନ ଲୋଡ଼ି ସ୍ୱଚ୍ଛୋପଚୟନକୁ—ନିଶ୍ଚିତ ହେଲେ ହେଁ ଶୟନକୁ,
ନିଦ ନ ଛୁଇଁବ ନୟନ ଯୁଗକୁ ନିରେଖି ନିକୁଞ୍ଜ ଅୟନକୁ ।୧୦।
ଟିକିଏ କରୁଣା ବହି ଚିତ୍ତେ—ଟାକି ଭାଳ କହ ତା ପ୍ରିୟତେ,
ଟମକ ବଜାଇ ନିଜଗତେ ତାର ଟୋକି କରି ପଛେ ରଖୁ ମୋତେ ।୧୧।
ଠିକ କେଉଁ ତା ରଦନ ବାସ—ଠଣି ସୁନ୍ଦର ମୋହନ ହାସ,
ଠାକୁର କହନ୍ତି ବଡ଼ଅ ଗଟନ୍ତି ଠଉରିଲ ତାର ଅବକାଶ ।୧୨।
ଡାକି ଦେଇଥିଲେ ନୟନାନ୍ତେ—ଡରନ୍ତି ନାହିଁ କହାକୁ ଚିତ୍ତେ,
ଡେଇଁ ପଡ଼ନ୍ତି ତା ସଙ୍ଗ ଛଟିଣୀକ, ଡାକହାକ କହୁଅଛି ତୋତେ ।୧୩।
ଢାଳେ ନୋହି ଢୁକୁ ଢୁକୁଢୁକୁ—ଢଳିଯିବ ସତେ ମୁଁ କେବକୁ,
ଢୋଳାଇ ଢୋଳାଇ ତା ଅଧର ସୁଧା, ଢୋକେ ଢୋକେକର ଢୋକୁଢୋକୁ ।୧୪।
ଉଠାଇ ନେବାକୁ ମନ ମୋର—ଏହିଠାରେ କଲା ବେଦବର,
ଅଧସି ତମାଳ ଅଞ୍ଜନ ନବଳ, ଅଭିନବୋଦୟ ଅମ୍ବୁଧର ।୧୫।

ନୂଆ ନାହୁଁଅର ସେ କିଶୋରୀ, ନେତ୍ର ଦେଖିଲେ ଦେଖିବ ପର,
ନିଦ ନିମିଷ ନଥାନ୍ତା ନେତ୍ରେ, ପୁଣି ହୋଇଥାନ୍ତା ମୀର ନିଧି ସବ ।୧୬।
ତା କଟି ତଟରେ କି ଅମ୍ବର, କିଶୋରେ ନାହିଁ ତା ଅଡ଼ମ୍ବର,
ତପନୀୟକୁ ତା ତୁଲେ ମୁଁ ତୁଳିଲେ, ତାଳିମାରି ଉଡ଼ାଇବେ ନର ।୧୭।
ଥାପିରେ ତା ସ୍ନେହ ଜଣାଯାଉ, ଥୋକାଏ ବଟବକ ଥାଉଥାଉ,
ଥରେ ମୋ ଅଧର ପିଆଇବ, ସେତେ ଥୁ ଥୁ କରି ପଛେ ପିଙ୍ଗିଦେଉ ।୧୮।
ଦଇବ ଦୟା ବହିଲେ ମୋରେ, କୁଃଖିକୁ ଦବାଇ ଦେଇ ହୃଦରେ,
ଦୁର୍ବାଦଳ ଶ୍ୟାମ ସଙ୍ଗତ ଲଭିବ, ଦୁର୍ବାଦ ଲକ୍ଷେ ଦଂଶନ୍ତୁ ନରେ ।୧୯।
ଧୂଳିପଣ ପଛେ ହେଉ ଖ୍ୟାତ, ଧ୍ରୁବ ଯାଏ ଯାଉ ଅକୀରତ,
ଧକ୍କାମାରି ଘଉଡ଼ାଇ ଦେବାଯାଏଁ, ଧନ କରିବି ମୁଁ ତାହା ପ୍ରୀତ ।୨୦।
ନାହାନ୍ତି କେତେ କିଶୋରବର, ନୀପ ତରୁତଳ ଅଳଙ୍କାର,
ନଳୀନ ଚରଣ ନଖକାନ୍ତି କଣ, ନେତ୍ରେ ନ ଦେଖିଲି ମୁଁ ତାହାର ।୨୧।
ପ୍ରାଣୁ ଅଧିକ ମୁଁ ତୋର ବୋଲି, ପ୍ରୀତି ଭଙ୍ଗ ଭୟୁଁ ପସୁରଲି,
ପସୁର ପିଇବା ପୀୟୁଷ ନୁହେଁ ସେ ପକାଇ ଦେଉ ପଶିବ ପେଲି ।୨୨।
ଫୁଟିଲି ମଲ୍ଲୀକୁ ଗିରିବନେ, ଫୁଟି ତାହା ସଙ୍ଗ ନିଧୁବନେ
ଫନ୍ଦାକରି ତାର ପ୍ରୀତିରତନକୁ ଫୁଲିବି କି ମୋଦେ ମନେମନେ ।୨୩।
ବିଷାଇବା ବଜ୍ର ମୃଦୁ ଜାଣି, ବିଷମ କେଡ଼େ ତା ଅନାଉଁଣି,
ବାଳ୍ୟବଳ ଚାଳିର ଶୀର ତ ରାଜୀବ,-ନୟନାର ଜୀବ କେତେ ପୁଣି ।୨୪।
ଭୁଞ୍ଜାଇବାର ତ ଗୁଣ ଏଡ଼େ, ଭଲ୍ଲ ବୁଲିବ ସୁରସ କେଡ଼େ,
ଭିତରେ କୁଞ୍ଜର ଅଗୁ ଜଗି ଥିବେଁ, ଭଣ୍ଡଦେବ ଲୁଚି ପଛଅଡ଼େ ।୨୫।
ମନୋଜ୍ଞ ମକର କୁଣ୍ଡଳକୁ, ମୁଖଜାତ ବିଧୁମଣ୍ଡଳକୁ,
ମଜ୍ଜାଇବ ରସ ଯେ ବାମା ଦରଶେ, ମାନିବିକି ସେ ଅଖଣ୍ଡଳକୁ ।୨୬।
ଯଶ ନେବ କି ମୋ କର୍ଣ୍ଣ ଧନେ, ଜାତ ହୋଇ ଯମୁନାର ବନେ,
ଯତ୍ନମଣି ଜଳେ ପଶିଲେ ଜାଳିବ, ଜଳଜ ଚରଣ·ମୋ ଜଘନେ ।୨୭।
ରମାରମଣ ରଥାଙ୍ଗ ପାଣି, ରଙ୍ଗକୁ ରଚନ ଦେବେ ପୁଣି,
ରଖି ଉରଜେ ସ୍ୱଇଚ୍ଛା ପିନ୍ଧୁଥିବ, ରତ୍ନ୍ୟୁକ୍ତ ରତ୍ନକାନ୍ତ ଜାଣି ।୨୮।
ଲୋକକୁ ଲଜେ ନ ଥାଇ ଡର, ଲପନ ଚୁମ୍ବିବା ଧନ ତାର,
ଲସ ଲଡ଼ୁ ଲମ୍ବୋଦରଙ୍କ ଅଧରେ, ଲାଗେ ହେବା ସଂକଳ୍ପ ମୋର ।୨୯।
ବେଗେ ଘଟାଅ ମୋ ବାଞ୍ଛାଫଳ, ବଗୁରିବାକୁ ଯେ ନାହିଁ କାଳ,
ବିଳମ୍ବ ବହିଲେ ବଞ୍ଚୁ ପାରିବ କି, ବାଧିଲାଣି ବଡ଼ ନାହିଁ ବଳ ।୩୦।

ଶଙ୍କର ରହୁ ତୋ ସ୍ନେହ ଦଶୁଁ, ଶଶୀଖଣ୍ଡଧର-ପର ନାଶୁ ।
ଶରଣ ହେଉ ସେ ମଦନମୋହନ, ସେ ଶିଖଣ୍ଡଚୂଳଧର ଶିଖୁ ।୩୧।
ଷଡ଼ାଶ୍ୟଜନକ ରୂପ ରସେ, ଷଟ୍‌ପଦ ଧ୍ୱନି ମଧୁର ଦେଶେ,
ଷୋଡ଼ଶକୁ ଗୃହ ଗୁଣରେ ହରୁର, ମାଡବ ତା ତୁଲେ କେବେ ତୋଷେ ।
ସତ୍ୱର ହୋଇ ତୁ ଯାଅଯା'ରେ, ସନ୍ଦେଶ ମୋର ବଖାଅ ଖାରେ,
ସହୁ ନ ପାରଇ ଅଉ, ପଞ୍ଚବଟି, ଏ ବଖାରେ ଯାଇ ରବାଜା ରେ ।୩୩।
ହରଟେଷ ମୋ ମନକୁ ମହାଇ, ହଖାରେ କହନ୍ତୁ ସମଝାଇ,
ହଟି ମୋ ହୃଦୟ ଭୁଡ଼ି ରହୁଲଣି ହରହୃଦୟମଣି ଶ୍ୟାମେ ଯାଇ ।୩୪।
କ୍ଷଣେ ହେଲେ ତାକୁ ଭେଟ କର, କ୍ଷିତିକ ମଣି ନିଦବ ସର,
କ୍ଷମାନାଥ ହରଚନ୍ଦନ କହଇ, କ୍ଷମ୍ୟ ହେଲେ ହେଉ ଅବ୍‌ଜପର ।୩୫।

---

( ୧ )

## ରାଗ—ଅଷାଢ଼ଶୁକ୍ଳ ।

### (ବସନ୍ତ ବର୍ଣ୍ଣନା)

ପ୍ରବେଶ ହୋଇଲା ଋତୁରାଜନ   ହରାଇଲା କାମେ ଅତୁଳ ଜନ,
ହେଲେ ସବୁର ବଲ୍ଲଭ ଜୀବନ   ପଡ଼ିଲା ଫୁଲି ତରୁ ଲତା ବନ ।
ଭୃଙ୍ଗ ଗରଜନ, ଶୁଣି ମତ୍ତ ହେଲେ ନାଗରଜନ ।୧।
ବହିଲା ମନ୍ଦ ମନ୍ଦ ନଭସୂତ   କୁହୁଡ଼ି ହୀନ ହେଲା ନବସୂତ,
ନ ହରଲେ ଅବା ରବି କାଶିତ   ହୋଇଲେ ପଦ୍ମମାନେ ବିକଶିତ ।
ସେ କାମିନୀ ରତ, ଇଚ୍ଛାକଲେ ମନେ କାମୀ ନିରତ ।୨।
ହୋଇଲେ ବିରାଜମାନ ବକୁଳ   ପାଇଲେ ପ୍ରମୋଦ ମାନବକୁଳ,
ଅତି ସେ ବଢ଼ିଲା ଦର୍ପକ ବଳ   କଲା ସେ ବିରହୀ ଦର୍ପ କବଳ ।
ଭେଦେ କବି କଳ,—କଣ୍ଠୀ ସୁମର ପଥିକ ବାକୁଳ ।୩।
ଦଳେ ଦଳେ ଭୃଙ୍ଗ ସଙ୍ଘ ଜୁଡ଼ିଲେ   ପାନ୍ଥକୁ ପ୍ରୀତ୍ୟାଠାରୁ ଘଉଡ଼ିଲେ,
ମଦନଶର ଦେହେ ହାରୁଡ଼ିଲେ   ଏଣୁ ରସରେ ସୁଦେହା ବୁଡ଼ିଲେ ।
ଭୋଗୀ ପହୁଡ଼ିଲେ, ନାରୀ ଯେଣ କାମ ତାପ ଛୁଡ଼ିଲେ ।୪।
ମୋହିଲା ମନ୍ମଥ କନ୍ଦର୍ପ ଶରେ   କଲେ ଅବଳା ଅଧର ପଞ୍ଚରେ,
ରସିକଜନ ରହି ପୀରତିରେ   ମାତିଲେ ବଶହୋଇ ପୀରତିରେ ।
ସେ ଧବା ରାତିରେ, ସର୍ବେ ମତ୍ତହେଲେ ଶିବରାତିରେ ।୫।
ଭମିଲେ ପୁଷ୍ପମାନଙ୍କେ ଭ୍ରମରେ   ନଚଲେ ନାରୀମାନଙ୍କେ ଭ୍ରମରେ,
ପୂର୍ଣ୍ଣ ହେଲା କର୍ଣ୍ଣ ପିକ ରବରେ   ହେଲେ ନାରୀଙ୍କର କିଙ୍କର ବରେ ।
ନାରୀ ସ୍ୱଭାବରେ, ଭୁଲାଇଲେ ରତି ରସ ଭାବରେ ।୬।
ଏକାଳେ ତେଜିଲ ଜୀବସଙ୍ଗିନୀ   ଶୁଖି ତା ମୁଖସରୋଜ ଯିବନି,
ନଥିବ ପୂର୍ବପର ଦେହ ବନି   ଘୋର ଚିନ୍ତା ଅସି ହୃଦେ ହେବନି ।
ଅହା ହା ସଜନୀ, ହୋଇନଥିବ ମୁଖେ ହାସ ଜନି ।୭।
ତେଜି ନିଃଶ୍ୱାସ ପରାଣ ଦୁଃଖରେ   ଚାହୁଁଥିବ ପଥ ଧରି ନଖରେ,
ପଡ଼ିଥିବ ଏକାନ୍ତ ରଙ୍ଗ ନୀରେ   ନିଦ୍ରା ନଥିବ ଅଜ ରଜନୀ ରେ ।
ମାର-ବୀର ଶରେ, ଗଣା ହେବଣି ବନ୍ଧ ବରସ ରେ ।୮।

ଅହା ରେ ସୁରତ କଳପତରୁ　　ତନୁ ତ କୋମଳ ଜଳପ ତରୁ,
ଭ୍ରମେ ନାକ ମୋତେ ତୁ ସ୍ୱାନ କରୁ　ତୋ ମୁଖ ସୁନ୍ଦର ଚୁମ୍ବନ କରୁ ।
ଏ ମଦ-ଜ୍ୱରରୁ, ଅସ୍ତ ତ ହେବଣି ପ୍ରମଦନରୁ ।୯।

ମଣ୍ଡୁ ଥାଉ ମଣ୍ଡା ଅଗମନରେ　　କେବେ ନ ଘେନୁ ତୁ ଅଗ ମନରେ
କିଶୋରୀ ଦଶଇ ବାସବ ପୁରେ　　ସେପରି ନଥିବ ବାସବ ପୁରେ ।
ତମାଳକେଶୀ ରେ, ମୋ ବନୁ ଖଞ୍ଜିବ ମାଳ କେ ଶିରେ ।୧୦।

ତୋ କୁଚଯୀ ଦେଖି ଟୋ ନବରସିକେ ଯାଉଥିବେ ଅଶ୍ରୁ ନବରଷି କେ,
ବୋଲୁଥିବୁ ମୁଁ ତ ଶର ସାୟକେ　　କେହୁ ବଞ୍ଚିବ ଏ ସ୍ମରଣାୟକେ ।
ଅହେ ବନାୟକେ, କୃପାକଲେ ସଙ୍ଗ ହେବ ନାୟକେ ।୧୧।

ନ ଲଭି ହରବାଦ ନବରସ　　ହେବନି ତୋର ବାଦ ନବରସ,
ମଣ୍ଡୁ ନଥିବୁ ହାର ମଣି ପାଶ　　ସତେ କି ଯିବ ହାସ୍ୟମଣି ପାଶ ।
ତୋତେ ନୂଆ ବେଶ,—କର ଭଙ୍ଗିବ ଅତନୁ ଅବେଶ ।୧୨।

ଥିବ କି ମନେ ଏକ ଦିନକର　　ଅସ୍ତାଚଳକୁ ଗଲେ ଦିନକର,
ବୋଇଲି ବନ୍ଧୁ ମୁଁ ତୋ ପରକର　　ମାଗୁଅଛୁ ରତେ ତୋ ପରକର ।
ମୁଁ କହିବ କର,—ଧଇଲି ରେ ଧନ ମୋହିନୀ କର ।୧୩।

କରବାକୁ ସମାଦର ମୁଁ ଚିତ୍ତ　　କଲି ତୋତେ ଦିଗମ୍ବର ମୂରତି,
ଆନନ୍ଦରେ ନଦଶିଲ ଜଗତୀ　　ରହିଲା ନାହିଁ ଅଙ୍ଗ ଲଜ୍ଜ ଗତି ।
ଏହୁ ବସୁମତୀ, ମଧ୍ୟେ କେ ତା ଦେବ ଭେଟ ସୁମତି ।୧୪।

ଲୁଗୁଇ ମୋ ନେତ୍ର ଲଳନା, କରେ　ଲୁଗୁଇଲୁ ମୋତିଫଳ ନାକରେ
ଖେଳାଇଲୁ ବେଣୀ ପିଠି ଅଡ଼ରେ　　ପଳାଇଲା କାମ ଶଟିଆ ଡରେ
ମୋ ସମା ନଖରେ—ସରଜିଲୁ ଯେ ଅଙ୍ଗମାନ ଖରେ ।୧୫।

ନିଶବଦ ହୋଇଲା ତ ନୂପୁର　　ନଗ୍ନ ହେଲୁ ଯେ ତୁ ଅତନୁ ପୁର
ଝାଳ ହେଲୁ ଅଙ୍ଗୁଳି ବାହାର　　ଛୁଟିଗଲା ଦୋଳି ଖେଳିବା ହାର
ଯୁବତୀ ଶେଖର—ନଗ୍ନ ଇଲୁ କଟି ଅତ ସେ ଖର ।୧୬।

ଶୁଣି ତୋ କିଙ୍କିଣୀ ବରତ ରବ　　ନିବର୍ତ୍ତିଲା ରତିପତି ଗରବ
ସେ ଭାବ ଆଉ ତୋ ବିନା କେ'ଦେବ ଆଉ ନ ଥିବେ ଯାହା ନାକେ ଦେବ
ମୋ ଏ କାମ ଜିବ-ବେଗେ ମୋର ସେ ରସିକା ମଜ୍ଜିବ ।୧୭।

ଶିବଙ୍କୁ ଭାବି ବୋଲେ ବଳଦେବ　　ଏହି ବର ମୋତେ କେବଳ ଦେବ
ନେଉଅଛୁ ମୋର ଏ କାମ ଜୀବ　　ବେଗେ ମୋ ରସେ ରସିକା ମଜ୍ଜିବ
ଅହେ ଉମାଧବ, ଭେଟିବି ପ୍ରିୟା ନଯାଉ ମାଧବ ।୧୮

( ୨ )

# ବର୍ଷା ଋତୁ

ରାଗ—ଆଶାଢ଼ଶୁକ୍ଳ

ଅବିର୍ଭୂତ ହେଲା ଆସି ବରଷା     ମାଲତୀ ବିକାଶୁଁ ବାସିବ ରସା
ଜମ୍ବାଲ ହୋଇଯିବ ଭୂପରାଗ     ଉଚ୍ଚୁଟେଣି ଲୋଡ଼ି ସ୍ମରଭୂପ ରାଗ
ସୁଖେ ବିହରିବେ,
ନବ କାଦମ୍ବିନୀ ନୀର ହରିବେ ।୧।

ହୋଇବ ପରଦାର ଅଙ୍ଗୀକାର     ଗତ ନୋହୁବେ ମୃତ୍ୟୁ ଅନ୍ଧକାର
ବିକଶିତ ହେବ ବହୁତ କାଅ     ପରସ୍ପର ଭୁଜବଲ୍ଲି ଢକାଅ
ହେବ ଜପଧାନ,
କେଦାରେ ହେବ ନାନାରୂପେ ଧାନ ।୨।

ଶୁଣି ଭୀଷଣ ଘନ ଗରଜନ     ଚମକିବେ ଭୀରୁ ନଗରଜନ,
ଅନ୍ଧକାର ହେବ ଦିନ ନିଶାରେ     ଖ-ମଣି ଲୁଚିବେ ନଭୋମଣ୍ଡଳେ,
ଖେଳିବ ଚପଳା,—
ବୋଲି ପ୍ରବାସୀ ଧୃତି ନୀଚ ପଳା ।୩।

ଧରିଲେ ଏବେ ଯେ କର କା କର     ମୂର୍ଚ୍ଛିବେ ସେ ଘନେ କରକା କର
ନାଚିବେ ପ୍ରମୋଦ ଭଜି ବରହୀ     ବିଯୋଗୀ ଜୀବ ନାକ ଯିବ ରହି,
ଫୁଟିବ ଗଣିକା,
ସନ୍ତତ ରଣୁଁ ଫୁଟିବ ଗଣିକା ।୪।

ସମ୍ବନ୍ଧ ହୋଇବ କୋନାବିଶାରେ     ସଢ଼ିବେ ଅଧୂନନେ ନିରାଶାରେ,
ସଂଯୋଗୀଜନେ ହୋଇ ପରବଳ     ଦଳିବେ ଚନ୍ଦ୍ରଚୂଳ-ପର ବଳ,
ଭେକ କଳକଳ,
କରିବ ପାନ୍ଥ ଧୃତି କଳକଳ ।୫।

ବିବେକ ଦ୍ରୁମର କ୍ଷିପ୍ର ଭଞ୍ଜନ     ପ୍ରସରିବ ଯେ ଝଞ୍ଜା ପ୍ରଭଞ୍ଜନ
ଝିଙ୍କାରି ଝଙ୍କାର ପରବଳିବ     ମୃଗଯ୍ବାରେ ରତି ବର ବଳିବ
ଦାତ୍ୟୂହ କୂଜନ,
ଶୁଣି କମ୍ପାଇବେ ଦେହକୁ-ଜନ ।୬।

---

କପିଳ ବୁଡ଼ିଯିବ କବନ୍ଧରେ　　ଯୁବା ମାତିବେ ଅନେକ ବନ୍ଧରେ
ପ୍ରସଙ୍ଗେ କହିବେ ଅଭିସାରିକା　　ସଙ୍କେତସ୍ଥଳକୁ ଅଭିସାରିକା
ଜୀବ ତନ୍ତ୍ର ଅପେ,
ଯିବେ ସୁରତ ଶତେ ଶାନ୍ତ ଅପେ ।୭।
ଛପିବେ କୁମୁଦ-ବନ୍ଧୁ ତରଣି　　ଖେଳାଇବେ ସବୁ ସିନ୍ଧୁ ତରଣୀ
ହଂସ ବାହାରିବେ ମାନସେ ଯାଇ　　କାକୁସ୍ଥ ତଳପମାନ ପକାଇ
ଭୋଗୀ ପହୁଡ଼ିବେ,
ଯୋଗୀ ରାମନାମ ଜପ ଛାଡ଼ିବେ ।୮।
ମାର୍ଗେ ଏକାଳେ ଅସିବ ସଜନୀ　　ମୁହଁରୁ କେହି ଅଶୀବାଦ ଜନି
ଶୁଣିବାକୁ ଅଳୀକୁଳ ଚାପରି　　ମାନବସ ଶନ୍ତ୍ର ମଣିବାକୁ ପରି
ବୀଚକ କଦମ୍ବ,
ମଣ୍ଡିବ ଦମ୍ପତି କୁଚ କଦମ୍ବ ।୯।
ଖ-ମଣ୍ଡଳେ ଅନ୍ତ ବତୁ୍ଯତମାନେ　　ପ୍ରକଟିତ ହେବେ ଖଦ୍ୟୋତ ମାନେ
ଅନଙ୍ଗାନଳ ପରି ଅଭାସିବ　　ଜଳରେ ଧରି ତରଅ ଭାସିବ
ପହଁରିବା ନର,
ନେବେ ନାନାଫଳ ହରି ବାନର ।୧୦।
ମାର୍ଦ୍ଦବ ମର୍ଦ୍ଦିବ ନବନୀତାକୁ　　ଏକାଳେ ଛାଡ଼ିଲି ସେ ବନିତାକୁ
ପୀୟୂଷ ରସ ହୋଇବନି ତାକୁ　　ନ କଲି ସ୍ମରଣି ଅବନୀତାକୁ
ଅହା ବନିତାକୁ,
ପୂରକୁ ମନେ ନେବ ବନି ତାକୁ ।୧୧।
ଛାଡ଼ି ସ୍ନେହ ସେ ପୁର ମଣ୍ଡନରେ　　ବୋଲି ନଥିବ ପୁର ମଣ୍ଡନରେ
ବରଜ ମୋ ଜୀବ ସଙ୍ଗୀତ ରସ　　ପାଶୋରି ଦେବନି ସଙ୍ଗୀ ତ ରସ
ଅହା ରସନିଧି,
ଦେଖୁ ନଥିବ ଅହ୍ନାର ସନ୍ନିଧି ।୧୨।
ଆଚରି ନାନା ପ୍ରକାର ବିଳାପ　　କରି ବିଜାତ ଯାଗ ସଙ୍କଳପ
ଭାବିବାରୁ କଞ୍ଜଦଳ ତଳପ　　ଆଳୀ ବୋଧିଲେହେଁ କୋଟି ତଳପ
ନ ଘେନି ଅଳପ,
କାରୁ ନଥିବ ସଧୃତି ଜଳପ ।୧୩।
ସହଜେ ତ ବରତନୁ ଅବଳା　　ଜରୁ ଠାରିବ ଫେରିନି ତା ବଳା
ନାସାପାଶେ କେ ସମ୍ବରପି ତୁଳା　　ନିତରଖିଥିବ ତା ତୋଳା ପିତୁଳା

ଜଳଧି ବଢ଼ିଲା,

ଦେଖ ଅପଣାର ଚପୁଥିବ ଗଳା ।୧୪।

ଯେବେ ସଖୀ ଧନମାନଙ୍କ ପରଖିବ    ଅନ୍ଧାର ଦେଇଦେ ଦୀପ ରଖିବ
ଗ୍ରୀଷ୍ମରେ କେହ୍ନ ବିଶ୍ୱାସି ବସିବ    ଶ୍ରବଣରେ ଦେ ଶୁଣାଇବ ଶିବ

ଯେ ଟି ଭରସିବ,

ଅମୃତିଖର ମୂଖେ ବରଷିବ ।୧୫।

ମେଘୁ ଚନ୍ଦ୍ରଅ ହୋଇବ ନିବାସ    ଥିବକି ନଥିବ ଯିବନି ବାସ
ପ୍ରାଣେ ବାଜଲେ ବୃନ୍ଦାବନୀ ବାସ    ବୋଲୁଥିବ ଅହେ ଜଗନିବାସ

କି ସମ୍ଭୋଗ ରସ,

ଗ୍ରୁଡ଼ହେଲ ସ୍ୱର ସର୍ପଗର୍ବସ ।୧୬।

ପାଳଇ ମୋ ସ୍ନେହକୁ ସେ ସବସା  ଶିରେ ବୋହୁଥିବାପର ଶେଷ ରଷା ।
ଜାଣଇଁ କେତେ ଜାତି ରସମାନ    ଗୃଲଇକି ସେ ହାତୀର ସମାନ

ସୁଧାପର ଭାଷା,

ସେହି ଶୃଙ୍ଗାର ଶାସ୍ତ୍ର ପରିଭାଷା ।୧୭।

ଝିପି ଦେଲେ କଣ୍ଠସ୍ଥଳୀ ନଖରେ    ଅଢ଼ ପଞ୍ଚଶିଖ ନଳିନଖରେ
ଗୃଲ ମା ଏ ନାହିଁ ଏ କି ଝା ପର    କରନାହିଁ ବୃଥା ଏତେ ଝାପର

ହସି ଏତେ ଭାଷି,—

ଯାଏ ମୋ ଶରୀର ସବୁତେ ଭାସି ।୧୮।

ମୋପର ବେଶ ଦେଖିବା ତରସେ    ଧନେ ହଟିଲ ବିପରୀତ ରସେ
ରତସି ତ ବଡ଼ ଅମିତ ରସେ    ଜବାବ ଦେଲ ନଜର ତର ସେ

ହୁଏ ଖେ କା ପର,

କରଣ୍ଠ କି ରଣ୍ଠଭ କେଙ୍କା ପର ।୧୯।

ବୁଢ଼ିବାରୁ ମୁହଁ ଢାପୀ ବସ୍ତରେ    ନରସଇ ଗୋ ଅନ୍ୟ ପୀବସ୍ତରେ
ସେ ଚମ୍ପାକଳୀ ଝଣା ସୁନା ସାର    ଶ୍ରୀଅଙ୍ଗ ସୁକୁମାର ସୁ-ନାସାର

ମୁଁ ମସାରମଣି,

ମାନେ ମୋତେ ସେହୁ ଭୂଷାରମଣି ।୨୦।

ଯେନାଇଁ ନଜର ମୁକୁତାହାର    ମୁଁ ଯେବେ ଯାଏ ଗ୍ରୀଷ୍ମକୁ ତାହାର
ସନ୍ଧ୍ୟରହାସ ଲଜ ତାଜମରେ    ଚଳ ମଦନରଜ ପାଜ ମରେ

ମେଘୁ ରଶ ବୁକ,

ଧରି ଧରେ ତା ବୁଚର ଚବୁକ ।୨୧।

ଶୃଙ୍ଗାର ଯେମନ୍ତ ସୁଆଦ ରସ    ଶୋଧନୁଟି ତାର ସୁଆଦ ରଣ
ଜଗତେ ଅଛି କି ତା'ହା ସମାନ    ଚନ୍ଦ୍ରକାରହରେ ତାହା ସମାନ
ସେ ବରତରୁଣୀ,
ବୋଲୁଥାଏ ଟି ହେବ ରତ୍ନ ରଣି ।୨୨।
କୃପାଳୁ ହେଲେ ଅନାଦିଲ ଶିବ    ମୋ କୋଳେ ପୀନସ୍ତନା ବିଳସିବ
ପରତେ ହେଉ ନାହିଁ ମାନସରେ  ତା ସ୍ନେହଠାରୁ ମୋ ଗୁମାନ ସରେ
ସେ ସାର ରମଣୀ,
ମୋ ହୃଦୟ ମଧ୍ୟହାରର ମଣି ।୨୩।
ତେବେ ପାଠବ ହେବ ମୋ ଦଶାର    ମିଳିବ ତା ସଙ୍ଗତ ମୋଦ ସାର
ମଦନ ମୁଖେ କାଳି ଲଗାଇବି    ଧନ ଚୁଟେଲ୍ କାଈଫୁଲ୍ ଗାଇବି
ବଞ୍ଚିବି ସୁଖରେ,
ଲଭି ତା ସୁଖ କାଟି ସ୍ୱସୁଖରେ ।୨୪।
ହେବେ ଅଦ୍ଭୁତର୍ଗେଶ୍ୱର ସଦ୍ଭାବ    କବରବ ନେଇ ଏ ରସ ଭାବ
ଦେଲେ କଦମ୍ବମୂଳଆ ଚରଣେ    ଅର୍ଜିବା ପାପ କଳି ଆଚରଣେ
ସେ ନଷ୍ଟ ନାଶିବେ,
ନହେଲେ କାଶୋଶ୍ୱଙ୍କ ଘଷ୍ଟ ନାଶିବେ ।୨୫।

---

( ୩ )

## ନାୟକ ଅନୁଚନ୍ତା

ରାଗ—ଅଷାଢ଼ ଶୁକ୍ଳ

ଧନି । ଅନାଅରେ ଗୃହିଲ୍ଲ ପଇ ଧନୀ ଅନାଁ ଥରେ ।
ଜାଣୁ ତ ଜୀବେଶ୍ୱରୀ ଅଜନମୁଁ—ତୋ ଚଉକେଳି ଜଗୁଆ ଜନ ମୁଁ
ମୋଠାରେ ଏ ଗାଢ଼ ଲାଜ ନକର—ରହସ୍ୟ ପ୍ରଣୟ ଭଞ୍ଜନ କର ।
ମୁଁ ଗୃଢକପକ୍ଷୀ ତୁ ଧାରାଧର—ଅଧରେ ସିଞ୍ଚ ସୁଧା ଧାରା ଧର
ଅଳକା ଲୀଳାକୁ ବଶ ଗୁଳୁରେ-ଗୋଟିଏ ଚୁମ୍ବ ଦେନି ଚିବୁକରେ ।୨।
ମୁଖ କଳାନିଧି ଅଧ ନକର—ଅଂଶ ମୋର ଦାଅ ଅଧନ କର
ତୋ ସୀଜକାର ହେଉ ଭାରତୀରେ—ସ୍ମରକୁ ଜିଣିବା ତା ଭାରତୀ ରେ ।୩।

ଅନେକ ଦିନୁ ମୁଁ ତୋ ନିକଟର—ଦୁଃଖୀଧନକୁ ନିବ ନିଜ କର
ତନୁକୁ ତୋର ପରଦା ନ କରେ—ଶଙ୍କ ଭୁଜଙ୍କ ପରଦାନ କରେ ।୪।
ଇଚ୍ଛାରେ ନକର ପରମାଦର—ନିଦାନ ହେଉଛି ପରମାଦର
କରୁଥାଇ ଯେତେ ଭୋଗ ଉରସ—ସେ ସବୁ ହେଉଅଛି ଗତରସ ।୫।
ଖେଳାଉ ନାହିଁ ମୁଁ କରଜାଗ୍ର ତ—କରୁ କେତେ କଳେବର ଜାଗ୍ରତ
ତୁଇଁ ତ ନାହିଁ ତୋର ଗ୍ରୀବ ତରେ—ଅଧର କପାଁ ଉଡ଼ୁ ନିବିଡ଼ରେ ।୬।
ଏପରି ଅନୁଚିତ କାଳଟାକ—ବନ୍ଧୁ ମୋ ତନୁ ତତକାଳ ଜାଳ
ଏ ଶୋଭା ଗୃହିଁ କି ନିବରତିବ—ତୋ ବିନା ଧନ ନିକି ବରତିବ ।୭।
ବିରାଜ ସୁରତି ସଦନା ଦରେ—ଧୀର ଯଶରଖି ମଦ ରାଜ୍ଜରେ
ଝମ୍ପାତାଳେ ବଜାଅ ତ ନୂପୁର—କମ୍ପାଇ ଚୁଚର ଅତନୁପୁର ।୮।
ସୁଜାଣୁ ତ ଜାଣୁ ରତି ଶରଣି—ଅତି ଭାବ ସଦମ୍ପତି ଶରଣି
ଚାରଣି ଧୃତଙ୍କ ଖେସ ରସରେ—ପୁର ପ୍ରସାଦ ସୁଖ ସାରସରେ ।୯।
ଅବେ କ୍ଷମାଗୁଣ ସରିତ ପତି—ସାରଦେବ ଗିରିଶାର ଉପତି
ଦୟାଳୁ ଗୁଣେ ତୁ ତୁଷାର କର—ମୋ ପ୍ରାଣରକ୍ଷାକୁ ତୁ ସାରକର ।୧୦।
ଏ ଯଉବନ ସେହୁ ତ ଯବନ—ଉଚ୍ଚଣେ ଘେନିଯିବ ତ ଜୀବନ
କ୍ଷଣରୁ କ୍ଷଣ ଅନ୍ତର ସମୟ—ହୋଇବ ଅବା ଇତର ସମୟ ।୧୧।
କୁଞ୍ଜ କମନୀୟ ନୀପ ବନରେ—କୁଞ୍ଜ ସୁରଭି ଧ୍ୱନି ପବନରେ
ବିହର ମୋ କୋଳେ ଅନବରତ—ବଲ୍ଲଭୀ ପଲ୍ଲବୀ ଅନବରତ ।୧୨।
ଦର୍ଭ ଗର୍ଭ ତ ଶେଜର ଉପରେ—ତୋ ମନ ମନ୍ତ୍ର ବରଜେ ଜପରେ
ପ୍ରବଣହୋଇଛି ମୁଁ ତୋ ସେବାରେ—ମୋ ଅଙ୍କେତ ନିଭ୍ରମୁ ତୋଷେ ବାରେ
ଅଦୃଶ୍ୟ ହୋଇଲେ ଅମ୍ବର ମଣି—କୁମୁଦବନେ କେଳିମ୍ବରମଣୀ
ପ୍ରିୟ ତୁଳେ କରବାର ସଙ୍ଗୀତ—ଶୁଣି ନର ହୃଜ୍ଜ ବର ସଙ୍ଗୀତ ।୧୪।
ନ ଦେବାରୁ ତୁ ସମ୍ପଦ ନଜର—ହେବାରୁ ଦୁହେଁ ସମଦନ ଜର
ଅଭିନବ ସୁଖ କଳପତରୁ—ଶୁଖି ଯିବଟି କୋମଳ୍ୟ ତରୁ ।୧୫।
ଶ୍ଲେଷ ଅଶ୍ଲେଷ ରମ୍ୟ ପରିହାସ—ମଦବିକଚ କୁନ୍ଦ ପରି ହାସ
ଏହୁଟି ଏ ଭବ ସୁଖ ନିଦାନ—କର ସୁଟେଭ ଏବେ ସୁଖେ ନିଦାନ ।୧୬।
କରାଇବ ତ ମୁଁ ରାଇକା ଲାଗି—ମୁଖପୋତୁ ଲାଜ ପାଇ କା' ଲାଗି
ତର ରେ ବିନା ଏହା ଥନ ନରେ—ନ ମଣ୍ଡ ଚେଳାଞ୍ଚଳ ଅନନରେ ।୧୭।
ମଳୟ ବିହାର କରି ମାରୁତ—ମନ୍ଦାଣପ୍ରିୟ ପିକ ରାମାରୁତ
ତନୁ ଚନ୍ଦନ ଅମଘନସାର—ହଟେ ଲିଟିବି ଅନ୍ଧନ ସାର ।୧୮।

ହରି ଏପରି ଭାଷି ସୁଅଗରେ—ପ୍ରବଳନ୍ତେ କୁସୁମେ ସୁଅଗରେ
ହସି ବାହାରିଲେ ଫିକିମନେ—ଅଷ୍ଟାଦୁର୍ଗେଶ ଭାଷିଲେକ ଘନେ । ୧୯ ।

---

( ୪ )

## କୁଞ୍ଜ ମିଳନ ।

### ରାଗ-କାମୋଦୀ

ଘନେ ଘନେଶସୁତା-ତଟ ମାଧବୀ ଲତା
ମଣ୍ଡପେ ନବଘନ ଶ୍ୟାମ
କହନ୍ତି ପଙ୍କେରୁହ-ନେତ୍ରାଙ୍କୁ ଅତି ସ୍ନେହ—
ବଣରୁ ତରୁଣୀ ଲଲାମ ରେ
ଦରହାସୀ,
ମୋ ଜନ୍ମ କିଶୋରତା ଧନ୍ୟ
ଅସଦୃଶ ମୋ ପୂର୍ବ ପୁଣ୍ୟ
ଜମାଇ ମନେ ମନେ ଦେଖେ ଦେଖ ନୟନେ
ଯା ଶ୍ରୀଗ କଳ୍ପ ଏ ଲାବଣ୍ୟ ରେ । ୧ ।
ଲୋଲୁପ ଭାବେ ଲଖି ଯେବେ ଜନର ଅଖି
ତୋ ଶୋଭାମୃତ ଗୃଣିଥିବ
ଉର୍ବଶୀ ରମ୍ଭା ରତି ତୁଳ୍ୟ ବୋଲି ଭାରତୀ
ବଦନୁ ନିକି ନାଃସରିବ ରେ
ଦରହାସୀ,
ତୋ ଉପମାନ ତୁହି ଏକା
ତୁହି ତୋ ସଦୃଶ ରସିକା
କେତେ ଯେନ ସମ୍ଭାର ହେଲେଣି ଦେବୀ ତୋର
ରସନା ଅଞ୍ଚଳ ଲାସିକା·ରେ । ୨ ।
ଭଲ ତୋ ଅନାଉଁଣି ଯା ଭଙ୍ଗୀକି ଲଭଣୀ
ଦେବାକୁ ନୁହଇ ଖଞ୍ଜନ
ତହିଁ କେ ପୁଣି ବଙ୍କି ଅଛୁ ଏ ସବୁ—
ଲଙ୍କି ରେଖିକା ମଞ୍ଜୁଳ ଅଞ୍ଜନର
ଦରହାସୀ,

ଯେ ଜନ୍ମୁ ଦୃଷ୍ଟ ମହାମଲ୍ଲ
ତାହାକୁ ପିଆଇ ଅମଳ
ବାଇ କରାଇ ତାର କବରେ ତନୁଆର
ଦେଲେ କରଇ ସେ କା ଭଲ ରେ । ୩ ।
ମହାନୟ ବିନୟ ବିରାଜି ଅଭିନୟ
ପୀୟୂଷ ରସମୟ ବାଣୀ
ବୀଣା ବାଦ୍ୟ ପ୍ରବୀଣା ପଣ ମୂଲ୍ୟରେ କିଣା
ତୋର କା ବାଣୀ ଠାକୁରାଣୀ ରେ
ଦରହାସୀ,
ନେହାନ୍ତ କର ଚଳାଚଳ
କମ୍ପାଇ ଉରଜ ଅଚଳ
ନଗ୍ରୁଇ ଦେଇ ଶର ପଗୁଇ ଦେଉ ମୋର
ପୂରୁବ ତପୋବଲ୍ଲୀ ଫଳ ରେ । ୪ ।
ସସ୍ମିତ ବଦବାସ ପଲ୍ଲବେ ଦେଇ ବାସ
ସଙ୍କେ ଯାହା କହୁଅଣୁ
ସତେକି ରେ ଭବେଶ ମୋତେ ଦେବାକୁ ନିକି
ଚନ୍ଦ୍ରମଣ୍ଡଳୁ ସୁଧା ଘେଣୁ ରେ
ଦରହାସୀ,
ସେ କାଳେ ପଡ଼ିଗଲେ ଛାଣୁ
ଭ୍ରୂଭଙ୍ଗୀ ଶରବାରେ ହାଣୁ
ଶୃତ ମୂଳୁ ତାଙ୍କୁ ମ୍ପା କରବା ଦରକମ୍ପା
ରମ୍ପା ଗଜଗ୍ରି ଏକା ଜାଣୁ ରେ । ୫ ।
ମଣ୍ଡ ମୋହର ଅଙ୍କ ମରକତ ପର୍ଯ୍ୟଙ୍କ
କରବ ବାସନ୍ତୀକ ବେଶ
ତୋ ଅଙ୍ଗ ସଙ୍ଗ ପାଇ କୃତାର୍ଥ ହୋଇଯାଇ
ଫୁଲ ପଲ୍ଲବ-ସୃଷ୍ଟି ଆଶା ରେ
ଦରହାସୀ, ପଦ୍ମଜନବେ ଏ କା ଲିଭା
ତେଜ ଶ୍ରୀମୁଖ ଦ୍ୱିଜଗଳ
ଲାଜ ସିନ୍ଦୂରେ ସଞ୍ଜ ରହଲେ ହେବଲା ଭୁଞ୍ଜ
ନାଚଣି କା ପାରବ ଅଜ ରେ । ୬ ।

କିଶୋରଚନ୍ଦ୍ର ବାଣୀ ଶୁଣି ଶ୍ରୀ ଠାକୁରାଣୀ
ପ୍ରେମ ପ୍ରମୋଦ ଲଭିଲେ—
ନମନ୍ତି ରହୁ ମନ୍ଦ ସ୍ଫୁଟ ସୁନ୍ଦର କୁନ୍ଦ—
ସ୍ମିତକୁ ବିରଚିବା ବେଳେ ରେ
ଦରହାସୀ,
ପରମ ପ୍ରପଦ ଆନନ୍ଦେ
ଗୃପି ଶ୍ରୀଚରଣାର ବନ୍ଦେ
ବେଦଯୁତଳେ ଦୁର୍ଗ ବସୁଧା ମାୟା ସ୍ୱର୍ଗ—
ବଳୟ ପୁରନ୍ଦର ବନ୍ଦେ ରେ ।୬।

---

( ୫ )

## ବିରହୀ ଚଟାଉ

ରାଗ—ଚନ୍ଦ୍ରଦେଶାଖ

କେଉଁ ବିରହୀ ନାଗରବର, ପ୍ରିୟାଠାକୁ ଲେଖଇ ଉତ୍ତର
ଅରେ ପ୍ରାଣବନ୍ଧୁ, ଏବେ କାମସିନ୍ଧୁ—
ମଜ୍ଜିଅଛୁ ମୁଁ ବିରହେ ତୋର ରେ କିଶୋର । ୧ ।
ଅରେ ପ୍ରିୟେ, ତୁ ମୋ ପ୍ରାଣଧନ, ତୋତେ ନଦେଖି ଯିବ ଜୀବନ
ତୋ ଶିଖିପିଚ୍ଛନୁ ପରିରମ୍ଭ ବିନୁ—
ମୋତେ ନ ରୁଚେ ଚନ୍ଦ୍ର, ଚନ୍ଦନ ରେ କିଶୋର ।୨।
ଅଙ୍କ ଥରେ ହେବୁ ମୋହ ପର, ବୋଲି କହନ୍ତେ ମୁଁ କରଧର
ଏ କିସ ଗୋ ବୋଲି ମନ୍ଦ ହସିବାର—
ଯିବ କେହୁ ମୋ ମନୁ ପାଶୋର ରେ କିଶୋର ।୩।
ମୋଦେ ମୋ ଅଙ୍କରେ ବସିଥାଉ, ପ୍ରେମ ରସରେ ଚିତ୍ତ ମଜାଉ
ସ୍ମିତ ଜଡ ବାଣୀ ପଦ ପଦକ ରେ—
ବ୍ରହ୍ମପଦ ଦେଇ ଯାଉଥାଉ ରେ କିଶୋର । ୪ ।
ରସ ସଙ୍ଗୀତରେ ଥାଇ ମଜ୍ଜି, ପଛୁଁ ଧରନ୍ତେ ତୋ ନେତ୍ର ବୁଜି
ଜାଣିଲି ଯେ ଗୁଡ ବୋଲି କହିବାର—
ହେଜ ଯାଉଛୁ ମୋ ଧୃତି ଭାଜ ରେ କିଶୋର ।୫।

ତୋତେ ସ୍ୱହସ୍ତରେ ବେଶକରି, ବସିଥାଇ ମୁଁ ଯେ କୋଳେ ଧରି
ଆନନ୍ଦ ସମୁଦ୍ରେ ମଜ୍ଜି ଧାଏଁ ବନ୍ଧୁ—
ବହୁ ହରଷ ସେ ସୁଖଶୀର ରେ କିଶୋର । ୬ ।

ବଳେ ଯେବେ ମୁହିଁ ଗ୍ରୀବ ଧରେଁ, ମୋ ବଦନେ ଗ୍ରୀବ ନିଷେଧରେ
କି ଭଙ୍ଗୀରେ ଧନ, ବଙ୍କାଇ ରସାଳ—
ମୋର ମନ ଆନ ପ୍ରସଙ୍ଗରେ ରେ କିଶୋର । ୭ ।

ଚେଲେ ମାନକରି ବସିଥାଉ, ପଚାରିଲେ ଉତ୍ତର ନ ଦେଉ
ହେଲେ ମୁଁ ଉରସ୍ତ ବାଢ଼ୁଥିଲି ଚିତ୍ତ—
ବୋଲି ହସି ଅଙ୍ଗେ ମାଡିଯାଉ ରେ କିଶୋର ।୮।

ଯେବେ କରଜ ଦିଏଁ ଚଳାଇ, ଅଙ୍ଗେ ରୋମାଞ୍ଚକୁ ଉପୁଜାଇ
ଖେଳାଇ ଦୋଳାକୁ ହସି ଭ୍ରଷି ବାଳା—
ଭଙ୍ଗି ଜରେ ଜରକୁ ଲଗାଉ ରେ କିଶୋର । ୯ ।

ଦିନଦିନକର ଭାବ ଯେତେ, କହୁ ନ ପାରିବି ତା କାହିଁତେ
ମନ ଏକା ଜାଣେ ଏ ଧେନ ଅନ୍ତର—
ହେଲେ ହେଲେ ନ ଡେଜଇ ତୋତେ ରେ କିଶୋର ।୧୦।

ନବନାଗରୀ ସମାରତନ, ଜାଣୁ ତୁହି ସିନା ମୋର ମନ
ଶ୍ରବଣ ଲଚ୍ଛେ କରିବାକୁ ଶ୍ରବଣ—
ତୋର ବପରୀତ ସିଞ୍ଚ ସ୍ୱନ ରେ କିଶୋର । ୧୧ ।

ତୋର ମୁଖ ପୂର୍ଣ୍ଣକଳାକର, ଦେଖି ମୋ ନୟନ ଦ୍ୱୟ ଚକୋର
ଆନନ୍ଦକୁ ଲଭି ସତେ କି ବଲ୍ଲଭୀ—
ପଲ୍ଲବ କି କରିବ ଅନ୍ତର ରେ କିଶୋର । ୧୨ ।

ଅରେ ନବନୀତ ସୁକୁମାରୀ, ବରଷିବା ରସ ମନୋହାରୀ
କେବେ ତୋ ଅଧର ବନ୍ଧୁଜୀବ ମଧୁ—
ପାନେ ମୁଁ ହେବି ମଧୁପ ପରି ରେ କିଶୋର ।୧୩।

ଭସୁଅଛୁ ମୁଁ କାମ ସିନ୍ଧୁରେ, ତୋର ଜାନୁ ଭେଳା କରି ବାରେ
କୁଚ ଶାତକୁମ୍ଭ ମସ୍ତ କୁମ୍ଭଧର—
କେବେ ପାରିହେବି ମୋଦଭରେ ରେ କିଶୋର ।୧୪।

ତୋର ବିରହେ ମଳୟାନିଳ, ଅଗ୍ନି ପ୍ରାୟ ଯେ ପ୍ରଳୟାନିଳ
କୋକିଳ କୁଳ କଳରବ ସକଳ—
ଧୃତ ସିନା କରୁଏ ଅକୁଳ ରେ କିଶୋର । ୧୫ ।

ତୋର ସନ୍ନିଧି ତେଜିଲି ଦିନୁ, କ୍ଷଣେ ତୁ ନ ଯାଉ ମୋର ମନୁ
ସୁତନୁ ଅତନୁ ମାର୍ଗଣେ ତୋ ବିନୁ—
ଜର ଦେଲାଣି ମୋ ତନୁ ତନୁ ରେ କିଶୋର ।୧୬।
ନାହିଁ ମୋର ବଞ୍ଚିବା ଭରସା, ତୋର ଦରଶନ ପ୍ରତିଆଶା
କେବଳ ରଖିଛି କଷ୍ଟେ ପ୍ରାଣ ଅଙ୍ଗେ—
ଭସା ନୁହେଁ ନେତ୍ର ନୀଡ଼ ନାଶା ରେ କିଶୋର ।୧୭।
ନ ଜାଣୁ କି ଜଗଦେବ ଗତି, ବନ୍ଧୁ ନାହିଁ ମୋ ଲେଶ ଅଯୁତ
ସତ ତୋ ବକ୍ତ୍ର ପୂର୍ଣ୍ଣଚନ୍ଦ୍ର ମୁଖ—
ଭସିଇବ ମୋର ନେତ୍ରଗତ ରେ କିଶୋର ।୧୮।

— — —

( ୭ )

## ଖଣ୍ଡିତା ନାୟିକା

ରାଗ—ଅଷାଢ଼ ଶୁକ୍ଳ

ମୁଁ ନ ପାରେଁ ଯାଇ, ପିନ୍ଧୁସି ମଜଲିକି ସମୟାଇ । ଘୋଷା ।
ମଳୟଜ ବସ୍ତୁକରାଧରନ୍ତୁ, ମନ୍ଦ ସୁଗନ୍ଧ ମରୁତ ପ୍ରସରନ୍ତୁ ।
ମିଳନ୍ତେ ମଞ୍ଜୁ ଗୁଞ୍ଜନେ ହସନ୍ତୁ, ମଦ ପରଭୃତମାନେ ରଟନ୍ତୁ ।୧।
ମୟୂଖ ମଣ୍ଡଳେ ମଣ୍ଡି ଜଗତୀ, ମନ ହରୁଥାଇ ରଜନୀପତି
ମାକନ୍ଦ କଳି ତର୍ଜନୀ ହଲାଇ, ମୋ ଧୃତି ମୂଳ ଦେଉ ଦୋହଲାଇ ।୨।
ମୋ'ଠାରେ ଦୁଃଖ ରଖି ତୁମ୍ଭେମାନେ, ମୁହିଁ ନ ରହିଁ ପଛେ ପ୍ରୀତମନେ
ମାର ମରମ ମରଦନ ବାଣ, ମୁନରେ ପଛେ ଯିବନାହିଁ ପ୍ରାଣ ।୩।
ମାଧବୀ ମଞ୍ଜରୀ ମନ୍ଦିରେ ବସି, ମଲ୍ଲୀ ଚମ୍ପୁଲିକ ଶେଫାଳିକା ଖସି
ମଉଳିଲା ମୋ ଫୁଲ ଆଭରଣ, ମଣିଲି ଭଲ ତାହାଙ୍କୁ ମରଣ ।୪।
ମୂଢବେଦଯୁକୁ ଚୂତକପାଳ, ମୃଗାଙ୍କକୁ ଯେଉଁପରି ଚକୋରୀ
ମାର୍ଗକୁ ଅନାଇଁ ଅନାଇଁ ଭୀର, ମୋଦ ସରସୀ ଶୁଖିଗଲା ମୋର ।୫।
ମେଘ ତା ପଞ୍ଚଳକୁ ନବଦଳ, ମସୀ ଅତସୀ ଅସିତ ଉତ୍ପଳ
ମହେନ୍ଦ୍ରମଣି ସୁଖଦ୍ରବ୍ୟ ଯେତେ, ମେଚକ ରୂପପରି ଲାଗେ ମୋତେ ।୬।
ମୋ ମନ ତହିଁ ନିପଟ ନଥିଲା, ମଣିମଞ୍ଜରୀ ସିନା ଏହା କଲା

ମୋରେ ଏହା ଅଛି ଜାତ ବିରତ, ମାରିବ ଅରବିନ୍ଦେ ଅସୁ ଅଗ ।୭।
ମଲ୍ଲୀ ନବମାଳଦଳ ତଳପ, ମନୋଜ୍ଞ ଜାଲି ଫୁଲ୍ ଚନ୍ଦ୍ରାତପ
ମଣ୍ଡ୍ରାନ୍ତ କୁଞ୍ଜ ଶୋଭି ହେଲା ବାସି, ମନମଥ ହୋଇଗଲା ସନ୍ୟାସୀ ।୮।
ମଧୁର ଗୁଣ ଯହିଁରେ ଯେତକ, ମାର କୃପଣ ତହିଁରେ ତେତକ
ମାନସେ କଲି ମୁଁ ଏ ଅନୁଭବ, ମାନ ସେ ସତ ହେବ କେହୁ ଜୀବ ।୯।
ମତ୍ତ ହୋଇଥାଉଁ ମୋର ଅଶ୍ଳେଷେ, ମନ ଥାଇ ଅନ୍ୟ ଗୋଷ୍ଠିକ ରସେ
ମାଗୁଥାଏ ଅଙ୍ଗ ନଦୀତଟକୁ, ମଗିବ କେହୁ ସେ ବାଟ ଭେଟକୁ ।୧୦।
ମୋହନ ସ୍ମିତ ମକର କୁଣ୍ଡଳ, ମୁରଲୀ ମୟୂର ଶିଖଣ୍ଡ ଚୂଳ
ମୋର ନ ପକାଅ ସ୍ମୃତି ପଟରେ, ମରିବଟି ମାର ମୁଣ୍ଡ ପଥରେ ।୧୧।
ମୁକୁତା ମଣି ରମ୍ୟ ନାସାପୃଷ୍ଠ, ମର୍ମ୍ମଭେଦକ ଭୁରୁବଲ୍ଲୀ ନାଠ
ମଣ୍ଡିଛୁ ଦେହେ ଯେତେ ଆଭରଣ, ମାରଣ ବିଦ୍ୟାର ଉପକରଣ ।୧୨।
ମୁକୁଟମଣି କାନ୍ତବଙ୍କର ସେ, ମଇନେନ ପର ପାଳିଥିଲେ ସେ
ମୁଞ୍ଜ-ଚମ୍ପା ଚୁମ୍ବେ ନିଃସ୍ୱ ଦ୍ରବ, ମଟୁଳି ଟପର ତା ମନୋଭାବ ।୧୩।
ମୋଦେ ହସୁଥିବେ ସପତ୍ନୀ ଶ୍ରେଣୀ, ମହାର୍ଘ ଗଲେ ଅସିବ କା ପୁଣି
ମହେନ୍ଦ୍ର ହେଣ ରତନ ଦେଲେ, ମହାମହେନ୍ଦ୍ର ଜଗଦେବ ବୋଲେ ।୧୪।

— — —

( ୭ )

## ନାୟକ ପ୍ରତି

ରାଗ—ବଙ୍ଗଳାଶ୍ରୀ

ଧନ୍ୟରେ ତରୁଣୀବଧୂ-ମୂର୍ଦ୍ଧାମଣି ଅନ୍ୟରେ ନାହିଁ ତା ତୁଳା
ମନ ମୋହଢାନ-ପଣ୍ଡିତା ଜୀବନ ଧନ, ମୋ ନେଇ ଫିଟିଲା ରେ ।୧।
ତୋ'ଠାରେ ପିରତି ପାଳିବାକୁ ରତି-ରସକୁ ଜାଣିବା ପଣେ
ନାହିଁ ନାହିଁ କାହିଁ ନ ଥିବ ଜଗତେ ଜନମ ନୋହିବ ଜଣେ ରେ ।୨।
ବାସଗୃହେ ସଜଡ଼ାଇବା ସମୟେ ବାସମୟୂ କବରୀକା
ବାଜୁଁ ମୋ ବାହନା ସହିତ ବହନା ହୋଇ ଗୃହୁଁ ଶିଙ୍ଗାସ୍ତି କା ରେ ।୩।
ପୁଚ୍ଛ ତାଙ୍କି କହ ମୋ ନଟକୋ ବୋଲି ଧୀରେ ଫେରମାସୁ
ହାତକୁ ଦେ ମୋ ପାଣ୍ଡୁ ଦୂନାଟଙ୍କର ଶିରେ ଖୋସି ଅସୁ ରେ ।୪।

ଲୋଚନେ ଲୋଚନ ମଣ୍ଡିବା ପ୍ରମୋଦ ବଚନେ କି ଯିବ କୁହା
ବଳାଗତ ପ୍ରଭୁ ବଳ ଯାଉଥାଏ ବାଳାକୁ ଏ ସର୍ବଂସହାରେ ।୫।
କହିବ ଶ୍ରବଣେ କାନ୍ତ ବୋଲି ପ୍ରାଣେଶ୍ୱରୀ ଶବଜେ କଳ ଦମ୍ଭେ
କମ୍ପାଇ କୁଣ୍ଡଳ ମୋ ଗଣ୍ଡମଣ୍ଡଳ ପୂର୍ଣ୍ଣକରୁ ସନ୍ତୁଚୁମ୍ବେ ରେ ।୬।
ଭୁଜେ ମୃଦୁ ଭୁଜ ଉରଜେ ଉରଜ ବଦନେ ଶ୍ରୀମୁଖଶଶୀ
ଉରୁଯୁଗେ ଉରୁ ଲଗାଇବା ସରୁ ଶ୍ରୀଅଙ୍ଗେ ମୁଁ ଯାଏଁ ମିଶି ରେ ।୭।
କାଠୁଛୁ କି ରେ ମୋ ସଙ୍ଗାଳ ବୋଲ୍ ମୁଁ ଗୃହେ ଚାକ୍‌କଣେ ପଶୁଛୁଁ
ଗଳିଯିବ ପରି ଥାଉ ବୋଲ୍ ହାରବଳି ଅଡ଼ୁଆଇ ଧରୁ ରେ ।୮।
ଅଧର ଚିବୁକ ଚକ୍ଷୁ ଚଅଁରୀକ ଗଣ୍ଡେ ଚୋ କଲମା ବୁଲି
ଚରମ ଚୁମ୍ବି ଚକୁର ବନ୍ଧଠାରୁ ଚରଣ ଯାଏ ଲମ୍ବଇ ରେ ।୯।
କି ଭଡ଼ରେ ଥାଇ ଅନ୍ତ୍ରଦେଶୀ ପିନ୍ଧା ନିବଡ଼ ନିରନ୍ତ୍ର ନୀବି
ଅପଘନେ ଖସି ଅସିବାରୁ ହସି କି ଲାଜ ଭଜୁ ବାନ୍ଧବୀ ରେ ।୧୦।
ହାମ୍ଭୁଁ ମୁଁ ନିମନ୍ତି ସୁନ୍ଦର ମଦନ ମନ୍ଦର ଚମ୍ଭୁ ରସରେ
କମ୍ପୁ କନକ କଦଳୀ ଲତାପରି ପଞ୍ଚକଳମ୍ବର ଶରେ ରେ ।୧୧।
ଚିବୁକ ଧରି ଟୁଙ୍ଗାଇ ଦେଲାବେଳେ ଦୁଲ୍ଲକି ଟୁଙ୍ଗା କି ଦଶେ
ମୂଲକେ ଭରବ ମୂଲ୍ କେ ତାହାର ତ୍ରିଲୋକେ ନାହିଁ ଯେ ଲେଶେ ରେ ।
କର ଜାଗ୍ରତ ତନୁକୁ ବନ୍ଧୁ ବୋଲ୍ କରଜାଗ୍ରତ ବୁଲାଏଁ
ଫୁଲକୁଣ୍ଡ ଧାଡି ଫୁଟିଦଶିବାରୁ ପୁଲକାବଳି ବୋଲାଏଁ ରେ ।୧୩।
ଚେକ ସମାନ ନଥିବା ଉରୁବେଳ ଗ୍ରହାନ୍ତେ, ମୁଁ ନାହିଁ ନାହିଁ
କାସ ମା' ମୁଁ ନ ପାରଇଁ ବୋଲିବାର ବାଣୀତୁଲ୍ୟ ସୁଧା କାହିଁ ରେ ।୧୪।
ଛଳପକୁ ବକେ କରାଇବା କାଳେ ଅଳପ ମାଦକ ହାସେ
'କାହିଁକି ଗୋ' ବୋଲି ପଚାରି ମାଧୁରୀ ନାହିଁ, ମଧୁର ସାଉ ସେ ରେ ।୧୫।
ଶପଥ ଶତ ପକାଇ ମୁଁ ରଚନ୍ତେ ସପତତାଳିଆ ଭେଳ
କି ମାନଇଁ ରାଜଲୋକ ସୁରରାଜ ମୀନ ନିଭ ଡ଼ୋଳା ଖେଳ ରେ ।୧୬।
ପାଉଞ୍ଜି ମଞ୍ଜିର ସିଞ୍ଜିତ ବର୍ଜିତ କଳହଂସକଳାରୁତ
ପଡ଼ି ସେହି ତାଳେ ପ୍ରସରିବା କାଳେ କଟିରେ କି ସୁଖ ସମ୍ଭୁତ ରେ ।୧୭।
ତଳେ ଅଳପ ଚରମ ଦେଇ ମୁଁ ଅଙ୍ଗୁଳି ସ୍ତନରେ ହାଣି
ତା' ମୁଁ ଜାଣେ ଟି ବୋଲନ୍ତି ବୋଲି ଭୁଟି ହୃଦ ଲଗାଇବା ଅଣି ରେ ।୧୮।
ଓଠାର ଅଧରନେ ମୋ ଫୁଲାଇଲେ ଶ୍ରୀମୁଖଚନ୍ଦ୍ର ଲୁଚାଇ
ମେଘ ତାଳରେ ମୋ ସଖୀ ତାଳକୁଳ୍ୟ ଉରଜେ ହାର ନଗ୍ନିକ ରେ ।୧୯।

ଥନ ବେଳେ ଆନ ବୋଇଲେ ହେଁ ପାନ ନକରୁ ମୋ ଓଷ୍ଠ ଲଗେ
କୁସୁମ କୋଦଣ୍ଡ ଅମତ୍ର ମୋ ଗଣ୍ଡେ ଉରୁ ଚୁମ୍ବନ ସମାଜେ ରେ ।୨୦।
ପୁଣି ଲଭ ଚେତା ମୁଁ ନ ଜାଣେ ଏତା ନଖି ନଖି ବୋଲି ହସୁ
ପୁଲକିତ ଗାତ୍ରେ ମୁକୁଳିତ ନେତ୍ରେ ମଲି ମଲି ଇଷି ଭାଷୁ ରେ ।୨୧।
ବିନ୍ଦୁ ବିନ୍ଦୁ ସ୍ୱେଦ ସୁନ୍ଦର କପୋଳେ ଶ୍ରୀମୁଖ ମଣ୍ଡଳ ଗୃହିଁ
ବ୍ରହ୍ମାନନ୍ଦ ସୁଖ ପ୍ରବାହେ ପଡ଼ି ମୋ ବିବେକ ରହଇ ନାହିଁ ରେ ।୨୨।
ଦେଖି ବେ-ଶ୍ୱାସ ଶ୍ରୀଅଙ୍ଗ ଅଭ୍ୟାସ ଜାଣି ପୁଣି ଅବଶ୍ଳେଷେ
ତୋ ପଦ କମଳ ଅଭରଣ ଜାଳ ସିଞ୍ଜିତ ଶ୍ରବଣେ ବସେ ରେ ।୨୩।
ବସୁଥାଏ ଚଣ୍ଡ ସୁରତ ସୁବନ୍ଧ ରସ ଯେ ବେଳକୁ ବେଳେ
ଛଳେ ସର ସର ମଲିଟି ଜଚାର ପେଲୁ ମୋ ଉରୁ ଯୁଗଳେ ରେ ।୨୪।
କଠ ରଖ ରଖ ବୋଲି ମୋର ଦୁଃଖପାଶୋରୀ ବିରତ ଲୋଡ଼ୁ
କମ୍ପାଇ କଣ୍ଠୀକି କାଁପା ମୋ କଣ୍ଠୀକି ଉରୁ ଯୁଗେ ଗାଢ଼େ ଭିଡୁ ରେ ।୨୫।
ବାସ ଲଗିକାଳ ହାସ, ଦନ୍ତ ଚେଳଭିଡ଼ା ଶୋଭାକୁ ଅନାଇଁ
ସୁର ଋଷି ହେଲେ ହୃଦରୁ ମୋହିତ ନିକ ହୋଇଯିବେ ନାହିଁ ରେ ।୨୬।
ବିଧୁବଦନା ତୋ ନିଧୁବନ ଶ୍ରଦ୍ଧା ପୁଣି ଜନ୍ମିବାରୁ ହସି
ସଖୀମାନେ ମୋତେ ବଶି ନ ଦେବେ ଯେ ପରିହାସେ ବୋଲି ଭାଷି ରେ ।
ସାଜଦେବ କିଗୋ ଭଜ ଲଭଗଲ ଅଳକୁ ତିଳକ ମୋର
ଏତେ ବୋଲି ମୋର କରେ ଅଜଜନ୍ତ୍ରେ ହୁଅଇ ନୂଆ ଉପୁର ।୨୮।
ଅଜଥରେ ମନ ଅଛିକରେ ଘନକୁନ୍ତଳା ମୁଁ ଯେବେ ବୋଲେଁ
ଶ୍ରଦ୍ଧ ଅବତଂସ ଇନ୍ଦବଂ ହଂସଗମନା ବଞ୍ଚିଜ ଗେଲେ ।୨୯।
ସେ ସମୟ ବ୍ୟାଜ କୋପ ମିଶା ଲଜ ଗୃହାଣୀ ସଖି ମୋ ଅଖି
ଅଙ୍ଗୁଳି ଅଞ୍ଚଳେ ମୋ ଚରମସ୍ଥଳେ ହୋଜ ବୋଲି ଦେଇ ଲେଖି ।୩୦।
ଦନ ଦନକର ଅବେ ପୀନକର—ଭୋରୁ ତୋ ରସ ଲହରି
ସିନ୍ଧୁ ସମୁଦୟ ହେଲେ ମୋ ହୃଦୟ ପାରନ୍ତି ତହିଁ ସନ୍ତର ।୩୧।
ଯେତେ ଅବଧାନ ମୋଠାରେ ଜୀବନ ବନ୍ଧୁ ତା କହିବି କାସ
ଅପଣା ଜୀବନ ମୋର ଅନୁଗତ ନୋହିଲେ ତା ମଣୁ ବିଷ ।୩୨।
ଅଜଲ ମୁଁ ମହାରାଜନନ୍ଦନା ଯେ ତୋ ସେବାକାରଣୀ ଜନ
ଅସମର ମୋର ହେଲେ ଜାଣି ତାର ନକରୁ ଅବଲୋକନ ।୩୩।
ଦୋଷ ପରଚିତ ହୋଇ ଯେ ନିରତ କରେ ମୋ ଅନୁସରଣି
ତାହାଠାରେ ଅନୁକମ୍ପା ବାରେ ଘେନୁଥାଏଁ ମୁଁ ତୋ ପ୍ରଭୁଘଣି ।୩୪।

ହେମଦେହାରେ ମୁଁ ଯିବିକି ବୋଲନ୍ତେ କେ ମନା କରନ୍ତୁ ବୋଲି
ମୋ ପିନ୍ଧା ଅଞ୍ଚଳ ଛନ୍ଦ ଧରିଥାଉ କଉତୁକ କଳ୍ପବଲ୍ଲୀ ।୩୫।
ଶୁଣି ଅଷ୍ଟବୁର୍ଗନାଥ ବାଣୀ ସ୍ୱର୍ଗଲଳନା ତୁଳନାବତୀ
ଲଜ୍ଜା ଅନୁରାଗ ଦୁହିଙ୍କ ଆବେଗ ଭରେ ହୋଇଲା ଭରତ ।୩୬।

---

(୮)

ରାଗ—ଅସାଢ଼ ଶୁକ୍ଳ

କିଶୋରୀ ଏ କିସ ରେ,
କୋପ ତ ଅକାଣ୍ଡ ଦେଲୁ ପୀୟୂଷରେ । ଘୋଷା ।

କରିବାକୁ କୋଟି ସଂଖ୍ୟା ଯତନ କରଗତ ହେବା ଚିନ୍ତା ରତନ ।
କାହିଁକି ଫିଙ୍ଗିଦେଲୁ କହ ସତେ କିଅଁତ ବିବେକ ନଜର ଚଢେ ।୧।
କୋମଳଚରଣ ପରଶ ହାର କୁଚେ ଲଗାଇବାକୁ ଫେଇହାର ।
କେହୁ ସହାୟୁ ନଥାଇ ସାଥିରେ କୁଞ୍ଜକୁ ବିଜେ କଲୁ ନିଶିଥରେ ।୨।
କରିବାକୁ ଯାହା ଶୋଭା ବୀକ୍ଷଣ କୁଟୀମମାନ ଜାଲରେ ଇକ୍ଷଣ ।
କଞ୍ଜ ଖଞ୍ଜୁଥାଉ ପରି ତୁ ବସି କି ଦୋଷୁ ତାକୁ ଦୂର କଲୁ ରୁଷି ।୩।
କୁପରାଗ କେଳି କାନ୍ତ ଅଦନ୍ତେ କେବଳ ପ୍ରାଣପ୍ରିୟ ସଖୀ ଅନ୍ତେ ।
କଳେବରକୁ ସ୍ଥୂଳପର ଭଜି କଳି ନ ପାରିଲୁଁ ତୋର ମରଜି ।୪।
କଳା କୁମୁଦ ତମାଳ ଅତସୀ କସ୍ତୁରୀ-ତିଳକ କଜ୍ଜଳ ମସି ।
କମନୀୟ ନୀଳରତନ ଶାଢ଼ୀ କଳା ମାନ ପରି ନପାରୁ ଛାଡ଼ି ।୫।
କୃଷ୍ଣ ଭନ୍ନ ଯେତେ ଦ୍ରବ୍ୟ ନିବହ କୃଷ୍ଣହେବାରୁ ତହିଁ ତୋର ସ୍ନେହ ।
କଳାକର ଶିତ ଶିଖାକୁ ତେଜି କଳାକୂଟକୁ କରୁ ପରି ରାଜି ।୬।
କିନ୍ତୁ ହେଲେ ଲାଘବରୁ ନ ଡର କଳଙ୍କ ଦରିଦ୍ର କୁଳ ପାଶୋର ।
କର ଅଭିପ୍ରେତ ଶ୍ୟାମ ପ୍ରୀତିକି କର ଧରି ପରି କହୁ ହୁଟୀକି ।୭।
କଳାପି ଚନ୍ଦ୍ରକ ଗୁଚ୍ଛ ମୁକୁଟ କିଶୋରବର ଜଗି ଜଳ ଘାଟ ।
କର୍କଶ କଲୁ କୁଳଶରୁ ମନ କଲୁ ଯା ନାହିଁ ତୋଳ ଆଲିଙ୍ଗନ ।୮।
କନ୍ଦର୍ପ ଦର୍ପ ମଦନ ମୂରତି କିଶୋର ସେ ବିଶ୍ୱନେଣ ସଂପତ୍ତି ।
କହିବାର ପଟୁ ଗୁଟୁ ନ ଶୁଣି କୋଣ ନୟନେ ନ ଚାହିଁଲୁ ପୁଣି ।୯।
କାମ ଜଳେ ପୁଣି ହୋଇ ଜର୍ଜର କଲେ କୁସୁମଶର ତୋ ନଜର ।
କଟାକ୍ଷ ପୁଣି ନଦେଲୁ ଟେଣିକି କଳି କଲୁ ତୁ ପ୍ରତିହାରଣୀକି ।୧୦।

କୁହାଉ ଥାଉ ପର ରସବତୀ　　କୃପାଳୁ ବିବେକିନୀ ମତିମତୀ ।
କାହିଁତ କର ଯେନ କୃଷ୍ଣ ସ୍ନେହ　　କେଉଁ ଧଇର୍ଯ୍ୟକୁ ବହୁଛୁ କହ ।୧୧।
କାହାକୁ ଅବା ସେ କୃଷ୍ଣ କି ଦଶେ　　କୃଶାଙ୍ଗୀକୁ ମୁଦକଳାନିଧି ସେ ।
କୃତାର୍ଥ ନକଲ୍ ଏ ଯଉବନ　　କୋଳକର ଗଣ୍ଡେ ଦେଇ ଚୁମ୍ବନ ।୧୨।
କଳପର ଧୃତ ମୃକୁ ଗାନର　　କଳପଦ୍ରୁମ ସେ ସୁଖ ଦାନର ।
କୃତାଞ୍ଜଳି ହେଲେ ପ୍ରଣି ପହିଲ୍　　କୃପଣ ପଣକୁ କାପାଁ ବହିଲ୍ ।୧୩।
କୁନ୍ତଳ ଦେଶ ଜଗତୀ ନଦବୀର　　କର୍ଣ୍ଣର ଅବତଂଶ ଇନ୍ଦୀବର ।
କଜ୍ଜଳ ରେଖା ଲୋଚନ ଦ୍ୱନ୍ଦର　　କର କି ସେହୁଠାରେ ଅନାଦର ।୧୪।
କର କର୍କଶ କରବାଳ କେଳି　　କୋଧେ କୁସୁମ ଦଳ ଦେଇ ଦଳି ।
କି କୃତ୍ୟ କଲ୍ ନାଶ କହୁକହୁ　　କରମ ବଳବତୀକି ତୁ ନୋହୁ ।୧୫।
କାଳ ବିପର୍ଯ୍ୟାସ କି ନ କରଇ　　କପର୍ଦ୍ଦି ପୂଜୁଥାଇ ଯାହା ପାଇଁ ।
କାଣଲ୍ୟ କର ଯୋଡ଼ନ୍ତି ଯୋଡ଼ି　　କହିଲେ ଗୃହୁଁ ଦେଲ୍ ମୁହିଁ ମୋଡ଼ି ।୧୬।
କାଞ୍ଚନଗଉରଦେହା ତୋ ସ୍ନେହେ　　କଟୀରେ ଶ୍ୟାମ ପୀତପଟ ବହେ ।
କାନ୍ତ ରତନ ନୀଳବସନା ତୁ　　କାହିଁକି କେଡ଼େ ସ୍ନେହଗୂଢ଼ ମାତୁ ।୧୭।
କମଳ ନେତ୍ର ଅଙ୍କସଙ୍ଗ ବିଧି　　କୁଳକୁ ଲଙ୍ଘିବା ସୁଖ ଜଳଧି ।
କର୍ପୂରୁଁ ଜାତ ହେଲ ଅଗ୍ନି କଣ　　କୁମ୍ଭ ସମ୍ଭବ ହେଲ ତୋ ଦୁର୍ଗୁଣ ।୧୮।
କନକ କେତକୀ ଦଳ ସଦୃଶ　　କାୟ କାନ୍ତିପୁଞ୍ଜ କର ଅଦୃଶ୍ୟ,
କମଳ୍ଗୃହଙ୍କୁ ଅଧର ଦଳେ　　କୁଚକୁ ଛନ୍ନାଉଛୁ ଅଶ୍ରୁ ଜଳେ ।।୧୯।।
କେଶବ କଲେ ଯେବେ ଅନାଦର　　କରଜ କୁନ୍ତେ ତାହାଙ୍କ ପ୍ରହାର,
କି ଦୋଷ କରନ୍ତୁ ରସାରମ୍ଭରୁ　　କରନ୍ତୁ ହାରେ ତା ଚରମ ଶିଷୁ ।।୨୦।।
କଳ କୋକିଳ ପରଭୃତ ରୁତ　　କଳାକଳାଂଶୁ ଚନ୍ଦନ ମରୁତ,
କୁସୁମ ବାସ ଅଳି ଯାଇ ପୀଡ଼ି　　କାମ ଧନୁବାଣ ଗଲଣି ଛାଡ଼ି ।।୨୧।।
କପାଳ ପରମାଦେ ଫୁଟେ ତଳି　　କଷାୟିତ କର ନେତ୍ର ଯୁଗଳ,
କଦମ୍ବଲତା ମନ୍ଦଛୁ ପ୍ରଭାତେ　　କରବାର ବିଜେ ନରୁଚେ ତୋତେ ।।୨୨।।
କହିବା କଥା ଏବେହେଲେ ଯେନ　　କୁତୁକେ ଗୃହ ବେଢିବା ମୋହନ,
କୁଟିଳତାକୁ ଯୋଇଦଅ ସ୍ନେହେ　　କଳାକର ଅଷ୍ଟବର୍ଗର କହେ ।।୨୩।।

---

( ୧ )

## ଫଳ ମନାସ

### ରାଗ—ବଙ୍ଗଳାଶ୍ରୀ

ଦ୍ରାକ୍ଷା ଜାମି କରମଙ୍ଗା ନାଗରଙ୍ଗ ନାରଙ୍ଗ ଔ ରସାଳ
ଅମୃତଭଣ୍ଡା ଗୋଲାପଜାମ ଗୁଆ ବରକୋଳି ସୀତାଫଳ । ଘୋଷା ।
ଜମ୍ବିର କରୁଣା ପଣସ ମାରସ ଲେମ୍ବୁ ସହିତେ ଷୋଡ଼ଶ
ଏତେ ଜାଣି ଫଳୁଁ ସୁନା କମଣ୍ଡଳୁସ୍ତନା ଗୋଟିଏ ମନାସ ॥୧॥
ଅମୃତଭଣ୍ଡା ଡାଳିମ୍ବ ନାରିକେଳ ଔ କମଳା ଜମ୍ବିର
ପଣସ ମାରଣ ରସାଳ ପଣସ ଜାମି ନାରଙ୍ଗ ଅଙ୍ଗୁର ।
ଗୁଆ ସପୁରି ଖଜୁରି ବେଲ ମିଶି ଷୋଳ ଏ ଫଳ ନିବନ୍ଧ
ତୁ ଯାହା ମାନସେ ଚିନ୍ତିଲୁ ଧନ ସେ ଏ ପଦେ ଅଛି କି କହ ॥୨॥
ଗୋଲାପ ଜାମ ଖଜୁରି ବରକୋଳି ଅମୃତଭଣ୍ଡା ଜମ୍ବିର
ଗୁଆ ଔ ଜମ୍ବୁ କମଳା ଡାଳିମ୍ବ କରୁଣା ତାଳ ଅଙ୍ଗୁର ।
ଦ୍ରାକ୍ଷା ଲଙ୍କା ଜାମ ନାରଙ୍ଗ ସହିତେ ଲେଖା ହୋଇଲା ଷୋଡ଼ଶ
ତୁ ମନେ ବିଚାରିବାର ଫଳ ଗୋଟି, ଏଥିରେ ଅଛି କି ଭାଷ ॥୩॥
ବେଲ ବରକୋଳି ପଣସ ମାରଣ ଗୁଆ ତାଳ ନାରିକେଳ
କଦଳୀ ଲଙ୍କା ଜାମ ଲେମ୍ବୁ କରୁଣା ନାରଙ୍ଗ ଯେ ରାମଫଳ
ଖଜୁରି ନାରଙ୍ଗ ଡାଳିମ୍ବ ଗୋଲାପଜାମ ମିଶି ହେଲା ଷୋଳ
କହ ଧନ ଧୀରେ ଅଛି କି ଏଥିରେ ତୁ ଚିତ୍ତେ ଚିନ୍ତିବା ଫଳ ॥୪॥
ପଣସ ମାରଣ ବେଲ ଲଙ୍କା ଜାମ ଗୋଲାପଜାମ ଅଙ୍ଗୁର
ଦ୍ରାକ୍ଷା କଇଁ ସପୁରି ବରକୋଳି ଅମୃତଭଣ୍ଡା ଖଜୁରି ।
ରାମଫଳ କରମଙ୍ଗା ଜାମି ତୁଲେ ଷୋଡ଼ଶ ନାରଙ୍ଗ ମିଶି
ଅଛି କି ଏ ଷୋଳ ଭିତରେ ଯେ ଫଳ ଅଛୁ ତୁ ଯାହା ମନାସି ॥୫॥

———

( ୬ )

## ଫଳ ମନାସର ଉତ୍ତର

### ରାଗ—ଘଣ୍ଟାରବ

ଚଳସଫଂରୀ ଈକ୍ଷଣା—ନିଧୁବନ ବିଚକ୍ଷଣା
 କହିଥା ପଣ୍ଡିତା ମନାସିଲ୍ ସୀତାଫଳ କେହ୍ନେ ମୋତେ ଜଣା ।୧।
କେଳତୀ ରମ୍ଭା ସଦୃଶୀ—ଯୁବ-କଳକଣ୍ଠ ଭାଷୀ
 ଘନ ସର ନୀଳକୁନ୍ତଳା ମାନସେ ପନସ ଅଛୁ ମନାସି ।୨।
ପସାରଞ୍ଜପା ଲାଲସା—ମସାର ସଦୃଶ କେଶା
 ରସାଳସା ନିଶ୍ଚେଁ ରସାଳ ବିଚ୍ଛୁର ତୋ ଚିତ୍ତେ କରନ୍ତୁ ବସା ।୩।
କମ୍ବୁକଣ୍ଠୀ ବରାରୁହା—ଜାମ୍ବୁନଦ ଗୋର ଦେହା
 ଜାମ୍ବୁଫଳ ତୋର ଚିତ୍ତର ଭିତର ମଣ୍ଡିଛୁ ଜାଣିଲି ଏହା ।୪।
ଶାରଦା-ସଙ୍ଗୀତ ସଭା—ନୟନ ରଞ୍ଜନ-ପ୍ରଭା
 ମଣ୍ଡି ମହଲାର ମଜଳ ଚମ୍ପକ ଗନ୍ଧ ତୁ ବାଞ୍ଛୁଚୁ ଶୋଭା ।୫।
ରମଣୀ ମଣ୍ଡନ ଶୀର—ରମଣୀୟ ହେମଗୋରୀ
 ନିତସ୍ନେହ ଧେନା ମାନସରେ ସିନା କମଳା ଅଛୁ ବିଚ୍ଛୁର ।୬।
କୁମ୍ଭିରାଜ କୁମ୍ଭସ୍ତନା—ଗମ୍ଭୀର ସରସ ମନା
 ଜମ୍ବିଳକୁ ଚିତ୍ତେ ଚିନ୍ତୁଛୁ ତୁ ମୋତେ ଗେଲେ ଲଗୁଡ଼ଛୁ ସିନା ।୭।
ମଦାଲୀଳା ଗଜଗତେ—ବଦଳିତ କୁନ୍ଦଦନ୍ତେ
 କଦଳୀ ତ ଚିତ୍ତେ ଚିନ୍ତୁଛୁ ନାହିଁକି କହି ଦେଉନାହୁଁ ମୋତେ ।[illegible]।
ଅମ୍ବୁରୁହ ବାସବନ୍ତୀ—ଅମ୍ବୁଦ କେଶୀ ସୁଦନ୍ତୀ
 ଲେମ୍ବୁ ଫଳ ସିନା ସରସହସନା ତୋ ମନେ କରନ୍ତୁ ସ୍ଥିତି ।୯।
ମଧ୍ୟ ବଳିତ କେଶରୀ—ପରିଣତ ବିମ୍ବାଧରୀ
 ବାରି ଖେଳ ରସ ରସିକା ତୋ ହୃଦେ ନାରିକେଳ ଥିଲା ପରି ।୧୦।
ନାଗରାଜଗତ ଧନ—ନାଗରୀ ଶିର ରତନ
 ସାଗର ତନୟା ଲୀଳାବତୀ ତୁ ତ ନାଗରଙ୍ଗେ ଦେଲୁ ମନ ।୧୧।
ପରିଣତ ଚନ୍ଦ୍ରମୁଖୀ—ମାଳତୀ ଦେହା ମୋ ସଖୀ
 ତାଳ ତୋ ହୃଦରେ ଅଛୁ ବୋଲି ଅତ ବାଳକେ ତ ଦେବେ କହି ।।
ମନ୍ଥାରେ ରଖି ଗୋ ସ୍ନେହ—ଲଜ୍ଜାରୁ ଛାଡ଼ି ଅଗ୍ରହ
 ଅରୁଣାଧରା ତୋ ହୃଦୟ ସ୍ଥଳରେ ଅରୁଣା ନାହିଁକି କହ ।୧୩।

ସ୍ନେହ ଜରଜର ଶରୀରେ—ଅକପଟେ କହ ମୋତେ
    ବିମ୍ବାଅଧର ଅବଲମ୍ବ ତୁ ମାନସେ ମନାସିଅଛୁ କି ସତେ ॥୧୪॥
ଲାଜ ଛାଡ଼ିକି ବନ୍ଧୁଆ—ମୋ ସନ୍ଦେହ-ପଙ୍କ ଧୂଅ
    ଦଶବରଷୁଁ ତ ରସମୟ ହୃଦେ ଗୁଆ ହୋଇଥିବ ଥୁଆ ॥୧୫॥
ମଦନ ପ୍ରିୟ ବସନା—କୁନ୍ଦ-ସୁନ୍ଦର ଦଶନା
    କ୍ରୂର ଠକର ନପଡ଼ ରହିଲୁ କି କହିଁ ଠ ଶାନ୍ତ୍ରରୁ ସିନା ॥୧୬॥
ତୋ ହୃଦରେ ଥିବା ବେଲ—ମୋ ହୃଦେ ଲଦିଲେ ଭଲ
    ଦୂରରୁ ମର୍ମ ଯା ବିଦାରେ ବେଲ ସେ ନୁହଇ ବଚନ ଛେଲ ॥୧୭॥
ପବନ ପୀଠରେ ଥାଇ—ସ୍ତବ କବିବୃନ୍ଦ ଗାଇ
    ଜପ ସହସ୍ର ମୁଁ କରଛୁ ତୋ ହୃଦ ଫପସ ମାରଣ ପାଇଁ ॥୧୮॥
ଅଙ୍କାରଙ୍କାର ମୋ ଧନ—ଲଙ୍କା ଜାମରେ ତୋ ମନ-
    ଖେଳୁଛୁ ପ୍ରବୀଣା ହୋଇଲୁ ଯେ ଜଣା କି ବେଗେ କହିଲୁ ଘେନ ॥୧୯॥
ହର-ମନୋହର ବେଶା—ପରମ ରସିକା ଭୂଷା
    କରମଙ୍ଗା ମନେ ଶଙ୍କୁରିଛୁ ଭ୍ରୁହ କହିଲଣି ମନ୍ଦହସା ॥୨୦॥
ଶୃଙ୍ଗାର ଅଶେଷ ମଖୀ—ଭୃଙ୍ଗାଳିକେଶା ମୋ ସଖୀ
    ସପୂର୍ଖ ତ ପୂର ଅଛି ତୋ ମାନସେ ହଇ ବୋଲି ଦିଅ କହି ॥୨୧॥
ଯାମିନୀନାଥ ବଦନା—କାମିନୀ ମଣ୍ଡଳ ସୁନା
    କାମି ନାଳୟୁ ତୋ ମନ ହେଲା ହଂସଗମନୀ ନ କହୁ ସିନା ॥୨୨॥
ଅଳପ ଯାହା ହସିଲୁ—ମୋ ସନ୍ଦେହ ବିନାଶିଲୁ
    କର-କୋକନଦ ଶୋଭିନୀ ମନେ ତୁ ବରକୋଳ ବରିଲୁ ॥୨୩॥
ଦକ୍ଷା ତପନୀୟ ଗୋସ୍ତ—ପ୍ରଖ୍ୟାତ ଲବଣ୍ୟଶୀର
    ସାକ୍ଷାତ ରତିମୂର୍ତ୍ତି ତୁ ଶରୀରେ ଦ୍ରାକ୍ଷା ତ ଅଛୁ ବିଗୁର ॥୨୪॥
ଜଣାଉଛୁ ସନ୍ନିଧାନେ—ବନ୍ଧୁ ଶୁଣ ସାବଧାନେ
    ମଞ୍ଜୁଳ ମଞ୍ଜିର ଚରଣ ତାଙ୍କର ବିଗୁରଅଛୁ ତା ମନେ ॥୨୫॥
ଦର୍ପକ ଦର୍ପଣମୁଖୀ—ମୋ ଠାରୁ ନାହିଁ ତୋ ସ୍ନେହୀ
    ଅନୃତ ନ କହ ଅମୃତବଣ୍ଟା ତୁ ମନାସି ଅଛୁ କି ନାହିଁ ॥୨୬॥
କାମଫଳଦାଣୀ ଧନ—ସମଫଳେ ତୋର ମନ
    କମ ଫଳକ କମନୀୟ ନିତମ୍ବା କହିଲ କି ନାହିଁ ଘେନ ॥୨୭॥
ବରିଛୁ କ୍ଷୀରକୋଳ—କହିଲ କିଛି ନ ଭଳ
    ମୋହପର ଉଢ଼ପାରବୁ ବେ ସହ ଭର ମୋହପର କେଳ ॥୨୮॥

ସୁଲ୍ଲବଣ୍ୟ ମଣି ଖଣି—ଗୋଲାପ କାମୁକୁ ଘେନି

ଖେଳେ ଶତ୍ରୁ ଚୋର ଘେନ ପ୍ରାଣମିତ ମୁଁ କେମନ୍ତ ଅନୁମାନି ॥୨୯॥

ବର୍ଜିତ ଦୁର୍ଗୁଣ ଶ୍ରେଣୀ—ନିର୍ଜିତ ସୁରରମଣୀ

ଉର୍ଜ୍ଜନାମ୍ବୁଜ ସୁବାସିନୀ ମଜ୍ଜନ କୁ ଖର୍ଜୁର କି ଅଛୁ ଅଣି ॥୩୦॥

ମୋ ହୃଦୟ ମୃଗପାଶି—ବିଶ୍ୱମୋହନ ବିଳାସୀ

ଦାରବଜ ସକ୍ଷ ସ୍ତନ ମଣ୍ଡନା ତୁ ନାରଙ୍ଗ ଅଛୁ ମନାସି ॥୩୧॥

ସଦା ମଧୁରାଙ୍ଗୀ ବାଳା—ସଦା-ମସ୍ତକ ମଣ୍ଡନା

ବାଦାମ୍ବ ଫଳରେ ମଦାଳସା ଚୋର ମାନସ ରଚୁଛୁ ଖେଳା ॥୩୨॥

ବସ୍ତୁବର୍ଗ ଧରଣୀଶ—ବସୁଧା ମଣ୍ଡନ ଯଶ

ତନ୍ଦୀଳ ମଞ୍ଜୁଳ-ନେତ୍ରା ଘେନାଇଲେ ଫଳ ମନାସର ରସ ॥୩୩॥

———

( ୩ )

## ଫୁଲ ମନାସ

### ରାଗ—ବଙ୍ଗଳାଶ୍ରୀ

ଅଲବ ବଧୂଲି ଜବା କଳାମଲ୍ଲୀ ଛୁଟିଅନା କଣିଅର

ବଉଳ ମାଳତୀ ଚମ୍ପକ ନିଆଳି କଲାଇଠେଲା ଟଗର ॥୧॥

ଗଙ୍ଗଶିଉଳୀ ପୁନ୍ନାଗ ବିଳାସିନୀବର ରେ ଏ ପଞ୍ଚଦଶ

ତଗର ମିଶି ଖୋଲ ହେଲା ଏଥିରୁ ଗୋଟିଏ ଫୁଲ ମନାସ ॥୨॥

ଗୋଲାପ କରବୀର ଯୁଚ ମାଳତୀ ଚମ୍ପକ କଲାଇଠେଲା

ପୁନ୍ନାଗ ଗଂଗଶିଉଳୀ ଜାଇ କୁନ୍ଦ ସେବତୀ ନନ୍ଦନା ଅଁଲା ॥୩॥

କଣିଅର ଜୁଇ ବଉଳ ମିଶାଇ ଖୋଲ ଏ ଫୁଲ ସମୂହ

ତୁ ଯାହା ମନାସିଅଛୁ ମୃଦୁଭାଷୀ ଏଥିରେ ଅଛୁ କି କହ ॥୪॥

କଲାଇଠେଲା ଚମ୍ପକ କଣିଅର କାଞ୍ଚନ ଯେ କରବୀର

ରଂଗଣୀ ଗଂଗଶିଉଳୀ ବନ୍ଧୁଜୀବ ଅଲବ ଫୁଲ ପନର ॥୫॥

ଗୋଲାପ ମାଳତୀ ପୁନ୍ନାଗ ତଗର ନନ୍ଦନା ନିଆଳୀ ସୂନ

ଏ ଖୋଲ ଭିତରେ ତୋ ମନାସ ଫୁଲ ଅଛି କି କହ ମୋ ଧନ ॥୬॥

ଯୂଥ କର୍ଣ୍ଣିକାର ସମଲ୍ଲି ଅମ୍ବର ରମ୍ଭା ଜାଇ ଚୁମ୍ବଅନା
ଗୋଲାପ ମାଳତୀ ଅଁଳା ଅରବିନ୍ଦ ଗଂଗଶିଉଳୀ ନନ୍ଦନା ॥୭॥
କାଞ୍ଚଣ ସେବତୀ ଡଗରେ ମିଶିଲେ ହେଲା ଏ ଷୋଡ଼ଶ ଫୁଲ
ଧନ ତୁ ମାନସେ ଶଗୁଣିବା ଫୁଲ ଏଥିବେ ଅଛୁ କି ବୋଲ ॥୮॥
ନାଅଳୀ ବକୁଳ ଚମ୍ପେଲ ଚମ୍ପକ ଯୂଥ କୁନ୍ଦ ଇନ୍ଦୀବର
କର୍ଣ୍ଣିକାର ଅଁଳା ପୁନ୍ନାଗ ସେବତୀ ନନ୍ଦନା ଫୁଲ ପନ୍ଦର ॥୯॥
ଗଂଗଶିମୂଳୀ ଝଗର ଡଗ୍ରେ ଏ ଷୋଡ଼ଶ ତ ସଂଖ୍ୟା ଫୁଲେ
ମୋରେ ଅନୁଗ୍ରହ କରିଣ ବନ୍ଧୁ କହ ତୁ ଶନ୍ତିବା ଫୁଲ ଥିଲେ ॥୧୦॥

———

( ୪ )

## ଫୁଲ ମନାସ ଉତ୍ତର

### ରାଗ—ସାରଙ୍ଗ

ଜାଣିଲି ରେ ସୁଦର୍ଶନା,
ଜବା ତୁ ମନାସିଛୁ ମନେ ସିନା ରେ,
ଜନ୍ମୁ ତ ନାହିଁ ବାସନା, ମୋ ବନ୍ଧୁରେ ।୧।
ବିବିଧ ବିକାଶ ଶୋଭା,
ଜୁଇ କୁସୁମେ କି ବଳବ ଗନ୍ଧ ରେ,
ବିଶେଷେ ହେବ ଅଶୋଭା, ମୋ ବନ୍ଧୁରେ ।୨।
କେଳିକଉତୁକବତୀ,
କୋମଳ ବାସ ମାନସରେ ଶନ୍ତି,
କଳିଅରେ କଲୁ ମତି, ମୋ ବନ୍ଧୁରେ ।୩।
ବକରସ ତରଙ୍ଗିଣୀ,
ସାମନ୍ତାଣୀଗଣ ସୀମନ୍ତମଣି,
ମନାସିଛୁ ରଙ୍ଗିଣି, ମୋ ବନ୍ଧୁରେ ।୪।
ମଧୁର ସ୍ୱରସହାସୀ,
ମଧୁଲିଟମାଳ କୁଞ୍ଚକେଶି,
ବନ୍ଧୁଲିବେ ଅଳୁ ବସି, ମୋ ବନ୍ଧୁରେ ।୫।

କଳାବତୀକୁଳ ବର,
କର୍ଣ୍ଣାବତଂସକୁ ହେବ ସୁନ୍ଦର,
କଳପିଛୁ ଦରବାର, ମୋ ବନ୍ଧୁରେ ।୬।
କଳାହଳ ଉପମାନ,
କଳାଇଠେଲାରେ ଜୀବନ ଧନ,
ବଳାଇ ଅଛୁ କି ମନ, ମୋ ବନ୍ଧୁରେ । ୭ ।
କର ବାପଶ୍ରିତେ ସଜ,
ଦରବକଶିଜହାଧୀରେ ଅଙ୍ଗ,
ଅବକାନ୍ଦେ ଦେବ ସାଙ୍ଗ, ମୋ ବନ୍ଧୁରେ । ୮ ।
ପରଣତ ଚନ୍ଦ୍ରାନନା,
କେଳବନ ଦଟେ ଅଳପ ଅନାଁ,
ପୂରଅଛୁ ଛୁରଅନା, ମୋ ବନ୍ଧୁରେ । ୯ ।
ତୁ ମନେ ବାଞ୍ଛିବା ଜାଇ,
ମୋ ଉରେ ଉରୋଜ ଦେଲେ ମଢ଼ାଇ,
ଏବେ ଅଣି ଦେବ ଯାଇ, ମୋ ବନ୍ଧୁରେ । ୧୦ ।
ବାନ୍ଧୁବନ୍ଧୁ ସିନା ମଣ୍ଡି,
ଏବେ ଅଣାଇବ ଲେଖକୁ ବୋଲି,
କରୁଣା କଳପବଲ୍ଲୀ, ମୋ ବନ୍ଧୁରେ । ୧୧ ।
ଚଞ୍ଚଳ ନୟନାଞ୍ଚଳା,
କଞ୍ଚନେ ତୋ ତଉ ରଚିଛି ଖେଳା,
ଅଣାଇବ ଗୁଣ୍ଡ ହେଲା, ମୋ ବନ୍ଧୁରେ । ୧୨ ।
ଭଲ ରଙ୍ଗ ତା'ର ଭାବ,
ଅନ୍ତର ବାନ୍ଧୁଅଛୁ ବାନ୍ଧବୀ,
ମନ୍ତ୍ରରୁ ଅଣାଇଁ ଦେବ, ମୋ ବନ୍ଧୁରେ । ୧୩ ।
ମଗାଇବ ଫରମାସି,
ତୁ ଲାବଣ୍ୟଗୁଣ୍ଠି ରସ-ସରସୀ,
ଭୋଲପ ଅଛୁ ମନାସି, ମୋ ବନ୍ଧୁରେ । ୧୪ ।
ତାଳତୁଲ୍ୟ ପୟୋଧର,
ପାଳଟି ବସି ଅଣାଇବେ ପର,
ମାଳତୀ ମାଳକା ହର, ମୋ ବନ୍ଧୁରେ । ୧୫ ।

ଇନ୍ଦୀବର ବରମୁଖୀ,
ଇନ୍ଦୀବର ଅଛୁ ମାନସେ ରଖି,
ନନ୍ଦବ ଛାଲୁ ତୋ ଅଖି, ମୋ ବନ୍ଧୁରେ । ୧୬ ।
ଚଉର ଅଛୁ ମନାସି,
ନଗରଯାକ ଅଣିବେ ଚଳସି,
ଜଗତକୁ ଅଛୁ ପେଷି, ମୋ ବନ୍ଧରେ । ୧୭ ।
ଛଣାପୀୟୂଷ ବଚନା,
ଜଣାଗଲଣି ତୋର ଅଲୋଚନା,
ଅଣାଇବ କୁନ୍ଦ ସିନା, ମୋ ବନ୍ଧୁରେ । ୧୮ ।
ବଳଲେ ଅଛୁ ତୋ ଶତ୍ର,
ମଳୟଜ ଯେବେ ଅଛୁ ସୁବାସିତ,
ଚନ୍ଦ୍ରକାନ୍ତ ବଡ଼ ହୃତ, ମୋ ବନ୍ଧୁରେ । ୧୯ ।
ସମୀର ନୀରଦ କେଶୀ,
ପଦ୍ମର ଫୁଲେ ଧନ, ଅଛୁ ରସି,
ବନ୍ଧୁ ତୋଳନ୍ତୁ ଦାସୀ, ମୋ ବନ୍ଧୁରେ । ୨୦ ।
ଅରେ ନିଜଗଣ୍ଡଶୋଭା,
ନଅଳୀରେ ହୋଇଅଛୁ ସଂଲମ୍ବା,
କି ଅଳ ରଚବେ ଗର୍ଭା, ମୋ ବନ୍ଧୁରେ । ୨୧ ।
ଚମ୍ପକକୁ ଅଛୁ ହଟି,
ଅଣାଇଁ ଦେବ ଏବେ କୁଶ-କଟୀ,
ତୁମ୍ଭେ ପାଲଟା ଦେବୁଟି, ମୋ ବନ୍ଧୁରେ । ୨୨ ।
ପଗ୍ରୁରେଁ ଗ୍ରନ୍ଦ ମୁର୍ଖଁକ,
ପୁନାଗତ ମୁଁ, ମୋ କୋଳେ ବସିବା,
ଅକୁ ପୁନାଗ ତାହାଙ୍କ ?, ମୋ ବନ୍ଧୁରେ । ୨୩ ।
କି ଅରେ ଜୀବ ଜୀବନ,
ଛଅଦ ନାହିଁକି ମୁଁ ଚନ୍ଦ୍ରବଦନ,
କିଅରେ ଜାଣି ତୋ ମନ, ମୋ ବନ୍ଧୁରେ ।୨୪।
ତନୁକ୍ଷୂତ ଜଡ଼ ଧର୍ମା,
ଥିବ କି ତୋର ଏହୁ ଅନୁକମ୍ପା,
ଅଣାଇବ ଦିବ୍ୟ ଚମ୍ପା, ମୋ ବନ୍ଧୁରେ । ୨୫ ।

ରେ ବଜ୍ରଶାର୍ଙ୍ଗ ବୃସୀ,
ସେବତୀଙ୍କ ମନେ ଅଛୁ ମନାସି,
ସେ ବନର ଶେଜ ଲାଗି, ମୋ ବନ୍ଧୁରେ ।୨୬।

କଳାବତୀଙ୍କ ରତନ,
ଅଳି କୁସୁମରେ ଅବଶ୍ୟ ମନ,
ବଳାଇଛୁଁ ତୁ ତ ଧନ, ମୋ ବନ୍ଧୁରେ ।୨୭।

ସ୍ୱର୍ଣ୍ଣସବର୍ଣ୍ଣ ବରନା,
କର୍ଣ୍ଣିକାରକୁ ବିଗୃହୁଛୁ ସିନା,
କେ କଲା ତହିଁକି ମନା, ମୋ ବନ୍ଧୁରେ ।୨୮।

ବସନ୍ତ ପର ସେ ଦଶେ,
ଭସନ୍ତ ସେ ସିନା ଅଛୁ ମାନସେ,
ଧରି ତ ଅଛୁ ବିଶେଷେ, ମୋ ବନ୍ଧୁରେ ।୨୯।

ମହୀ-ମହେନ୍ଦ୍ର-ନନ୍ଦନା,
ମନେ ଯେ ମନାସି ଅଛୁ ନନ୍ଦନା,
ଉପବନେ ଅଛୁ ସିନା, ମୋ ବନ୍ଧୁରେ ।୩୦।

ରଙ୍ଗ ମଧୁର-ଅଧରି,
ଟଙ୍ଗସିମୂଳୀ ବିଗୃହୁଛୁ ପରି,
ପ୍ରଭାତେ ଦେଖି ତା ହରି, ମୋ ବନ୍ଧୁରେ ।୩୧।

ତୋ ମନେ କରୁଛୁ ଖେଳା,
ନୀପରେ କି ପୀରତି ବସ୍ତ୍ରଲା,
ଥିବାରୁ ପୁଲକ ତୁଳା, ମୋ ବନ୍ଧୁରେ ।୩୨।

ବସୁଦୁର୍ଦ୍ଧରାଧୀଶ,
ରସନିଧିଙ୍କ ପୂରାଇ ହରଷ,
ରଚିଲେ ଫୁଲ ମନାସ, ମୋ ବନ୍ଧୁରେ ।୩୩।

— ——

କଣ୍ଠା

( ୪ )

## ଅଳଙ୍କାର ମନାସ

### ରାଗ-ବସନ୍ତ

ନଥ ଗୃପସର କଅପଟି ଝାଟଙ୍କ ବନ୍ଦଅ
ଚନ୍ଦ୍ର ସୂର୍ଯ୍ୟ ଚିତା ମଲ୍ଲକଢ଼ୀ,
ଚମ୍ପାକଢ଼ି ମାଳ ଗ୍ରୀବ,— ଦଣ୍ଡୀ ସୁନା ତୁବଂସ
ହସ୍ତପାଟି ଗୁଞ୍ଜୁରାଙ୍ଗମାଳ ରେ, ଶୋଭନାଥ ।
ଗ୍ରୀବବନ୍ଧ ସେବତ ପହୁଞ୍ଚି—ଗୋଠାକାଚ ପଠାକାଚ
କାଞ୍ଚି ଦଶାବତାର ମାଳିକା, ଶିଖା ମୋହର ମୁଦ୍ରିକା
ମେଖଳା ନବରତ୍ନ ପହୁଞ୍ଚି ରେ, ଶୋଭନାଥ ।୧।
ଗୁଞ୍ଜ ଫଲକା ଫଣ୍ଡିଅ—ରସନାଗର ଗଡ଼ୁଅ
ନକ୍ଷତ୍ରମାଳା ପଦକମାଳି
ହରଡ଼ାମାଳ ପାହୁଡ଼ ଡ଼ଉଁରିଅ ମାଳ
ବଡ଼ଘାଗଡ଼ା ମାଳ ଏ ଭୂଷାବଳି ରେ, ଶୋଭନାଥ ।
ଲେଖାରେ ହୋଇଲା ଦ୍ୱିଷୋଡ଼ଶ— ଏଥିରୁ ଗୋଟିକୁ ହୁ ମନାସ
କହୁ ପାରବି କି ନାହିଁ—ଦର୍ପକଦର୍ପଣମୁହାଁ
ତହିଁରୁ ମୋ ଗୃହୁଖାଲୁ କଷ । ୨ ।
ଗୁଞ୍ଜ ଫଲକା ମୁକୁତା,—ଝମ୍ପା କଅପଟୀ ଚିତା
ଛେଗୁ କଣ୍ଠିମାଳ ମୋତି ଜାଲ,
ଚେଣ୍ଡ୍ରା ଅମ୍ବକଷି ଧଅ,—ଗୁଣା କଙ୍କଣ ବନ୍ଦଅ
ଚନ୍ଦ୍ରହାର ଡ଼ଉଁରିଅ ମାଳ ରେ, ଶୋଭନାଥ ।
କଣ୍ଠାନଥ ଫଣ୍ଡିଅ ମେଖଳା—ରସନା ଘାଗଡ଼ାମାଳ ବଳା
ଚନ୍ଦ୍ରମଲ୍ଲକଢ଼ୀ ଶିଖା, ମୋହର ବସା ମୁଦ୍ରିକା ପଗୁ ପହୁଞ୍ଚି ମୁକୁତାମାଳା ରେ ।
ପଠାକାଚ ଚମ୍ପାକଳିମାଳି, ଗୃପସର ମାଳି
ଘରଗଡ଼ୁଅ, ହରଡ଼ାମାଳି,
ଡ଼ଉଁରିଅ ମାଳା ନବ,—ଗ୍ରହ ମୁଦ୍ର ନଥ ନବ—
ବତନ ପହୁଞ୍ଚି ଚୂଲେ ମିଳି ରେ, ଶୋଭନାଥ
ଗଣନାରେ ହେବ ଦ୍ୱିଷୋଡ଼ଶ—ଏଥୁଁ ଯେଉଁ ଭୂଷାକୁ ମନାସ ।

ମନାସି କଣ୍ଠ ତୋହର—ଏଥିକି ସେ ଥିଲେ, ମୋର
ପ୍ରାଣବନ୍ଧୁ ଅଛୁ ବୋଲି ଭୂଷ ରେ । ୪ । ୮

ବସୁଣିଅମାଳ ପଗ୍ଗୁ ପହୁଞ୍ଚି କଙ୍କଣ ଛେଗ୍ଗୁ—
କଣ୍ଠିମାଳଖଞ୍ଜା କଢ଼ିଅଳି,
ତାଙ୍କ ମୁକୁତା ଝୁମ୍ପା—ଗୁପସର ଲଣ୍ଠା ଚମ୍ପା—
କଣ୍ଠୀ ମାଳ ଶତାଧାନମାଳ ରେ, ଶୋଭିଲାଧି ।
ପଦକମାଳ ମୁକୁତାମାଳା—ପାହୁଡ଼ ବୀରପିଲୁଳାମାଳା
ତାହୁତ ପହୁଞ୍ଚି ଗୋଟା,—ବାଚ କାନଫୁଲ ପଟା—
ବାଚ ନୂପୁର ଝୁଣ୍ଟିଆ ବଳା ରେ । ୫ ।

ନବଗ୍ରହ ମୁଦ, ଦଶା,—ବତାର ମାଳିକା ଭୂଷା
ନବରତ୍ନ ପହୁଞ୍ଚି ମଣ୍ଡନ,
ମୁକୁତାଜାଲି, ସାଗଡ଼ାମାଳ ଚନ୍ଦ୍ରସୂର୍ଯ୍ୟ—
ନୀଳମଣି ନାକଚଣା ଶବ୍ଦେ ସେନ ରେ, ଶୋଭିଲାଧି ।
ଚଉଁରମୁଣ୍ଡି, ବନ୍ଧଅ ମିଶି—ଦ୍ୱୋଡ଼ଶ ହେଲ ରେ ସୁବେଣୀ
ଏଥି ଭିତରେ ସେ ଭୂଷା—ଅଛୁକ ରେ ବରଯୋଷା
ମନେ ଯାହା ଅଛୁ ତୁ ମନାସୀ ରେ । ୬ । ୪

ଖଞ୍ଜା ଖଢ଼ଅଳି ଚର,—ଗଡ଼ଅ ତାଡ଼ ଗୁଞ୍ଜର
ବାଜବନ୍ଧ ଶତହସ୍ତ ପାଟୀ
ତାଙ୍କ ମୁକୁତା ଝୁମ୍ପା, ଚନ୍ଦ୍ରମଲ୍ଲକଣ୍ଠୀ ଚମ୍ପା —
କଣ୍ଠୀମାଳିକା ଅଳକା ପାଟି ରେ, ଶୋଭିଲାଧି ।
କାନଫୁଲ ଗୁଜରାତମାଳ —ମଲ୍ଲକଣ୍ଠୀ ଢେଉଁରିଅମାଳ
ବନ୍ଧଅ ଫୁଲଝଲକା—ବୀର ପିଲୁଳ ମାଳକା
ଧାନମାଳ ସୋରିଷି ଅ ମାଳ ରେ । ୭ ।

ଗୋଟାବାଚ ପଟାବାଚ ମୁକୁତା କଙ୍କଣ
ବାଣ୍ଠି ଦଶାବତାର ମାଳ,
ବଙ୍କାଳ ଗୁଛୁ ରସନା—ଝୁଣ୍ଟିଅ ପାହୁଡ଼ ସୁନା—
ନୁପୁର ମେଖଳା ଭୂଷାବଳି ରେ, ଶୋଭିଲାଧି ।
ଚନ୍ଦ୍ରମୁଖୀ ଛବିଳ ଛଇଳା—ଲେଖାରେ ଏ ଦ୍ୱୋଡ଼ଶ ହେଲ
ତୁ ମନାସିବା ମଣ୍ଡନ—ଏଥି ଅଛୁ କି ରେ ଧନ
କହ କହୁଣ କି ନାହିଁ ବଳୀ ରେ । ୮ । ୮

ରୂପସର ସୋରଷିଅ ମାଳ, ମାଣିକ୍ୟ ଝୁଣ୍ଟିଅ
ହୀରଦଣ୍ଡୀନଥ ସୁଅଗୁଣା,
ଶିଖାମୋହର ମୁଦ୍ରିକା—ରସନାପଣ ଝଲ୍‌କା
କଣ୍ଠୀ ନୀଳମଣି ନାକଚଣା ରେ, ଶୋଭୁନାଥି ।
ଧାନମାଳ ସେବନ୍ତୀ ପହଞ୍ଚି—ବୀରପିତୁଳମାଳିକା କାଞ୍ଚି,
ଗୁଜରାଟ ମାଳ ଛେଉଁକଣ୍ଠି ମାଳ
ସେଓପତ୍ର ପହଞ୍ଚି ନବରତ୍ନ ପହଞ୍ଚି ରେ । ୯ ।
ଅଂଗୁଷ୍ଠରତ୍ନ ମୁଦ୍ରିକା—ଦଶାବତାର ମାଳିକା
ଲହରୀଚୁଡ଼ି ଡ଼ଉଁରୀମାଳା,
ରମ୍ଭାକଢ଼ୀମାଳ ହୀରବନ୍ଧ୍ର ମୁଦ୍ରିକା ଘାଗଡ଼ାମାଳ
ନବଗ୍ରହମୁଦ ମେଖଳା ରେ, ଶୋଭୁନାଥି ।
ପାହୁଡ଼ ନୂପୁର ସୁମେଖଳା—ବନ୍ଧଣ ଏ ମିଶି ହେଲା ବଳା,
ତୁ ମାନସରେ ବର୍ତ୍ତୁର—କରଥିବା ଅଳଙ୍କାର
ଏଥିରେ ଅଛୁ କି ନାହିଁ ବାଳା ରେ ।୧୦। ୧)
ବାଜୁବନ୍ଧ, ପଟାକାର, ହସ୍ତପାଟି ଗୋଟାକାର
ମୁକୁତାକଙ୍କଣ ମୁକ୍ତାମାଳ
ଗୁଞ୍ଜର ଗରଗଡ଼ିଅ ଲହରୀଚୁଡ଼ି ଝୁଣ୍ଟିଅ
ହୀରବନ୍ଧ୍ର ରସୁଣିଅ ମାଳ ରେ, ଶୋଭୁନାଥି,
ନବରତ୍ନ ପହଞ୍ଚି ପାହୁଡ଼—ଶିଖା ମୋହର ମୁଦ୍ରିକା ଗାଡ଼
ନକ୍ଷତ୍ରମାଳା ମୋହନମାଳ ଅଙ୍ଗୁଷ୍ଠ ରତନ—
ମୁଦ ଚନ୍ଦ୍ରହାର ନାହିଁ ହୁଡ଼ ରେ ।୧୧।
ନବଗ୍ରହମୁଦ କାଚ—ସେବନ୍ତୀଫୁଲ ପହଞ୍ଚି
ପତ୍ର ପହଞ୍ଚି ପଦକମାଳା,
ମଞ୍ଜୁଖଞ୍ଜା କଡ଼ିଅଳା—ରସନା ହରଡ଼ାମାଳ
ନୂପୁର ରନ୍ଧାଇ ମଣି ବଳାରେ, ଶୋଭୁନାଥି,
ଦ୍ୱିଷୋଡ଼ଶ ଏ ମେଖଳା ମିଶି—ଅଛୁ ତୁ ମାନସେ ଯା ମନାସି
ଏ ମଣ୍ଡନ ସମୂହରେ—ଅଛୁ ସେ ଯେତେ ସ୍ନେହରେ
ଅଛୁ ବୋଲ କହ କଳହାସୀ ରେ ।୧୨। ୩)

———

( ୭ )

# ଅଳଙ୍କାର ମନାସ ଉତ୍ତର

## ରାଗ—କେଦାର—କାମୋଦ

ଜଣାଗଲା ଯେ ଅରେ ଚମ୍ପାକ କେଶୀ,
କନକ କୁନ୍ଦରେ ଅଛୁ ମନାସି ରେ ।୧।
ନାସ୍ତପୂବଲ୍ ବନ୍ଧୁ ମୁଁ ଅନୁମାନେ,
ଖେଳୁଚ ପେଣ୍ଡା ଆମ୍ବ କମ୍ପି ତୋ ମନେ ରେ ।୨।
ଅଶ୍ରିତ ଜନ ନେତ୍ର ସୁଖଦାୟୀ କି,
ଓହ୍ଲାଉଅଛୁ ସିନା କାଅ ପଦ୍ଧିକା ରେ ।୩।
ଯହିଁରେ ବସେ ନାନା ରତନ ଖଣ୍ଡି,
ଚନ୍ଦ୍ରରୁ ସହୁ, ସେହୁ ଚଉଁରିମୁଣ୍ଡି ରେ ।୪।
ଅରେ ନିର୍ଜିତ ଚମ୍ପାକଳକାଙ୍ଗଲ,
ଚନ୍ଦ୍ର ସୂର୍ଯ୍ୟ କରନ୍ତି ତୋ ମନେ କେଳ ରେ ।୫।
ବର୍ତ୍ତୁଳଅଛୁ ସିନା ସେ ମୁକ୍ତାଜାଲ୍,
ଘୁମୁରେ ଯା ନଜର କରନ୍ତୁ କାଲ୍ ରେ ।୬।
ସୀତା ମଧୁର ମୃଦୁ ସରସବାଣୀ,
ଶଙ୍ଖାକୁ ସିନା ମନେ ଅଛୁ ମନାସି ରେ ।୭।
ସତ ବହ ରେ ନବରତ୍ନ ସ୍ନେହାଟି,
ବର୍ତ୍ତୁଳ ଅଛୁ କି ନା ଅଳକା ପାଟି ରେ ।୮।
ଜଳ କମଳସ୍ୱାମୀ ହାଟକ ଗୋଷ୍ଠୀ,
ମଣ୍ଡି କଡ଼ିକା ଅଛୁ ସିନା ବର୍ତ୍ତୁଳ ରେ ।୯।
ତୋ ଶବ୍ଦେ କଜ୍ଜଳ ଅଛୁ ବଢ଼ି କା
ବର୍ତ୍ତୁଳ ଅଛୁ ଚନ୍ଦ୍ରମଲ୍‌କଡ଼ିକା ରେ ।୧୦।
ଗୁଚ୍ଛ ଫଲକା ମନେ ଅଛୁ ବର୍ତ୍ତୁଳ
ଗୁଚ୍ଛହାସୀ ମୋ ହୃଦେ ହେଲ ଏପର ରେ ।୧୧।
କଥାରମ୍ଭେ ଯା ପ୍ରମୋଦରେ ପୁଲକୁ,
ମୋ ଧନ ମନାସିଛୁ କାନଫୁଲକୁ ରେ ।୧୨।
ଖେଳୁଛୁ ଜଣାହେଲ ମୋ ଅନୁମାନେ,
ତାଟଙ୍କ ପଙ୍କେରୁହ ନେତ୍ରା ତୋ ମନେ ।୧୩।

ମୁଁ ମନେ ମନାସିଛି ତୋ ଅନୁକମ୍ପା,
ତୁ ମନେ ମନାସିଛୁ ମୁକୁତାଝମ୍ପା ।୧୪।
ବନ୍ଧମନ୍ଦର ଦାନ ଯୋଗ୍ୟ ବନ୍ଧୁଅ,
ତୋ ମନେ ରହିଲାଣି ଜୀବବନ୍ଧୁଅ ।୧୫।
ନ କହୁ ଦଶିଯିବ ବୋଲି ହାଲକା,
ଶରୁବଅଛୁ ସିନା ପଣି ଝଲକା ।୧୬।
ତୋ ନାସାଦଣ୍ଡ ଅଛି ଯାହାକୁ ମଣ୍ଡି,
ସହୁ ତୁ ଶରୁବଛୁ ସେ ହୀରା ଦଣ୍ଡି ।୧୭।
ସୁଅଗ ଶାରଦା ଅରେ ସୁକେଶୀ,
ଶୁଅ ଗୁଣ କି ଅଛୁ ଶରେ ମନାସି ।୧୮।
ଯେ ମନମଥର ତୋ କିଙ୍କିଣି ତାଳେ,
ନାଚେ ସେ ନଥ ଅଛି ତୋ ହୃଦସ୍ଥଳେ ।୧୯।
ଜଣାଉଁଅଛୁ ରତ୍ନ-ବଚକ୍ଷଣାକୁ,
ବାନ୍ଧିଛୁ ନୀଳମଣି ନାକଚଣାକୁ ।୨୦।
ତାପସ ଜନ ମନମୋହନ ବେଶା,
ରୂପସରେ କଲା ତୋ ଶଉ ବସା ।୨୧।
କଣ୍ଠାକୁ କଣ୍ଠୀରବମଧ୍ୟା ତୋ ମନ,
ମନାସିଅଛୁ ଏଥି ନହୋଇ ଅନ ।୨୨।
ନାଗପୁଙ୍ଗବ ଗତି ଘାଗଡ଼ାମାଳେ,
ତୋ ଶଉ ଅଛି ମାଣ ନକହୁ ଛଳେ ।୨୩।
ସୋରଷାର ସଦୃଶ ସୋରଷା ମାଳ,
ଧର ସାକ୍ଷାତ ପୁଣି ଅଛୁ ତା ଖାଲ ।୨୪।
ଶରୁବଅଛୁ ଗୁଜରାତି ମାଳ କି,
କହ, ଯେ ଦେଲି କହ ମନେ ଭାଳିକି ।୨୫।
ହେରୁକଣ୍ଠରେ ମନ ଅଛି ପ୍ରବଳ,
କେ ଗୃତ୍ତୁର୍ଯ୍ୟକୁ ତୋର ପାଦବ କଳ ।୨୬।
ଠକସିଲ ଅରେ ତରୁଣୀବର,
ଜଞ୍ଜିସମାଳ ଅଛି ମାନସେ ତୋର ।୨୭।
ବୀର ପିତୁଳ ମାଳ ଅଛି ତୋ ମନେ,
ସାବକ ଦାନ୍ତ କହେଁ ମୁଁ ଅନୁମାନେ ।୨୮।

ପଙ୍କଜଦୃଶା ଦଶାବତାର ମାଳ,
ଜାଣିଲି ମାନସରେ ଅଛୁ ତୁ ଭଲ ।୨୯।
ଜାଣି ଜଣାଉଁ ଅଛୁ ଧନମାଳିକା,
ଅଣିଛୁ ହୃଦୟକୁ ଧାନ ମାଳକା ।୩୦।
କେଶ ନୀଳମା କଲ ଛନ୍ତ କାଳିକା,
ବଗୁରଅଛୁ ଚମ୍ପାକଢ଼ି ମାଳିକା ।୩୧।
ଜାଣି ପାରୁଛୁ ନଷ୍ଟେଁ କରୁଛୁ କେଳି,
ମନମୋହନା ମନେ ମୋହନମାଳ ।୩୨।
କହ ନ କହ ଜାଇଦଳ କୋମଳା
ଜାଣିଲି ତୋ ମାନସେ ନକ୍ଷତ୍ରମାଳା ।୩୩।
କହେଁ ମୋ ନେଇ ମନ ବନ୍ଦକାରକୁ
ବଗୁରଅଛୁ ଗୁଚ୍ଛଚନ୍ଦ୍ରହାରକୁ ।୩୪।
ଧରବ ମନଭାବ କରୁଛୁ କେଳି,
କରଟମନା ମନେ ହରଡ଼ମାଳ ।୩୫।
ନ ସ୍ୱଣ ଅବା ଯେନ ନ ଯେନ କାଛୁ,
ରସୁଣିଆ ମାଳ ତୋ ମାନସେ ଅଛୁ ।୩୬।
ମଦ କାଦମ୍ବଗତ ମୋ ଜୀବଧନ,
ପଦକମାଳାରେ ତୋ ବଳିଛୁ ମନ ।୩୭।
ଜାଣିଲି ଅରେ ନବନୀତ କୋମଳା,
ମୋ ବନ୍ଧୁ ବଗୁରଛୁ ମୁକୁତାମାଳା ।୩୮।
ଛାଡ଼ କପଟ, ସତ୍ୟ କହ ନବୀନା,
ଛାଡ଼ ତୁ ମନାସିଛୁ ମାନସେ ସିନା ।୩୯।
ଯାହା ବାନ୍ଧବୀ ଅଛୁ ମନାସି ଚିତ୍ତେ,
ବାଜୁବନ୍ଧ ସେ ହେଲା ମୋତେ ପରତେ ।୪୦।
କହୁଛୁ ବର୍ଣ୍ଣିଥିବୁ ତୁ କୃପାଟି କି,
ବଗୁର ଅଛୁ ସତ ହସ୍ତ ପାଟିକା ।୪୧।
କୁଞ୍ଜର ମଦହରଗମନା ଚିତ୍ତେ
ଗୁଞ୍ଜର ବଗୁରଲୁ ନାହିଁକି ସତେ ।୪୨।
ସ୍ୱରଭରବ ବନାଶିନୀ ମୋ ଧନୀ,
ଘରଗଡ଼ଅ ମନେ ଅଛୁ କି ଯେନ ।୪୩।

ବର୍ବୁର ଅଛୁ ଖଞ୍ଜା ଖଡ଼ଅଳକା,
ମଟେ ନକହ ପଛେ କହ ଅଳକା ।୪୪।
ଖଣ୍ଟା ନ ରଖି ମନେ କହ ନାଗରୀ,
ଗୋଟା କାଟ ଙ୍କ ମନେ ଅଛୁ ବର୍ବୁର ।୪୫।
ମୁକୁତା କଙ୍କଣ ତ ବାନ୍ଧିଛୁ ମନେ,
କାହିଁକି କହୁନାହୁଁ ଗଜଗମନେ ।୪୬।
କଣ୍ଠାଭ ସୁହାଣୀରୁ ଗଲଣି ଜଣା,
ପଣ୍ଟା କାଟକୁ ମନାସିଛୁ ପ୍ରବୀଣା ।୪୭।
ନିର୍ମଳ ନୀଳମଣି ଲମ୍ବସ୍ୱଚୁଡ଼,
ଚତୁସ୍ପ ଶଓଜଳେ ରହିଛୁ ଚୁଡ଼ ।୪୮।
ବ୍ରହ୍ମକାନ୍ତିଅ ସ୍ୱାବବନ୍ଧୁ ମୁଦ୍ରିକା,
ମନେ ମନାସି ଅଛୁ ନବରସିକା ।୪୯।
ତର୍ଜନୀ ନବଗ୍ରହ ଅଙ୍ଗୁଳି ଏକେ,
ଅଛି ତୋ ଶଓ ଜଣା ପଡ଼ିଲା ସ୍ତ୍ରୋଟକ ।୫୦।
ଶାଖା ମୋହନ ମୁଦ ଅଛି ତୋ ଶତ୍ରେ,
ହରଶୈକ୍ଷଣୀ ଜଣା ପଡ଼ିଲା ମୋତେ ।୫୧।
ଜଣାଗଲା ରେ ଅରେ ପ୍ରାଣବାନ୍ଧବୀ,
ରତନ ଅଙ୍ଗୁରିକା ଅଛୁ ତୁ ଭାବି ।୫୨।
ସେବତୀ ପହୁଞ୍ଚିରେ ତୋମନ ଅଛି,
ଏଥିରେ ନାହିଁ ମୋର ସନ୍ଦେହ କିଛି ।୫୩।
ନର୍ଭଜ ଅଛୁ ପର୍ଭ ପହଞ୍ଚି ମନେ,
ନିଶ୍ଚୟ ଭଲି ଏହା ମୁଁ ଅନୁମାନେ ।୫୪।
ନବନଗାଙ୍ଗୀ ନବରତ୍ନ ପହଞ୍ଚି,
ଅବଶ୍ୟ ତୋ ମନକୁ ଅଛି ପହଞ୍ଚି ।୫୫।
କପର ମାନବ ହି ତୋତେ ଚନ୍ଦ୍ରାର,
ହୁକୁମ ହେଲେ ଥଟେ ଓଦେବ ପିନ୍ଧାଇ ।୫୬।
ଥରେ ଭାରତୀ-ବନିଜିତ ବପଞ୍ଚି,
ହସିତ ଦେଲା ମୋତେ ପାଞ୍ଚିରୁ କାଞ୍ଚି ।୫୭।
କହିଲି କ ଶଙ୍କ ରେ ସ୍ନେହବାଳା,
ଲାଗରେ ପଡ଼ିଅଛି ଦ୍ଵାଦଶ ମେଖଳା ।୫୮।

ଛଟ ନିନ୍ଦିତକୁନ୍ଦମନ୍ଦହସନା,
ତୁ ଛ ମାନସେ ମନାସିଚ୍ଛୁ ରସନା ।୫୯।
ଲଭିରେ ନ ଥିବାର ନଥିବ ଦନ,
ନୂପୁରକୁ ସୁରତେ ଦେଖୁଛୁ ଧନ ।୬୦।
କ୍ଷମା କରବୁ ମାନ ହେବ ଯା ଦୃଢ଼,
ଅବଶ୍ୟ ଧନ ମନାସିଚ୍ଛୁ ପାଦୁଡ଼ ।୬୧।
ମୋଠାରେ ପ୍ରଶଂସାକୁ ଅବଳାବଳା,
ବାଗୁର ଅଛୁ ବର ଅବଳାବଳା ।୬୨।
ଟୁଣ୍ଟିଅ ପର ତାକେ ଯେ ବଜେବେଳେ
ଟୁଣ୍ଟିଅ ବାଗୁରଛୁ ହୃଦକମଳେ ।୬୩।
କଥାରେ କହୁନାହୁଁ ସିନା ବ୍ୟକତ,
ମଥାମଣିରେ ତୋର ବଳାଛୁ ଚିତ୍ତ ।୬୪।
ଶ୍ରୀବାଲ୍ମକେଶ ଅଷ୍ଟବୁର୍ଗନରେଶ,
ରସେ ରଚିଲେ ଅଳଙ୍କାର ମନାସ ।୬୫।

---

( ୧ )

## ମାଳଶ୍ରୀ

### ରାଗ—ମାଳଶ୍ରୀ

ମା ଗୋ !

ଜୟ ଜୟ ଜଗଜ୍ଜନନୀ ବାଳା, ଜୟ ମଙ୍ଗଳଦାୟିନୀ ମଙ୍ଗଳା,
ମହେଶ ମହାସୁରତ ଲମ୍ପଟା, ମନ୍ଦାରମାଳାମଣ୍ଡିତ ମୁକୁଟା,
ଚନ୍ଦ୍ର ମାର୍ତ୍ତଣ୍ଡ ମଣ୍ଡଳ ପ୍ରଚଣ୍ଡ ଧନଞ୍ଜୟ ତ୍ରିଲୋଚନା ଗୋ ମା,
ଭବନ ଭୟଭାର ବିମୋଚନା ।୧।

ମନୋହର ଷଣ୍ମୁଖପ୍ରଭୃତି ରୂପଚରି, ଶଙ୍ଖ ଚକ୍ରଦୋହନାଙ୍ଗ ତ୍ରିଶୂଳଧରି
କଳାନିଧି କଳାକୃତଶେଖରି, ସିଂହବାହନୀ ଧୃତ ନୀଳାମ୍ବରି,
ମହିଷାଦସୁର ଶ୍ୱପକ୍ଷ ପ୍ରକର ବିଦାରନ ବିଚକ୍ଷଣା ଗୋ ମା,
ସୁଲକ୍ଷଣା କୃତ ବିଶ୍ୱରକ୍ଷଣା ।୨।

ବିଲ୍ୱ ବନିକା-ମଣ୍ଡପ ମଣ୍ଡନା, ଚଣ୍ଡ ଚଣ୍ଡ-ମୁଣ୍ଡ ମୁଣ୍ଡ ଖଣ୍ଡନା
ମକରନ୍ଦ ମଦ-ରସ ପ୍ରମତ୍ତ, ରକତ ପାନେ ଅଶକତଚିତ୍ତ,
ମହାଭୟଙ୍କର ପ୍ରବଳ ହୁଙ୍କାରଧ୍ୱନି ଧ୍ୱଂସ ମହାସୁର ଗୋ ମା,
କୁସୁମ୍ଭା ଲାଲ ବସନ ଭାସ୍ୱର ।୩।

ମୁଣ୍ଡ ମଣ୍ଡଳ-ମାଳିକା ଭୂଷଣା, କରାଳ କରାଳୀ କାଞ୍ଚି ଶୋଭଣା
ଶବଯୁଗଳୀ କଳିତ କୁଣ୍ଡଳା, ନିତମ୍ବଚୁମ୍ବୀ ପ୍ରଲମ୍ବ କୁନ୍ତଳା,
ଖଣ୍ଡା ମୁଣ୍ଡବର ଅଭୟ ସୁନ୍ଦର ଚତୁର୍ଭୁଜା ଦିଗମ୍ବର ଗୋ ମା,
ତନୁଜିତ ନବଘନାଡ଼ମ୍ବର ।୪।

ଅଟ୍ଟାଟ୍ଟହାସ କାତ ବାତ ବାଜ, ଭଉ ଅନ୍ତରୀକ୍ଷେ ଅଚଳରାଜ
ଫଟାଇ ଦେଲେ ବ୍ରହ୍ମାଣ୍ଡ-କଟାହ ଲଭିଲେ ଦିଗ-ମତଙ୍ଗେ ମୋହ
ମହେଶୀ ମହାମହିମ ଜଳ୍ପଲତା ମାତଙ୍ଗଗତ ମାତଙ୍ଗୀ ଗୋ ମା,
କ୍ଷୀରୋଦ କ୍ଷୋଳ କଲ୍ଲୋଳ ଅପାଙ୍ଗୀ ।୫।

ଦନ୍ତ ପ୍ରକଟ କଟକଟ ରବ ତାଣ୍ଡବ ଶିବବନ୍ଧୁ ମହାରାବ
ପ୍ରତ୍ୟାଲୀଢ଼ ତୋ ପଦ ଜଳ ତଳ କଲା ଯା ଭୂମଣ୍ଡଳ ଟଳମଳ,
କମ୍ପିଲେ ମଣ୍ଡୂକନାଥ ରେ ଚଣ୍ଡିକା ଜନ୍ମିଲା ମହା ଅଦ୍ଭୁତ ଗୋ ମା,
ରଣ-ରସିକା ନିଜଗତ ମାତ ।୬।

କେଉଁ ଦଣ୍ଡେ ଲହଲହ ରସନା   କେଉଁ ଦଣ୍ଡେ ମୂର୍ତ୍ତି ବିଶେଷ ସେନ୍ତ୍ରା
ନାଚ ନାଚ ନବ ଜଡ଼ିତ ଇନ୍ଦୁ   କେଉଁ ଦଣ୍ଡେ ଦଶେ ସିନ୍ଦୂର ବିନ୍ଦୁ,
ଧନୁର୍ବାଣ ଖଣ୍ଡା ଫରବର ଦର ଗଦା ଚକ୍ର କାନ୍ତ ଧର ଗୋ ମା,
ଦଳିଲ ଦନୁଜଙ୍କ ବକ୍ଷେକ୍ଷଣ ।୭।

ଦୁର୍ଗା ଦଇତ୍ୟଙ୍କ ଦଳିଲ ଯେବେ   ଗର୍ଜିଲ ତହୁଁ ରୁଧିର-ବାହିନୀ,
କୋଟିକୋଟି ରଥ ଗଜ ତୁରଙ୍ଗେ ପଡ଼ି ଭାସିଲେ ସେ ନଦୀ ତରଙ୍ଗେ
ହର ଅକୁଳ ହେଲେ, ଶିବାକୁଳ ମାତିଲେ ଗୃଧ୍ର ନିଚୟ ଗୋ ମା,
ହେଲେ ହେଲେ ଶୁମ୍ଭ ନିଶୁମ୍ଭ କ୍ଷୟ ।୮।

ଧୂନ୍ଦୁ ଧୂନ୍ଦୁ ଧୂନ୍ଦୁ ଦୁନ୍ଦୁଭି ରବେ   ପୁଷ୍ପ ବରଷିଲେ ଇନ୍ଦ୍ରାଦି ଦେବେ,
ହରିଲ ମହାମାୟା ମହୀଭାର   ତୁମ୍ଭ ମହିମା କାହାକୁ ଗୋଚର,
ଅଷ୍ଟ ଦୁର୍ଗନାଥ ଯୋଡ଼ି ଦୁଇ ହାତ ବନ୍ଦି ଜଣାଉଛନ୍ତି ଏତେ ଗୋ ମା,
ସମୟେ ସ୍ମରୁଥିବ ମୋର ଗତେ ।୯।

———

## ଚଟାଉ

### ରାଗ—ଚନ୍ଦ୍ରାଦେଶାକ୍ଷ

କେଉଁ ବିରହୀ ନାଗରବର, ପ୍ରିୟାଠାରୁ ଲେଖଇ ଉତ୍ତର,
ଅରେ ପ୍ରାଣବନ୍ଧୁ ଏବେ କାମସିନ୍ଧୁ,
ମଜ୍ଜିଅଛି ମୁଁ ବିରହେ ତୋର ରେ କିଶୋରୀ ।୧।
ଅରେ ପ୍ରିୟେ ତୁ ମୋ ପ୍ରାଣଧନ, ତୋତେ ନଦେଖି ଯିବ ଜୀବନ ।
ତୋ ଶିରୀଷତନୁ ପରିରମ୍ଭଦାନୁ,
ମୋତେ ନଳ୍ପିଚେ ଚନ୍ଦ୍ରବଦନ ରେ କିଶୋରୀ ।୨।
ଅଙ୍କ ଥରେ ହେତୁ ମୋହପରି, ବୋଲି କହନ୍ତେ ମୁଁ କରଧରି,
ଏ କିସ ଗୋ ବୋଲି ମନ୍ଦେ ହସିବାର,
ଯିବ କେହୁ ମୋ ମନୁ ପାଶୋରି ରେ କିଶୋରୀ ।୩।
ମୋଦେ ମୋ ଅଙ୍କରେ ବସିଥାଉ, ପ୍ରେମ ରସରେ ଚିତ୍ତ ମଜାଉ,
ସ୍ମିତଭଜିତ ବାଣୀ ପଦଙ୍କରେ,
ବ୍ରହ୍ମପଦ ଦେଇ ଯାଉଥାଉ ରେ କିଶୋରୀ ।୪।
ରସ ସଙ୍ଗୀତରେ ଥାଉ ମଜ୍ଜି, ପଚ୍ଛୁଁ ଧରନ୍ତେ ତୋ ନେତ୍ର ବୁଜି,
'ଜାଣିଲି ଯେ ଗୁଡ଼' ବୋଲି କହିବାର,
ହେଉ ଯାଉଛି ମୋ ଧୃତି ଭାଜି ରେ କିଶୋରୀ ।୫।
ତୋତେ ସ୍ୱହସ୍ତେ ମୁଁ ବେଶକରି, ବସିଥାଇ ମୁଁ ଯେ କୋଳେ ଧରି,
ଆନନ୍ଦ ସମୁଦ୍ରେ ମଜ୍ଜିଥାଏ ବନ୍ଧୁ,
ବାହା ହରିଲା ସେ ସୁଖଗିରି ରେ କିଶୋରୀ ।୬।
ବଳେ ଯେବେ ମୁହିଁ ଗ୍ରୀବା ଧରେଁ, ମୋ ବଦନେ ଭ୍ରୂବା ନିକ୍ଷେପରେ,
କି ଭଙ୍ଗିରେ ଧନ ବଙ୍କାଉ ରସାଇ,
ମୋର ମନ ଅନ ପ୍ରସଙ୍ଗରେ ରେ କିଶୋରୀ ।୭।
ତେଲେ ମାନକରି ବସିଥାଉ, ପଚ୍ଚାରିଲେ ଉତ୍ତର ନ ଦେଉ,
ହେଲେ ମୁଁ ତରସ୍ତ, 'ରହିଥିଲି ଚତ୍ତ' ବୋଲି,
ହସି ଅଙ୍ଗେ ମାତିଯାଉ ରେ କିଶୋରୀ ।୮।
ଯେବେ କରଙ୍କ ଦଣ୍ଡ ଚଳାଇ, ଅଙ୍ଗେ ରୋମାଞ୍ଚିକୁ ଉପୁଜାଇ,
ଖେଳାଇ ତୋଳାକୁ ହସି ଭ୍ରଷ୍ଟି ବାଳା,
ଉଡ଼ୁ ଉବେ ଉରକୁ ଲଗାଇ ରେ କିଶୋରୀ ।୯।

ଘନଘନକର ଶ୍ରବ ଯେବେ, କହି ନ ପାରବ ତା କାଣ୍ଡେ,
ମନ ଏକା ଜାଣେ ଏ ଘେନି ଅନ୍ତର—
ହେଲେ, ହେଲେ ନ ତେଜଇ ତୋତେ ରେ କିଶୋରୀ ।୧୦।
ନବ ନାଗରୀ ରମାରଞ୍ଜନ, ଜାଣୁ ତୁହି ସିନା ମୋର ମନ,
ଶ୍ରବଣ ଇଚ୍ଛେ କରିବାକୁ ଶ୍ରବଣ,
ତୋର ନୂପୁରର ସିଞ୍ଜିସ୍ୱନ, ରେ କିଶୋରୀ ।୧୧।
ତୋର ମୁଖ ପୂର୍ଣ୍ଣ କଳାକର, ଦେଖି ମୋ ନେତ୍ରଦ୍ୱୟ ଚକୋର,
ଆନନ୍ଦକୁ ଲଭି ସତେ କି ବଳିବ
ପକ୍ଷବ କି କରବ ଅନ୍ତର ରେ କିଶୋରୀ ।୧୨।
ଅବେ ନବନୀତ ସୁକୁମାରୀ, ବରଷିବା ରସ ମନୋହାରୀ,
କେବେ ତୋ ଅଧର ବନ୍ଧୁଜୀବ ମଧୁ-ପାନେ
ହେବି ମୁଁ ମଧୁପ ପର ରେ କିଶୋରୀ ।୧୩।
ଭାସୁଅଛି ମୁଁ ନାମ ସିନ୍ଧୁରେ, ତୋର ଜାନୁ ଭେଳା କରିବାରେ,
କୁଚ ସାଉ କୁମ୍ଭମଯ୍ୟ କୁମ୍ଭ ଧରି,
କେବେ ପାରହେବି ମୋଦଭରେ ରେ କିଶୋରୀ ।୧୪।
ତୋର ବିରହେ ମଳୟାନିଳ, ଅଭାସଇ ସେ ପ୍ରଳୟାନଳ,
କୋକିଳ କୁଳ କଳରବ ସକଳ,
ଧୃତି ସିନା କରଏ ଅକୁଳ ରେ କିଶୋରୀ ।୧୫।
ତୋର ସନ୍ନିଧି ତେଜିଲି ଦିନୁଁ, କ୍ଷଣେ ତୁ ନ ଯାଉ ମୋର ମନୁଁ,
ସୁତନୁ ଅତନୁ ମାର୍ଗ ତୋ ବିନୁ,
କରଦେଲଣି ମୋତନୁ ତନୁ ରେ କିଶୋରୀ ।୧୬।
ନାହିଁ ମୋର ବଞ୍ଚିବା ଭରସା, ତୋର ଦରଶନ ପ୍ରତି ଆଶା,
କେବଳ ରଖିଛି କଷ୍ଟେ ପ୍ରାଣ-ଅଙ୍ଗେ
କସା ନୁହେ ନେତ୍ର ନିତ ନିଶା ରେ କିଶୋରୀ ।୧୭।
ନଜାଣୁ କି ଜଗଦେବ ଚିତ୍ତ, ବନ୍ଧୁ ନାହିଁ ମୋ କ୍ଲେଶ ଅଯୁତ
ସତେ ତୋ ବିକଚ ପୂର୍ଣ୍ଣଚନ୍ଦ୍ର ମୁଖ
କରିବ ମୋ ନେତ୍ରାଗତ ରେ କିଶୋରୀ ।୧୮।

———

## ପାଞ୍ଚାଳୀ

### ରାଗ—ଅଷାଢ଼ ଶୁକ୍ଳ

କିଶୋରି ଏ କିସ ରେ କୋପ ତ ଅକାଣ୍ଡେ ଦେଲୁ ପୀୟୂଷରେ । ଘୋଷା ।
କହିବାରୁ କୋଟି ସଂଖ୍ୟା ଯତନ—କରଗତ ହେବା ଚିନ୍ତାରତନ
କାହିଁକି ଫିଙ୍ଗିଦେଲୁ କହ ସତେ—କିଅଁତ ବିବେକ ନ କରି ଚିତ୍ତେ ।୧।
କୋମଳ ଚରଣ ପରଶହାର—କୁଚେ ଲଗାଇବାକୁ ଫେରି ହାର
କେହି ମହାମ୍ବ ନ ଥାଇ ସାଥୀରେ—କୁଞ୍ଜକୁ ବିଜେ କଲୁ ନିଶୀଥରେ ।୨।
କହିବାକୁ ଯାହା ଶୋଭା ବୀକ୍ଷଣ—କୁଟିମ ମୀନ ଜାଲରେ ଈକ୍ଷଣ
କଞ୍ଜ ଶିଞ୍ଜୁଥାଉ ପରି ତୁ ବସି—କି ଦୋଷୁ ତାକୁ ଦୂରକଲୁ ରୁଷି ।୩।
କୂପରାଗ କେଳିକାନ୍ତିଁ ଅଦମ୍ଭେ—କେବଳ ପ୍ରାଣପ୍ରିୟ ସଖୀ ଅଟମ୍ଭେ
କଳେବରକୁ ଛୁଇପରି ଭଜି—କଲି ନ ପାରିଲୁଁ ତୋର ମରଜି ।୪।
କଳା କୁସୁମ ତମାଳ ଅଟବୀ—କସ୍ତୁରୀ ତିଳକ କଜ୍ଜ୍ୱଳ ମସୀ
କମନୀୟ ନୀଳବସନ ଶାଢ଼ୀ—କଲା ମାନ ପରି ନପାରୁ ଛାଡ଼ି ।୫।
କୃଷ୍ଣ ଭଳ ଯେତେ ଦ୍ରବ୍ୟ ନିବହ—କୃଶ ହେବାରୁ ତହିଁ ତୋର ସ୍ନେହ
କଳାକର ଶୀତ ସିତାକୁ ତେଜି—କାଳକୂଟକୁ କରି ପରି ରାଜି ।୬।
କିଛି ହେଲେ ନ୍ୟଘବରୁ ନ ଡରି—କଳଙ୍କ ଦରିଦ୍ରକୁଳ ପାଶୋରି
କରି ଅଭିପ୍ରେତ ଶ୍ୟାମ ପ୍ରୀତିକି—କର ଧରି ପରି କହୁ ହୂତୀକି ।୭।
କଳାପୀ ଚନ୍ଦ୍ରକ ଶୃଙ୍ଗ ମୁକୁଟ—କିଶୋରବର ଜଗି ଜଳଘାଟ
କର୍କଶ କଲୁ କୁଳଶରୁ ମନ—କଲୁ ଯା ନାହିଁ ତୋଳି ଅଲିଙ୍ଗନ ।୮।
କନ୍ଦର୍ପ ଦର୍ପ-ମର୍ଦ୍ଦନ ମୂରତି—କିଶୋର ଟେ ବିଶ୍ୱ ନେ ନସମତି
କହିବାର ପଟୁ ଗୃଟୁ ନ ଶୁଣି—କୋପ ନୟନେ ନ ଗୃହିଁଲୁ ପୁଣି ।୯।
କାମ ଜଳେ ପୁଣି ହୋଇ ଜର୍ଜ୍ଜର—କଲେ କୁସୁମଶର ତୋ ନଜର
କଟାକ୍ଷ ପୁଣି ନ ଦେଲୁ ଚେଣିକି—କଲି କଲୁ ତୁ ପ୍ରତିହାରିଣୀକି ।୧୦।
କୁହାଉ ଥାଉ ପରି ରସବତୀ—କୃପାକୁ ବିବେକଶୀମନ୍ତ ମତି
କିଅଁତ କରି ଘେନି କୃଷ୍ଣ ସ୍ନେହ—କେଉଁ ଧଇର୍ଯ୍ୟକୁ ବହିଛୁ କହ ।୧୧।
କାହାକୁ ଅବା ସେ କୃଷ୍ଣ କି ଦଶେ—କୃଶାଙ୍ଗୀକୁ ମୂଦ କଳାନିଧି ସେ
କୃତାର୍ଥ ନ କଲୁ ଏ ଯଜବନ—କୋଳକରି ଗଣ୍ଡେ ଦେଇ ଚୁମ୍ବନ ।୧୨।
କଳ ପରଭୃତ ମୃଦୁ ଗାନରେ—କଳପଦ୍ରୁମ ସେ ସୁଖଦାନରେ

କୃତାଞ୍ଜଳି ହେଲେ ପୁଣି ପହିଲୁ—କୃପଣପଣକୁ କପାଁ ବହିଲୁ ।୧୩।
କୁନ୍ତଳ ଦେଶ ଜଗତୀଦେବର—କସ୍ତୁରି ଅବତଂସ ଇନ୍ଦୀବର
କଜ୍ଜ୍ୱଳ ରେଖା ଲୋଚନ ଦ୍ୱନ୍ଦ୍ୱର—କର କି ସେହିଠାରେ ଅନାଦର ।୧୪।
କର କର୍କଶ କରବାଳ କେଳି—କୋପେ କୁସୁମଦଳ ଦେଇ ଦଳି
କି କୃତ୍ୟ କଲୁ ନିତି କହୁକହୁ—କରମ ବଳବତୀ କି ତୁ ନୋହୁ ।୧୫।
କାଳ ବିପର୍ଯ୍ୟାସ କି ନ କରଇ—କପର୍ଦ୍ଦି ପୂଜ୍ୟ ଥାଇ ଯାହାପାଇଁ
କିଶଳୟ କରକୋଡ଼କି ଜୋଡ଼ି—କହିଲେ ଗୁହ୍ୟ ଦେଲୁ ମୁହଁମୋଡ଼ି ।୧୬।
କାଞ୍ଚିଲୁ ଗଜର ଦେହୁ ତୋ ସ୍ନେହେ—କଟିରେ ଶ୍ୟାମ ପୀତପଟ୍ଟ ବହେ
କାନ୍ତ ରତନ ନୀଳବସନା ତୁ—କାହିଁକି କେଡ଼େ ସ୍ନେହଛୁଡ଼ି ମାତୁ ।୧୭।
କମଳ ନେତ୍ର ଅଙ୍ଗସଙ୍ଗ ବାର୍ଦ୍ଧି—କୂଳକୁ ଲଙ୍ଘିବା ସୁଖ ଜଳଧି
କର୍ପୂର ଜାତ ହେଲା ଅଗ୍ନିକଣା—କୁମ୍ଭ ସମ୍ଭବ ହେଲା ତୋ ଦୁର୍ଗୁଣ ।୧୮
କନକ କେତକୀ ଦଳ ସଦୃଶ୍ୟ—କାମ୍ୟକାନ୍ତି ପୁଞ୍ଜ କର ଅଦୃଶ୍ୟ
କମକୁ ପାଡ଼ୁଛୁ ଅଧର ଦଳେ—କୁଚକୁ ଭିଜାଉଛୁ ଅଶ୍ରୁଜଳେ । ୧୯ ।
କେଶବ କଲେ ଯେବେ ଅନାଗ୍ରର—କରଜକୁଟେ ତାହାଙ୍କୁ ପ୍ରହାର
କି ଦୋଷ କରିଛି ରସରତ୍ନୋରୁ—କରରୁହାଗ୍ରେ ତା ଚରମ ଚରୁ ।୨୦।
କଳ କୋକିଳ ପରଭୃତ ରୁତ—କଳା କଳାଂଶୁ ଚନ୍ଦନ ମରୁତ
କୁସୁମ ବାଣ ଅଦ ଯାଇ ପୀଡ଼ି—କାମ ଧନୁର୍ଗୁଣ ଗଳାଣି ଛୁଡ଼ି । ୨୨ ।
କପାଳ ପରମଦେ ଙ୍କୁମେ ଭଳି—କଷାୟିତ କର ନେତ୍ରଯୁଗଳୀ
କଦମ୍ବ ଲତା ମନ୍ଦରୁ ପ୍ରଭାତେ—କରବାର ବକେ ନ ରୁଚେ ତୋତେ ।୨୨।
କହିବା କଥା ଏବେ ହେଲେ ଯେନ—କୁତୁକେ ଚାଲ ଭେଟିବା ମୋହନ
କୁଟିଳତାକୁ ଧୋଇ ଦିଅ ସ୍ନେହ—କଳାକର ଅଷ୍ଟଦୁର୍ଗର କହେ ।୨୩।

---

## ଚୁମ୍ବା ଗୀତ

କେତେ ଜନ୍ମ ତପ ବହ୍ନି          କଳା କଳେବର ଗୁହିଁ
କୁଳ ପରପାଳ ପାରବ ନାହିଁ, ରେ ନିଅଳୀଗଭା,
କହ ମୁଁ ପଶିବ କାହିଁ ? । ୧ ।

ଝିଅକ ବଗୁର ଥିଲି          ଖୋସାମତ କେତେ କଲି
ଝିଲେ ମାଙ୍କ ପାନ ଖୁଆଇ ଦେଲି, ରେ ନିଅଳଗଭା,
ଖଟଣିରୁ ବଳି ଗଲି । ୨ ।

ଗୋଟିଏ ଚୁମ୍ବିଲେ ଟେଲେ          ଗଣ୍ଡ ମୋ ଭରତ୍ତ କଲେ
ଗାଢ଼େ ବାହୁଯୁଗ ଜମାଇଁ ଦେଲେ, ରେ ନିଅଳଗଭା,
ଗୋଟା ଗଳାଗୁନ୍ଥା କଲେ । ୩ ।

ଘେନଦେଇ ତହୁଁ ମୋତେ          ଘେନାଘେନ କର କେତେ
ଘଡ଼ିଏ ଯାଏଁକା କଲେଟି ବତେ, ରେ ନିଅଳଗଭା,
ଘଟେ ତେଣା ନାହିଁ ସତେ । ୪ ।

ନ ସମ୍ଭାଳ ଠାଜଠାଭ          ମାଦ ଫିଠାଜଫିଠାଭ
ନାହିଁ ବୋଲିବାକୁ ନୋହୁଲ୍ଲ ଅଭ୍, ରେ ନିଅଳଗଭା,
ନୂତନର କେତେ ଦାଉ । ୫ ।

ଚୁମ୍ବି ପ୍ରତି ଅପଘନ          ଗୁଳବାରୁ ନଖମୂନ
ଚହିଁକାଲେ ହେଲେ ତହିଁକା ମନ, ରେ ନିଅଳଗଭା,
ଗୁଖିବାକୁ ଛଳଛଳ । ୬ ।

ଛକଲୁଛକ ଦୋହର          ଛନ୍ଦେ ଛନ୍ଦ ରମିବାର
ଛଣା ସୁଧାରୁ ତ ବଡ଼ ମଧୁର, ରେ ନିଅଳଗଭା,
ଛୁଡ଼ବ କା ସଙ୍ଗ ତୋର । ୭ ।

ଜୋଡ଼ାରେ ନଥିବ ଭେଦ          ଜମାଇଁ ଲଭ ପ୍ରମୋଦ
ଜକାଜକା ରସ କେଡ଼େ ସୁଆଦ, ରେ ଚନ୍ଦ୍ରବଦନା,
ଜାଣଇଁ ତା ନିଜ ହୃଦ । ୮ ।

ଝଙ୍କାଝଙ୍କିକର ଭଡ଼          ଝାଲେ ଯାଉଥିବ ବୁଡ଼
ଝଲଗଲ୍ପର ଥିଲେ ପହୁଡ଼, ରେ ନବନବୀନା,
ଝସଧ୍ୱଜ ଯାଏ ଝଡ଼ । ୯ ।

ନବନୀତ ମୋ ମାନସ ନସହେ ତପତ ଲେଶ,
ନବଘନ ଶ୍ୟାମ ପ୍ରେମ ହୁତାଶ, ରେ ଜୀବରଧନ,
ନଜ୍ଞଙ୍କ ହୋଇଲା ହ୍ରାସ । ୧୦ ।

ଟେକି ଦେଲେ ହେଲେ ଝାଗି ଟିପିଟିପି ଦେଲେ ନଖ
ଠୋପିଠୋପି ହୋଇ ସ୍ରବଇ ସୁଖ ରେ, ମୋ ଜାଇଫୁଲ,
ଟେକି ଲଜେ ରଖେ ମୁଖ । ୧୧ ।

ଠକ ପଣ ଛାର କେତେ ଠଜ୍ଜରିଲୁ କା ଶତେ
ଠୋକାଠୁକି ହେବା ପାଇଁ ଏକାନ୍ତ, ରେ ଜୀବଜୀବନ,
ଠାରଦେଲେ ନୟନାନ୍ତେ । ୧୨ ।

ଡର ଘୁଡ଼ ଡେର ଘୃତ ଡିଣ୍ଡିମ ବଜାଇ ନିତ,
ଡାକି ଶ୍ୟାମ ତୁଲେ କଲେ ପୀରତ, ରେ ଜୀବନ ହୃନ୍ଦ,
ଡୁବିଯାଏ ସତେ କାନ୍ତ । ୧୩ ।

ଢୁଳାଇଲା ପର ହୋଇ ଢୋକେ ଢୋକେ ଓଷ୍ଠ ପିଇ
ଢମ କହୁଲୁ ତୁ ବୋଲୁବୁ ନାହିଁ, ମୋ ବାଇଅଣି,
ଢୋଙ୍କାଇ ଜାଣଇଁ ସେହୁ । ୧୪ ।

ଅତି ମୃଦୁଲ ଦେହ ସେ ଅତସୀ ଫୁଲକୁ ହସେ
ଅମଳ ଅତର ପରି ଏ ମିଶେ, ଜାଇ ଫୁଲରେ,
ଅଲଙ୍ଗନେ ଯେବେ ରସେ । ୧୫ ।

ତଯତ ମଦନେ ହେବା, ତଟିନୀ ତଟେ ପଡ଼ିବା
ତରୁଣୀ ତନୁ ସଫଳ କରିବା, ରେ ମୋ ରସବନ୍ତୀ,
ତମାଲ ତଳକୁ ଯିବା । ୧୬ ।

ଥାଏ ମନେ ମୋ ଏ ଭାବ ଥାପି ବେଲ ଚୁମ୍ବିଯିବ
ଥରେ ଯେବେ ଓଷ୍ଠ ଚଖାଇ ଦେବ, ରେ ଚନ୍ଦ୍ରକାନ୍ତନା,
ଥୁ ଥୁ କର ପିଙ୍ଗି ନେବ । ୧୭ ।

ଦନ୍ତହାସ କି ସୁନ୍ଦର ଦୁଇଅର୍ଥ ଗୁଞ୍ଜୁଣୀର,
ଦେଖୁଥିଲେ ଦୁଃଖଯାଏ ପାଶୋର, ରେ ଦେବତାଙ୍ଗନା,
ଦୁଃଖ ସଙ୍ଗାଳ ମେ ମୋର । ୧୮ ।

ଧରାଧର କୁଚଗୋଟି, ଧରାଧର କଲେ ହଟି,
ଧଇଁସଇଁ ସେ କି ହୁଏ ମୁଁ ଫୁଟି, ରେ ନବଅବଳା,
ଧଇସୁହା ମୋ ଧନୁଟି । ୧୯ ।

ନବୀନ ବୟସୀ କୃଷ୍ଣ— ନଖ ମୁନ ମାରୁ ମାରୁ,
ନିଷ୍ଠୁର ତୋ ଦେହ ଶିଳା କି ଦାରୁ, ରେ ନୂଆ ନଅଳ,
କେତେ ନାହିଁ ନାହିଁ କରୁ ? । ୨୦ ।

ପିଲ୍ଲଦନୁ ପିଠା ଯେତେ ପିଇଥାଇ ଧାଈ ହାତେ
ପହିଲ ପାହାରୁ ନରଖେ ଚଟେ, ରେ ଚନ୍ଦ୍ରବଦନା,
ପୁରୁଷ ମାଧୁର୍ଯ୍ୟ ସତେ ।୨୧।

ଫେରାଇ ନୟନ ଚାହିଁ ଫନ୍ଦାଇ ବନସ୍ତ କହ
ଫୁଟିବା ଯାଏ ତ ରଖିଲ ନାହିଁ, ରେ ମୀନନୟନା,
ଫାଙ୍କିବାକୁ ବେଳ କାହିଁ ?।୨୨।

ବାଟପୀ ନୋହିବ ବୋଲି ବଡ଼ ଧଇର୍ଯ୍ୟରେ ଥିଲି
ବନମାଳ ବାସ ଉହିଁ ପାଇଲି, ରେ ନବଛଇଳୀ,
ବାଲିଶାରୁ ବଳିଗଲି ।୨୩।

ଭଲ ଦଣ୍ଡ କି ନ ଦଣ୍ଡ ଭର୍ତ୍ସନା କରନ୍ତୁ ଶାଣ୍ଡ
ଭରୁ ଭଙ୍ଗ ନାହିଁ ଭଗାର ହସ୍ତ, ରେ ନୂଆ ଝିଅଲୀ,
ଭୁମେ ନୀଳମଣି ବସ୍ତୁ ।୨୪।

ମଣ୍ଡେ ହୋଇଥାଇ ଜାତ କହିବା କଥା ତ ସତ
ମଦନମୋହନ ଶ୍ୟାମ ଅମୃତ, ରେ ନୂଆରଙ୍ଗିଲି,
ମଜ୍ଜିଥିବ ଅନାରତ ।୨୫।

ଯତ୍ନେ ହେଲା ନ କହିବା ଯମୁନାକୁ ଯାଉଥିବା,
ଯଦୁନାଥଙ୍କୁ ଯେବେ ନ ପାଇବା, ରେ କଳସସ୍ତନା,
ଯୋଗୀ ହୋଇ ସତେ ଯିବା ।୨୬।

ରସରେ ରସ କେବଳ ରସବଣଟି ମଣ୍ଡଳ,
ରଖି ରମଣୀର ଜନମଫଳ, ରେ କୁନ୍ଦରଦନା,
ରସିକକୁ କର କୋଳ ।୨୭।

ଲଢା ଲଢା ଦଳଦଳ ଲଟ ଲଟ ଗୁଲ୍ଲୁଗୁଲ୍
ଲାବଣ୍ୟ ପୁଞ୍ଜକୁ ଲଢାଇ ଦେଲି, ରେ କୁନ୍ଦରଦନା,
ଲମ୍ପଟିଟା ବୋଲାଇଲି ।୨୮ ।

ବସାକ୍ କସାକ୍ ବଳେ ବସନ୍ତେ ମୁଁ ଶ୍ୟାମ କୋଳେ
ବଡ଼ ସୁଖ ଦେଇ କଦମ୍ବ ତଳେ, ରେ ମନମୋହନା,
କାଇପର କାସ ଖେଳେ ।୨୯।

ଶମନ ଭଗିନୀ ବଟଣେ          ଶପଥ ପକାଇ ପଟଣେ
ଶିଖଣ୍ଡ ଲଗାଇ ମୋର ଚରଣେ, ରେ ଜୀବର ସଙ୍ଗୀ,
ଶରଣ ବୋଲନ୍ତି କେଣେ ।୩୦।

ସ୍ନେହକୁ ମୁକୁତା ହାର          ସମାନ ଯେନ ତାହାର
ସମର୍ପି ଦେଇଛୁ ଶରୀର ମୋର, ରେ ଛଇଳାମଣି,
ସୁନ୍ଦରକୁ ଅଗୋଚର ।୩୧।

ଷଟପଦ ପ୍ରିୟା ପର          ସନ୍ତୋଷେ ଜନେ ବିହର,
ସହସ୍ରେ ସର୍ଜିବ ହୋଇ ଥାଉ ହର, ଛଇଳାମଣି,
ସବୁର ନେତ୍ରରଙ୍ଗିର ।୩୨।

ହରି ହର ହର ହର          ହର ହର ହର ହର
ହରବେ ଯେ ଦୁଃଖ ଭବଲହର, ରେ ପୃଥୁଳସ୍ତନା,
ହସିହସି ଯିବା ତର ।୩୩।

କ୍ଷୀରୋଦ ନନ୍ଦନା ପତି,          କ୍ଷିତି ଅଧ ଲୋକଗତି
କ୍ଷମାନାଥ ଜଗଦେବ ଭାରତୀ, ରେ ଜୀବନଚ୍ଛବି,
କ୍ଷଣେ ହେଁ ନାଅନ୍ତୁ ସ୍ତୁତି ।୩୪।

———

## ବୃହତ୍ ପ୍ରହଳି-ମାଳିକା

ଉମାଧବ ସୁତ ଯାନ ଭୋଜନ
ତାହାର ଆହାର ପ୍ରିୟ ନନ୍ଦନ ।ପଦ।

ତାହାର ଅରି ବାହନ ଅରି—ସେ ଯାହା ବାହନ ତାକୁ ସୁମରି
ରଚଇ ମୁଁ ଗୀତ, ଶୁଣି ସୁରସିକେ ହେବେ ମୋହିତ ।୧। ( ଦୁର୍ଗା )
ଅମାବାସ୍ୟା ନିଶି ଅର୍ଦ୍ଧ ଯାମରେ—ଗୃହ ମେଘ ମିଶି ବରଷାନ୍ତରେ
ଜନ୍ମଅନ୍ଧ ବସି ନଦୀ ତଟରେ—ପୁଅ ମୁଖ ଦେଖି ହରଷଭରେ
ପଣ୍ଡିତର ମଥା ହେଲେ ଘୂରିବ ବାରେ ।୨। ( କୃଷ୍ଣଜନ୍ମ )
ଏଣୁ ଯାଉଥିଲେ ବାପ ପୁଅ—ତେଣୁ ଆସୁଥିଲେ ଏକା ।
ବାପକୁ ଯାହାର ନମସ୍କାର, ତାକୁ ପୁଅ ଗୋଡ଼ ତଳେ ପକା ।୩।
( ବସୁଦେବ-ଉଗ୍ରସେନ )

ଭାର୍ଯ୍ୟାପଦେ ପଡ଼ି କେଉଁ ବୀରବର,
ଶାଶୁ କୋଳେ ଶୋଇ ବୁହାଇଲେ ନେତ୍ର ନୀର,
ଭାବ ଅପଦ-ଭାର୍ଯ୍ୟାପଦ ।୪। ( ରାମଚନ୍ଦ୍ର )
ଦ୍ରୋଣ ବୀର ଶଲେକ୍ଷ ପଡିତ କେଶବରେ,
ଧାଇଁ ଯାଇ ବସିଲା ତାହାର ଉପରେ ।
ପାଣ୍ଡବ ଅନନ୍ତହୂରେ ରହି କାନ୍ଦୁଛନ୍ତି,
ପଣ୍ଡିତର ମଥା ହେଲେ ଘୂରିଯିବ ଅନ୍ତ ।୫।
ଦ୍ରୋଣ—କାକ, ପାଣ୍ଡବ—ବଲ୍ଲଅ ।

ମା ତାଠାରୁ ପୁଅ ହୋଇଣ ଜାତ—କ୍ଷୀର ନ ଖାଇ ଲୋଡ଼ୁଥାଏ ଭାତ
ଏମନ୍ତ ପଦାର୍ଥ ଅଛଇ କାହିଁ—ମାତା ଛୁଇଁଲେ ଯେ ପୁଅ ମରଇ ।୬।
(ଲୁଣ)

ଛବରେ କେ ଜଣେ ନବ ରବଙ୍କି, କେ ପେଟ ପୋଷେ ଧନୁଶର ବଙ୍କ
ଜଳଠାରେ ପ୍ରୀତ କାହାର ନିତ, କାର ଭୟ ନାହିଁ ଜଗତ ପ୍ରତ ।
ବଗୁରି କହିବ, ଗୁରୁ ପଦାର୍ଥ ଏକ ହୋଇଥିବ ।୭।
ଅବୀର—ଫଗୁ, ଅବୀର—ଯେ ବୀର ନୁହେଁ, ଅବ—ଛେଳି,
ଅ—ବସ୍ତ୍ର, ବ—ପକ୍ଷୀ ବିଶେଷ ।

—ସମାପ୍ତ—

# କଠିନ ଶବ୍ଦାର୍ଥ

### ଅ

ଅ—ବିଷ୍ଣୁ

ଅକୂପାର—ସମୁଦ୍ର

ଅକ୍ଷତ—ଗୁଉଳ, ପୂର୍ଣ୍ଣ

ଅଗ—ପର୍ବତ

ଅଙ୍ଗରାଗ—ଚନ୍ଦନ-କୁଙ୍କୁମାଦି ଅଙ୍ଗଲେପନ

ଅଟବୀ—କାନନ

ଅଟ୍ଟାଟ୍ଟହାସ—ଉଚ୍ଚହାସ

ଅଣୁମଧ୍ୟା—କ୍ଷୀଣ କଟୀ ଯାହାର

ଅତଳ—ରସାତଳ

ଅତନୁ—କନ୍ଦର୍ପ

ଅତଲସ—ବସ୍ତ୍ରର ଭାଙ୍ଗବିଶେଷ

ଅଧୂରା—ଅସଂପୂର୍ଣ୍ଣ

ଅନାଦୃତ—ଗୃଦ୍ଧ୍ୟ, ଘୃଣ୍ୟା

ଅନାବୃତ—ଦୁଃଖବିହୀନ

ଅନ୍ତଃସାର—ବଳ

ଅପାଙ୍ଗ—ନୟନପ୍ରାନ୍ତ ଦୃଷ୍ଟି

ଅପଘନ—ଶରୀର

ଅବଶ୍ଳେଷ—ଆଲିଙ୍ଗନ

ଅବତଂସ—କର୍ଣ୍ଣଭୂଷଣ, ଶିରୋଭୂଷଣ

ଅବୀର—ଯେ ବୀର ନୁହେଁ, ପଙ୍ଗୁ

ଅବୁ—ଛେଳି

ଅବଲେପ—ଟାଣ, ଗର୍ବ

ଅଭଲ୍ଲା—ଯେ ଭଲ୍ଲ ନୁହେଁ

ଅମରଷେ—କ୍ରୋଧରେ

ଅମନ୍ଦେ—ଅତିଶୟରେ

ଅମର ଭୂରୁହ—କଳ୍ପତରୁ

ଅମଳେ—ନିଶାରେ

ଅର୍ଣ୍ଣବ—ସମୁଦ୍ର

ଅମ୍ବାର—ଭିଡ଼

ଅମ୍ଭୋଜ—ପଦ୍ମ

ଅରଣ—ଅମାବାସ୍ୟା ରାତି

ଅରୁଣ ଓଷ୍ଠୀ—ରଙ୍ଗାଧରା

ଅଳକା—ଅଳଙ୍କାରବିଶେଷ

ଅଲଭ୍ବକ—ଅଲଭ୍ୟ

ଅଳକ—କପାଳ

ଅଲକ୍ତ—ଅଳତା

ଅଳି—ହଠା, ଭ୍ରମର

ଅଳ୍ପଲୋକ—ସାମାନ୍ୟ ଲୋକ

ଅସମର—ସମାନ ନୋହିବାର

ଅସିତକେଶୀ—କୃଷ୍ଣକେଶୀ

ଅସ୍ଥାନକୁ—ଅତିଶୟ ସ୍ଥାନକୁ

### ଆ

ଆଗାର—ଗୃହ,ସଦନ

ଆଢ଼େଣୀ—ରନ୍ଧନଯୋଗର ଉପକରଣ ବିଶେଷ

ଆନ—ଭିନ୍ନ, ଅନ୍ୟ

ଆତତର—ଅତିଶୟ କାତର

ଆବାସ—ଗୃହ

ଆବୁର—ମହତ

ଅଭ୍ରମୁପତି—ଐରାବତ

ଅସ୍ପାର—ଗହଡ଼

ଅଳୀ—ସଖୀ
ଅଶ୍ଳେଷ—ଆଲିଙ୍ଗନ
ଅସେଚନକ—ତୃପ୍ତିଦାୟକ
ଅହବ—ଯୁଦ୍ଧ

ଇ

ଇନ୍ଦୀବର—ନୀଳକଇଁ
ଇନ୍ଦିରା—ଲକ୍ଷ୍ମୀ
ଇଷ୍ଟ—ଅଭୀଷ୍ଟ
ଇନ୍ଦ୍ରଗୋପ—ସାଧବବୋହୂ ପୋକ

ଉ

ଉପାସନ କଲେ—ପାଖକୁ ଗଲେ
ଉପତାପ—ଉପଦ୍ରବ
ଉପକଣ୍ଠ—ନିକଟ
ଉପଳ—ପଥର
ଉର (ଉରଃ)—ଛାତି
ଉରମୂଳେ—ସ୍ତନମୂଳେ
ଉରୁ—ଜାନୁ

ଋ

ଋତ—ବେଦ, ଧ୍ୱନି, ସତ୍ୟ

ଓ

ଓହରିବା—ହଟିଯିବା, ହଟାଇଯିବା
ଓଜ (ଓଜଃ)—ବଳ

କ

କଟା—ମାଟିପାତ୍ରବିଶେଷ, ଛେଦନ
କଟାଳ—ହଠ, ଅଟ୍ଟ
କଦନ—ଦୁଃଖ
କବନ—କବଚା
କର—କିରଣ, ହାତୀରଶୁଣ୍ଢ, ଖଜଣା, ହାତ
କରପତ୍ର—ଖଡ୍ଗ
କରଜ—ନଖ, ଉଣି
କରଭ—ମଣିବନ୍ଧଠାରୁ କନିଷ୍ଠା ଅଙ୍ଗୁଳିପର୍ଯ୍ୟନ୍ତ
କରପଇଠ—ହସ୍ତଗତ
କରସାରସରେ—ହସ୍ତ-ପଦ୍ମରେ
କରଜଲାଞ୍ଛନ—ନଖଚିହ୍ନ
କଳାପ—କାଞ୍ଚି, ମୟୂରପୁଚ୍ଛ, ସମୂହ
କଳାନିଧି—ଚନ୍ଦ୍ର
କଳିତ—ଧୃତ, ଗୃହୀତ, କଳନା କରାଯାଇଥିବା
କଲମା—ନାରୀମାନଙ୍କ ଗଣ୍ଡଦେଶରେ ଲମ୍ବିଥିବା କୁନ୍ତଳ
କରାଳ—କରସମୂହ
କାଞ୍ଚି—କଟିର ଅଳଙ୍କାର
କାକୁ—ଦୈନ୍ୟୋକ୍ତି, ବକ୍ରୋକ୍ତି
କିତବ—ବିଟବୃଷ, ଛଳ, ଖଳ
କିଶଳୟ—କୋମଳ ପତ୍ର
କିଲ୍ଲାଲ—ଜଳ
କିଲାଲଜ—ପଦ୍ମ
କିନାରେ (ଯାବନିକ)—କୂଳରେ
କିଞ୍ଜଳ୍କ—ପଦ୍ମକେଶର, ଫୁଲରେଣୁ
କୁସୁମ-ସମୟ—ଋତୁକାଳ
କୁଳକଠାଳଅ—କୁଳମର୍ଯ୍ୟାଦା ନଷ୍ଟକାରୀ
କୁଶାଳ—କୁଶସମୂହ
କୁନ୍ଦନ—ଶୁଦ୍ଧ ସୁବର୍ଣ୍ଣ
କୁନ୍ଦନଜଡ଼ା—କୁନ୍ଦାଯାଇଥିବା
କୁଧର—ପୃଥ୍ୱୀ
କୁଚଳ—କୁଚପର୍ବତ
କୁରୁବିନ୍ଦ—ପଦ୍ମରାଗମଣି
କୁମ୍ଭୀକୁମ୍ଭ—ହସ୍ତୀର କୁମ୍ଭସ୍ଥଳ

କେତନ—ଧ୍ୱଜ
କଙ୍କପତ୍ର—ଶର
କୃଶାନୁ—ଅଗ୍ନି
କୃକ—ଏଣ୍ଡୁଅ
କୌଣପକୁଳ—ରାକ୍ଷସକୁଳ
କମ୍ବୁମଧ୍ୟଗ୍ରୀ—ଶଙ୍ଖନାଭିମଧ୍ୟସ୍ଥିତପୁର
କୁଣ୍ଡଳୀମଣ୍ଡଳ ପ୍ରଭୁ—ନାରାୟଣ
କଞ୍ଜସୁତ—ବ୍ରହ୍ମା

(କ୍ଷ)

କ୍ଷମଦା—କ୍ଷମାଦାୟିନୀ
କ୍ଷପାରମଣ—ଚନ୍ଦ୍ର
କ୍ଷିତିସୁର—ବିପ୍ର
କ୍ଷୀଣାନନ୍ଦ—ଅଳ୍ପ ହରଷ
କ୍ଷୀବ—ମତ୍ତ

ଖ

ଖ-ଲୋକ—ସୂର୍ଯ୍ୟଲୋକ, ଆକାଶ
ଖଗାଧିପ—ଗରୁଡ଼
ଖଞ୍ଜନ—ସ୍ୱନାମପ୍ରସିଦ୍ଧ ପକ୍ଷୀବିଶେଷ
ଖରମୟୂଖ—ସୂର୍ଯ୍ୟ
ଖରମୟୂଖର ପୁତ୍ର—ଯମ
ଖର୍ବ—ବାମନ, ଠୁଗ୍ରା, ହ୍ରାସପ୍ରାପ୍ତ
ଖଳ (ଳୀ)—ଦୁଷ୍ଟ-ସ୍ୱଭାବ
ଖଞ୍ଜରିଟାକ୍ଷୀ—କଜଳପାତି-ଚକ୍ଷୁପରି ଚକ୍ଷୁ ଯାହାର
ଖମଣିନନ୍ଦନା—ସୂର୍ଯ୍ୟତନୟା, ଯମୁନା
ଖମଣିକନ୍ୟା—ଯମୁନା
ଖମଣିମଣ୍ଡଳ—ସୂର୍ଯ୍ୟମଣ୍ଡଳ
ଖଣ୍ଡପରଶୁ—ମହାଦେବ
ଖଦ୍ୟୋତ—ଜି ଲୁକୁଳିଆ ପୋକ
ଖୂନା—ମାଖୁନା
ଖୂରି—କାଳପରିମାଣ
ଖୂରଲି—ଅଭ୍ୟାସ

ଗ

ଗଜକୁମ୍ଭରୁ—ହସ୍ତୀର କୁମ୍ଭସ୍ଥଳଠାରୁ
ଗର—ବିଷ
ଗୁହାଗୃହ—କନ୍ଦର
ଗିର—ବାଣୀ
ଗିରୀଶପର—କନ୍ଦର୍ପ
ଗୁଣାମ୍ବୁଧି—ଗୁଣସମୂହ
ଗୁଆଁର—ଗମାର, ମୂର୍ଖ
ଗଣ୍ଡଦର୍ପଣମଣ୍ଡଳେ—ଦର୍ପଣପରି ଝଲ ଧାରଣ କରିବା ଗଣ୍ଡଦେଶରେ
ଗୁଆଳ—ଗଉଡ଼ୁଣୀ
ଗୋତ୍ର—ପର୍ବତ
ଗୋତ୍ର-ଅମିତ୍ର—ଇନ୍ଦ୍ର
ଗ୍ରହାନ୍ତେ—ଧାରଣ କରିବାପରେ

ଘ

ଘନ—କଠିଣ, ମେଘ
ଘନଜଘନା—ସ୍ଥୂଳଜଘା
ଘନାଘନ—ଜଳଭରା ମେଘ
ଘନେ—ସାନ୍ଦ୍ରଭାବେ
ଘନକୁନ୍ତଳା—ଘନକେଶା
ଘନରସ—ଜଳ
ଘନସାର—କର୍ପୂର
ଘରସାରେ—ଘରସାର ଜଳଷ-ମଧ୍ୟରେ
ଘୋଷ—ଗୋପାଳ
ଘୃତାଚୀ—ଅପ୍ସରା

## ଚ

ଚରମ—ପୃଷ୍ଠଭାଗ
ଚରଣାୟୁଧ—କୁକୁଡ଼ା
ଚଉରଙ୍ଗ—ଚତୁରଙ୍ଗ
ଚଷକ—ପାନପାତ୍ର
ଚରାଚର—ସ୍ଥାବର-ଜଙ୍ଗମ
ଚରୁ—ହୁତ
ଚଟୁଳ—ମନୋହର
ଚାମୀକର—ସୁବର୍ଣ୍ଣ
ଚଞ୍ଚରୀକ—ଭ୍ରମର
ଚାପଳ—ଚଞ୍ଚଳତା
ଚେତଚଞ୍ଚରୀକ—ଅସ୍ଥିର ଭୋଳା
ଚତୁର୍ମୁଖ—ବ୍ରହ୍ମା
ଚଳିଦେବା—ଟାଳିଦେବା
ଚଣ୍ଡାଂଶୁ—ଚଣ୍ଡକର
ଚଣ୍ଡୀପତି—ମହାଦେବ
ଚିନା(ଏ)—ଚିହ୍ନିତ୍
ଚିକୁରବନ୍ଧଠାରୁ—କେଶପାଶଠାରୁ
ଚିଲି—ଅଳଙ୍କାରବିଶେଷ
ଚୟ—ସମୂହ
ଚୂଚୁକ—ସ୍ତନର ଅଗ୍ରଭାଗ
ଚେଟୀ—ଦାସୀ
ଚେଲ—ବସ୍ତ୍ର
ଚନ୍ଦ୍ରପରାଗ—କର୍ପୂରଧୂଳି
ଚୀନଚେଳ—ଚୀନବାସ

## ଛ

ଛଦ୍ମ—କପଟ, ଛଳ
ଛଉଳି—ଛଳ, ଛଇ
ଛଳଗୋପୀ—ଚୌରାଙ୍ଗୀ

## ଜ

ଜଗତୀ—ପୃଥ୍ୱୀ
ଜଗତୀଭୂଷା—ସଂସାରଭୂଷଣ
ଜଘନ—ଜାନୁ
ଜରତୀ—ବୃଦ୍ଧା, ଜଟିଳା
ଜଳପ—ଜଡ
ଜଙ୍ଗମ—ଗତିଶୀଳ
ଜବର—ବଡ଼
ଜବା—ମନ୍ଦାରଫୁଲ
ଜମ୍ବାଳ—ପଙ୍କ, ଶିଉଳି
ଜମ୍ଭାରି—ଇନ୍ଦ୍ର
ଜାଲାମାର୍ଗେ—ଝରକାବାଟେ
ଜାମ୍ବୁନଦ—ସ୍ୱର୍ଣ୍ଣ
ଜଞ୍ଜାଳିଆ—ଅଙ୍ଗୁଠିଆ, ଯାହାର ଅଳିଠାଣି
ଜମ୍ଭଦଳନ-ଗଜକୁମ୍ଭ—ଇନ୍ଦ୍ରଙ୍କ ହାତୀର (ଐରାବତ) କୁଚସ୍ଥଳ
ଜମି—ମିଶି
ଜବାଦନ୍ତବାସୀ—ମନ୍ଦାରପୁଷ୍ପପର ରଙ୍ଗ ଅଧର ଯାହାର
ଜାମଳ—ଯୁଗ୍ମ
ଜାତି-ଜବଜା—ଜାଈଫୁଲପର ଯେଉଁ ସ୍ତ୍ରୀର ନଖ
ଜାଙ୍ଗଳ—ବନ୍ୟ
ଜୀବନ—ଜଳ, ପ୍ରାଣ
ଜାତ—ଜଣା
ଜୁରି—ଲୁଟି

## ଝ

ଝଷ—ମୀନ, ମାଛ
ଝଲକ—କାନ୍ତି, ଝଲ

ଝଲକା—ସ୍ୱର୍ଣ୍ଣାଭରଣ, ପେଣ୍ଡି,
ଝୁମୁକା ଲୁଡ଼ୁକି
ଝଷଧ୍ୱଜ—ମୀନକେତନ
ଝଣାଣ—ଅଳଙ୍କାର-ଶବ୍ଦବିଶେଷ
ଝଞ୍ଜାନିଳେ—ପ୍ରବଳ ପବନରେ
ଝାଳ—ମିଶାଇ, ଯୋଖି
ଝାଡ଼ଦଳ—ଜଙ୍ଗଲର ପଥ
ଝିମିଟ—କ୍ଷଣ
ଝୀନ ଚେଲ—ସରୁ ଲୁଗା

ଟ

ଟଣକ—ଟାଣ, ଦମ୍ଭ
ଟଦଟର—ଚଞ୍ଚଳ
ଟାଳି—ଭଙ୍ଗି, ଢେଣ୍ଟି
ଟିକାପୁତ—ଶ୍ରେଷ୍ଠ, ଯୁବରାଜ

ଠ

ଠଣା—ପ୍ରତିହାରୀର ସ୍ଥାନ,
ଜାନୁଖୋଲା
ଠଣାଦାର—ଜଗୁଆଳ

ଡ

ଡଗର—ଦୂତ
ଡାକ—ଡମ୍ବରୁ
ଡାକକଟି—ସରୁକଟି
ଢମ୍ଭ—ଛୁଆ
ଢଙ୍ଗାପଣ—ଗାଲୁଆପଣ

ଢ

ଢମ—ବଡ଼ପଣ
ଢାଳେ—ଅବଲୀଳାକ୍ରମେ, ଟିକିଏ

ତ

ତଟି (ଟୀ)—ନଦୀ
ତଡ଼ାଇଲ—ଉପେକ୍ଷା କଲ
ତପତ-ତପନୀୟ—ଦଗ୍ଧସୁବର୍ଣ୍ଣ
ତଳପ—ଶେଜ
ତରସ—ଶୀଘ୍ର, ଭୟ
ତରଜ—ଗାଳି ଦେଇ
ତରଜନା—ଗାଳି
ତରଣୀଜା—ଯମୁନା
ତନୁଅଙ୍ଗୀ—କୃଶାଙ୍ଗୀ
ତରୁଣାଙ୍ଗୀ—ନବଯୌବନା,
ତନାବ—ଝରକା
ତାମରସ—ପଦ୍ମ
ତାର୍କ୍ଷ୍ୟ—ଗରୁଡ଼
ତାରକା—ଚକ୍ଷୁର ଡୋଳା
ତୁରୀୟଭାଗ—ଚତୁର୍ଥଭାଗ
ତୁନ୍ଦ—ବଡ଼ପେଟ
ତୁଷାରମୟୂଖ—ଚନ୍ଦ୍ର
ତୁଷାରାଂଶ—ଚନ୍ଦ୍ରକିରଣ
ତ୍ରପା—ଲଜ୍ଜା, ଲାଜ

ଦ

ଦର—ଭୟ
ଦର୍ଶ—ଅମାବାସ୍ୟା ରାତ୍ରି
ଦଶମଦଶା—ଶେଷ-ସମୟ
ଦଶନାମ୍ବର—ଓଠ
ଦମ୍ଭୋଳି—ବଜ୍ର
ଦମ୍ଭ ସ୍ୱର୍ଗ—କପଟ ସ୍ୱର୍ଗ
ଦଣ୍ଡଧର—ମହାଦେବ, ଯମ
ଦଳେ—ପନେ
ଦଣ୍ଡ—କାଳପାଶ
ଦକ୍ଷଅଂଶ—ଦକ୍ଷିଣଭାଗ
ଦକ୍ଷଅଙ୍ଗ—ପୁରୁଷ-ଅଙ୍ଗ
ଦନ୍ତବାସ—ଓଷ୍ଠ

ଦନ୍ତକୁଡ୍ମଳ—ଅଧର
ଦୀପ-ତନ୍ଦ୍ରହା—ତନ୍ଦ୍ରଶୀ
ଦୂରାପ—ଦୁଷ୍ପ୍ରାପ୍ୟ
ଦ୍ୟୁତି—କାନ୍ତି
ଦ୍ୱିଜରାଜ—ଚନ୍ଦ୍ର
ଦେବଦେବ—ମହାଦେବ
ଦେରେ—ପର୍. ସର୍, ସଦୃଶ, ଭଳି
ଦ୍ରୋଣି—କାଚ, କୁଅ

ଧ

ଧରାଧର—ପର୍ବତ
ଧରାଧୀଶ—ପୃଥ୍ୱୀପତି
ଧରାବଳୟ—ଧରାମଣ୍ଡଳ
ଧଳାକଳାପ—ଶୁକ୍ଳାଲଙ୍କାର
ଧରାଶିରୀ—ପୃଥ୍ୱୀର ଶୋଭା
ଧନଞ୍ଜୟ—ଅଗ୍ନି
ଧମ୍ମିଲ୍ଲ—ମୁକ୍ତା ଓ ପୁଷ୍ପ ପ୍ରଭୃତିରେ ସୁସଜ୍ଜିତ କେଶପାଶ
ଧାତୁକୀ—ପୁଷ୍ପବିଶେଷ
ଧାତକୀ—ଅତଶୀଦ୍ର
ଧୂଳିସମାଜ—ଧୂଳିସମୂହ
ଧୃତି—ଦମ୍ଭ

ନ

ନବରତ୍ନବସନା—ନବରତ୍ନଖଚିତ
ନକ—କୁମ୍ଭୀର
ନଳଦ—ଉଶୀର, ବେଣାମୂଳ
ନଟନ—ନାଚ
ନଡକ—ବନଚଡ଼କ
ନୀବଡ଼ ନୀରନ୍ଧ୍ରନଦ୍ଧା—ଅଣ୍ଟାରେ ଅଣ୍ଟରେ ବନ୍ଧାମାଇଥିବା ଡୋର
ନତନୁ—କନ୍ଦର୍ପ, ଅନଙ୍ଗ
ନଭବନ୍ଧୁ—ନାବିକବନ୍ଧୁ
ନବମାଳୀ—ନିଅଳୀ
ନଖିନନ୍ଥ—ଭଲ୍ ଧର (ଗୁଣ ନ ରଖିବା ଇଚ୍ଛାରେ ସ୍ତ୍ରୀମାନେ 'ନଖିନନ୍ଥ' କହନ୍ତି)
ନନ୍ଦନ-ବନପ୍ରସୂନ—ପାରିଜାତ କୁସୁମ
ନିସର୍ଗ—ସ୍ୱଭାବ, ସୃଷ୍ଟି, ନୈସର୍ଗିକ
ନା'କ—ସ୍ୱର୍ଗ
ନାଲ୍‌କଦଳେ—କୋମଳ ପଦରେ
ନାରାଚ—ଶର
ନାହାକ—ନାୟକ, ପତି
ନାଖର—ମଦ
ନାଦାର—ତୁଚ୍ଛ
ନାଗନାଥ—ହସ୍ତୀଶ୍ରେଷ୍ଠ
ନାଗାର—ଗରୁଡ଼
ନାକନିତମ୍ବିନୀ—ସ୍ୱର୍ଗାଙ୍ଗନା
ନିରସ୍ତେ—ନରକରେ
ନିଧୁବନ—କାମକ୍ରୀଡ଼ା, କାମକେଳି
ନିନାଦ, ନିନଦ—ଶବ୍ଦ
ନିସ୍ୟନ୍ଦ—ନିର୍ଝର
ନିବାର—ବନ୍ଦ କର
ନିଅଜ—ଅନୁମାନ, ଛଳନା
ନିଭ—ସଦୃଶ, ତୁଲ୍ୟ
ନିତମ୍ବ—କଟିର ପଶ୍ଚାଦ୍ଭାଗ
ନିଃଶେଷ—ଶେଷ
ନିର୍ଜରବଧୂନାଥ—ଇନ୍ଦ୍ର
ନିଜାପଘନ—ନିଜ ଶରୀର

ନୀହାରହାସୀ—ତୁଷାରହାସୀ
ନିଧି—ଧନ
ନିରୁପମ—ଉପମାଶୂନ୍ୟ
ନିହାଳ—ଦେଖି
ନୀଳମଣି—ନୀଳରତ୍ନ,
ଭଗବାନ୍ ବିଷ୍ଣୁ
ନୀତ—ଗୃହୀତ
ନିହାର—କାତର
ନିସ୍ତନ୍ଦ୍ର—ତନ୍ଦ୍ରାହୀନ

ପ

ପଇଠ—ପହଞ୍ଚାଇବା
ପଇଠିବା—ଜାଣିବା, ଶିଖିବା
ପଟୀର-ପଙ୍କ—ଚନ୍ଦନକର୍ପୂରବିଦ୍ଧ ପଙ୍କ
ପଟ୍ଟ—ବସ୍ତ୍ର
ପକ୍ଷ୍ମ—ଆଖିପତା
ପଞ୍ଝୁଅଣି—ପଞ୍ଝୁଆ
ପଞ୍ଚବାଣ—କନ୍ଦର୍ପ
ପଞ୍ଚଦଶତିଥି—ଅମାବାସ୍ୟା
ପରଷା—ପରଷିବା
ପରଦାରେ—ପରସ୍ତ୍ରୀରେ, ପରଦା-
ଭିତରେ
ପୟୋଧର, ପୟୋଧନ—ସ୍ତନ
ପରଗୃହ—ଗୃହକର
ପରମାଣୁମଧ୍ୟା—ସରୁକଟି
ପରଣତ—ପକ୍ୱ, ପୂର୍ଣ୍ଣ
ପରପନ୍ନୀ—ଶତ୍ରୁ
ପରବସମୁଦିତ—ପୂର୍ଣ୍ଣିମାଚନ୍ଦ୍ରାଲୋକିତ
ପନୀର—ବାସଜଳ
ପରବ—ପୂର୍ଣ୍ଣ
ପଙ୍କଜ-ସଉରଭ—ପଦ୍ମଗନ୍ଧ
ପରଶୁ—କୁସଳୀ
ପରବାଦ—ଅପବାଦ
ପରଭୃତ—ତିରସ୍କୃତ
ପଟୁ—କୁଶଳ
ପରିରମ୍ଭ—ଆଲିଙ୍ଗନ
ପଦ୍ମ—ସଂଖ୍ୟାବିଶେଷ, ଫୁଲବିଶେଷ
ପାଦପୀଠସ୍ୱ—ପାଦପଦ୍ମ
ପାଳି—ନିୟମକାଳ, ସମୂହ
ପାଶ୍ୱିନ୍ଦ୍ର—ସିଂହ, ଅଜଗର ସାପ
ପାଣ୍ଡବ—ବାଲ୍ୟ
ପିଷ୍ଟପେ—ଜଗତରେ
ପିଚୁମର୍ଦ୍ଦ—ନିମ୍ବଗଛ
ପିଚୁ—କପାତୁଳା
ପୀନକରଭୋରୁ—ପୃଥୁଳ ଜାନୁ
ପୀବର—ପୃଥୁଳ
ପୁଲକକଳପା—ପୁଲକିତ
ପୁଳନ—ତଟ
ପୁରୁହୁତ—ବିଷ୍ଣୁ
ପୁରୁହୂତ—ଇନ୍ଦ୍ର
ପୁନଭବଦଗ୍ଧ—କନ୍ଦର୍ପ
ପୂର—ପୂର୍ଣ୍ଣ କର
ପୂଷା—ସୂର୍ଯ୍ୟ
ପୁରତେ—ଆଗରେ, ସମ୍ମୁଖରେ
ପୋଟାଳି—କୋଳାଗ୍ରତ କର
ପେଶି—ତୈଳଜାତୀୟ ଶସ୍ୟ
ପ୍ରକର—ସମୂହ
ପ୍ରବଳା—ପ୍ରବଳଭାବେ
ପ୍ରବଣ—ଢାଲୁ
ପ୍ରପଦ—ପାଦାଗ୍ର
ପ୍ରତୀକ—ନମୁନା

ପ୍ରଲମ୍ବ—ଲମ୍ବିତ
ପ୍ରସର—ବ୍ୟାପି
ପ୍ରବଳ—ମାଛ
ପ୍ରତପ୍ରତକେ—ଗୋଟିଗୋଟିକେ
ପ୍ରଧନେ—ଯୁଦ୍ଧେ
ପ୍ରବନ୍ଧ—କଳ୍ପନା
ପ୍ରବାହ—ସୋତ
ପ୍ରମଦ—ଅତିଶୟ ମତ୍ତ

ଫ

ଫରମାସ—(ଫା) ବରାଦ
ଫତ୍ତ୍ରସିଖୋର—(ଫା) ଲାଞ୍ଚୁଆ
ଫତୁଆ—ମିଛୁଆ
ଫଳାର୍ଥ—ଶୁକ
ଫୁଲକାଣ୍ଡ—କନ୍ଦର୍ପବାଣ
ଫୁଲଗୁପ—କନ୍ଦର୍ପ
ଫୁଙ୍କା—ଟୁଙ୍କନା

ବ

ବନଜ—ପଦ୍ମ
ବଳୟ—ମଣ୍ଡଳ
ବଳପର—ଇନ୍ଦ୍ର
ବଡ଼ଭି—(ସ୍ତ୍ରୀ) ଚନ୍ଦ୍ରଶାଳା, ପାବଚ୍ଛ
ବଳକ୍ଷ—ଶୁକ୍ଳ
ବଦ—କହ
ବରବର—ଶ୍ରେଷ୍ଠବର
ବରବସ—ନୀଳ, କାଳଠ
ବନ—ଜଳ
ବଲ୍ଲୀ, ବଲ୍ଲରୀ—ଲତା
ବଳା (କା) ଳୀ—ବକପଂକ୍ତି
ବଳାହକ—ମେଘ
ବରବାମା—ଶ୍ରେଷ୍ଠାରମଣୀ
ବର୍ତ୍ତିକ—କଜଡ଼ି
ବଳାହ୍ରତାବରଜ—ଇନ୍ଦ୍ରଙ୍କ ସାନଭାଇ
ବନ୍ଧୁଜୀବ—ରକ୍ତପୁଷ୍ପ, ବନ୍ଧୁଲି
ବନିଛି—ପ୍ରସ୍ତୁତ ହୋଇଛି
ବରଛବସାଣ—ବ୍ରତରେବଜାଇଥିବା
ବଡ଼ିଶ—ଲଟିକଣ୍ଟା, କନଶୀ
ବସୁଦୁର୍ଗ—ଅଠଗଡ଼
ବରଣ୍ଟି—ବର୍ଚ୍ଛା
ବକ୍ଷୋଜ—ସ୍ତନ
ବଦାଉ—ତାଲ୍
ବରବାରଣ—ଗଜଶ୍ରେଷ୍ଠ
ବନଜପଲ୍ଲବାବଳୀ—ପଦ୍ମପତ୍ରସମୂହ
ବର୍ହୀ—ମୟୂର
ବରରୁହା—ଶ୍ରେଷ୍ଠା ନାୟିକା
ବନରୁହାକ୍ଷୀ—ପଦ୍ମଅକ୍ଷି
ବିନତାର ସୁତ—ଗରୁଡ଼
ବସୁ—ଅଠ
ବନପ୍ରିୟ—କୋକିଳ
ବନ୍ଧୁକ—ସାତଘଡ଼ିଆ ଫୁଲ
ବାସନ୍ଦ—ମନା
ବାଗ—ଘୋଡ଼ାକୁ ଚଳାଇବା
ଦଉଡ଼ି
ବାବଦୁକ—ଶବ୍ଦାୟମାନ,
ବହୁଭାଷୀ, ଜଥଳ
ବାରଣେନ୍ଦ୍ର—ଐରାବତ
ବାରବାମା—ବେଶ୍ୟା
ବାଜୁବାଭୂଷା—ଅଳଙ୍କାରବିଶେଷ,
ଯାହା ଶବ୍ଦାୟମାନ
ବାଣୀଠାକୁରାଣୀ—ସରସ୍ୱତୀ
ବାରଣ—ହସ୍ତୀ

ବାରବାଣସୁନା—କୁନ୍ଦନସୁନା
ବାସରଗଣ—ଦବାସମୂହ
ବାରଦ—ମେଘ
ବାପୁଡ଼ା—ବପୁରା
ବି—ପକ୍ଷୀବିଶେଷ
ବିପିନପଲ୍ଲବ—ଉଦ୍ୟାନ
ବିମୋଦ—ଆନନ୍ଦରହିତ
ବିଧୂନନ—କମ୍ପନ
ବିରଳ—ସ୍ୱଳ୍ପ
ବିଡ଼ିଆ ଡବକ—ପାନବଟା
ବିଚକ୍ଷଣା—ପ୍ରବୀଣା
ବିମ୍ବ—ମଣ୍ଡଳ
ବିରକ୍ତ—ରକ୍ତରହିତ
ବିଠ—ଲମ୍ପଠ
ବିଟିକା—ବିଡ଼ିଆ
ବିଭାବସୀବର—ଚନ୍ଦ୍ର
ବେନାହପଡ—ଚକ୍ଦ
ବ୍ରଜ—ସମୂହ
ବ୍ୟାଜେ—ଛଳେ
ବିଭ୍ରମ—ବିଶେଷ ଭ୍ରମ
ବ୍ରହ୍ମାଣ୍ଡକଟାହ—ପୃଥିବୀରୂପ ପାତ୍ର
ବ୍ରହ୍ମାନନ୍ଦ—ମହାସୁଖ
ବଜ୍ରପଞ୍ଜର—ଦୃଢ଼ତର ପଞ୍ଜର
ବିଦ୍ରୂମ—ପୋହଳା, କାଳେସୁ

ଭ

ଭଟ୍ଟ—ଭାଟ
ଭର—ଯେନ. ପୂରଣକର
ଭଟେରନ୍ଦ—ମକରନ୍ଦପୂର୍ଣ୍ଣ
ଭବଜ—ମନାଇ
ଭଙ୍ଗନୁ—ନିଦଙ୍ଗଠାଣି
ଭାଲ—ଲଲାଟ
ଭାସ୍ୱର—ଦୀପ୍ତିମନ୍ତ
ଭାନୁଜା—ଯମୁନା
ଭାରତୀ—ବଚନ
ଭୂତି—ସମ୍ପତ୍ତି, ଐଶ୍ୱର୍ଯ୍ୟ
ଭୂଧର—ଭୂପତି
ଭୂ—ପୃଥିବୀ

ମ

ମକରନ୍ଦ—ପୁଷ୍ପପରାଗ
ମନମଥ—କନ୍ଦର୍ପ
ମଲୟଜ—ଚନ୍ଦନ
ମସୀ—କଳା
ମଉଳି—ମସ୍ତକ
ମବଜ୍ଞ—ମନ
ମଜା—ଇଚ୍ଛା, ପରସ୍କାର
ମନୋଭବ—କନ୍ଦର୍ପ
ମୟୂଖ—କିରଣ, ଦୀପ୍ତି
ମହେନ୍ଦ୍ରଭୂତି—ସ୍ୱର୍ଗସମ୍ପତ୍ତି
ମନାକ୍ଷା—ଇଚ୍ଛା
ମଞ୍ଜୀର—ପାଦାଳଙ୍କାର
ମସାର—ଇନ୍ଦ୍ରନୀଳମଣି
ମକରପନ—ସ୍ମର
ମତଙ୍କ-ମତରେ—ବୁଦ୍ଧିବାନ୍
ବ'ଙ୍କର ମତରେ
ମଙ୍ଗ ଗ—ଭେଟି ।
ମଣିବରେତ—ମଣିଦ୍ୱାରା ନିର୍ମିତ
ମଣ୍ଡୂକନାଥ—ମହାକୂର୍ମ
ମଦନ-ମୁକୁର—କାମଦର୍ପଣ
ମଦଦ୍ୱିରଦଗତି—ମଦମତ୍ତ ହସ୍ତୀର,
ଗୁଲ

ମତ୍ତ—ପ୍ରମତ୍ତ ।
ମକରଧ୍ୱଜ—କନ୍ଦର୍ପ
ମଞ୍ଜୀର—ନୂପୁର
ମାରମୁଦେ—କନ୍ଦର୍ପମୁଦେ
ମାର୍ଗଣ—ଶର
ମାନିନୀବର—ଶ୍ରେଷ୍ଠ ଅଭିମାନିନୀ
ମାନବେଶ—ଅଭିମାନ ବେଶ
ମାଧବ—ବସନ୍ତ
ମାଳବର—ଶ୍ରେଷ୍ଠମାଳ
ମାଫ(ଯା)—କ୍ଷମା
ମାଫିକେ(ଯା)—ଅନୁସାରେ
ମୀନକେତନ—କନ୍ଦର୍ପ
ମୀନାକ୍ଷି—ମୀନନୟନା
ମିନା—ପଦକ
ମିଠ—ମିଠା
ମୁଖ୍ୟ—ପ୍ରଧାନ
ମେରୁ—ପର୍ବତ
ମୃଗମଦମାନ୍ଥ—କସ୍ତୁରୀରେ ଲେଖା-
ଯାଇଥିବା ଚନ୍ଦ୍ରମାନ୍ଥ
ମୂର୍ଦ୍ଧାମଣି—ମସ୍ତକଭୂଷା
ମୃଷା—ମିଥ୍ୟା
ମହାଗ୍ରାବ—ବଡ଼ ପଥର

ଯ

ଯଦୁମଣି—ଶ୍ରୀକୃଷ୍ଣ
ଯବନିକା—ପରଦା
ଯାବକ—ଅଳତା
ଯାମିନୀଶ—ଚନ୍ଦ୍ର
ଯାତ—ଗତ, ଯାନା
ଯାମିନୀମୁଖେ—ସନ୍ଧ୍ୟାସମୟରେ
ଯୁବମଦକଳ—ଯୌବନ-ମଦମତ୍ତ-
ରବ

ର

ରସାଳସା—ଶୃଙ୍ଗାର ରସରେ ଅଳସ୍ୟ
ହେବା ନାରୀ
ରସନା—ମେଖଳା, ଜିଭ
ରଦାମ୍ବର—ଦନ୍ତବାସ
ରଜ—ରେଣୁ
ରଦନ-ଅମ୍ବର—ଓଷ୍ଠ
ରଦ—ଲେପ
ରଦବାସେ—ଅଧରେ
ରମ୍ଭୋରୁ—ରମ୍ଭା ବା କଦଳୀ ବୃକ୍ଷସର
ଜଙ୍ଘ ଯାହାର
ରଞ୍ଚିବା—ରଚନା କରିବା
ରାଜଭୃଷ୍ଟ—କଗୁଆଳି
ରାସରେ—ହଲ୍ଲୀସକନୃତ୍ୟରେ
ରାଜଲୋକ—ଚନ୍ଦ୍ରଲୋକ
ରାସରଙ୍କଦେବ—ଶ୍ରୀକୃଷ୍ଣ
ବୁଝାଇ—ବୁଝାଇ, ବୋଧ କରି
ରୁଚକ—ଶୋଭନୀୟ, ଝଲ୍ଲ
ରୋଲମ୍ବ—ଭ୍ରମର

ଲ

ଲଲାମ—ଶ୍ରେଷ୍ଠ, ଶିରୋଭୂଷଣ
ଲସାଇବା—ଉଗ୍ରା କରିବା
ଲାଲଦନ୍ତବାସ—ରକ୍ତିମ ଅଧର
ଲିପିବା—କହିବା, କଳପିବା
ଲାଞ୍ଛନ—ଚିହ୍ନ
ଲିପିଲିପି—ଚିକିଟିକି
ଲିପ୍ସା—ଆଶା
ଲଲିତ—ମନୋହର, ଓହଳିତ
ଲେଖ—ପତ୍ର
ଲୋଳ—ଚଞ୍ଚଳ

## ଶ

ଶକ୍ର—ଇନ୍ଦ୍ର
ଶତପତ୍ର—ପଦ୍ମ
ଶରସାର—ଉତ୍ତମ ଶର
ଶମ୍ବର—ମୃଗ
ଶର୍ମ—ସୁଖ
ଶମ୍ବରୀ—ଇନ୍ଦ୍ରଜାଲ
ଶରଦନ୍ଦୁ—ଶରଚନ୍ଦ୍ର
ଶଶୀଶକଳ—ଚନ୍ଦ୍ରଖଣ୍ଡ
ଶଶୀଶକଳଶିରଭୂଷା—ମହାଦେବ
ଶତମୟୂଖ—ଶତକିରଣ
ଶାଣିତାସ୍ତ୍ର—ଶାଣ ଦେବାସ୍ତ୍ର
ଶାବକ-ମୃଗାକ୍ଷୀ—ବାଳମୃଗାକ୍ଷୀ
ଶିଖଣ୍ଡ—ଚୂଳ
ଶିଳୀମୁଖ—ଭ୍ରମର
ଶିଖଣ୍ଡମଣ୍ଡନ—ମୟୂରପୁଚ୍ଛଧାରୀ
ଶୀତମୟୂଖ—ଚନ୍ଦ୍ରମୁଖ
ଶୂର—ବୀର
ଶିଞ୍ଜିତ—ଧ୍ୱନିକୃତ
ଶିବଙ୍କ ଅରାତ—କାମଦେବ
ଶେଫାଳିକା—ଗଙ୍ଗଶିଉଳି ଫୁଲ
ଶ୍ରୀବତ୍ସ—ଶ୍ରୀକୃଷ୍ଣ
ଶେଷ—ବାସୁକି

## ଷ

ଷଟ୍‌ପଦ—ଭ୍ରମର
ଷଡ଼ାଇ—ପୋଗୃଭଗାଇ
ଷଡ଼ଙ୍ଘ୍ରୀ—ଭ୍ରମର
ଷଡ଼ାସ୍ୟ—କାର୍ତ୍ତିକେୟ
ଷଡ଼ାସ୍ୟଜନକ—ମହାଦେବ

## ସ

ସଦଳ—ଅନ, ଘଣ, ସପତ୍ର
ସମଜ—ଗୋଷ୍ଠୀ
ସପତ୍ନ—ଶତ୍ରୁ
ସରସିଜସୂନ—ବ୍ରହ୍ମା
ସମାଜେ—ସମ୍ମୁଖେ
ସରଦାର—ଅଗ୍ରଣୀ
ସରୁମଧ୍ୟା—କ୍ଷୀଣକଟି ଯେଉଁସ୍ତ୍ରୀର
ସସ୍ମିତ—ମୃଦୁହାସଯୁକ୍ତ
ସବସେନ୍ଦ୍ର—ସରସଭାରେ ଇନ୍ଦ୍ରସଦୃଶ
ସହ—ସ୍ୱୀକାର କର
ସଠାବଠା—ଠକାଠକି, କଠାକଠି
ସାତ—ସୁଖ, ସୁଭ, ସପ୍ତସଂଖ୍ୟା ବିଶେଷ
ସାରଙ୍ଗ—ମୃଗ
ସାର—ମଜା, ଶ୍ରେଷ୍ଠ
ସାନୁମଣି—ପର୍ବତଶ୍ରେଷ୍ଠ
ସ୍ୱାନ୍ତ—ଶେଷ
ସିତ—ଶୁକ୍ଳ
ସ୍ମିତେ—ମନ୍ଦହାସେ
ସିଂହାସ୍ୟ—ବେଶକାସ୍ୟ
ସୀମନ୍ତମଣି—ମଥାମଣି
ସିନ୍ଧୁର—ହସ୍ତୀ
ସୁପାଳି—ଶେଯ, ପଲଙ୍କ
ସୂନ—ପୁଷ୍ପ
ସୁରଋଷି—ଦେବର୍ଷି
ସୁରବଳିନୀଳନଭ—ଇନ୍ଦ୍ରନୀଳମଣି-ସଦୃଶ
ସୁଦନ୍ତୀ—ଉତ୍ତମ ଦନ୍ତ ଯାହାର
ସୁରସଦ୍ମ—ସ୍ୱର୍ଗପୁର

ସୁରଭି—ବସନ୍ତକାଳ
ସୂଚକ—ପ୍ରକାଶ, ଚିହ୍ନ
ସୁନାସି—ଉତ୍ତମନାସା
ସୁନାରି—ଜାତିବିଶେଷ
ସୁସାର—ଶୋଭାର
ସୁସାରେ—ଭଲଭାବେ
ସ୍ୱେଦ—ଝାଳ
ସ୍ନେହା—ଉଦର, ପରଜାଲ
ସୋମ—ଚନ୍ଦ୍ର
ସ୍ତୋମ—ସମୂହ
ସ୍ମରଜ୍ୱର—କନ୍ଦର୍ପଜ୍ୱର
ସଂଭର—ସମ୍ୟକ୍ ପ୍ରକାରେ ଭର
ସ୍ଥୂଳନିତମ୍ବ—ବିଶାଳ କଟିର ପଶ୍ଚାଦ୍ଭାଗ
ସ୍ୟନ୍ଦନାଙ୍ଗ—ଚକ
ସ୍ମରସିନ୍ଧୁ—କାମସମୁଦ୍ର

ହ

ହରିହୟ—ଇନ୍ଦ୍ର
ହରି—ସାପ, ବାନର
ହସର—କନ୍ଦର୍ପ
ହର-ଅହୃତ—କନ୍ଦର୍ପ
ହିଣ୍ଡୀର—ଫେନ
ହିରଣ୍ୟ—ସୁବର୍ଣ୍ଣ
ହିମବାଲୁକା—କର୍ପୂରଧୂଳି
ହୁତବହ—ଅଗ୍ନି
ହୁଡ଼—ଭୁଲ, ତ୍ରୁଟି
ହେମସାର—ସାରସୁବର୍ଣ୍ଣ
ହେତି—ଅଗ୍ନିଶିଖା, ଅସ୍ତ୍ରଶସ୍ତ୍ର

ମୁଦ୍ରାକର :— ଶ୍ରୀ ଅଜୟକୁମାର ଘୋଷ, ଶ୍ରୀହରନାଥ ପ୍ରେସ, କଟକ-୨